କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ

# ଲାବଣ୍ୟବତୀ



ଓଡ଼ିଶା ଜଗନ୍ନାଥ କମ୍ପାନୀ
ବାଲୁବଜାର, କଟକ-୨.

ମୂଲ୍ୟ ପାଞ୍ଚଟଙ୍କା ମାତ୍ର

ଉତ୍କଳ ସାହିତ୍ୟ-ରାଜ୍ୟର ମଉଡ଼ମଣି

କବି ସମ୍ରାଟ୍

ଉପେନ୍ଦ୍ରଭଞ୍ଜଙ୍କ କୃତ

# ଲାବଣ୍ୟବତୀ

ସମ୍ପୂର୍ଣ୍ଣ ସରଳ ବୋଧଗମ୍ୟ ଅର୍ଥ ସହିତ

—ପ୍ରକାଶକ—

ଶ୍ରୀ ଜଗନ୍ନାଥ ସିଂହ

ନୂତନ ସଂସ୍କରଣ

୧୯୭୫

—ପ୍ରାପ୍ତିସ୍ଥାନ—

ଓଡ଼ିଶା ଜଗନ୍ନାଥ କମ୍ପାନୀ

ବାଲୁବଜାର, କଟକ-୨

ଟ ୫୷

ବନ୍ଧାଇ ମୂଲ୍ୟ ଟ ୬୷

# ସୂଚିପତ୍ର

ବିଷୟ ପୃଷ୍ଠା

# ଲାବଣ୍ୟବତୀ

## ପ୍ରଥମ ଛାନ୍ଦ

( ଲାବଣ୍ୟବତୀର ପୂର୍ବଜନ୍ମ ଓ ଚନ୍ଦ୍ରଭାନୁର ରାଜଗୃହେ ଜନ୍ମ ବୃତ୍ତାନ୍ତ )

ରାଗ—ନଳିନୀଗୌଡ଼ା

ଜୟ ଜୟ ଜୟ ରାମ ଜନକ-ସୁଖଦ । ଭୀମ ହରଷ ଦାନରେ ସଦା ବିଶାରଦ ହେ । ୧ । ଚନ୍ଦ୍ରହାସେ ଶୋଭାକର ସମସ୍ତ କାଳର । ଲକ୍ଷଣବନ୍ତ ଅଲକ୍ଷ୍ୟ ମୁଖ ମନୋହର ଯେ । ୨ । କବିଭାରତୀଙ୍କ ଅଗୋଚର ଛବି ଯାର । ସୁମନାବୃନ୍ଦବନ୍ଦନ ଏଣୁ ନିରନ୍ତର ଯେ । ୩ । ମହାଶୟ ବଳ

---

ପୂର୍ବରେ କବିମାନେ ନିଜ ନିଜର ଆରାଧ୍ୟ ଦେବାଦେବୀଙ୍କୁ ସ୍ମରଣ ଓ ବନ୍ଦନା କରି ତାଙ୍କର ସୂଚନା ଆରମ୍ଭ କରିଥାନ୍ତି । ସେହି ନିୟମରେ କବିବର ଉପେନ୍ଦ୍ର ଭଞ୍ଜ ଲାବଣ୍ୟବତୀ ଲେଖିଲା ବେଳେ ତାଙ୍କର ଆରାଧ୍ୟ ଦେବ ଶ୍ରୀରାମଚନ୍ଦ୍ରଙ୍କୁ ବନ୍ଦନା କରି ଅଛନ୍ତି ।

୧ । ରାମଙ୍କ ପକ୍ଷେ—ଜନକ-ସୁଖଦ—ଜନକ ଋଷିଙ୍କର ଆନନ୍ଦ ଦାୟକ, ଜନକ-ଜନକ ଋଷି, ପିତା ଯେ ଦଶରଥଙ୍କୁ ସୁଖ ଦିଅନ୍ତି ।
ଭୀମ—ବୀର, ରାକ୍ଷସ, ଶିବ, ହର୍ଷ-ଆନନ୍ଦ, ଦାନ-ଦେବା, ବିଶାରଦ—ପାରଙ୍ଗମ । ବୀର ମାନଙ୍କର ଓ ଶିବଙ୍କୁ ଆନନ୍ଦ, ଦେବାରେ ତତ୍ପର ।

ପର୍ଶୁରାମଙ୍କ ପକ୍ଷେ—ପର୍ଶୁରାମ ଶିବଙ୍କୁ ସେବାକରି ସନ୍ତୋଷ କରିଥିଲେ ଓ ପିତାଜ୍ଞାରେ ମାତାକୁ ନାଶ କରି ପିତାଙ୍କୁ ତୋଷ କରିଥିଲେ ।

ବଳରାମଙ୍କ ପକ୍ଷେ—ବଳରାମ ଅନେକ ଦୁର୍ଦ୍ଦାନ୍ତ ରାକ୍ଷସଙ୍କୁ ମାରି ଲୋକମାନଙ୍କୁ ସୁଖୀ କରିଥିଲେ । ତେଣୁ ରାମ, ପର୍ଶୁରାମ ଓ ବଳରାମଙ୍କୁ ନମସ୍କାର କରୁଅଛି ।

୨ । ଚନ୍ଦ୍ରହାସ—ପୂର୍ଣ୍ଣହସ, ଚନ୍ଦ୍ରହାସ ନାମକ ଖଣ୍ଡା, ଅଲକ୍ଷ୍ୟ—ସମତା ହୀନ, ମନୋହର-ସୁନ୍ଦର । ପୂର୍ଣ୍ଣଚନ୍ଦ୍ର ପରି ହର୍ଷ ମୁଖ ହାତରେ ଚନ୍ଦ୍ରହାସ ଖଣ୍ଡା, ସେ ସୁନ୍ଦର ଦୃଶ୍ୟର ସମାନ ଆଉ କେହି ନାହିଁ । ଶ୍ରୀରାମ ପର୍ଶୁରାମ ଓ ବଳରାମଙ୍କ ପ୍ରତି ।

୩ । ଭାରତୀ—ସରସ୍ୱତୀ, ଅଗୋଚର-ଅଜଣା, ଛବି-ରୂପ, ସୁମନାବୃନ୍ଦ-ବୃଷ୍ଟି

ରିପୁ ପରେ ତାପକର । ଛନ୍ନଭଙ୍ଗ କୁଳରୁ କାତର ଅରିପୁର ହେ । ୪ । ସହସ୍ର କର ଜ୍ୱଳିତ ହର ତେଜୋବାନ । ହରିପକ୍ଷ ସଦାନନ୍ଦ ତୋଷ ବିବର୍ଦ୍ଧନ ହେ । ୫ । ସେ ପ୍ରଭୁ କଞ୍ଜଚରଣେ କରି ତତପର । ଭଞ୍ଜ ବୀର-ବର କବି ମାନସ-ଭ୍ରମର ହେ । ୬ । ମୂର୍ତ୍ତିମନ୍ତ କରି ମୃଦୁଗୀତ ବିରଚଇ । ଏଣୁକରି ଥିବ ଅଲଙ୍କାର ଯୁକ୍ତ ହୋଇ ଯେ । ୭ । ପଦ ସରଳ ଧ୍ୱନିରେ ମାନସ ମୋହିବ । ଅର୍ଥଜନ ପ୍ରବରଙ୍କୁ ଆନନ୍ଦ କରିବ ହେ ।୮। ଡ-ର-ଳରେ

---

ମାଳ ଓ ସୁନ୍ଦରୀ ସ୍ତ୍ରୀ, ଯାହାଙ୍କର ରୂପ-ଛବି କବି ଓ ସରସ୍ୱତୀ ଦୁହିଁଙ୍କୁ ଅଜଣା, ବର୍ଣ୍ଣନା କରିପାରିବେ ନାହିଁ, ଯେ ସର୍ବଦା ସୁନ୍ଦର ପୁଷ୍ପମାଳା ମଣ୍ଡିତ ( ସୁନ୍ଦରୀ ସ୍ତ୍ରୀ ବୃନ୍ଦ ମଣ୍ଡିତ ) ରାମ, ପର୍ଶୁରାମ ଓ ବଳରାମ ପକ୍ଷେ ପ୍ରଯୁଜ୍ୟ ।

୪ । ବଳରିପୁ—ବଳିଷ୍ଠ ଶତ୍ରୁ । ଛନ୍ନଭଙ୍ଗ—ଛିନ୍ନ ବିଛିନ୍ନ । ଯେ ମହାଶତ୍ରୁଙ୍କ ସାମନ୍ତ—ବଳିଷ୍ଠ ଶତ୍ରୁଙ୍କୁ ନାଶ କରିବାରୁ ସେମାନେ ଛିନ୍ନଛନ୍ନ ହୁଅନ୍ତି । ରାମ—ରାବଣ ମାରିଥିଲେ । ପର୍ଶୁରାମ—କାର୍ତ୍ତବୀର୍ଯ୍ୟଙ୍କୁ ମାରିଥିଲେ, ବଳରାମ—ହସ୍ତିନାକୁ ଲଙ୍ଗଳ ମୂନରେ ତାଡ଼ିଥିଲେ ।

୫ । ସହସ୍ର କର—ସହସ୍ର କିରଣ । ସୂର୍ଯ୍ୟଙ୍କୁ ରାମଙ୍କ (ତେଜତେଜହର) ବଳି ଯାଇଥିଲା । ହରିପକ୍ଷ—ରାମଙ୍କ ପକ୍ଷ, ଯେଉଁ [ହରି] ବାନର ଥିଲେ ସେ ଆନନ୍ଦ ପାଇଥିଲେ । ପର୍ଶୁରାମ ବିଷ୍ଣୁଙ୍କ ତପସ୍ୟା କରି ତାଙ୍କର ତେଜରେ ତେଜସ୍ୱାନ ଥିଲେ । ହର [ଶିବ] ଙ୍କ ଆରାଧନାରେ ସନ୍ତୋଷ କରିଥିଲେ, ବଳରାମ—ସହସ୍ରକର ବାଣ ଅସୁରକୁ ଜୟକରି ତାର ତେଜ ହରି ନେଇଥିଲେ । ଶିବ—ବଳରାମଙ୍କ ଓ କୃଷ୍ଣଙ୍କୁ ବିଷ୍ଣୁ ଅବତାର ଜାଣି ସନ୍ତୋଷ ହୋଇଥିଲେ ।

୬ । କଞ୍ଜ—ପଦ୍ମ, ଚରଣ—ପାଦ, ମାନସ—ମନ, ଭଞ୍ଜ କବି ରାମଙ୍କର ପଦ୍ମ ଚରଣକୁ ମନରେ ଭ୍ରମର ସଦୃଶ ସର୍ବଦା ଧ୍ୟାନ କରୁଥିଲେ ।

୭ । ମୂର୍ତ୍ତିମନ୍ତ—ରୂପବନ୍ତ । ମୃଦୁ-ମଧୁର,
ଭଞ୍ଜ ରାମଚନ୍ଦ୍ରଙ୍କୁ ପ୍ରାର୍ଥନାକଲେ—ହେ ପ୍ରଭୁ ମୋର ଏ ରଚନା [ଗୀତ] ରୂପ ଧାରଣ କରି ନାନାଦି ଅଳଂକାରରେ ମଧୁର ପଦ ସବୁ ହେବ । ଯେପରି ମୋର କବିତା ଗୋଟିଏ ସୁନ୍ଦରୀ ସ୍ତ୍ରୀ ପରି ହେବ ।

୮ । ପଦ—ଏହି ଗୀତରେ ପ୍ରତ୍ୟେକ ପଦ ସରଳ ଭାଷା ହେତୁ ଜ୍ଞାନୀ ଅର୍ଥଜନ, ପ୍ରବର—ସମୂହ, ଜ୍ଞାନୀ ମାନଙ୍କର ଆନନ୍ଦ ଦାୟକ ହେବ ।

ସାବର୍ଣ୍ଣ୍ୟ ଯା ବ୍ୟାକରଣେ ଲହୁ । ସୁଚିତ୍ତେ କରଇ ଗୀତ ଏଣୁ ହୃଦପାଇଁ ଯେ । ୯ । ବୁଝାଇଲେ ଜଡ଼ଜନ ଭାବକୁ ପାଇବ । ଖଳଖର ଚୂତାଙ୍କୁର ପ୍ରାପ୍ତେ ନ ଗ୍ରାସିବ ହେ ।୧୦। ମଧୁମକ୍ଷି ଉଚ୍ଛିଷ୍ଟେ ଅମୃତଦର ସୁରେ । କରନ୍ତି ଯେମନ୍ତ ସାଧୁଜନେ ସେ ପ୍ରକାରେ ହେ । ୧୧ । ଦୋଷ ଥିଲେ ରସ ବଶୁଁ କରବେ ଆଦର । ଏଣୁ ଅତଣୟ ସଂଶୟକୁ କର ଦୁର ହେ । ୧୨ । ଏ ବଚନ ଚରତ ରଚିତ ସୁମଧୁର ଶ୍ରୁତି ବଦନରେ ପାନ କର ବୁଧଜନର ହେ । ୧୩ । ଧନେ କଇଲାସେ ବସି ଏକାନ୍ତେ ଗଉରୀ । ପଶା ରଙ୍ଗେ ରସିବାକୁ ସ୍ୱସଙ୍ଗେ ବରୁର ଯେ । ୧୪ । ଏକ କନ୍ୟା ଏ ଅଦ୍ଭୁତ ମନୁ ଜାତ ହେଉ । ସୁଷମରେ ସମରେ ତ୍ରିଲୋକରେ ନ ଥାଉ

---

୯ । ଡ, ର, ଲ ବର୍ଣ୍ଣଯୁକ୍ତ ହୋଇ ବ୍ୟାକରଣର ନିୟମାନୁସାରେ ବିଜ୍ଞ-ଲୋକମାନଙ୍କ ଆନନ୍ଦ ସକାଶେ ଏ ଗୀତ ରଚନା କରେ । ସୁଚିତ୍ତ—ବିଜ୍ଞଲୋକ, ଉତ୍ତମ ମନ ।

୧୦ । ଜଡ଼ଜନ—ମୂର୍ଖଲୋକଙ୍କୁ ବୁଝାଇଲେ, ସେ ଭାବ ବୁଝିପାରି ଖୁସି ହେବ; ଖଳ—ଦୁଷ୍ଟ, ଖର—ଗଧ, ଦୁଷ୍ଟଗଧ—ଚୂତ ଅଙ୍କୁର ଗଜା ହୋଇଥିବା ଆମ୍ବଗଛକୁ ଖାଇଦେଇ ତୋଷ ହେଲା ଭଳି ଯାହାର ଗଧଭଳି ବୁଦ୍ଧି ଥିବ, ସେ ମଧ୍ୟ ଭାବରେ ମୁଗ୍ଧ ହେବ ।

୧୧ । ମଧୁମକ୍ଷି—ମହୁମାଛି, ଉଚ୍ଛିଷ୍ଟ—ଅଇଁଠା, ମହୁକୁ ଦେବତା ମଧ୍ୟ ଅମୃତ ଭଳି ପାନ କରନ୍ତି, ସାଧୁଜନେ ଏ ଗୀତର ରସକୁ ସେହିପରି ପାନ କରିବେ ସଂଶୟ—ସନ୍ଦେହ ନାହିଁ ।

୧୨ । ଭଞ୍ଜ କହୁଛନ୍ତି—ଯଦି ବା ଏହି ରଚନାରେ କୌଣସି ପ୍ରକାର ଦୋଷ ରହି ଯାଇଥାଏ—ତେବେ ଏହାର ରସ—ଭାବରେ ସମସ୍ତେ ମୋହିତ ହେବେ ।

୧୩ । ବଚନ—ସୁନ୍ଦର, ଚରିତ—ଜୀବନ କାହାଣୀ, ଏହି ଯେଉଁ ବିଷୟ ନେଇ ରଚନା କରି ଯାଉଛି, ହେ ବୁଧଜନେ—ଜ୍ଞାନୀଲୋକ, ଶ୍ରୁତି—କର୍ଣ୍ଣ, ବଦନ—ମୁଖ, ମୁହଁରେ ଗାଇ କର୍ଣ୍ଣରେ ଶୁଣ ।

୧୪ । ଧନେ କୈଳାସ ପର୍ବତରେ ଗୌରୀ—ପାର୍ବତୀ, ଏକାନ୍ତେ—ନିରୋଳାରେ, ପଶାରଙ୍ଗ—ପଶା ଖେଳିବା ପାଇଁ, ସ୍ୱସଙ୍ଗେ—ନିଜ ସାଥିରେ । ଧନେ କୈଳାସରେ ପାର୍ବତୀ ଏକାକୀ ବସି ନିଜ ସଙ୍ଗେ ଜଣେ ପଶା ଖେଳିବାକୁ ଇଚ୍ଛା କଲେ ।

ଯେ । ୧୫ । ଯେ ଜଗତଜନନୀ ସେ କଲା ମନୋରଥ । ଜାତ ଦିବ୍ୟସୁନ୍ଦରୀ କାହିଁକି ହେବ ବ୍ୟର୍ଥ ଯେ । ୧୬ । ଆଉ କି ପ୍ରଶଂସିବା ଉମାରୁ ଜନ୍ମ ଯାଇ । ଶାମୁକୁଁ ମୁକୁତା ଜାତ ହୋଇଲା ପ୍ରକାର ଯେ । ୧୭ । ବାଞ୍ଛାରୁ ଉତ୍ପତ୍ତି ବାଞ୍ଛାବତୀ ନାମ ଦେଇ । ଖେଳେ ଚଳାଇଲେ ମତ୍ତ ଦୁହେଁ ବସି ତହିଁ ଯେ । ୧୮ । ଏ ସମୟେ ଶୁଭିଲା ଡମ୍ବରୁ ଘୋର ନାଦ । ପାର୍ବତୀ ମନରେ ଜାତ ଏମନ୍ତ ବିଷାଦ ଯେ । ୧୯ । ହରନେତ୍ର ଗତ ଯେବେ ହେବ ଏ ଶୋଭାଙ୍ଗୀ । ଯିବ ସିନା ମୋହର ସୁଭାଗୀପଣ ଭାଙ୍ଗି ଯେ । ୨୦ । ବିଷବୃକ୍ଷ ସ୍ଥାପି ନାଶ କରିବାର ଦୋଷ । ଏ ସଂସାର ଅମ୍ଭ ଖେଳଘରର ସଦୃଶ ଯେ । ୨୧ । କଷ୍ଟକାଳ ଅଗମ୍ୟ ଅରଣ୍ୟେ ଏହି ଥାଉ । ଜନ୍ମାନ୍ତେ ପୁରୁଷ ସଙ୍ଗ-ବିଳାସକୁ ପାଉ ଯେ । ୨୨ । ବଣଦେବୀ ଜଣକୁ ଏକାନ୍ତ ଅଜ୍ଞା

---

୧୫ । ତେଣୁ ମନ ମଧ୍ୟରୁ ଗୋଟିଏ କନ୍ୟା ଜାତ କଲେ, ଭାବିଲେ ଏ କନ୍ୟା ସଙ୍ଗେ ସୁଷମେ (ସୁନ୍ଦର ପଣରେ) ସମାନ ହେବାକୁ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳରେ କେହି ନ ଥିବେ ।

୧୬ । ଯେଉଁ ଦୁର୍ଗା ଜଗତ୍ମାତ, ସେ ଯେତେବେଳେ ଏ କଥା ମନରେ ଚିନ୍ତା କଲେ, ସେତେବେଳେ ଏକ ଦିବ୍ୟସୁନ୍ଦରୀ କନ୍ୟା ଜାତ ହେଲା ।

୧୭ । ଯେଉଁ କନ୍ୟା ଉମା କି ଦୁର୍ଗାଙ୍କଠାରୁ ଜନ୍ମ ହୋଇଛି ଯେପରି ଶାମୁକାରୁ ମୁକ୍ତା ଜାତ ହୋଇ ଜ୍ୟୋତି ଦିଏ ଏ କନ୍ୟା ସେହିପରି ଶୋଭା ହେଲା ।

୧୮ । ବାଞ୍ଛା ( ମନର କଳ୍ପନା )ରୁ ଜନ୍ମ ହେତୁ ତାର ନାମ ବାଞ୍ଛାବତୀ ଦେଲେ । ଦୁହେଁଯାକ ଖେଳ ବସିଲେ ।

୧୯ । ଏହି ସମୟରେ ଶିବଙ୍କର ଡମ୍ବରୁ ନାଦ ଯେ ଶୁଣିବାରୁ ପାର୍ବତୀଙ୍କ ମନରେ ଏହିପରି ବିଷାଦ (ଦୁଃଖ) ଜାତ ହେଲା ।

୨୦ । ଯେବେ ହରନେତ୍ର—ଶିବଙ୍କ ଦୃଷ୍ଟି ଏ ଶୋଭାଙ୍ଗୀ—ସୁନ୍ଦରୀ ଉପରେ ପଡ଼ିବ, ତେବେ ମୁଁ ଯେ ସୁଭାଗୀ—ଆଦର ଭୋଗ କରୁଛି, ତାହା ଭାଙ୍ଗିଯିବ ।

୨୧ । ବିଷବୃକ୍ଷକୁ ରୋପଣ କରି ତାକୁ ନାଶ କରିବା ଦୋଷାବହ ଅଟେ । ଅମ୍ଭର ଏ ଖେଳଘର ସେହିପରି ହେଲା ।

୨୨ । ଏ କନ୍ୟା କଷ୍ଟକାଳ—କଷ୍ଟ ସମୟ ଅଗମ୍ୟ—ଘୋର, ଅରଣ୍ୟ—ବନରେ ଥାଉ, ଆଉ ଜନ୍ମାନ୍ତେ—ଅନ୍ୟ ଜନ୍ମରେ ପୁରୁଷ ସଙ୍ଗ ବିଳାସ କି ସୁଖକୁ ପାଉ ।

ଦେଲେ । ସେ ନେଇ ଘୋର କାନନେ ପୁରେକ ରଚିଲେ ଯେ । ୨୩ । ତହିଁ ରଖି କହିଲେ ଲଙ୍ଘିବୁ ଯେବେ ଦ୍ୱାର । କିଛିକାଳ ପ୍ରାଣେ ହତ ହୋଇବ ତୋହର ଯେ । ୨୪ । ଯେବଣି ପୁରୁଷ କର ଗ୍ରହଣି କରିବ । ଅନ ତନୁ ପ୍ରାପତିରେ ସେ ପତି ହୋଇବ ଯେ । ୨୫ । ଏତେ କହି ସେ ଦେବୀ ହୋଇଲା ତିରୋହିତ । ଗହନରେ ବାଞ୍ଛାବତୀ ଦିବ୍ୟପୁରେ ସ୍ଥିତ ଯେ । ୨୬ । ଏମନ୍ତରେ ଗଲା ତହିଁ କେତେ ସମ୍ୱତ୍ସର । ପ୍ରଭାକର ନାମେ ଏକ କ୍ଷତ୍ରିୟ କୁମର ଯେ । ୨୭ । ତପ ତା ଅବ୍ୟଥନାୟୀ ଦିବ୍ୟନାରୀ ଶ୍ରଦ୍ଧେ । ପଞ୍ଚାଗ୍ନି ସ୍ଥାପନ କରେ ଉପରତୁ ମଧ୍ୟେ ଯେ । ୨୮ । ପ୍ରାବୃଟକାଳରେ ଗୃହୋଦରକୁ ନ ଯାଇ । ଝଞ୍ଜାବାତ ଜଳାଘାତ କରକା ସହଇ ଯେ । ୨୯ । ଶୀତେ ଜଳଶାୟୀ ଭୂମିଶଯ୍ୟା ବସ୍ତ୍ରହୀନ । ମୃତ୍ତିକାଶଙ୍କର ପୂଜା କରେ ପ୍ରତିଦିନ ଯେ । ୩୦ । ସେ ସୁକୃତରାଶି ଅସି ଠୁଳ ହୋଇ ତାର ।

---

୨୩ । ଜଣେ ବଣଦେବୀକୁ ଏହିପରି ଆଜ୍ଞା ଦେଲେ ଯେ ସେ ଯାଇ ଘୋର ଭୟଙ୍କର—ଅରଣ୍ୟ ମଧ୍ୟରେ ଗୋଟିଏ ପୁର ନିର୍ମାଣ କଲେ ।

୨୪ । ସେହି ପୁରରେ ସେ କନ୍ୟାକୁ ରଖି କହିଲେ ଯେବେ ଏ ଦ୍ୱାରକୁ ଲଙ୍ଘିବୁ—ତେବେ କିଛି କାଳ ପାଇଁ ତୁ ହତ ହେବୁ ।

୨୫ । ଯେଉଁ ପୁରୁଷର କର ତୋ ଦେହରେ ଲାଗିବ ସେ ପୁରୁଷ ଅନ୍ୟ ତନୁ—ଦେହ ଧରି ତୋତେ ଭୋଗ କରିବ ।

୨୬ । ଏହି କଥା କହି ସେ ବନଦେବୀ ତିରୋହିତ-ଅନ୍ତର୍ଦ୍ଧାନ ହୋଇଗଲେ । ସେହି ଗହନ ବନରେ ବାଞ୍ଛାବତୀ ରହିଲା ।

୨୭ । ଏହିପରି ଭାବରେ କେତେ ସମ୍ୱତ୍ସର-ବର୍ଷ କଟି ଗଲା ପରେ ପ୍ରଭାକର ନାମକ ଜଣେ କ୍ଷତ୍ରୀୟ ପୁତ୍ର ସେଠାରେ ଉପସ୍ଥିତ-ପହଞ୍ଚିଲେ ।

୨୮ । ଦିବ୍ୟନାରୀ—ସୁନ୍ଦରୀ ସ୍ତ୍ରୀ ପାଇବାକୁ ସେ ପଞ୍ଚାଗ୍ନି ସ୍ଥାପି ସବୁ ଋତୁରେ ତପସ୍ୟା କରୁଥାଏ ।

୨୯ । ପ୍ରଭାକର ପ୍ରାବୃଟ ବା ବର୍ଷା ସମୟରେ ଗୃହୋଦର ବା ଘର ଭିତରକୁ ନ ଯାଇ, ଝଞ୍ଜାବାତ ବା ତୋଫାନ, କରକା ବା କୁଅ ପଥର ଜଳଘାତର ପାଣିମାଡ଼ ସହୁଥାଏ ।

୩୦ । ଶୀତ କାଳରେ ଜଳଶାୟୀ—ବା ପାଣିରେ ବୁଡ଼ି, ବସ୍ତ୍ର ନ ପାଇ ମାଟିରେ ଶୋଇ କରି ମୃତ୍ତିକା ଶଙ୍କର ବା ମାଟି ତିଆରି ଶିବଙ୍କୁ ପ୍ରତିଦିନ ପୂଜା କରେ ।

କେଦାରେଶ୍ୱର ଦର୍ଶନେ କଲ ବଳାତ୍କାର ଯେ । ୩୧ । ଯାଉଁ ଯାଉଁ ସେ ଅଗମ୍ୟ ଅରଣ୍ୟେ ମିଳଇ । ରତ୍ନମୟପୁର ଗୃହିଁ ଚିତ୍ତରେ ଭାଳଇ ସେ । ୩୨ । କିନ୍ନରୀ କିନ୍ନର ବା କାହାର ଏଥି ସ୍ଥିତି । ଦେଖିବା ବିଚାରୁଁ ଦେଖେ ପ୍ରାଙ୍ଗଣେ ଯୁବତୀ ସେ । ୩୩ । ଚନ୍ଦ୍ରକୁ ନିନ୍ଦା କରୁଛି ମୁଖହାସ କାନ୍ତି । ସାରଙ୍ଗକୁ ନିନ୍ଦୁଛି ନୟନ ଭ୍ରୂପନ୍ତି ଯେ । ୩୪ । ନାସା ଓଷ୍ଠ ମଧ୍ୟ ନିନ୍ଦେ ତରୁଣ ହରିକି । ଅପବାଦ ଅପସରି ଲକ୍ଷ୍ୟ ସେ ନାୟିକି ଯେ । ୩୫ । ଅମରସମ୍ପତ୍ତି ଲଭି ବିଲୋକନ ମାତ୍ରେ । ନାରୀରୂପ ପିତୁଳା ଲେଖନ ହେଲା ନେତ୍ରେ ତା । ୩୬ । ସେ ପ୍ରେମମଞ୍ଜରୀ ଶୋଭା ପଞ୍ଜରୀ ହୋଇଲା । ପୁଂସ ନେତ୍ରେ ଖଞ୍ଜରୀଟ ତହିଁରେ ବନ୍ଧିଲା ଯେ । ୩୭ । ରାମଶବ୍ଦ ବହୁ ବଚନରେ କଲା ଜପ । ରମା ବିପରୀତ ସେହିକାଳେ ଦିଏ କୋପ ଯେ । ୩୮ । ଶରୀର

---

୩୧ । ତାର ସୁକୃତ ରାଶି-ପୁଣ୍ୟ ସମୂହ, ଦୂତ-ଏକତ୍ର ହୋଇ କେଦାରେଶ୍ୱର ମହାଦେବଙ୍କ ଦର୍ଶନ କରିବାକୁ ବଳାତ୍କାର—ମନ ଉତ୍କଣ୍ଠିତ ହେଲା ।

୩୨ । ବାଟରେ ଯାଉଁ ଯାଉଁ ସେ ଅଗମ୍ୟ ଓ ଘୋର ଅରଣ୍ୟରେ ମିଳି—ରତ୍ନମୟ ପୁରକୁ ଦେଖି ମନରେ ଚିନ୍ତାକଲା ।

୩୩ । କିନ୍ନର କି କିନ୍ନରୀ, ଏଠାରେ କିଏ ଅଛି ଦେଖିବା ଭାବି ଦେଖିଲା ଯେ ପ୍ରାଙ୍ଗଣରେ-ଅଗଣାରେ ଗୋଟିଏ ସୁନ୍ଦରୀ ସ୍ତ୍ରୀ ।

୩୪ । ସେ ସ୍ତ୍ରୀ ଲୋକର କାନ୍ତି କି ରୂପ ଓ ମୁଖର ହାସ ଚନ୍ଦ୍ରଠାରୁ ବଳି, ସାରଙ୍ଗ ଯେ ଖଞ୍ଜନ ପକ୍ଷୀ ତାକୁ ବଳି ନେତ୍ର ଆଖି ଓ ଧନୁପରି ଭ୍ରୂଲତା ଶୋଭା ପାଉଛି ।

୩୫ । ନାକ ଏ ମଧ୍ୟ ତରୁଣ ହରିକି-ଯୁବା ଶୁଆ ଥଣ୍ଟ ପରି ଓ ଓଷ୍ଠ ବାଳ ସୂର୍ଯ୍ୟ ପରି ଶୋଭାପାଉଛି । ଏ ନାରୀଠାରୁ ସମସ୍ତ ଅପବାଦ କି ଦୁର୍ଗୁଣ ଯାଇ ସବୁ ସୁଗୁଣ ଯାକ ଜଣା ଯାଉଛି ।—

୩୬ । ଅମର ସମ୍ପତ୍ତି କି ସ୍ୱର୍ଗ ସମ୍ପତ୍ତି ଲଭିକଲା, ବିଲୋକନ କି ଦେଖିବା ମାତ୍ରେ ସେହି ସ୍ତ୍ରୀରୂପ ତାର ଚକ୍ଷୁରେ ସବୁବେଳେ ନାଚିଲା ।

୩୭ । ସେ ପ୍ରେମ ମଞ୍ଜରୀ—ପ୍ରେମର କଳିକା ସ୍ତ୍ରୀ ଶୋଭା ପିଞ୍ଜରାପରି ହୋଇଛି । ପୁରୁଷର ନେତ୍ର ଖଞ୍ଜରୀଟ କି ଖଞ୍ଜନପକ୍ଷୀ ପରି ହୋଇ ସେ ପିଞ୍ଜରାରେ ବନ୍ଧ ହେଲା ।

୩୮ । ପୁରୁଷ ରାମଶବ୍ଦ ଅର୍ଥାତ୍ ରାମା ଶବ୍ଦକୁ ବାରମ୍ବାର ଜପକଲା, ରମାର ବିପରୀତ ମାର କି କନ୍ଦର୍ପ ସେ ସମୟରେ ପୁରୁଷକୁ ଅସ୍ଥିର କଲା ।

ମଧ୍ୟଲୋପକୁ ଶରୀର ମଧ୍ୟକୁ । ଯୋଗୀ ପ୍ରାୟବଲ ବିଗ୍ରହଣ ତା ବଧକୁ
ଯେ ।୩୯। ତାକୁ ସ୍ତୁତି କଲା ତୋ ନାରୀରେ ଇଚ୍ଛା ମୋର । ଭାବି କି ହେଉଛ
ପର ଏ ଅନ ପ୍ରକାର ଯେ । ୪୦ । ଜାଣ ନାହିଁ ଅବଧାନ ବିଧାନମାନଙ୍କୁ ।
କହନ୍ତି ବିଧୁ ଚନ୍ଦ୍ରମା ବିଷ୍ଣୁ କର୍ପୂରକୁ ଯେ । ୪୧ । ଏ କାଳରେ ପୁଂସଠାରେ
ରାମା ଦୃଷ୍ଟିପାତ । ଜନ୍ମଅନ୍ଧ ନୟନକୁ ଲଭିଲେ ଯେମନ୍ତ ଯେ । ୪୨ । ମନ-
ମଥମଥନେ ଥରିଲା ହେଲା ଜାନୁ । କଦମ୍ବକୋରକ ଶୋଭା ଲୁଟି କଲା
ତନୁ ଯେ । ୪୩ । ନେତ୍ର ବଡ଼ଶୀରେ ସେ ଧଡ଼ସି ଅନୁରାଗେ । ପୁରୁଷ
ମନ ମୀନକୁ ଧରି ନେଲା ବେଗେ ଯେ । ୪୪ । ସେକାଳେ ସୁବେଣୀମଣି
ଧୀବର ହୋଇଲା । ଉରଜ କୁବେଣୀ ସଙ୍କଟରେ ପକାଇଲା ଯେ । ୪୫ ।
ସେ ସମୟେ ପୁରୁଷ କହିଲା ଯୋଡ଼କର । ହେ ରସଜ୍ଞଦୟା ସୁହୃଦୟା

---

୩୯ । ଶରୀର ଜ୍ଞାନ ମଧ୍ୟ ଲୋପ ହେଲା, ଶର ( ପଞ୍ଚଶର ) ସେ ପୁରୁଷର ଶରୀରକୁ ବିଦ୍ଧ କରିବାରୁ ପୁରୁଷ ମଲା ପରି ହେଲା ।

୪୦ । ପୁରୁଷ ତାକୁ ସେ ସ୍ତ୍ରୀକି ସ୍ତୁତିକରି କହିଲା ତୋତେ ନାରୀ କି ସ୍ତ୍ରୀ କରିବା ମୋର ଇଚ୍ଛା, ତୁମ୍ଭେ ମନରେ ଭାବି ହେଉଛ କି ମୁଁ ପର ବୋଲି ।

୪୧ । ହେ ନାଗରୀ ! ତୁମ୍ଭେ କ'ଣ ଅବଧାନ କି ନିୟମମାନ ଜାଣ ନାହିଁ ! ଯାହା କି ଚନ୍ଦ୍ରଠାରୁ ଉଜ୍ଜ୍ୱଳ, କର୍ପୂରଠାରୁ ସୁଗନ୍ଧ ଓ ବିଷ୍ଣୁଠାରୁ ଗମ୍ଭୀର ସେହି ତୁମ୍ଭେ—

୪୨ । ଏହି ସମୟରେ ରାମା ଯେ ସ୍ତ୍ରୀ ସେ ପୁରୁଷ ଠାରେ ଦୃଷ୍ଟିପାତ କଲା । ଜନ୍ମରୁ ଯେ ଅନ୍ଧ ସେ ଚକ୍ଷୁ ପାଇଲେ ଯେପରି ଆନନ୍ଦ ହୁଏ, ଏ ସ୍ତ୍ରୀ ସେହିପରି ଆନନ୍ଦିତ ହେଲା ।

୪୩ । ମନମଥ କି କନ୍ଦର୍ପ ଦ୍ୱାରା ଦହି ହୋଇ ଜାନୁ କି ଜଙ୍ଘ ଥରିବାକୁ ଲାଗିଲା । କଦମ୍ବ କୋରକ-କଦମ୍ବ କଢ଼ି ପରି ଲୋମ ସବୁ ଟାଙ୍କୁରି ଉଠିଲା ।

୪୪ । ନେତ୍ର କି ଚକ୍ଷୁର ବଡ଼ସୀ କି ବନସୀରେ ଧଡ଼ସୀ କି ଶୀଘ୍ର ତାର ଅନୁରାଗ କି ସ୍ନେହ ବଢ଼ିଲା । ପୁରୁଷର ମନ ଯେ ମୀନ ତାକୁ ଧରିନେଲା—ଓଟାର ଆଣିଲା ।

୪୫ । ସେ ବେଳଟରେ ସୁବେଣୀ ମଣି ଯେ ଉତ୍ତମ ସ୍ତ୍ରୀ ଧୀବର କି କେଉଟ ହୋଇ ତାର ଉରଜ କି କୁଚ ରୂପକ କୁବେଣୀ କି ଝାଟଲାଇରେ ପୁରୁଷର ମନକୁ ପକାଇଲା ।

ଦୟା କର ହେ ।୪୬। ତପତତପନୀୟାଙ୍ଗୀ ତପଫଳ ମୋର । ଦରହସିତେ ଈପ୍ସିତେ
ସଫଳ କରି କର ଯେ ।୪୭। ଅତିଦୀନ କ୍ଷୀଣ ହୀନ ମୁଁ ମଦନ ଶରେ ।
ରକ୍ଷା କର ରକ୍ଷା କର କୁଟିଳାକ୍ଷୀ ବାରେ ଯେ ।୪୮। ଏ ବଚନେ ସୀତ୍କାର
କଣ୍ଠାକ୍ଷେ ଅଣିଲା । ରସିକା ଭଜିଲା ଭାବ ରସିକ ଜାଣିଲା ଯେ ।୪୯। ଏକେ
ତ ଏକାନ୍ତ ଯୁବକ ତରୁଣ ତରୁଣୀ । ଭେଟ ଯାହା ଲୋଡ଼ୁ ଥାଇ
ଫୁଲଧନୁପାଣି ଯେ । ୫୦ । ପଞ୍ଚବିଶିଖକୁ କେତେ ଲକ୍ଷ୍ୟ ଅବା କଲା । ଭଲ
ଲକ୍ଷ୍ୟ ନାଗର ନାଗରୀ ହୃଦେ ହେଲା ଯେ । ୫୧ । ପୁରୁଷ ନିକଟ ଲଭିବାକୁ
କୃଶକଟୀ । ଭାବବତୀ ମନେ କରି ଅଇଲା ପାଖେଟି ଯେ । ୫୨ । ଯୁବା ଦେହ
ଧରି ଏ ଉତ୍ସବୁଁ ବଡ଼ କରି । ଉତ୍ସବ ଭୋଗ କାହିଁରୁ କେ କହୁ ଶଗୁରି ଯେ ॥
ଦଇବେ ଦେହଳୀ ବଳି କିଙ୍କିଣୀଶୋଭିତା । ଆଳିଙ୍ଗନ କଲା ପୁଂସ

---

୪୬ । ସେ ସମୟରେ ପୁରୁଷ କର କୁ ହାତ ଯୋଡ଼ି କହିଲା ହେ ରସହୃଦୟା କି ରସବତୀ ଉତ୍ତମ ମନରେ ମୋତେ ଦୟାକର । ମୋ ସଙ୍ଗେ ବିହାରକର ।

୪୭ । ହେ ତପତ କି ଗରମ ତପନୀୟ କି ସ୍ୱର୍ଣ୍ଣ—ଅଙ୍ଗୀ କି ଦେହୀ—ହେ ତତଲା ସୁନା ରଙ୍ଗ ପରି ଉଜ୍ଜ୍ୱଳ ଦେହୀ ମୋର ତପ ଫଳ ହେତୁ ତୋ ସଙ୍ଗେ ଭେଟ ହେଲା । ଈଷତ୍ ହାସ ପ୍ରକାଶ କରି ମୋର ମନ କାମନା ପୂର୍ଣ୍ଣ କର ।

୪୮ । ମୁଁ ଅତି ହୀନ ହୋଇଛି । ମଦନଶରେ କି କାମଶରରେ ହେ କୁଟିଳାକ୍ଷୀ—ବଙ୍କ ନେତ୍ରୀ ମୋର ଆଶା ପୂରଣ କାରିଣୀ ମୋତେ ରକ୍ଷାକର—

୪୯ । ଏ ବଚନେ କି କଥାରେ ରସିକା ସେ ସ୍ତ୍ରୀ କଣ୍ଠାକ୍ଷେ—ନେତ୍ର ଛଟାରେ ସ୍ୱୀକାର କି ରାଜି ବୋଲି ରସିକ ପୁରୁଷ ଜାଣିଲା ।

୫୦ । ଏକେତ-କି ନିରୋଳା ଏଠାରେ କେହି ନଥିବା, ପୁଣି ତରୁଣୀ ତରୁଣୀ କି ଯୁବା ଯୁବତୀ ମେଳ ହେବାରୁ ଯାହା ଫୁଲଧନୁ ଲୋଡ଼ୁ ଥାଏ 'ତାହା

୫୧ । ପଞ୍ଚବିଶିଖ କାମଶରକୁ ସେହି ନାଗର ନାଗରୀଙ୍କ ହୃଦୟକୁ ଲକ୍ଷ୍ୟ କରି ଛାଡ଼ିଲା ।

୫୨ । ପୁରୁଷ କମେ ନିକଟ କି ପାଖ ହୁଅନ୍ତେ କୃଶକଟି କି ସରୁଅଣ୍ଟୀ ଭାବବତୀ କି ରସରେ ବଶ ହୋଇ ପାଖେଟି ଅସିଲା ।

୫୩ । ଯୁବା ଦେହ ଧରି—ଏ ଉତ୍ସବ କି ଆମୋଦରୁ ଅଧିକ ବଡ଼ କିଏ ଅଛି ଭାବି କହିଲ ?

ବୋଇଣ ଲୋଭିତା ଯେ । ୫୪ । ଚୁମ୍ବିବାବେଳକୁ ମୁଖରାଜୀବ ତାହାର । ଜୀବହୀନ ହୋଇ ତା ରହିଲା କଳେବର ଯେ ।୫୫। ଗ୍ରହି ତରୁଣ ଅରୁଣ-ଓଷ୍ଠୀର ଏ ଗୂଢ । ବଦନପବନ କେତେ ଦତ୍ତ କଲା ଶ୍ରୁତି ଯେ । ୫୬ । ଲୋଚନ ଜଳରେ ଅଗ ଧୋଇ ଦେଲା ମୁଖ । ବୋଇଲା ମୁଁ ନ ମର ଦେଖିଲି ଏତେ ଦୁଃଖ ଯେ ।୫୭। ଏ ସମୟେ ଶୁଭିଲା ଅମ୍ବରୁ ଏହି ବାଣୀ। ଗଙ୍ଗାସାଗର ସଙ୍ଗମେ ବାସ ପୁଂସମଣି ଯେ ।୫୮। ଏ ବଲ୍ଲଭୀକି ଲଭିବୁ ନୃପସୁତ ହୋଇ । ଅନଳରେ ନ ଦହି ସେଠାରେ ଯାଅ ଥୋଇ ହେ ।୫୯। ଏ ବଚନେ ସନ୍ତାପକୁ କରୁ ଶାନ୍ତ କଲା । ବଙ୍ଗଦେଶେ ଯାଇ ଗଙ୍ଗା-ସାଗରେ ବାସିଲା ଯେ ।୬୦। କର୍ଣ୍ଣାଟ ଦେଶରେ କାଞ୍ଚି ନାମେ ନଗ୍ର ସାର ।

---

୫୪ । ଦଇବେ କି ଦୈବ ଯୋଗକୁ ଡେହଲୀ କି ଦ୍ୱାରମୁହଁକୁ ବଳ'କି ଟପି ଯାଇ ନିବଳୀ ଶୋଭନୀକି ପେଟରେ ତନୋଟି ଗାର ଥିବା ହେତୁ ସୁନ୍ଦରୀ ଲୋଭ କର ପୁରୁଷକୁ ଆସି ଆଲିଙ୍ଗନ କଲା ।

୫୫ । ପୁରୁଷ ଚୁମ୍ବିବା ବେଳକୁ ମୁଖ ରାଜୀବ କି ପଦ୍ମ ପରି ମୁଖରେ ସେ ସ୍ତ୍ରୀ ଜୀବହୀନ କି ପ୍ରାଣ ହୀନ ହୋଇ ତା'ର କଳେବର କି ଦେହ ରହିଗଲା ।

୫୬ । ସେହି ଯୁବା ଅରୁଣ ଓଷ୍ଠୀ କି ବାଳ ସୂର୍ଯ୍ୟ ଓଷ୍ଠୀରଏ ଗୂଢ କି ଏ ଭାବ ଦେଖି ବଦନ ପବନ କି ମୁହଁରେ ଫୁଙ୍କିବା ପବନ ସେ ସ୍ତ୍ରୀର ଶ୍ରୁତି କି କାନକୁ ଫୁଙ୍କିଲା ।

୫୭ । ଲୋଚନ ଜଳରେ କି ଲୁହରେ ମୁଖକୁ ଧୋଇଦେଇ କହିଲା—ମୁଁ ଏପର ଏ ଦୁଃଖ ଯାହା ଦେଖିଲି ।

୫୮ । ଏହି ସମୟରେ ଅମ୍ବରୁ କି ଆକାଶରୁ ଏହି ବାଣୀ କି ଏହିପର କଥା ଶୁଣା ଗଲା ହେ ପୁରୁଷମଣି କି ପୁରୁଷ ଶ୍ରେଷ୍ଠ ! ତୁମ୍ଭେ ଗଙ୍ଗା ସାଗର ସଙ୍ଗମରେ ବାସ କରଅ ।

୫୯ । ତୁମ୍ଭେ ନୃପସୁତ କି ରଜାର ପୁଅ ହୋଇ ଏ ବଲ୍ଲଭୀ କି ଏ ସ୍ତ୍ରୀକି ଲଭ କରିବ । ଏହି ସ୍ତ୍ରୀର ଶବକୁ ଅନଳ କି ନିଆଁରେ ନ ଦହି କି ନ ପୋଡ଼ି ସେହିଠାରେ ରଖିଥାଅ ।

୬୦ । ଯୁବା ଏ କଥା ଶୁଣି ନିଜର ସନ୍ତାପ କି ଦୁଃଖ ବଢ଼ିବା କମିଗଲା । ସେଠାରୁ ବଙ୍ଗଦେଶକୁ ଯାଇ ଗଙ୍ଗା ସାଗରରେ ବାସ ଦେଲା ।

ଶଶିଶେଖର ନାମରେ ତହିଁ ନରେଶ୍ବର ଯେ ।୭୧। ଶଶିରେଖା ନାମେ ତାର
ଯେ ପଟ୍ଟମହିଷୀ । ପୁତ୍ରାର୍ଥେ ଅନେକ ବ୍ରତେ ତୋଷି କାଶୀବାସୀ ଯେ ॥
ତା ଉଦର ଆକାଶରେ ପ୍ରକାଶ ହୋଇଲା । ଅକଳଙ୍କ କଳାନିଧି ପରାୟେ
ଶୋହିଲା ଯେ । ୭୩ । ଅହାଲଦେ ଚନ୍ଦ୍ରଭାନୁ ତେଜ ଭାବକର । ଚନ୍ଦ୍ରଭାନୁ
ନାମ ଦେଲେ ବାତୁର ବାତୁର ଯେ । ୭୪ । ବେଦ ବେଦାନ୍ତେ ବିଧାତା
ବ୍ୟାକରଣେ ହର । ସଙ୍ଗୀତରେ ନାରଦ ଶୃଙ୍ଗାରଶାସ୍ତ୍ରେ ମାର ଯେ ।୭୫।
କବିପଣେ ଗଣେଶ ଜ୍ୟୋତିଷେ ବୃହସ୍ପତି । ଅଶ୍ବାରୋହେ ମିହିର ଭୈରବ
ପରି ଗତି ଯେ ।୭୬। ଧନୁର୍ଦ୍ଧରେ ଅର୍ଜ୍ଜୁନ ଗଦାରେ ବୃକୋଦର । ଦାନରେ
କର୍ଣ୍ଣ ମାନରେ କୁରୁ ଦଣ୍ଡଧର ଯେ । ୭୭ । ବଳିଷ୍ଠରେ ବାଳୀ ଧାର୍ମିକରେ
ଯୁଧିଷ୍ଠିର । ସୁନ୍ଦର ପଣରେ ତାକୁ ସେହି ପଞ୍ଚାନ୍ତର ଯେ । ୭୮ । ମନ୍ତ୍ରୀ
ଜ୍ୟୋତିଷ ସାଧୁତ ପୁରୋଧାକୁମର । ନାମ ଗୁଣନିଧି ବସନ୍ତକ
ପୁରନ୍ଦର ଯେ ।୭୯। ରତ୍ନଧ୍ବଜ ସହିତେ ଏ ଗୃହମିତ୍ର ହୋତ । ନିଶି ଦିନ

---

୭୧, ୭୨ । କର୍ଣ୍ଣାଟ ଦେଶରେ ସାର କି ପ୍ରଧାନ କାଞ୍ଚି ନଗର ନରେଶ୍ବର ଯେ ରାଜା ଶଶିଶେଖର ତାଙ୍କର ପାଟରାଣୀ ଶଶିରେଖା ପୁଅ ପାଇଁ କାଶୀବାସୀ କି ମହାଦେବଙ୍କ ସେବା କରୁଥିଲେ ।

୭୩ । ସେହି ଶଶିରେଖା ଉଦରେ କି ଗର୍ଭରେ ଅକଳଙ୍କ କି କଳଙ୍କହୀନ କଳାନିଧି କି ଚନ୍ଦ୍ର ପରାୟେ ଏ ପୁତ୍ର ଶୋଭା ପାଇଲା ।

୭୪ । ଚନ୍ଦ୍ର ଓ ଭାନୁ ଯେ ସୂର୍ଯ୍ୟ ଏ ଦୁହିଁଙ୍କର ତେଜ ଦେଖିକରି ଚନ୍ଦ୍ରଭାନୁ ନାମ ଅହାଲଦେ କି ସ୍ନେହରେ ଦେଲେ ।

୭୫ । ବେଦ ବେଦାନ୍ତରେ ପ୍ରବୀଣ ବିଧାତା ଯେ ବ୍ରହ୍ମା; ବ୍ୟାକରଣ ଶାସ୍ତ୍ରରେ ହର କି ଶିବ, ସଙ୍ଗୀତଶାସ୍ତ୍ରରେ ନାରଦ ଓ କାମ ଶାସ୍ତ୍ରରେ ମାର ଯେ କନ୍ଦର୍ପ ।

୭୬ । କବି ପଣରେ ଗଣେଶ, ଜ୍ୟୋତିଷ ଶାସ୍ତ୍ରରେ ବୃହସ୍ପତି, ଘୋଡ଼ା ଚଢ଼ିବାରେ ମିହିର କି ସୂର୍ଯ୍ୟ, ଗମନରେ ଭୈରବ ।

୭୭ । ଧନୁର୍ଦ୍ଧର ପଣରେ ଅର୍ଜ୍ଜୁନ, ଗଦା ଯୁଦ୍ଧରେ ବୃକୋଦର କି ଭୀମ, ଦାନୀ ପଣରେ କର୍ଣ୍ଣ, ମାନ ପଣରେ ଦୁର୍ଯ୍ୟୋଧନ ।

୭୮ । ବଳିଷ୍ଠ ପଣରେ ବାଳି, ଧାର୍ମିକ ପଣରେ ଯୁଧିଷ୍ଠିର, ସୁନ୍ଦର ପଣରେ ତାକୁ ସେହି ପଞ୍ଚାନ୍ତର କି ତୁଳନା ଅଛି ।

୭୯ । ମନ୍ତ୍ରୀ, ପୁରୋଧା କି ପୁରୋହିତ, ଜ୍ୟୋତିଷ, ସାଧୁତ କି ଧନୀ ଏମାନଙ୍କର କୁମର ଯେ ପୁଅଙ୍କ ନାମ ଗୁଣନିଧି, ବସନ୍ତକ, ପୁରନ୍ଦର ।

ଭିନ୍ନ ନୋହେ ଏହାଙ୍କ ସଙ୍ଗତ ଯେ ।୭୦। ହେ ରାମକୃଷ୍ଣ ସୁନ୍ଦରକଳାପ ମଦନ । ରାଧାପତି ରତିହାସ ଅଘବିନାଶନ ଯେ । ୭୧ । ଉପଇନ୍ଦ୍ର ଭଞ୍ଜ ବୀରବର ମନୋରଥ । ଏ ଗୀତ ପୂର୍ଣ୍ଣ ହେବାରେ କର ଏହା ସାର୍ଥ ଯେ । ୭୨ ।

---

# ଦ୍ୱିତୀୟ ଛାନ୍ଦ

( ଲାବଣ୍ୟବତୀର ଜନ୍ମ ବୃତ୍ତାନ୍ତ )

ରାଗ—ପଞ୍ଚମମଞ୍ଜରୀ

ଶୁଣ ହେ ସୁଜନେ ରସ କର୍ଣ୍ଣେ ମନ ଲେଖି । ରତ୍ନାକର ମଧ୍ୟରେ ସିଂହଳଦ୍ୱୀପ ଶୋଭି ଯେ । ୧ । କହିବାର ନୋହେ ସେ କଟକ ଛଟକୁ । ରତନ ଝଟକ ହସେ ଆନ କଟକକୁ ଯେ । ୨ । ଅଛନ୍ତି ଧନଦ ସମ ଧନବନ୍ତ ମାନ । କର୍ଣ୍ଣେ ଶୁଣାଅଛୁ ସେମାନଙ୍କୁ ଏକା ଦୀନ ଯେ ।୩। ଯେତେ କୋଟି ସୁବର୍ଣ୍ଣ ଯାହାକୁ ମିଳେ ତହିଁ । ତେତେ ଗୋଟି କଳଶ ସେ ମନ୍ଦରେ

---

୭୦ । ରତ୍ନଧ୍ୱଜ ସହିତେ ଏ ଦୁଇଜଣ ମିତ୍ର—କି ରାତି କି ଦିନ ଏହାଙ୍କ କି ଏକତ୍ର ଭିନ୍ନ ହୁଏ ନାହିଁ ।

୭୧ । ହେ ରାମ କୃଷ୍ଣ ସୁନ୍ଦର କଳାପ କି ମୟୂର ପୁଚ୍ଛ ଚୂଳ ଶୋଭିତ ରାଧାର ପତି ଏ ଦାସର ଅଘ କି ପାପ ବିନାଶ କର ।

୭୨ । ଉପଇନ୍ଦ୍ର ଭଞ୍ଜ ବୀରବରର ମନୋରଥ କି ମନକାମନା ଏ ଗୀତ ପୂର୍ଣ୍ଣ କରିବାରେ ସହାୟ ହୁଅ ।

---

## ଦ୍ୱିତୀୟ ଛାନ୍ଦ

୧ । ରତ୍ନାକର କି ସମୁଦ୍ର । ସିଂହଳଦ୍ୱୀପ—ଲଙ୍କା ବା ରାବଣ ପୁର । ସମୁଦ୍ର ମଧ୍ୟରେ ଲଙ୍କା ଦ୍ୱୀପ ଶୋଭମାନ ।

୨ । ସେହି ଲଙ୍କା କଟକର ଝଟକ କି ସୌନ୍ଦର୍ଯ୍ୟକୁ କହିବାର ନୁହେ—କାରଣ, କଟକ ଯେ କଙ୍କଣ ସେ ଯେପରି ଅଷ୍ଟରତ୍ନରେ ହୋଇଥାଏ ଏ ଲଙ୍କା ଅଷ୍ଟରତନରେ ହୋଇ ଥିବାରୁ ତାଠାରୁ ବଳି ସୁନ୍ଦର ଦେଖାଯାଏ ।

୩ । ଧନଦ ଯେ କୁବେର ପରି ଧନୀକ କି ଧନବାନ ସେଠାରେ ଅଛନ୍ତି—ଦୀନ କି ଦୁଃଖୀ ଏ କଥା ଶୁଣାଯାଏ ମାତ୍ର ସେଠାରେ ନାହିଁ ।

ବସାଇ ଯେ । ୪ । ଗୋରୋଚନା ପ୍ରକାରେ ଯହିଁରେ ମୃଗମଦ । ନାତ ଜୀର୍ଣ୍ଣ-
ବସନକୁ ବକନ୍ତି ପୁଳନ୍ଦ ଯେ । ୫ । କୁଙ୍କୁମ ଉକୁଣ୍ଠାଇ ହୁଅନ୍ତି ନାରୀ ଯହିଁ ।
ହରଦ୍ରାରେ ଆଦର କରିବେ କାହିଁପାଇଁ ଯେ । ୬ । ମାର୍ଗ ମାର୍ଗଣେ ରଜ
ନାକର ଅଣିଯାଇ । ରଜନୀକର ଅଣନ୍ତି ଶକଟରେ ବହି ଯେ । ୭ । ହରିତକୀ
ପାଇଁ ତଅରଲେ ବୈଦ୍ୟକୁଳ । ଭାରବାହେ ଭାବରେ ଅଣନ୍ତି ଜାତି-
ଫଳ ଯେ । ୮ । ଶବରୀ ଶର୍ବରୀ ଶେଷୁଁ ଅରଣ୍ୟକୁ ଯାଇ । ହରି-ବିଦାରିତ
ଭଦ୍ର-ମୋତି ପଡ଼ିଥାଇ ଯେ ।୯। ବଦରୀ ଅଦର ନେଇ ସବେବରେ ଧୋଇ ।
ବିକା ତା ନ ଯିବ ବୋଲି ଅସନ୍ତି ପକାଇ ଯେ ।୧୦। ଖଣ୍ଡପରଶୁ-ଧାରଣ-
ପୁର ପରିଷ୍କାରେ । ନ ଦହନ୍ତି ଶାମୁକା ମୁକୁତା ବହ୍ନିନରେ ଯେ । ୧୧ ।
ଯେଉଁ ହେମ କମନୀୟ କମ କରେ ହୋଇ । ଯେ ଗୃହଣୁ ବାରବାନେ

---

୪ । ସେଠାରେ ଯେଉଁ ଲୋକକୁ ଯେତେ କୋଟି ସୁବର୍ଣ୍ଣ ମିଳେ, ସେ ଘରେ ସେତେ ଗୋଟି କଳଶ ବସାଇଥାଏ ।

୫ । ମୃଗମଦ କି କସ୍ତୁରୀ ଯେଉଁ ଠାରେ ଗୋରୋଚନା ଭଳି, ନାତ ପୁଳନ୍ଦ ଯେ କୋଳ ସେ ଜୀର୍ଣ୍ଣ ବସ୍ତ୍ର କି ପୁରୁଣା ଲୁଗାକୁ ଫୋପାଡ଼ି ଦଅନ୍ତି ବା ବିକନ୍ତି ।

୬ । ସେ ସ୍ଥାନର ସ୍ତ୍ରୀ ଲୋକମାନେ ପ୍ରତିଦିନ କୁଙ୍କୁମ କି ଯାଫ୍ରାନ କେଶର ଲଗାନ୍ତି ଓ କୁଙ୍କୁମ—ସୁବାସିତ ହଳଦୀ ଆଦର କରନ୍ତି ନାହିଁ । ଉକୁଣ୍ଠାନ୍ତି—ଲଗାନ୍ତି ।

୭ । ମାର୍ଗ କି ପଥକୁ ମାର୍ଗଣ କି ଓଳାଇ, ରଜ କି କର୍ପୂର ଧୂଳି ବାଛନ୍ତି । କର୍ପୂରକୁ ଶକଟ କି ଶଗଡ଼ରେ ବୋହିଅଣି ପକାନ୍ତି ।

୮ । ସେଠାର ବୈଦ୍ୟମାନେ ହରିତକୀ କି ହରଡ଼ା ପାଇଁ କହିଲେ ଭାର-ବାହେ କି ଗଉଡ଼ମାନେ ଜାତିଫଳ କି ଜାଇଫଳ ଅଣି ଦଅନ୍ତି ।

୯ । ସେଠାର ଶବରୀମାନେ ଶର୍ବରୀ କି ରାତି ଶେଷରେ ଅରଣ୍ୟ କି ବନକୁ ଯାଇଁ ହରି କି ସିଂହ ବିଦାରଣ କରିଥିବା କରୀ କି ହାତୀଠାରୁ ମୋତି ଗୋଟାଇ ଅଣନ୍ତି—

୧୦ । ବଦରୀ କି ବରକୋଳି ଅଦର ନେଇ କି ଗୋଟାଇ ନେଇ ତାକୁ ମୋତି ସଙ୍ଗେ ଧୋଇ ସେଠାରେ ବିକି ହେବ ନାହିଁ ବୋଲି ମୋତି କି ବି ଫୋପାଡ଼ି ଦଅନ୍ତି ।

୧୧ । ଖଣ୍ଡପରଶୁ ଯେ ମହାଦେବଙ୍କ ପୁର ଯେ ମନ୍ଦିର ପରିଷ୍କାର କରିବାକୁ ଶାମୁକା ନ ପୋଡ଼ି ମୋତିକୁ ପୋଡ଼ି ସେଥିରେ ଧଉଳାନ୍ତି ।

ଦୂଷପାତ ନାହିଁ ଯେ । ୧୨ । ଶିଶୁକାଳୁ ମେଧାବନ୍ତୀ ମଦନ ଶଲାକା ।
ଭକ୍ଷନ୍ତି ଲବଙ୍ଗ ନାଗବଲ୍ଲୀ ଦଳ ଏକା ଯେ ॥ ଏଣୁ କଣ୍ଠରୋଧ ବାନଧାସ୍ମି
ଦବ୍ୟତାନ । ଶିଖି ବଷ୍ଣୁ ଚରିତ କରନ୍ତି ଭୂମି ଗାନ ଯେ । ୧୪ । ଗଜ
ହୟ ଉପଜୀବୀ ଭ୍ରମନ୍ତି କେଦାରେ । ମାରିଗ କେଥ୍ୟାତଙ୍କ କର ଦବସ
ମନରେ ଯେ ।୧୫। ବାସକରେ ଗ୍ରହଣ କରନ୍ତି ଯହିଁ ମଚ୍ଛ । ଭାବନ୍ତି ଏହି
ପଥରେ ପଥରେକ ସ୍ୱଚ୍ଛ ଯେ । ୧୬ । ବଜ୍ର ଜାତ ବିନା ଗଜ ନ ଅଣନ୍ତି
ବନ୍ଧୁ । ଅଶ୍ୱଶାଳେ ବନ୍ଧା ନୋହେ ସିନ୍ଧୁ ଜାତ ବିନୁ ଯେ । ୧୭ । ମୂଷିକରେ
ନେପାଳୀ ପାଳନା ସୁଆଦରେ । ଗନ୍ଧମାର୍ଜ୍ଜାର ପୋଷିତ ବିଡ଼ାଳ ପଦରେ

---

୧୨ । ସେଠାରେ ଯେଉଁ ହେମ କ ସୁନା ଦମ କ ଗହଣା ହେବାରୁ
କମନୀୟ କ ସୁନ୍ଦର ଦେଖାଯାଏ ତା ଛଡ଼ା ବାରବାନ—ଯେ ଶିଳ୍ପି
ସୁନାକୁ ଦୂଷ୍ୟାତ—ଅନ୍ୟାନ୍ତ ନାହିଁ ।

୧୩ । ଶିଶୁକାଳରୁ କ ପିଲାସମୟରୁ ମେଧାବୀ, ଯେ ବୁଦ୍ଧିମାନ ଶୁଆ ମଦନ
ଶଲାକ—ସାରି ବା ସ୍ତ୍ରୀ ସେମାନେ ଲବଙ୍ଗ ଓ ନାଗବଲ୍ଲୀ ଯେ ପାନ
ପତ୍ର ଭକ୍ଷଣ କରନ୍ତି ।

୧୪ । ଏହି ହେତୁରୁ ସେମାନଙ୍କ କଣ୍ଠ ବାଧାହୀନ କ ପରିଷ୍କାର ହେତୁ
ଦବ୍ୟତାନ—ସୁନ୍ଦର ସ୍ୱର ହୁଏ । ବୁଲିକରି ବିଷ୍ଣୁଙ୍କ ଚରିତ ଶିଖି
ଗାନ କରନ୍ତି ।

୧୫ । ଗଜ କ ହାତୀ, ହୟ ଯେ ଘୋଡ଼ା ଉପଜୀବୀ—ଖାଇବା ସକାଶ
କେଦାର ଯେ କଅଁରେ ବୁଲନ୍ତି । ମାରିଗ ମର୍କତମଣି କେଥ୍ୟାତ
ଘାସରେ ପଡ଼ି ଥିବାରୁ ଘାସପର ଜବସ—ଘାସ ଜଣାଯାଏ । ଅର୍ଥାତ୍
ସେଠାରେ ମାରିଗ ସବୁ ଘାସରେ ପଡ଼ିଥାଏ ।

୧୬ । ବାସକରେ—ବାସନାରେ ଯେଉଁଠାରେ ମଚ୍ଛ ଯେ ମାଛ ପୂର୍ଣ୍ଣ
ହୋଇଥାଏ, ତାକୁ ଦେଖି ମନେ କରାଯାଏ ଏଠାରେ ସ୍ୱଚ୍ଛ କ
ଉଜ୍ଜ୍ୱଳ ପଥର ଅଛି କ ।

୧୭ । ସେଠାରେ ଯେତେ ଗଜ ଅଛନ୍ତି ସମସ୍ତେ ବଜ୍ରଜାତ କ ସୁଲକ୍ଷଣ
ବନ୍ତ । ଘୋଡ଼ାମାନେ ଯେଉଁମାନେ ସିନ୍ଧୁଜାତ କ ଅତଦ୍ରୁତଗାମୀ
ସେମାନେ ଥାନ୍ତି—ତାଙ୍କ ଛଡ଼ା ଅନ୍ୟ ଗଜ ବା ଅଶ୍ୱକୁ ପରୁରନ୍ତି
ନାହିଁ ।

ଯେ । ୧୮ । ମାଳଅଳ ଦକ୍ଷିଣାବର୍ତ୍ତିକ ବିନା କମ୍ବୁ । ନ ଘେନନ୍ତି ଦେବାକୁ ହର ଚରଣେ ଅମ୍ବୁ ଯେ । ୧୯ । ଏକମୁଖୀ ରୁଦ୍ରାକ୍ଷ ଗ୍ରହଣ ଯୋଗୀ କରେ । ବାଳକେ କଣନ୍ତି ଦ୍ରାକ୍ଷା କେବଳ କୋଳରେ ଯେ । ୨୦ । ଖଡ଼ଗ ଚର୍ମ ଅଢ଼େଣୀ ଧାରଣ ନ ପାଇ । ଖଡ଼ଗ ଚର୍ମରୁ ଅନ ଚର୍ମ ନ ଯୋଗାଇ ଯେ । ୨୧ । ଯହିଁ ବ୍ରହ୍ମଜାତ ବଜ୍ର କବଚ ମିଳଇ । ବଜ୍ର-କବଚରେ ଅନୁରାଗ ଥିବ କାହିଁ ଯେ । ୨୨ । ପଦ୍ମିନୀ ଜନମସ୍ଥାନ ପଦ୍ମାକର ପ୍ରିୟା । ଅନଜାତ ନାରୀଏ ଯହିଁରେ ପରଗୃହୀ ଯେ । ୨୩ । କଳପ୍ରି ଗୀତ ଶ୍ରବଣ ଯହିଁ ନିତ ନିତ । ମହୀ ମଧ୍ୟେ ସ୍ୱର୍ଗ ଯେ ହୋଇଛି

---

୧୮ । ସେଠାରେ ମୂଷାମାନଙ୍କ ମଧ୍ୟରେ ନେପାଳି ମୂଷାକୁ ଆଦର ସହ ପାଳନ୍ତି । ବିଡ଼ାଳ ଯେ ବିରାଢ଼ି ବଦଳରେ ଗନ୍ଧମାର୍ଜାର ଯେ ଖାଲିଆପତନୀ କି ରଖନ୍ତି ।

୧୯ । ମାଳଅଳ—ମାଳଘର ସ୍ତ୍ରୀ ମାନେ ଦକ୍ଷିଣାବର୍ତ୍ତି କମ୍ବୁ କି ଶଙ୍ଖ ବ୍ୟତୀତ ହରଚରଣେ କି ମହାଦେବଙ୍କ ପାଦରେ ଅମ୍ବୁ ଯେ ପାଣି ଦଅନ୍ତି, ଅନ୍ୟ ଶଙ୍ଖରେ ଦଅନ୍ତି ନାହିଁ ।

୨୦ । ସେଠାରେ ଯୋଗୀମାନେ କି ସନ୍ନ୍ୟାସୀମାନେ ଏକମୁଖୀ ରୁଦ୍ରାକ୍ଷ କି ଗୋଟିଏ ମୁହଁ ଥିବା ରୁଦ୍ରାକ୍ଷ ଘେନନ୍ତି । ପିଲାମାନେ କୋଳ ପର ଦ୍ରାକ୍ଷା କି ଅଙ୍ଗୁର କଣନ୍ତି ।

୨୧ । ସେଠାରେ ଖଡ଼ଗ କି ଖଣ୍ଡାର ଚର୍ମଅଢ଼େଣୀ—କି ଚମଡ଼ାରେ ଢାଲ ବ୍ୟବହାର ହୁଏ ନାହିଁ—ଖଡ଼ଗ ଯେ ଖଣ୍ଡା, ଗଣ୍ଡା ଚମର ଅଢ଼େଣୀ କି ଢାଲ ଖଡ଼ଗ—ଖଣ୍ଡା ବ୍ୟବହାର ହୁଏ ।

୨୨ । ଯେଉଁଠାରେ ବ୍ରହ୍ମଜାତ କି ଅତ୍ୟନ୍ତ ଶ୍ରେଷ୍ଠ ବଜ୍ର କି ହୀରାର ତିଆରି କବଚ କି ସାଞ୍ଜୁ ବ୍ୟବହାର ହୁଏ—ସେଠାରେ ଅନ୍ୟ ସାଞ୍ଜୁକୁ ଆଦର କରନ୍ତି ନାହିଁ—ଅଭେଦ୍ୟ ସାଞ୍ଜୁ ବ୍ୟବହାର କରନ୍ତି ।

୨୩ । ପଦ୍ମାକର—ଯେ ସମୁଦ୍ର ସେ ପଦ୍ମିନୀ—କି ପଦ୍ମିନୀ ଜାତୀୟା ସ୍ତ୍ରୀ ଲକ୍ଷ୍ମୀଙ୍କର ଜନ୍ମସ୍ଥାନ—ଲଙ୍କାରେ ଯେତେ ସ୍ତ୍ରୀ ସମସ୍ତେ ଲକ୍ଷ୍ମୀପରି ସୁନ୍ଦରୀ—ଅନ କି ଅନ୍ୟ ସ୍ତ୍ରୀ ସେଠାରେ ପରଗୃହୀ କି ଗୃହିଣୀ ଛନ୍ତି ।

ଉତପତ୍ତି ଯେ ।୨୪। ସେ ନଗର ନରବର ନାମ ରତ୍ନେଶ୍ୱର ।
ବିଦ୍ୟୁଲ୍ଲତା ନାମେ ପଟ୍ଟମହିଷୀ ତାହାର ଯେ ।୨୫। ପଞ୍ଚଶରସମେ
ପଞ୍ଚସୁତ କଲେ ଜାତ । ଦିବ୍ୟକୁମାରୀ ପ୍ରାପତେ କରେ ନାନା ବ୍ରତ
ଯେ ।୨୬। ଚୈତ୍ର ମଙ୍ଗଳବାରରେ ଆରମ୍ଭି ପୂଜାକୁ । ପଞ୍ଚମ ପାଳିରେ
ତୋଷ କଲେ ଗିରିଜାଙ୍କୁ ସେ ।୨୭। ବାଞ୍ଛାବତୀ ପିଣ୍ଡ ଥିଲା ଅଗମ୍ୟ
କାନନ । ଆପଣେ ଅମ୍ବିକା ଯାଇ କଲେ ସଜୀବନ ଯେ ।୨୮।
ବୋଇଲେ ସୁନ୍ଦରୀ, ହୁଅ ତୁ ରସାଳ ଫଳ । ଅଙ୍ଗ ଅବଧାରିଲା ସେ ସମା
ଗତକାଳ ଯେ ।୨୯। କରେ ଦେଇ ସ୍ୱପ୍ନାଦେଶେ ମହାଦେବୀ କରେ ।
ଦେଇଗଲେ ସେ ଆମ୍ବକୁ ପାର୍ବତୀ ସତ୍ୱରେ ଯେ ।୩୦। ଚେତ ଯୁବତୀ
ଦେଖିଲା ହସ୍ତେ ଅଛି ଚୂତ । ଭକ୍ଷି ମୃଗାକ୍ଷୀ ନାୟକ ସଙ୍ଗେ ହେଲା ରତ ଯେ ।୩୧।
ଶୁଭବେଳେ ଗର୍ଭ ଦର୍ଭହାସୀ ଶୁଭ୍ରକେଶୀ । କେତେ ଦିନେ ଶୋଭି ତାର

---

୨୪। ଯେଉଁଠାରେ କଳସ୍ୱୀ—ଉତ୍ତମ ଗାୟିକା ମଧୁର ସ୍ୱର ଯୁକ୍ତ ସ୍ତ୍ରୀର ଗୀତ ଶୁଣନ୍ତି ମହୀ କି ପୃଥିବୀ ମଧ୍ୟରେ ସେ ଲଙ୍କା ସ୍ୱର୍ଗପରି—

୨୫। ସେ ନଗରର ନରବର ଯେ ରାଜା ତାଙ୍କ ନାମ ରତ୍ନେଶ୍ୱର, ତାହାଙ୍କର ପଟ୍ଟମହିଷୀ କି ପାଟରାଣୀଙ୍କ ନାମ ବିଦ୍ୟୁଲ୍ଲତା ଅଟେ ।

୨୬। ସେ ରାଜ ଦମ୍ପତି ପଞ୍ଚଶର କି କନ୍ଦର୍ପ ସମାନ ପାଞ୍ଚପୁଅ ଜନ୍ମ କଲେ ମାତ୍ର ଦିବ୍ୟ କୁମାରୀ—ସୁନ୍ଦରୀ ଝିଅ ସକାଶେ କାମନା କି ବ୍ରତ କଲେ ।

୨୭। ଚୈତ୍ରମାସ ମଙ୍ଗଳ ବାରରେ ଗିରିଜା ଯେ ମଙ୍ଗଳାଙ୍କୁ ପୂଜାକରି ୫ମ ପାଳିରେ ତାଙ୍କୁ ଭୋଗ ଦେଇ ତୋଷ କଲେ ।

୨୮। ରାଜାରାଣୀ ପୂଜାରେ ଅମ୍ବିକା ତୋଷ ହୋଇ ନିବିଡ଼ ବନରେ ବାଞ୍ଛାବତୀର ପିଣ୍ଡ ଥିଲା ତାକୁ ଜୀବଦାନ ଦେଲେ ।

୨୯। ବାଞ୍ଛାବତୀକୁ ଜୀବଦାନ ଦେଇ କହିଲେ ତୁ ଗୋଟିଏ ରସାଳଫଳ ହୋଇଯାଅ ସେ ଅଙ୍ଗ ଅବଧାରି କି ଅଙ୍ଗ ମାନି ରସାଳ ଯେ ଅମ୍ବ ଫଳ ହେଲା ।

୩୦। ଏଣେ ଦୁର୍ଗା ସେ ଅମ୍ବଫଳଟି ରାଣୀ ହାତରେ ସ୍ୱପ୍ନାବସ୍ଥାରେ ଦେଇଗଲେ ।

୩୧। ସ୍ୱପ୍ନଭଙ୍ଗନ୍ତେ ରାଣୀ ତାହା ଖାଇ ସ୍ୱାମୀ ସଙ୍ଗରେ ରତି ରସରେ ମାତିଲେ ।

ଆନ ଆନ ଦିଶି ଯେ । ୩୨ । କାନ୍ତି ସୁବର୍ଣ୍ଣେ ଦୋହଦ ପାରଦ ମିଶିଲା । ରଜତପିତୁଳା ତୁଳା ଅବଳା ଦିଶିଲ ଯେ । ୩୩ । କ୍ଷୀଣ ଯାଇଁ ପୀନ ହେଲ ବେଳକଂଖ୍ୟା କଟୀ । ଖସି ନିତମ୍ବବିମ୍ବକୁ ଅଶେ କଲ ଶାଟୀ ଯେ । ୩୪ । ବେଶରେ ଅବେଶ ହେବା କ୍ରମଶେ ତୁଟିଲ । ଅହାରେ ବିମନା ହୋଇ ଗମନେ ଫୁଟିଲ ଯେ । ୩୫ । ବାହାର ହୋଇଲ ପତି-ବିହାରରୁ ମତି । ମହିଳା ମହୀଶୟନେ ବଳାଇଲ ପ୍ରୀତି ଯେ । ୩୬ । ଦ୍ରବ୍ୟରୁଚକ ରୁଚିଲ ମୃତ୍ତିକା ଭକ୍ଷଣ । ଚଞ୍ଚଳ ଚଳନମାନ ଛାଡ଼ିଲ ଈକ୍ଷଣ ଯେ । ୩୭ । ପୃଥୁରୋମାନୟନୀ ଉଦର ପୃଥୁତର । ଅତି ଶୋଭା ନାଭି ଲେଉଟିଲ ପରକାର ଯେ । ୩୮ । କର୍ପୂର ଦିଶିଲ ଓଷ୍ଠ ତୁଟି ଯାଇ ରଙ୍ଗ । ଘନଘନ ଜୃମ୍ଭା ପୁନଃପୁନ ମୋଡ଼େ ଅଙ୍ଗ ଯେ । ୩୯ । ଶ୍ୟାମଳ କୋମଳ ଅଙ୍ଗୀ ସ୍ତନଅଗ୍ର ବହି । ହରଧର ଶୃଙ୍ଗେ ଜଳଧର ପରି ଶୋହି

---

୩୨ । ଶୁଭ୍ର ବେଳେ କି ଶୁଭସମୟରେ, ଗର୍ଭ ଦର୍ଭ ହାସୀ—କାଶ ହାସୀ ଯେ ଶୁଭ୍ର କେଶୀ—ଉତ୍ତମ ବାଳଥିବା ସ୍ତ୍ରୀ ରାଣୀଙ୍କ ଗର୍ଭ ହେବାରୁ ଦିନକୁ ଦିନ ସେ ଭିନ୍ନ ଭିନ୍ନ ପ୍ରକାର ଦେଖା ଗଲେ ।

୩୩ । ରାଣୀଙ୍କର କାନ୍ତି କି ବର୍ଣ୍ଣ ସୁନାରେ ଦୋହଦ ଯେ ପାରା ମିଶିଲେ ଯେପରି ପାଉଁଶିଆ ଦେଖାଯାଏ ସେହିପରି ସ୍ୱର୍ଣ୍ଣବର୍ଣ୍ଣା—ରଜତ ପିତୁଳା—ରୂପା କଣ୍ଢେଇ ପରି ଜଣାଗଲେ ।

୩୪ । ପୀନ—ମୋଟା । ବେଳକଂଖ୍ୟା—ବେକାଏ, ନିତମ୍ବବିମ୍ବ—ପିଚ୍ଛ, କଟି—ଅଣ୍ଟା, ଶାଟି—ଶାଢ଼ୀ, ସରୁ କଟି ମୋଟା ହେବାରୁ ଲୁଗା ଖସିଅସି ପିଚ୍ଛରେ ପଡ଼ିଲ ।

୩୫ । ଅବେଶ ହେବା—ବେଶ ହେବାକୁ ମନ କଲ ନାହିଁ, ଅହାର ବି ଭଲ ରୁଚିଲ ନାହିଁ । ଯିବା ଅସିବାକୁ କଷ୍ଟ ବୋଧକଲ ।

୩୬ । ସ୍ୱାମୀସଙ୍ଗ କରିବାକୁ ମନ ହେଲ ନାହିଁ, ମହିଳା କି ସ୍ତ୍ରୀ (ରାଣୀ) ମହୀ ଶୟନେ—ମାଟିରେ ଶୋଇବାକୁ, ପ୍ରୀତି—ସ୍ନେହକଲ ।

୩୭ । ଯେ ଭଲଖାଏ ସେ ମୃତ୍ତିକା—ମାଟି ଖାଇବାକୁ ଭଲପାଇଲ ଚଞ୍ଚଳ-ଶୀଘ୍ର ଅନାଇବା, ଇକ୍ଷଣ-ଦୃଷ୍ଟି ।

୩୮ । ପୃଥୁରୋମା-ମାଛ ନୟନୀ-ମୀନ ନେତ୍ରୀ, ଉଦର-ପେଟ ପୃଥୁତର କ୍ରମେ ବଡ଼ ହେଲ ।

୩୯ । କର୍ପୂର—ଧବଳବର୍ଣ୍ଣ, ଜୃମ୍ଭା-ହାଇ, ଦେହ ମୋଡ଼ି ଭଡ଼ ହେଲ, ବେଳକୁ ବେଳ ହାଇ ଉଠିଲ ଓ ବିବର୍ଣ୍ଣ ଶରୀର ହେଲ ।

ଯେ । ୪୦ । ଦଶମାସ ଶେଷ ରସବତୀ ଅଶକତ । ଉତ୍ତମ ଲଗ୍ନ ମଗ୍ନରେ ସୁତା ପ୍ରସବିତ ଯେ । ୪୧ । ଭବ ବିଗୁରି କି ଗୁରମୁଖ ସଙ୍ଗେ ବାଦ । ଅଟରି ମଦନମହୀପତି ବହି ମଦ ଯେ । ୪୨ । ଉଦରଶୋଭା ଉଦଧି ମନ୍ଥିଲା ଉଦ୍‌ବେଗେ । ଉରଜ ମନ୍ଦରୁ ବଳି-ସର୍ପରଜ୍ଜୁ ଯୋଗେ ଯେ । ୪୩ । ତହିଁରୁ ଜାତ ଜଗତ-ମୋହିନୀ ସ୍ୱଭାବେ । ଅବଶ୍ୟ ହୋଇବେ ହର ତପୋଭଙ୍ଗ ଏବେ ଯେ । ୪୪ । ଧାତ୍ରୀ ଧରଣୀ ଭୂଷାକୁ ନାଭିଚ୍ଛେଦ କରି । ଗଣକଗଣେ ବର୍ଷିଣ ଜାତକ ବିଗୁରି ଯେ । ୪୫ । ସୂତିକାଗୃହରେ ଯେତେ ବିଧି ଶେଷ କଲେ । ଏକବିଂଶ ଦିନେ ଦୋଳାଶୟନ ବିହିଲେ ଯେ । ୪୬ । ଅସିଥିଲେ ବ୍ରହ୍ମଋଷି ଶୋଭାରାଶି ଗୃହିଁ । ବିଗୁରିଲେ କେତେକାଳ ଶ୍ରମ

---

୪୦ । ସ୍ତନଅଗ୍ର—କୁଚଅଗ, ପରିଧର ଶୃଙ୍ଗ—ହିମାଳୟ ଶୃଙ୍ଗ, ଜଳଧର—ମେଘ, ହିମାଳୟ । ଧଳା—ତା ଉପରେ ମେଘ ପ୍ରାୟ ସ୍ତନ ଅଗ କଳା ଦେଖାଗଲା ।

୪୧ । ରସବତୀ—ରାଣୀ, ପ୍ରସବିତ— ଜନ୍ମ କରିବା, ସୁତା—ଝିଅ ।

୪୨, ୪୩, ୪୪ । ଗୁରମୁଖ-–ବ୍ରହ୍ମା, ବାଦ—କଳହ, ମଦନ—କନ୍ଦର୍ପ, ମହୀପତି—ରାଜା, ମଦ—ଗର୍ବ, ଉଦର—ପେଟ, ଉଦଧି—ସମୁଦ୍ର, ଉରଜ ମନ୍ଦରୁ—କୁଚ ପର୍ବତରୁ, ବଳି—ପେଟରେ ଥିବା ଶିରା, ସର୍ପ—ସାପ, ରଜ୍ଜୁ—ଦଉଡ଼ି, ଜଗତ ମୋହିନୀ—ସଂସାର ମୋହ କାରଣୀ (ଲକ୍ଷ୍ମୀ), ତପୋଭଙ୍ଗ—ତପସ୍ୟା ନାଶ ।

କବି ମନରେ ଭାବୁଛନ୍ତି ବ୍ରହ୍ମାସଙ୍ଗେ ମଦନ ବାଦକରି ବ୍ରହ୍ମାଦି ଦେବତା ମାନେ ବାସୁକିକୁ ଦଉଡ଼ି କରି ମନ୍ଦରକୁ ଦଣ୍ଡକରି ଗୁଡ଼ାଇ ସମୁଦ୍ର ମନ୍ଥନ କରିବାରୁ ଲକ୍ଷ୍ମୀ ଜାତ ହେଲେ । ସେହିପରି ମଦନ ବ୍ରହ୍ମା ସଙ୍ଗେ ବାଦ କରି ରାଜାଙ୍କ ସହିତ ରାଣୀ ଉଦର ଯେ ସମୁଦ୍ର, ସ୍ତନ ଯେ ପର୍ବତ, ପେଟର ରୋମ ଯେ ବାସୁକି, ସହିତ ସହବାସ କରିବା ( ମନ୍ଥିବାରୁ ) ଏ ସୁନ୍ଦରୀ କନ୍ୟା ଜାତ ହେଲା ।

୪୫ । ଧାତ୍ରୀ-ଧାଈ, ଧରଣୀ-ପୃଥିବୀ, ଭୂଷା-ଅଳଙ୍କାର, ଧରଣୀ ଭୂଷା-ପୃଥିବୀର ଅଳଙ୍କାର ରୂପା କନ୍ୟା, ନାଭିଚ୍ଛେଦ—ନାହି କାଟିବା

୪୬ । ସୂତିକା ଗୃହ—ଏନୁଡ଼ି ଶାଳ, ବିଧି—ନିୟମ, ଦଶବଂଶ—ତରଙ୍ଗ, ଦୋଳ ଶୟନ—ଝୁଲରେ ଶୋଇବା ।

କଲ୍ପ ବହୁ ଯେ । ୪୭ । ମୁଖ ହେବ ଏମନ୍ତ ବିଗୁର ପଦ୍ମ ବିଧୁ । ହସ୍ତବାଳା ଭର ଅଗୁଁ ଗଢ଼ିଗଲ ସାଧୁ ଯେ । ୪୮ । ତହୁଁ ବାସ ଆହ୍ଲାଦ ଦର୍ପଣରୁ ଝଳ । ଲହରୀରୁ କୁଟିଳ ଅଞ୍ଜନପୁଞ୍ଜ କାଳୀ ଯେ । ୪୯ । କୁରଙ୍ଗରୁ ତରଙ୍ଗ ବିଦ୍ରୁମ ରଙ୍ଗ ହର । ଲବଣୀ ଶିରୀଷରୁ କୋମଳ ବଳେ ତୁଳ ଯେ । ୫୦ । ସୁବର୍ଣ୍ଣର ବର୍ଣ୍ଣ ଗତ ହଂସଠାରୁ ଗତ । ଏରୂପେ ଉପମାବର୍ଗ ଯେତେକ ଅଛନ୍ତି ଯେ । ୫୧ । ବିଧି ସବୁଠାରୁ ସାର ସାର ଭାଗ ଆଣି । ପୁରଟ ପ୍ରତିମା ପର ରଚିଲ ରମଣୀ ଯେ । ୫୨ । କବି ଯେତେ ଥିଲେ ସ୍ୱୀକାର ତା ନ କଲେ । ବିଧାତା ବିଧାନୀ କାହୁଁ ଏ ହେବ ବୋଇଲେ ଯେ । ୫୩ । ଦେଖ ପଦ୍ମ ଲପନଶୋଭାକୁ ପାର ହାର । ଚରଣତଳେ

---

୪୭ । ବ୍ରହ୍ମଋଷି—ନାରଦ, ଶ୍ରମ— ପରିଶ୍ରମ, କଲ୍ପ—୧୬ ଯୁଗ ।

୪୮, ୪୯ । ବିଧୁ—ଚନ୍ଦ୍ର, ସାଧୁ—ବ୍ରହ୍ମା, ବାସ—ସୁବାସ,ବାସନା, ଦର୍ପଣ-ଆରସି, ଲହରୀ—ତେଜ, କୁଟିଳ—କୁଞ୍ଚକୁଞ୍ଚିଆ, ଅଞ୍ଜନ—କଳା । ବ୍ରହ୍ମା ଏହାର ମୁଖକୁ ଗଢ଼ିଲାବେଳେ ଚନ୍ଦ୍ରରୁ ଉଜ୍ଜ୍ୱଳତା, ପଦ୍ମରୁ ସୁବାସ, ଆରସିରୁ ସ୍ୱଚ୍ଛତା ଆଣି ଲାବଣ୍ୟବତୀ ମୁଖ ଗଢ଼ିଥିଲେ ଏବଂ ମୁଣ୍ଡର ବାଳକୁ ସମୁଦ୍ରରୁ ଢେଉକୁ ଆଣି କୁଞ୍ଚକୁଞ୍ଚିଆ କଲେ, ଅଞ୍ଜନକଳାରୁ ବର୍ଣ୍ଣ ଆଣି ଗାଢ଼ କୃଷ୍ଣବର୍ଣ୍ଣ କଲେ, ଅର୍ଥାତ୍ ଲାବଣ୍ୟବତୀର ମୁଖ ଚନ୍ଦ୍ର ସୁବାସ ଏବଂ ବାଳ ଲହରୀପରି କୁଞ୍ଚିତ, କଜ୍ଜ୍ୱଳ ଭଳି କଳା ଅଟେ ।

୫୦ । କୁରଙ୍ଗ—ହରିଣ,ତରଙ୍ଗେ—ଅନାଇବା ଛଟକ, ବିଦ୍ରୁମ—ପୋହଳା, ରଙ୍ଗ—ବର୍ଣ୍ଣ, ହର—ହରଣ କର, ଲବଣୀ—ଲହୁଣୀ, ଶିରୀଷ-ଫୁଲ ବିଶେଷ, ତୁଳ—ସମାନ କର ।
ଲାବଣ୍ୟବତୀର ଚକ୍ଷୁକୁ ମୃଗ ଚକ୍ଷୁରୁ ଛଟକ, ଓଷ୍ଠର ରଙ୍ଗ ପୋହଳାର ରଙ୍ଗ ଆଣି କଲ, ଶରୀର ଲହୁଣୀ ଓ ଶିରୀଷ ଫୁଲରୁ କୋମଳତା ଆଣି କଲ ।

୫୧ । ଗତ—ଗମନ, ତାର ଦେହର ବର୍ଣ୍ଣ ସୁନାଠାରୁ, ତାହାର ଚାଲିବା ହାତୀ ଓ ହଂସଠାରୁ ଆଣି ଗଢ଼ିଲ; ତେଣୁ ଯେତେ ଉପମା ପୃଥିବୀରେ ଅଛି ସେ ସବୁ ଲାବଣ୍ୟବତୀଠାରେ ପ୍ରଯୁଜ୍ୟ ।

୫୨ । ପୁରଟ—ସୁନା, ପ୍ରତିମା—ରୂପ, ରମଣୀ—ସ୍ତ୍ରୀ, ବିଧାତା ସବୁଠାରୁ ପ୍ରଧାନ ପ୍ରଧାନ ଜିନିଷ ଆଣି ଲାବଣ୍ୟବତୀକି ଗଢ଼ିଥିଲା ।

୫୩ । ବିଧାନୀ—ଈଶ୍ୱର, ଯେତେ କବି ଥିଲେ ଏ ସ୍ତ୍ରୀ ବିଧାତା ଗଢ଼ିଛି ବୋଲି ତ କେହି ସ୍ୱୀକାର କଲେ ନାହିଁ ।

ଶରଣ ପଶିଅଛି ଡରି ଯେ । ୫୪ । ପଦ୍ମଜାତ ସିନା ବିଧି ଗଢ଼ିଥିଲା କେମନ୍ତେ । ଏମନ୍ତ ସମ୍ମତ ହେଲା ସମସ୍ତଙ୍କ ଚିତ୍ତେ ଯେ । ୫୫ । ସର୍ବ ମତେ ସର୍ବ ଶୋଭାସ୍ଥାନ ବୋଲି ବାଳୀ । ଲାବଣ୍ୟବତୀ ନାମକୁ ଦେଲେ ଭାଳି ଭାଳି ଯେ । ୫୬ । ବଳକ୍ଷ ପକ୍ଷର କଳାକର କଳା ପରି । ଦିନୁଦିନୁ ଶୋଭା ବୃଦ୍ଧି ନରେନ୍ଦ୍ରକୁମାରୀ ଯେ । ୫୭ । କେତେଦିନ ଉଭା ଭିତ୍ତି ଧରି ବିମ୍ବାଧରୀ । କରୀଗମନରେ ପୁଣି ମହୀ ଶୋଭାକରି ଯେ । ୫୮ । ରଜନୀକର-ବଦନା ରଜନିକରରେ । କରଇ ଖେଳା ରଚନା ଶିଶୁଙ୍କ ସଙ୍ଗରେ ଯେ । ୫୯ । ରବି ରଥ ରଖେ ବଶ ହୋଇ ତା ସୁଷମେ । ଏଣୁକରି ଦୀର୍ଘଦିନ ଜାଣିଲି ଗ୍ରୀଷମେ ଯେ । ୬୦ । ବିଶ୍ୱସୃଜ ବିଶ୍ୱକର୍ମା ଶିଳ୍ପୀ ହୋଇ ଗୋପେ୍ୟ । ନିର୍ମାଣ ବାରଣଦନ୍ତ ପିତୁଳା ତା ରୂପେ ଯେ । ୬୧ । ଜପି ଲେପି କୁଙ୍କୁମ ଦିଅନ୍ତି ନେଇ କରେ । ହେବ କି ନୋହିବ ସମ ଏମନ୍ତ

---

୫୪ । ଲପନ—ମୁଖ, ପ୍ରକୃତରେ ଦେଖ, ପଦ୍ମ ଲାବଣ୍ୟବତୀର ମୁହଁ ସୌନ୍ଦର୍ଯ୍ୟକୁ ହାରିଯାଇ ତାର ପାଦରେ ଶରଣ ପଶିଛି ।

୫୫ । ପଦ୍ମରୁ ତ ବିଧାତା ଜନ୍ମ, ସେ ବା କେମନ୍ତେ ଗଢ଼ିପାରେ ?

୫୭ । ବଳକ୍ଷ—ଶୁକ୍ଳ, କଳା—ଅଂଶ, ନରେନ୍ଦ୍ର—ରାଜା, ଶୁକ୍ଳପକ୍ଷ ଚନ୍ଦ୍ରମା କଳାପରି ରାଜାଝିଅ ଦିନକୁ ଦିନ ବଢ଼ିଲା ।

୫୮ । ଉଭା—ଠିଆ, ଭିତ୍ତି—କାନ୍ଥ, ମୂଳଦୁଆ, ମହୀ—ପୃଥିବୀ, ବିମ୍ବାଧରୀ (ବିମ୍ବ+ଅଧରୀ) ବିମ୍ବ—କଇଁଚିକାକୁଡ଼ି, ଅଧର—ଓଷ୍ଠ, କେତେଦିନ ପରେ କାନ୍ଥ ଧରି ଠିଆ ହେଉଥିଲା, ତାପରେ ହାତୀପରି ଚାଲିବାରୁ ସୁନ୍ଦର ଦିଶିଲା ।

୫୯ । ରଜନୀକର—ଚନ୍ଦ୍ର, ବଦନ—ମୁଖ, ରଜନୀକର ବଦନା—ଚନ୍ଦ୍ରମୁଖୀ ରଜ—ଧୂଳି, ନିକର—ସମୂହ, ଶିଶୁ—ପିଲା, କେତେଦିନପରେ ଚନ୍ଦ୍ରମୁଖୀ ପିଲାଙ୍କ ସଙ୍ଗରେ ଧୂଳିରେ ଖେଳିଲା ।

୬୦ । ରବି—ସୂର୍ଯ୍ୟ, ସୁଷମେ—ସୌନ୍ଦର୍ଯ୍ୟରେ, ଦୀର୍ଘଦିନ—ବଡ଼ଦିନ, ଗ୍ରୀଷମେ—ଗ୍ରୀଷ୍ମ ଋତୁରେ ଲାବଣ୍ୟବତୀର ଶୋଭା ଦେଖି ସୂର୍ଯ୍ୟ ରଥ ରଖିଲେ, ତେଣୁ ଗ୍ରୀଷ୍ମ ଋତୁରେ ଦିନ ବଡ଼ ହେଲା ।

୬୧ । ବିଶ୍ୱସୃଜ—ବ୍ରହ୍ମା, ବିଶ୍ୱକର୍ମା—ସ୍ୱର୍ଗ କାରିଗର, ବାରଣ ଦନ୍ତ—ହାତୀଦାନ୍ତ, ଶିଳ୍ପୀ—କାରିଗର, ଗୋପ୍ୟ—ଗୋପନରେ, ବ୍ରହ୍ମା ଲୁଚିକରି ବିଶ୍ୱକର୍ମା ପରି କାରିଗର ହୋଇ ଲାବଣ୍ୟବତୀ ସମାନରେ ହାତୀ ଦାନ୍ତରେ ଗୋଟିଏ ପିତୁଳା ଗଢ଼ିଲା ।

ଶଙ୍କାରେ ଯେ । ୬୨ । ମନକୁ ନ ଆସି ଅରବିନ୍ଦ ଚିତ୍ରକର । ହୋଇ
ଚିତ୍ରେ ବିଚିତ୍ର ଲେଖନ୍ତେ ଶୋଭା ତାର ଯେ । ୬୩ । ତଥାପି ସୁଷମା ସମା
ପ୍ରତିମାତ୍ର ନୋହି । ଶୋଭାକୁ ବର୍ଣ୍ଣିନ୍ତି କବି ବୃତ୍ତି କରି ତହିଁ ଯେ । ୬୪ ।
ଏମନ୍ତ ଯଶ ଜେମାର ଜଗତେ ଶୁଭିଲା । ଯୋଗୀଜନମୋହନାସ୍ତ୍ର ମାର
ଭିଆଇଲା ଯେ । ୬୫ । ଏ ଶିଶୁରେ ମହେଶ ପାଷାଣ ହେଲେ କିବା ।
ଯୁବା ହେବାଯାଏ ଅଜ ଶରୀରେ ନ ଥିବା ଯେ । ୬୬ । ପଢ଼ାଶୁକେ ଶିଳା
ଧୂପ କୋକିଳେ ବରଷା । ହୋଇଲା ପାଠପଠନ କାଳମୃଦୁଭାଷା
ଯେ । ୬୭ । ସରସ୍ୱତୀ ଗୋଚରରେ ବାଦ୍ୟ ଥିଲେ ଯେତେ । ଦେଲେ
କହି ସେ ଦ୍ୱନ୍ଦ୍ୱ ତୁ ନ କରିବୁ ମୋତେ ଯେ । ୬୮ । ଲଜ୍ଜାପଛମହୃଷୀଙ୍କ

---

୬୨ । ଶଙ୍କା—ଭୟ, କୁଙ୍କୁମ—ଜାଫ୍ରାନ କେଶର, ଲିପିଲେପି—ବାଟିକରି, କୁଙ୍କୁମକୁ ଲାବଣ୍ୟବତୀ ରଙ୍ଗ ସଙ୍ଗେ ସମାନ ହେବ କି ନାହିଁ ବୋଲି ଭୟରେ ତା ହାତରେ ଦିଅନ୍ତି ।

୬୩ । ମନକୁ ନ ଆସିବାରୁ ଚିତ୍ରକର ତହିଁଅରବିନ୍ଦ ଭଲକରି ଚିତ୍ରବିଚିତ୍ର କରିଲେ ।

୬୪ । ତଥାପି ସୌନ୍ଦର୍ଯ୍ୟ ସମ ନ ହେବାରୁ କବିମାନେ ଲାବଣ୍ୟବତୀ ଶୋଭାକୁ ବୃତ୍ତି ବା ବ୍ୟବସାୟ କଲେ ।

୬୫ । ରାଜଜେମାର ଏପରି ଯଶ ଗୌରବ ଜଗତ କି ସଂସାରେ ଶୁଭିବାରୁ—ମାର ଯେ କନ୍ଦର୍ପ ଯୋଗୀଜନ ମୋହନାସ୍ତ୍ର—ସାଧୁମାନଙ୍କ ମୋହ ହେବା ଅସ୍ତ୍ର ଭିଆଇଲା କି ତିଆରି କଲା, ଅର୍ଥାତ୍ ଯେଡ଼େବଡ଼ ଯୋଗୀ ଦେଖିଲେ ମୋହିତ ହେଲା ।

୬୬ । ପିଲାଦିନୁ ଏପରି ଶୋଭା ଦେଖି ମହାଦେବ ପାଷାଣ ହେଲେ—କାରଣ ସେ ଯୁବତୀ ହେଲେ ଅଜ ଶରୀରରେ ରହି ପାରିବେ ନାହିଁ । ଅର୍ଥାତ୍ ସେ ଯୁବତୀ ହେଲେ ତାକୁ ଦେଖି ମୋ ତପସ୍ୟା ଭଙ୍ଗ ହେବ ।

୬୭ । ବର୍ଷାରେ କୋକିଳ କଣ୍ଠ ପଡ଼ିଯାଏ—ମାତ୍ର ଲାବଣ୍ୟବତୀ ପାଠ ପଢ଼ିବା ସ୍ୱର ଶୁଣି ଶୁକ ଓ କୋଇଲି ଲଜ୍ଜିତ ହେଲେ ।

୬୮ । ଦ୍ୱନ୍ଦ୍ୱ—କଚାଳ, ଅର୍ଥାତ ସରସ୍ୱତୀ ତାଙ୍କର ସମସ୍ତ ପାଠ ତାଙ୍କୁ କହି ଦେଲେ ଓ କହିଲେ ସୁନ୍ଦରୀ ପଣରେ ତୁ ମୋ ସଙ୍ଗେ ବାଦ କରିବୁ ନାହିଁ ।

ଘେନି ଯଉବନ । ରାଜା **ଅସି ଅକର୍ଷିଲା** ଅଙ୍ଗଦେଶମାନ ଯେ । ୬୯ ।
ପାତ୍ର ମନ୍ତ୍ରୀ ନିତମ୍ବ ଜଘନ ଉରୁ ସତ୍ୟ । ଶାଢ଼ୀ ପାଇ ଏମାନେ ହୋଇଲେ
କୃତକୃତ୍ୟ ଯେ । ୭୦ । କୁଚ ଅଙ୍କୁରିବାରେ ବସନ ଉଠି ଦିଶେ ।
ହୃଦୟବେଦୀରେ ଅଭିଷେକ କୁମ୍ଭ କି ସେ ଯେ । ୭୧ । ଏ ସମୟ
ମାହୁନ୍ତ ସୁନ୍ଦରୀ-ମତ୍ତକରୀ । ଅନ୍ତଃପୁର ଟୋପରେ ରହିଲା ବଳେ ଧରି
ଯେ । ୭୨ । ନେତ୍ରାଞ୍ଚଳେ ଚଳ ପରକାଶ ହେଲା ଆସି । ଚତୁରୀ ବଳି
ଚତୁରୀମାନଙ୍କୁ ପ୍ରକାଶି ଯେ । ୭୩ । ଏ ପ୍ରତୀତ ଯୁବାଜିତ-ଇଚ୍ଛା କାରି
ଭୀରୁ । ଶରବନ୍ଧୁ ଶିଖେ କି ସଂସାରଗୁରୁଠାରୁ ଯେ । ୭୪ । ସୁନ୍ଦରୀ
ସଂସାରେ ସେ ହେବାରୁ ଚକ୍ରବର୍ତ୍ତୀ । ଦେଲା କି ପ୍ରତି ଅଙ୍ଗରେ ଭୂପତି
ସମ୍ପତ୍ତି ଯେ । ୭୫ । କୁନ୍ତଳ ଦେଶରେ ଚୂଡ଼ା ଶୋଭା କରାଇଲା ।
ବିଦର୍ଭରେ ହାସକୁ ପ୍ରଭୁତ୍ୱ ପଣ ଦେଲା ଯେ । ୭୬ । ମାଳବରେ କଣ୍ଠକୁ

---

୬୯ । ଲଜ୍ଜା ପଟ୍ଟମହାଦେବୀ, ଲଜ୍ଜାରୂପକ ରାଣୀକି ଘେନି ଯୌବନ ରଜା କି ଯୁବାବସ୍ଥା ରୂପକ ରାଜା, ଅଙ୍ଗ ଦେଶମାନ ଶରୀର ସ୍ଥାନମାନ ଆକର୍ଷିଲା କି ଅଧିକାର କଲା—ଅର୍ଥାତ୍ ସେ ନବଯୌବନରେ ପହଞ୍ଚିଲା ।

୭୦ । ନିତମ୍ବ—ପିଚ୍ଛ, ଜଘନ—ଜଙ୍ଘ ।
ପିଚ୍ଛ ଓ ଜଙ୍ଘ ସ୍ଥୂଳ ହେବାରୁ ଲୁଗାପିନ୍ଧି ଘୋଡ଼ାଇବାରୁ ଏମାନେ ଭଲରେ ରହିଲେ ।

୭୧ । ପାତ୍ର ଯେ ପିଚ୍ଛ, ମନ୍ତ୍ରୀ ଯେ ଜଙ୍ଘ, ପାତ୍ର ମନ୍ତ୍ରୀ ଲୁଗା ପାଇ ଖୁସିହେଲେ

୭୨ । ଏହି ଯୌବନ ସମୟ ମାହୁନ୍ତ ହେଲା, ସୁନ୍ଦରୀ-ମତ୍ତକରୀ-ଏଠାରେ ହାତୀ ହେଲା ଲାବଣ୍ୟବତୀ । ଟୋପ ହେଲା ଅନ୍ତଃପୁର । ଯୌବନ ସମୟ ହେତୁ ସେ ଅନ୍ତଃପୁରରେ ରହିଲା ।

୭୩ । ନେତ୍ରାଞ୍ଚଳେ—ଆଖି କୋଣରେ, ଚଳ—ଚଞ୍ଚଳତା ।
ଯୌବନ ହେତୁ ଆଖି ତାର ଚଞ୍ଚଳ ହେଲା । ତହୁଁ ଚତୁରୀ ସେ ଲାବଣ୍ୟବତୀ ଅନେକ ଚତୁରତା କଥା ପ୍ରକାଶ କଲା ।

୭୪ । ପ୍ରତୀତ—ମନେହେବା, ଯୁବାଜିତ—ଯୁବାପୁରୁଷଙ୍କୁ ଜୟ କରିବା, ଭୀରୁ କି ସ୍ତ୍ରୀ ଅର୍ଥାତ୍ ଲାବଣ୍ୟବତୀ, ଶରବନ୍ଧ—ମାରଶର ବନ୍ଧିବା, ସଂସାର ଗୁରୁ—ଜଗତ୍ ଗୁରୁ । କରୀ—ହାତ, ହାତଶରବନ୍ଧହେତୁ ଯେପରି ପର୍ବତଶିଖରକୁ ଯାଏ, ସଂସାର ଗୁରୁ—ପର୍ବତ ଶିଖ ।

୭୫ । ଚକ୍ରବର୍ତ୍ତୀ—ରାଜାଧିରାଜା, ଭୂପତି—ରାଜା ।

୭୬ । କୁନ୍ତଳ—ବାଳ, ଚୂଡ଼ା—ମୁଣ୍ଡଉପର ଖୋସା, ବିଦର୍ଭ—ଦେଶ ବିଶେଷ

ଭୂଷଣ କଲ ନେଇ । ଶୈଳରେ ଶୋଭିତ କଲ ଉରଜକୁ ଯହିଁ ଯେ । ୭୭ । କାଞ୍ଚୀରେ ରଞ୍ଜନ କଲ ମଧ୍ୟକୁ ନିରତ । କନକକଟକେ କଲ ପାଦକୁ ପୂଜିତ ଯେ । ୭୮ । ମଣି ରମଣୀମଣୀଙ୍କ ଶାଣ ଯଉବନ । ବହୁମୂଲ୍ୟ ପ୍ରଭାକୁ ବଢ଼ାଇ ଦନୁଦନ ଯେ । ୭୯ । ଉପମା ଅଣିବ କାହୁଁ ମହାକବି ହେଲେ । ସୁନ୍ଦରେ ଯାହାର ଅଙ୍ଗେ ସୁନ୍ଦରୀ ହୋଇଲେ ଯେ । ୮୦ । ଜୟ ଜଗନ୍ନାଥ ରାମ ଶ୍ରେୟର ନିଳୟ । ମୁନିଗଣ କାମଦାୟୀ ପଦ୍ମବାସିପ୍ରିୟ ହେ । ୮୧ । ଉପଇନ୍ଦ୍ର ଭଞ୍ଜ ବୀରବରର ଭାବିତ । ନିର୍ଦ୍ଦୋଷରେ ଏହୁ ଗୀତ ହେଉ ସମାପତ ହେ । ୮୨ ।

---

୭୯ । ମଣି ପରି ଯେଉଁ ରମଣୀମଣି ବା ସ୍ତ୍ରୀ ଶ୍ରେଷ୍ଠ, ଶାଣତୁଲ୍ୟ ଯୌବନ କି ଯୁବାବସ୍ଥା; ଅର୍ଥାତ୍ ମଣିକୁ ଶାଣଦେଲେ ଯେପରି ଚକ୍ ଚକ୍ ହୁଏ, ଏ ସ୍ତ୍ରୀ ଯୌବନର ଶାଣରେ ବସିବାରୁ ଅଧିକ ସୁନ୍ଦର ଦେଖାଗଲା ।

୮୦ । କବି କେଉଁଠାରୁ ଆଉ ଉପମା ଆଣିବ, ସୁନ୍ଦର ସବୁ ଲଜ୍ଜା ପାଇ ସୁନ୍ଦରୀ ହୋଇଗଲେ ।

୮୧ । ଶ୍ରେୟ—ଉପଯୁକ୍ତ, ପ୍ରଧାନ, ମଙ୍ଗଳ, ନିଳୟ—ଘର, କାମଦାୟୀ—କାମନା ପୂର୍ଣ୍ଣକାରୀ, ପଦ୍ମବାସୀ—ବ୍ରହ୍ମା ।

୮୨ । ଭାବିତ—ଚିନ୍ତିତ, ନିର୍ଦ୍ଦୋଷରେ—ଦୋଷହୀନ ହୋଇ, ସମାପତ—ଶେଷ ।

ସିଂହଳ ଦେଶର ରାଜା ରତ୍ନେଶ୍ୱର, ରାଣୀ ବଧୂୟଲ୍ଲତା ତାଙ୍କର ପାଞ୍ଚଟି ପୁତ୍ର ତଥାପି ଗୋଟିଏ ଝିଅ ସକାଶେ ଦୁର୍ଗାଙ୍କୁ ପ୍ରାର୍ଥନା କରି ବ୍ରତ କରନ୍ତେ ଦୁର୍ଗା ବାଞ୍ଛାବତୀଅପ୍ସରାକୁ ଆମ୍ବ ଫଳରେ ଦେଇ ସେ ରାଣୀକୁ କହିଲେ ଆମ୍ବକୁ ତୁମ୍ଭେ ଭକ୍ଷଣ କଲେ ତୁମ୍ଭର ଝିଅ ହେବ । ତହୁଁ ରାଣୀ ସେ ଫଳ ଭକ୍ଷଣ କରି ରାଜାସଙ୍ଗେ ଏକତ୍ର ହେବାରୁ ଗୋଟିଏ ସର୍ବ ସୁଲକ୍ଷଣଯୁକ୍ତା କନ୍ୟା ହେଲା । ସେହି କନ୍ୟାର ନାମ ଲାବଣ୍ୟବତୀ ଦେଲେ । ଲାବଣ୍ୟବତୀ କ୍ରମେ ବଡ଼ ହୋଇ ଯୌବନରେ ପଦାର୍ପଣକଲା । ସେ ବିଦୁଷୀ, ରସିକା ଓ ସୁନ୍ଦରୀ ସବୁ ଗୁଣରେ ପୂର୍ଣ୍ଣ ଥିଲା ।

# ତୃତୀୟ ଛାନ୍ଦ

( ଲାବଣ୍ୟବତୀ ପ୍ରଥମ ଋତୁମତୀ ହେବା )

ରାଗ—କେଦାର, ଚକ୍ରକେଳି ବାଣୀ

ଶୁଣ ରସିକେ ନବ ଯଉବନୀ । ହୋଇ ବନିତା ମଣ୍ଡିଲା ଅବନୀ । ୧ ।
ଏଣୁ ଉପମାଗଣ ନିରନ୍ତର । କି କରିବା ଭାବି ହେଲେ କାତର । ୨ ।
ଝଳ କାନ୍ତିରେ ଲଭିଣ ଭୀତକି । କଲା କଣ୍ଟକଦୁର୍ଗକୁ କେତକୀ । ୩ ।
ପାଞ୍ଚେ ମନ୍ଦର କୁଚ ବଢ଼ିବାରେ । କିପାଁ ବୁଡ଼ି ନ ମଲି ପାରାବାରେ । ୪ ।
ନାସା ପୁଡ଼ା ଫୁଲିବାର ଅନାଇ । ଭାଷାବନ୍ଧେ ଶୁକ ମନ ମନାଇ । ୫ ।
ମୁଖେ ପ୍ରଭୁର ପରଚୁରପଣ । ସୁଖେ ଦର୍ପହତୁଁ କଲା ଦର୍ପଣ । ୬ ।
କମ୍ବୁକଣ୍ଠୁ ଦେଖି ଅତି ଆର୍ତ୍ତିରୁ । ସମ ନୋହେ ବୋଲି ଡାକେ ପ୍ରାତରୁ । ୭ ।

---

## ତୃତୀୟ ଛାନ୍ଦ

୧ । ନବ ଯଉବନୀ—ନୂଆ ଯୌବନପ୍ରାପ୍ତା, ବନିତା—ସ୍ତ୍ରୀ, (ଲାବଣ୍ୟବତୀ) ଅବନୀ—ପୃଥିବୀ ।

୨ । ନିରନ୍ତର—ସର୍ବଦା, କାତର—ବ୍ୟସ୍ତ, ସାହସହୀନ ।

୩ । ଭୀତକି—ଭୟରୁ, ଝଳ—ଉଜ୍ଜ୍ୱଳ ଦୀପ୍ତି, କାନ୍ତି—ବର୍ଣ୍ଣ, କଣ୍ଟକଦୁର୍ଗ—କଣ୍ଟାପୂର୍ଣ୍ଣ ଗଡ଼, ଅର୍ଥାତ୍ କେତକୀ କଣ୍ଟାରେ ଗଡ଼ପରି ରହିଲା ।

୪ । ପାଞ୍ଚେ—ମନେକଲେ, ମନ୍ଦର—ପର୍ବତ ବିଶେଷ, ପାରାବାରେ—ସମୁଦ୍ରରେ, କୁଚ ମନ୍ଦରପର୍ବତ ତୁଲ୍ୟ ରୂପେ ବଢ଼ିବାରୁ ମନ୍ଦରପର୍ବତ ଦେଖି ଲଜ୍ଜାରେ ଭାବେ ମୁଁ କାହିଁକି ସମୁଦ୍ରରେ ବୁଡ଼ି ନ ମଲି ।

୫ । ଲାବଣ୍ୟବତୀ ନାକପୁଡ଼ା ଫୁଲିବା ଢଙ୍ଗ ଦେଖି ଶୁଆ ଲଜ୍ଜା ପାଇବାକୁ ଆରମ୍ଭ କଲା ।

୬ । ଆରସି ତାର ମୁଖ ଶୋଭାରେ ସମାନ ନୋହି ଦାସ ଯୋଗ୍ୟହେବାରୁ ତାର ଗର୍ବ ହତ ହେଲା ତହୁଁ ସେ ଦର୍ପଣ ନାମ ଧରିଲା ।

୭ । ଲାବଣ୍ୟବତୀର କଣ୍ଠକୁ ଦେଖି କମ୍ବୁ ଯେ ଶଙ୍ଖ ସମ ନ ହେବାରୁ ଆର୍ତ୍ତିରେ କି ଦୁଃଖରେ, ସକାଳୁ ଶବ୍ଦ କଲା । ପ୍ରତିଦିନ ଦେବ ମନ୍ଦିରରେ ଶଙ୍ଖ ଶବ୍ଦ ହୁଏ ।

ନେତ୍ର ସଙ୍ଗେ ଲକ୍ଷ୍ୟବେ କି ସୁମର । ମୀନ ଜଳ ସ୍ଥାନରେ ଯାଏ ମର ।୮।
ହୋଇ ହାସରେ କୁସୁମ ବିଜିତ । ମକରନ୍ଦ ଛଳେ ଅଶ୍ରୁ ଚେଷ୍ଟିତ । ୯ ।
ରମ୍ଭା ଉପମା ପଦ ପ୍ରଦେଶକେ । ଅଜ କେନ୍ଦ୍ର ସମ ହେବ ଅଂଶକେ । ୧୦ ।
କୁନ୍ଦକୋରକ ହୀରକ-ରଦନା । ସୁଧାକର ସରସିଜ-ବଦନା । ୧୧ ।
ଏ ପ୍ରୟୋଗ ପରମ୍ପରା ଅଛି ତ । ବାଳାଠାରେ ବର୍ଣ୍ଣିବାର କୁତ୍ସିତ । ୧୨ ।
କଞ୍ଜ ଖଞ୍ଜନ-ଗଞ୍ଜନ ଲୋଚନା । ମତ୍ତ ପରଭୃତ-ଜିତବଚନା । ୧୩ ।
ଏ ବିଧିରେ ବର୍ଣ୍ଣିଲେ ସେ ଚତୁର । କେତେ ହୋଇବ କବିତା ଗୁରୁ ।୧୪।
ଯହିଁ କୃଶ କଲ୍ପ ମଧ୍ୟ ଶୋଭିତ । ତାହିଁ ଗୁରୁହିଁ ହେଉଥାଇ ଲୋଭିତ । ୧୫ ।
ତହିଁ ସ୍କନ୍ଦରେ ସୁନ୍ଦର ହୋଇଲେ । କସ ଅଧିକ ହୋଇବ ବୋଇଲେ ।୧୬।
ଏ ପ୍ରକାର ସୁନ୍ଦରୀ କୃଶୋଦରୀ । ଅଛି ଦିନେ ସେ ଶୟନ ଆଦରି । ୧୭ ।
ନିଦ୍ରାନାଶ ଅବକାଶ ଆଶାରେ । ଜଗିଛନ୍ତି ଏତେ ସଖୀ ପାଶରେ । ୧୮ ।
ନିଜଧାତ୍ରିପୁତ୍ରୀ ହେମ ମଞ୍ଜରୀ । ଅକ୍ଷିପକ୍ଷି ବନ୍ଦକ ଯେ ପଞ୍ଜରୀ । ୧୯ ।
କାମକଳା ନାମ ମନ୍ତ୍ରୀ ଦୁହିତ । ବିଦ୍ୟାବଙ୍କାଣୀ ବୋଲଇ ବିଦିତ । ୨୦ ।
ରସଲେଖା ସୁରେଖା ଶଶିଲେଖା । ହାରାବଳୀ ଚନ୍ଦ୍ରାବଳୀ ଏ ଲେଖା । ୨୧ ।
ରତ୍ନମାଳା ହେମମାଳା କମଳା । ପ୍ରେମଶୀଳା ସୁଶୀଳା ପରିମଳା । ୨୨ ।
କଳ୍ପଲତା ମଦାଳସା ମଞ୍ଜୁଳା । ପ୍ରେମସୁଧାନିଧି ପ୍ରଭାମଞ୍ଜୁଳା । ୨୩ ।

---

୮ । ମୀନ—ମାଛ, ନେତ୍ର-ଚକ୍ଷୁ । ମୀନ ନେତ୍ରକୁ ସମାନ ନ ହେବାରୁ ଲଜ୍ଜାରେ—ଶୁଖିଲରେ ପଡ଼ି ମଲା ।

୯ । ମକରନ୍ଦ—ଅମୃତ, ମଧୁ । ଅଶ୍ରୁ—ଲୋତକ, କୁସୁମ—ଫୁଲ ।

୧୦ । ରମ୍ଭା—କଦଳୀ ଗଛ ।

୧୧ । କୁନ୍ଦ କୋରକ—କୁନ୍ଦ ଫୁଲର କଢ଼ୀ, ହୀରକ—ହୀରା, ରଦନ—ଦନ୍ତ, ସୁଧାକର—ଚନ୍ଦ୍ର, ସରସିଜ—ପଦ୍ମ, ବଦନ—ମୁଖ ।

୧୨ । ପରମ୍ପରା—କ୍ରମାନ୍ୱୟେ, ନିଶ୍ଚିତ, ବାଳା—ସ୍ତ୍ରୀ, କୁତ୍ସିତ—ମନ୍ଦ ।

୧୩ । କଞ୍ଜ—ପଦ୍ମ, ଖଞ୍ଜନ—ଖଞ୍ଜନ ପକ୍ଷୀ, ଲୋଚନ—ଚକ୍ଷୁ, ପରଭୃତ—କୋକିଳ, ବଚନ—କଥା ।

୧୫ । କୃଶ—ସରୁ, ମଧ୍ୟ—ଅଣ୍ଟା ।

୧୭ । କୃଶୋଦରୀ—ସରୁପେଟ ଯେଉଁ ସ୍ତ୍ରୀର ।

୧୮ । ଅବକାଶ—ଫୁରୁସତ, ଆଶା—ଇଚ୍ଛା ।

୧୯ । ଧାତ୍ରୀ—ଧାଈ, ପୁତ୍ରୀ—କନ୍ୟା, ଅକ୍ଷିପକ୍ଷୀ—ନେତ୍ରରୂପ ପକ୍ଷୀ ।

୨୦ । ଦୁହିତା—କନ୍ୟା, ବିଦ୍ୟା—ବିଧାତା, ବଙ୍କାଣୀ—କାରିଗର ।

ଷୋଳସାମନ୍ତସୁତା ରୂପେ ସର । ତାହୁଁ ହୋଇବେ ସ୍ୱର୍ଗ ଅପସରୀ । ୨୪ ।
ଅଙ୍ଗୁ ସ୍ୱେଦ ନୋହିବାକୁ ଜନିତା । ଚାଳେ ଫୁଲବ୍ୟଜନ ଯେ ବନିତା ॥
ଖଢ ଚାମର ରାଜ ଉପଚାର । ଭଲ କେହି କେହି କରେ ପ୍ରଚାର । ୨୬ ।
କର ଚରଣେ କର ନିବେଶନ । ଧୀରେ ଧୀରେ କେ କରେ ଅଶ୍ୱାସନ ॥
ପୁଗ ଖଦିର ଚୂର୍ଣ୍ଣ କେ ଶୋଭାଙ୍ଗୀ । ଦିବ୍ୟପଳିତା ନାଗବଲ୍ଲୀ ଭାଙ୍ଗି । ୨୮ ।
ବାଛି ଝୀନବାସ କୁଞ୍ଚ ସଞ୍ଚରେ । ଉଞ୍ଚ ରଙ୍ଗିଛି କେ ଚୁନା ଅତରେ । ୨୯ ।
ଦଳମାନ ହରି କରି ସେବତୀ । ଗୁନ୍ଥି ଅଛି କେ ମାଳିଆ ଯୁବତୀ । ୩୦ ।
ଝରା ଶିକୁଳୀ ଗଳାକୁ ମାଳିକା । କରୁଛନ୍ତି କେହି କେହି ବାଳିକା । ୩୧ ।
ଭରି ଲବଣୀ ସିନ୍ଦୂର ଦଳନା । କରୁଅଛି ବସି କେଉଁ ଲଳନା । ୩୨ ।
ମୃଗମଦ ଗୋଳୁଛି କେଉଁ ମିତ । କୁଚ ଖଚନ ଚନକ ନିମିତ୍ତ । ୩୩ ।
ପେଡ଼ା ଫେଡ଼ି କେ ବାଛୁଛି ରତନ । ଅଳଙ୍କାରେ ଯେଉଁମାନେ ଯତନ । ୩୪ ।
ଘନସାର ମିଶାଇ ଚନ୍ଦନରେ । କେହି ଥୋଇଛନ୍ତି ହରଷ ମନରେ । ୩୫ ।
ସଖୀମାନଙ୍କର ଏହି ବ୍ୟାପାର । ପରିଚାରିକା ଅଛନ୍ତି ଅପାର । ୩୬ ।
ଫୁଲ ଫଳଙ୍କର ନାମ ଉଦିତ । ଧରି ଝରୀ ପରଖା କେ ମୋଦିତ । ୩୭ ।

---

୨୪ । ସାମନ୍ତ—ସାଆଁନ୍ତ, ରାଜାଙ୍କ ଭାଇଅ ।
୨୫, ୨୬ । ସ୍ୱେଦ—ଝାଳ । ଜନିତା—ଜାତ । ଫୁଲବ୍ୟଜନ—ଫୁଲ ବିଚଣା । ଚାମର—ଚଅଁର ।
୨୭ । ନିବେଶନ—ଯୋଗାଇବା, ଅଶ୍ୱାସନ—ଶାନ୍ତ କରିବା ।
୨୮ । ପୁଗ—ଗୁଆ, ଖଦିର—ଖଇର. ଚୂର୍ଣ୍ଣ—ଚୂନ, ଶୋଭାଙ୍ଗି—ସୁନ୍ଦରୀ ।
ଦିବ୍ୟପଳିତା—ସୁନ୍ଦର ଫାଳ, ନାଗବଲ୍ଲୀ—ପାନ ।
୨୯ । ଝୀନ—ଅତ୍ୟନ୍ତ ସରୁ. ବାସ—ଲୁଗା, କୁଞ୍ଚ—କୁଞ୍ଚକର ।
୩୦ । ଦଳମାନ—ପାଖୁଡ଼ା ସବୁ, ମାଳିଆଁ—ମାଳିଘାସ୍ତ୍ରୀ ।
୩୧ । ବାଳିକା—ସ୍ତ୍ରୀ ପିଲା ।
୩୨ । ଲବଣୀ—ଲହୁଣୀ, ଲଳନା—ସ୍ତ୍ରୀ ।
୩୩ । ଖଚନ ଚନକ—ଭିନ୍ନଭିନ୍ନ ଚନ କରିବା ।
୩୪ । ରତନ—ହୀରାନୀଳାଦି, ଯତନ—ଭଲ ।
୩୫ । ଘନସାର—କର୍ପୂର ।
୩୬ । ସଖୀ—ସଙ୍ଗୀ, ବ୍ୟାପାର—କାର୍ଯ୍ୟ, ପରିଚାରିକା—ଚାକରଣୀ ।
୩୭ । ଫୁଲଫଳଙ୍କର—ଚମ୍ପା, ନାଗେଶ୍ୱର ବଉଳ ଇତ୍ୟାଦି ପ୍ରକାଶିତ, ପରଖା—ପିକଦାନୀ, ମୋଦିତ—ଆନନ୍ଦିତ ।

କେହ୍ନ କରୁଛନ୍ତି ମୁକୁର ମାର୍ଜନ । କେ ଖରଡ଼ ପାରୁବାରେ ରଞ୍ଜନ । ୩୮ ।
ଅପସର କେ ଦେଉଛନ୍ତି ସତ୍ୱରେ । ପୀଠ ପକାଉଛନ୍ତି କେହ୍ନ ଚତ୍ୱରେ । ୩୯ ।
ଜଳ ଅଣୁଛନ୍ତି କେ ହେମକୁମ୍ଭରେ । ନାହିଁ ଅସର ଏହ୍ନ ଥରମ୍ଭରେ । ୪୦ ।
ଶୁକ୍ଳପକ୍ଷ ଦଶମୀ ବୁଧବାରେ । ସିଦ୍ଧ ସାଧ୍ୟଯୋଗ ଯୋଗ ହେବାରେ । ୪୧ ।
ଦିନ ଅଷ୍ଟଦଣ୍ଡ ଭୋଗ ଅଦତ୍ୟ । ଶୁକ୍ରବେଳା ତୁଳ ଲଗ୍ନ ବଦାତ । ୪୨ ।
ପୁଷ୍ୟାନକ୍ଷତ୍ର କକଡ଼ା ଚନ୍ଦ୍ରରେ । ବୃହସ୍ପତି ଛନ୍ତି ଉଇ କେନ୍ଦ୍ରରେ । ୪୩ ।
ସ୍ଥିତ ଶଉରି ମଙ୍ଗଳ ମକରେ । ମେଷେ ଅସୁରଗୁରୁ ଲୀଳା କରେ । ୪୪ ।
ଧନ୍ୟ ହୋଇଅଛନ୍ତି ରାହୁ କନ୍ୟରେ । ବୁଧ ମିଥୁନରେ କେତୁ ମୀନରେ ॥
ସିଂହେ ସ୍ଥିତ ହୋଇଛନ୍ତି ବାସରୀନ । ସୌମ୍ୟ ଗ୍ରହ ଦୃଷ୍ଟି ଲଗ୍ନେ ପତନ ॥
ଏ ସମୟରେ ରମଣୀ ରତନ । ଋତୁ ଲଭିଣ ଉଜାଲ୍ଲ ଚେତନ । ୪୭ ।
ନଗରିଗିରି ହତେ ପବି ପତନ । ଯାହା ଚଳାଇଛି କାମକେତନ । ୪୮ ।
ଜାତିମାଳାକୁ ଠାରି ନେତ୍ରାନ୍ତରେ । ଗଲା ଗୋପ୍ୟମନ୍ଦିରେ ତରତରେ ।୪୯।
ଯେଉଁ ଲେଖା ସେ ଦେଖେ ବିବେକରେ । ରଙ୍ଗପାଟ ଦୁକୂଳେ ନେଇକରେ ॥
ଯାଇଁ ଏକାନ୍ତେ ଯତ୍ନେ ରତ୍ନବେଣୀ । ଜଙ୍ଘସନ୍ଧିପାଶେ ଦୃଷ୍ଟି ନବେଣୀ । ୫୧ ।
ବିମ୍ବ ସ୍ଫଟିକ ବାଡ଼ରେ ଯେସନ । ଫୁଲ ମନ୍ଦାର ତେମନ୍ତ ପ୍ରସନ୍ନ । ୫୨ ।

---

୩୮ । ମୁକୁର—ଆରସୀ, ମାର୍ଜନ—ସଫା କରିବା, ମାଜିବା, ଖରଡ଼—ଘର୍ଷଣ ।
୩୯ । ଅପସର—ଢକଣ, ସତ୍ୱରେ—ଶୀଘ୍ରରେ, ଚଞ୍ଚଳରେ, ପୀଠ— ଚଉକି, ଚତ୍ୱରେ—ଅଗଣାରେ, ଦୁଆରେ ।
୪୦ । ହେମକୁମ୍ଭ—ସୁନାରମାଠିଆ, ଅସର—ଫୁରୁସତ୍ ।
୪୨ । ଅଷ୍ଟଦଣ୍ଡ—ଆଠଦଣ୍ଡ, ଅଦତ୍ୟ—ସୂର୍ଯ୍ୟ ।
୪୪ । ସଉରି—ଶନି, ଅସୁରଗୁରୁ—ଶୁକ୍ର ।
୪୬ । ବାସରୀନ—ସୂର୍ଯ୍ୟ, ସୌମ୍ୟ—ବୁଧ, ପତନ—ପଡ଼ିବା ।
୪୭ । ଋତୁ—ପୁଷ୍ପବତୀ, ଚେତନ—ଜାଗର ।
୪୮ । ନଗରିପର୍ବତ ଉପରେ ପବି ଯେ ବଜ୍ର ପତନ ହେବାରୁ କାମକେତନ ଯେ କନ୍ଦର୍ପ ସେ ଜୟ ପତାକା ଦେଖାଇଲା ।
୪୯ । ଜାତିମାଳା—ଏକ ସଖୀ, ନେତ୍ରାନ୍ତରେ—ଚକ୍ଷୁ ଶେଷରେ, ଆଖି କୋଣରେ ଜାତିମାଳାନାମ୍ନୀ ସଖୀକୁ ଠାରି ପୁଷ୍ପବତୀ ବୋଲି ସଙ୍କେତ ଦେଲା । ଗୋପ୍ୟମନ୍ଦିରେ—କେହି ନ ଜାଣିବା ଘରକୁ ପଳାଇଲା ।
୫୨ । ବିମ୍ବ—ପାଚିଲା କଇଁଚକାକୁଡ଼ି, ସ୍ଫଟିକବାଡ଼ ସ୍ୱଚ୍ଛ କ ଧଳା କାନ୍ଥରେ ଲଲରଙ୍ଗ ଯେପରି ଦେଖାଯାଏ ମନ୍ଦାରଫୁଲ ରଙ୍ଗ ପରି ତାର ଜଙ୍ଘ ସନ୍ଧିରେ ରଙ୍ଗ ଦେଖାଗଲା ।

ଚୂର୍ଣ୍ଣ ଭୂମିରେ ମଣ୍ଡଳ ଆକାରେ । ଦ୍ରବ ହିଙ୍ଗୁଳ ଢାଳିଲା ପ୍ରକାରେ । ୫୩ ।
ଦେଖି ସୁଖୀ ହୋଇ ଅନ ବସନ । ପିନ୍ଧି ହେଲା ସ୍ମରପୁର ଦର୍ଶନ । ୫୪ ।
ହେମ ପଦକରେ କାମ ବଣିକ । କଲା ନାୟିକା କି ଦ୍ରବ୍ୟ ମାଣିକ୍ୟ । ୫୫ ।
ଯୁବାଜୟକୁ ପାନିରେ ସଂକଳ୍ପ । କରେ କିମ୍ବା ଫଳେ ନାହିଁ ବିକଳ୍ପ । ୫୬ ।
ଯଉବନମାଳୀ ସ୍ତନଶମ୍ଭୁରେ । ପୂଜା ବିହି ସାରି ସ୍ୱର୍ଣ୍ଣକମ୍ବୁରେ । ୫୭ ।
ପାରିଜାତ ପ୍ରସାଦ କି ଥୋଇଛି । ସେହି ପ୍ରକାରେ ରୁଚିର ହୋଇଛି । ୫୮ ।
ବାଳଭାନୁ ଜାନୁଗିରି ଗୁହାରେ । ସ୍ଥିତ ଅଭାସୁଛି ଅଗ ବାହାରେ । ୫୯ ।
ଅଧୋମୁଖରେ ଶୋଣିତ ବମନ । କଚ୍ଛପ କି କରଇ ଘେନିନେ ମନ । ୬୦ ।
ଚିହ୍ନ ଘେନିବା କରି ମାନସରେ । ରଖି କି ଜଘନ-ପେଡ଼ି ଶେଷରେ । ୬୧ ।
ନବନୀତରେ ସିନ୍ଦୂର ଗୋଳିଲା । ଏହି ଉପମାରେ ଚିତ୍ତ ବଳିଲା । ୬୨ ।
ମୋହସଙ୍ଗେ ପରି ହେଉ ସମାନ । କରି ମାରପୁର ଏହି ଗୁମାନ । ୬୩ ।
ଉଡ଼ାଇଲା କି ସୁରଙ୍ଗ ପତାକା । ଏଣୁ ପଡ଼ିଲା ଚାଳଦଳେ ଡକା । ୬୪ ।
ଧାତା ହୋମଲେ ଏ ତନୁ ରଚିଲା । ଅନୁରାଗେ ପୂର୍ଣ୍ଣ କରି ସଞ୍ଚିଲା । ୬୫ ।
ଭଲା ମଧ୍ୟ ଚିରଥିଲା ନଖରେ । ବ୍ୟକ୍ତ ହୋଇଛି କି ଇଚ୍ଛା ସୁଖରେ । ୬୬ ।

---

୫୩ । ଚୂର୍ଣ୍ଣଭୂମି—ଚୂନା ମାଟି, ମଣ୍ଡଳା—ଗୋଲ, ଦ୍ରବ—ତରଳ, ହିଙ୍ଗୁଳ—ଲାଲବର୍ଣ୍ଣ ଧାତୁ ବିଶେଷ ।

୫୪ । ଅନ—ଅନ୍ୟ, ବସନ—ଲୁଗା, ସ୍ମରପୁର—କନ୍ଦର୍ପପୁର ।

୫୫ । ହେମପଦକ—ସ୍ୱର୍ଣ୍ଣପଦକ, କାମବଣିକ—କନ୍ଦର୍ପ ବଣିଅ ।

୫୬ । ପାନିରେ—ସ୍ୱୀଠାରେ ସଙ୍କଳ୍ପ ମନେ କରିବା ।

୫୭ । ସ୍ତନଶମ୍ଭୁ—ଶିବସଦୃଶ କୁଚ, ସ୍ୱର୍ଣ୍ଣକମ୍ବୁ—ସୁନାଶଙ୍ଖ ।

୫୮ । ରୁଚିର—ସୁନ୍ଦର, ପ୍ରସାଦ—ଭୋଗ ।

୫୯ । ବାଳଭାନୁ—ବାଳସୂର୍ଯ୍ୟ ପରି ଲାଲ, ଯେଉଁ ରକ୍ତବର୍ଣ୍ଣ ସୂର୍ଯ୍ୟଦେବ ସକାଳୁ ଦେଖା ଯାଏ, ଜାନୁଗିରିଗୁହା—ପର୍ବତ ଗୁହାସଦୃଶ ଜଙ୍ଘ ସନ୍ଧି, ଅଭାସୁଛି—ପ୍ରକାଶ ହେଉଛି ।

୬୦ । ଅଧୋମୁଖରେ—ତଳମୁହାଁରେ, ଶୋଣିତ—ରକ୍ତ, ବମନ—ବାନ୍ତି କଚ୍ଛପ—କଇଁଛ ।

୬୨ । ନବନୀତ—ଲହୁଣୀ ।

୬୪ । ସୁରଙ୍ଗ—ଲାଲ, ଚଳଚଳ—ଅଶ୍ୱତ୍ଥପତ୍ର ।

୬୫ । ଅନୁରାଗ—ସ୍ନେହ ।

ଗୋରୋଚନା ଲକ୍ଷ୍ୟ ବଢ଼ ଲକ୍ଷଣ । କେହ୍ନ ଯେହ୍ନ ହୁଅନ୍ତି ବିଚକ୍ଷଣ । ୬୭ ।
ତାଙ୍କ ଉପରେ କବା ସକୋଧରେ । ମହା ଅରକ୍ତମାକୁ ମୁଖେ ଧରେ ।୬୮।
ଦେଖି ଏମନ୍ତ ଶୋଭା ତାମରସ । ଫୁଲବାସିନୀର ଜାତ ହରଷ । ୬୯ ।
ଉରୁସନ୍ଧି ରୁନ୍ଧି ରଙ୍ଗ ଦୁକୁଳ । ପିନ୍ଧି ସଖୀ ଜାଣିବାକୁ ଅକୁଳ । ୭୦ ।
ନିଦ୍ରାଭଙ୍ଗ କେମା ଟିବା ବିଧାନ । ସଖୀମାନେ କଲେ ଅନୁସନ୍ଧାନ । ୭୧ ।
କାହିଁ ନୋହିଲା ମର୍ଦ୍ଦନ ମାଜଣା । ବେଗ ଗଲାତ ନ ଯାଇ ଏ ଜଣା । ୭୨ ।
କେ ବୋଇଲା ଅତ୍ୟନ୍ତ ରସମୟ । ପ୍ରକଟିଲା କି କୁସୁମ ସମୟ । ୭୩ ।
କେ ବୋଇଲା ସେ ପୀରତିଲମ୍ପଟ । ଅମ୍ଭଠାରେ କରନ୍ତା କି କପଟ । ୭୪ ।
କେ ବୋଇଲା ଛଳ ଏ ଭାରତୀକି । ଲାଜବଳଅଇଁ ଥିବ ପ୍ରୀତିକି । ୭୫ ।
ଏହି ସମୟକୁ ହୋଇ ସୁବେଶ । ପାଟଜଡ଼ିତପସୁତା ପ୍ରବେଶ । ୭୬ ।
ଗ୍ଲଇ ମପାଇ ମୂଳ କର କାଳ । କେମା ପାଶକୁ ଚଳିଲେ ତତ୍କାଳ । ୭୭ ।
ଯାଉଁ ପଥରେ ଦେଖିଲେ ଚେଟୀକି । ଘେନି ଆସୁଅଛୁ ନାଟଶାଟୀକି । ୭୮ ।
ବାସେ ଗୋଡ଼ାଇ ଅଛନ୍ତି ଅଳିଏ । ଏ ସଙ୍କେତୁ ସତ କର ଅଳିଏ ।୭୯ ।
ଯାଇଁ ନୃପସୁତା ପାଶେ ମିଳିଲେ । ହାସ ସରସଭାବରେ ଛଳିଲେ । ୮୦ ।
ତୁମ୍ଭ ଅମ୍ଭ ପ୍ରୀତି ନୁହେ ଆଜର । ଯଉବନସଙ୍ଗୁ ସଙ୍ଗ ଲାଜର । ୮୧ ।
ତାହା ସଙ୍ଗୁ କଲୁ ଏତେ ଅନ୍ତର । କି କରବୁ ସଙ୍ଗ ହେଲେ କାନ୍ତର ।୮୨।
ବାଣୀ କୋକିଳୁ ମଧୁର ହେବାରୁ । ନଖ ନିଅଳୀ ଛବି ବହିବାରୁ । ୮୩ ।
ହୃଦନଦରେ ଶିଉ ରଞ୍ଜିବାରେ । ସ୍ତନକମଳ କଳା ବଢ଼ିବାରେ । ୮୪ ।
କାନ୍ତ କେତକୀ ଦନ୍ତ ଦନ୍ତ ଗୃହୁ । ଗୃହିଁ ଅମ୍ଭେମାନେ ମନେ ବଗୃହୁଁ ।୮୫।

---

୬୭ । ବିଚକ୍ଷଣ—ଚତୁର, ଗୋରୋଚନା—ସୁଗନ୍ଧିତ ପଦାର୍ଥ ଯାହା ଗାଈ ଦେହରେ ଥାଏ ।
୬୮ । ସକୋଧ—ରାଗସହିତ, ଅରକ୍ତମା—ରକ୍ତବର୍ଣ୍ଣ ।
୬୯ । ତାମରସ—ପଦ୍ମ ।
୭୦ । ରୁନ୍ଧି—ବନ୍ଦକରି, ରଙ୍ଗଦୁକୁଳ—ଲାଲଲୁଗା ।
୭୩ । କୁସୁମ ସମୟ—ପୁଷ୍ପବତୀ ସମୟ ।
୭୫ । ଭାରତୀକି—କଥାକୁ ।
୭୮ । ଚେଟୀ—ଦାସୀ, ନାଟ ଶାଟୀକି—ଭଲ ଲୁଗାକୁ ।
୭୯ । ବାସ—ବାସନାରେ, ଅଳିଏ—ଭଅଁରମାନେ, ସଙ୍କେତ—ଚିହ୍ନରୁ ।
୮୨ । ଅନ୍ତର—ଦୂର, କାନ୍ତର—ସ୍ୱାମୀର ।

ପୁଷ୍ପ ସମୟ ହେଲଣି ନିକଟ । ସତ ଭଦ୍ର ହୋଇଲା କି ପ୍ରକଟ ।୮୬।
ଶୁଣି ସଖୀଏ କହିଲେ ଏସନ । ନ କହିଲେ କହିଲଣି ବସନ ।୮୭।
ବନେ ବିକଶିତ ହେଲେ ମାଧବୀ । ମଧୁପେ କି ନ ଜାଣନ୍ତି ବାନ୍ଧବୀ ।୮୮।
ପାଟସୂତ୍ରରେ ଗୁନ୍ଥିଣି ମୋତିକି । କେମା ଲୁଗୁଇ ଲୋଡ଼ୁଛୁ ଜ୍ୟୋତିକି ।୮୯।
କେତେବେଳଯାଏ ସୂର୍ଯ୍ୟ ଉଦିତ । କରପାରେ କୁଜ୍‌ଝଟି ଆଚ୍ଛାଦିତ ।୯୦।
କେତେବେଳେ ଲୁଚନ୍ତି ପଦ୍ମଲାକ୍ଷା । ଧନାନ୍ତରେତ ଘେନନାହିଁ ଲକ୍ଷା ।୯୧।
ଅବା ସିନ୍ଦୂର ପୋଟ୍ଟଳି କହିବ । ଅଗଅଞ୍ଚଳେ ନୋହେ ସେ ନୋହିବ ।୯୨।
ସହଚରୀ ପରିହାସ ସରିତେ । ମୃଦୁଭାଷୀ ଭାସିଗଲା ତ୍ୱରିତେ ।୯୩।
ମୁଖ ନିବେଶିଲା ନିଜ ଉରଜେ । ଷିତି ଠୁଙ୍କି ଆରମ୍ଭିଲା କରଜେ ।୯୪।
ପ୍ରେମଶୀଳା ମାତା ପାଶେ ଜଣାଇ । ଶର ମନ୍ଦର ସମ୍ଭାର ଅଣାଇ ।୯୫।
ମାଷ ତଣ୍ଡୁଳରେ ଗୃହ ଗଢ଼ାଇ । ବାସ ପ୍ରାକାର ପ୍ରକାରେ ବେଢ଼ାଇ ।୯୬।
ଗୃହପାଶେ ଗୃହଗୋଟି ମାର୍ଗଣ । ଅବଲମ୍ବେ ପୋତିଲେ ସଖୀଗଣ ।୯୭।
ନାରିକେଳ ଚେଳ ଦୁର୍ବାରୋପକୁ । ଭର ସମୀପେ ଥୋଇଲେ ସୂର୍ପକୁ ।୯୮।
ମଧ୍ୟେ ବସାଇଲେ ଯେ ନବବାଳୀ । ଶୁଭ ଅର୍ଥରେ ଦେଲେ ହୁଳହୁଳି ।୯୯।
ସେହି ଶବଦ ଜନକ ଶୁଣିଲେ । ଜୀର୍ଣ୍ଣମୁଦୁସୁଲୀଠାରୁ ଜାଣିଲେ ।୧୦୦।

---

୮୮ । ବିକଶିତ—ଫୁଟିବା, ମଧୁପେ—ଭ୍ରମରମାନେ ।
୮୯ । ଜ୍ୟୋତିକି—ଜହ୍ନୁଲତାକୁ ।
୯୦ । କୁଜ୍‌ଝଟି—କୁହୁଡ଼ି, ଆଚ୍ଛାଦ—ଘୋଡ଼ାଇବା ।
୯୧ । ପଦ୍ମଲାକ୍ଷା—ପଦ୍ମନେତ୍ରୀ, ଧନାନ୍ତରେ—ଅନ୍ୟଧନ, ଲକ୍ଷା—ଅଳତା ।
୯୨ । ଅଞ୍ଚଳ—ଲୁଗାକାନି ।
୯୩ । ପରିହାସ—ଥଟ୍ଟା, ସରିତ—ସ୍ରୋତ, ନଦୀ ।
୯୪ । କରଜେ—ନଖରେ, (ଲଜ୍ଜାରେ ତଳକୁ ମୁହଁ କରି ସ୍ତନରେ ରଖିଲା, ନଖରେ ମାଟିରେ ଗାର ପକାଇଲା । )
୯୫ । ଶର ମନ୍ଦର ସମ୍ଭାର—ପୁଷ୍ପବତୀର ସାମଗ୍ରୀ ସମସ୍ତ ।
୯୬ । ମାଷ—ବିରି, ତଣ୍ଡୁଳ—ଚାଉଳ, ବାସ—ଲୁଗା, ପ୍ରାକାର--ପାଚେରୀ ।
୯୭ । ମାର୍ଗଣ—ବାଟ ।
୯୮ । ନାରିକେଳ—ନଡ଼ିଆ, ଚେଳ—ଲୁଗା, ଦୁର୍ବା—ଦୁବ, ସୂର୍ପ--କୁଲା । ନଡ଼ିଆ, ଲୁଗା, ଚାଉଳ, ଦୁବ କୁଲାରେ ପୂରାଇ ଥୋଇଲେ ।
୯୯ । ଜନକ—ପିତା, ଜୀର୍ଣ୍ଣ ମୁଦୁସୁଲୀ—ବୃଦ୍ଧାଦାସୀ ।

ଉଚ୍ଛୁଳିଲା ପୁରଦ୍ୱାର ବାଦ୍ୟରେ । ବାଦ୍ୟ ଏମନ୍ତ କହେ କି ନାଦରେ ।୧୦୧।
ଯୁବା ହୋଇ ସାହା ହେଲ ଜଗତେ । ମଦନକୁ ଶୁଭିଲ ଏ ଯୁଗତେ ।୧୦୨।
ଯୋଗିଜୟ ମୂଳ ମନମଥର । ଲଭି ଏ ଭୟ ମହେଶ ପଥର । ୧୦୩ ।
ଅମ୍ବ ଦମ୍ବ କେତେ ଭାବ ବହନେ । ଋଷି ପଶିଲେ ନୈମିଷାଗହନେ ।୧୦୪।
କାଣ୍ଡଗୃହେ ଶୋହେ ବାଲା ଉଚିତ । ଏହି ଉପମା କାତ ହୋଏ ଚିତ୍ତ ।
କରି ସଂକଳ୍ପ ସେ ସାତଦାନକୁ । କରେ କି ରତିଦେବୀ ପୂଜନକୁ ।୧୦୬।
ସାତଦୀପହିଁ ହୋଇଛନ୍ତି ଦୀପିତ । ସାତକୁମ୍ଭ କୁମ୍ଭ କୁଚ ସ୍ଥାପିତ । ୧୦୭ ।
ଶ୍ରୁବ ଶ୍ରୁଚ ରୋମାବଳୀ ନାଭି ତା । ଜଘନତ ହେମବେଦୀ ଶୋଭିତା ।୧୦୮।
ସୁରୁ ସୁଜଙ୍ଘୁ କଦଳୀକାଣ୍ଡରେ । ଶୋଭା ବରାଙ୍ଗୀ ଅଦ୍ଭୁତକୁଣ୍ଡରେ ।୧୦୯।
ଦୀପ୍ତ ଶ୍ରବଣ ତାଟଙ୍କ ଅଳଙ୍କା । ବକ୍ତ୍ରବିକାରକୁ କରି ଚଳନ୍ତ । ୧୧୦ ।
ଯହିଁ ବରଣବ୍ରାହ୍ମଣ ସଂଗୃସ୍ତ । ମନ୍ଦ ମଙ୍ଗଳଗୀତକୁ ଉଚାରି । ୧୧୧ ।
ନିଃସଂଶୟରେ ଏ କଥା ଉଦୟ । ପଶୁ ହୋଇବେ ଯୁବା ସମୁଦାୟ ।୧୧୨।
ସିଦ୍ଧ ହେବ ଏହି ବାଞ୍ଛା ତାହାର । ଅଭି ବଲ୍ଲଭୀ ନୋହିବ ନାହାର ।୧୧୩।

---

୧୦୧ । ଉଚ୍ଛୁଳିଲା—ଉଚ୍ଛୁଳିଲା, ନାଦ—ଶବ୍ଦ ।
୧୦୨ । ଜଗତ—ସଂସାର, ମଦନ—କନ୍ଦର୍ପ ।
୧୦୩ । ମନମଥର—କନ୍ଦର୍ପର, ମହେଶ—ମହାଦେବ, ପଥ—ବାଟ ।
୧୦୪ । ନୈମିଷ ଗହନ—ନୈମିଷା ବନ ।
୧୦୬ । ସଂକଳ୍ପ—କାମନା ।
୧୦୭ । ଦୀପିତ—ଜଳିବା ।
୧୦୮ । ଶ୍ରୁବ—ହୋମ ଘିଅ ଢାଳିବାର ଡଙ୍କି, ଶ୍ରୁଚ ଯେଉଁ ପାତ୍ରରେ ଘିଅ ଥାଏ, ରୋମାବଳି—ଲୋମ ସବୁ, ନାଭି—ନାହି, ଜଘନ—ଜଙ୍ଘ, ହେମବେଦୀ—ସୁନାର ବେଦୀ ।
୧୦୯ । ସୁରୁ—ସୁନ୍ଦର, ସୁଜଙ୍ଘୁ—ସୁନ୍ଦର ଜଙ୍ଘ, ବରାଙ୍ଗୀ—ଶ୍ରେଷ୍ଠ ଦେହୀ (ଲାବଣ୍ୟବତୀ)
୧୧୦ । ଦୀପ୍ତ—ଶୋଭନ, ଉଜ୍ଜ୍ୱଳିତ; ଶ୍ରବଣ—କାନ, ତାଟଙ୍କ—କାନର ଗହଣା, ବକ୍ତ୍ର-ମୁଖ, ବିକାର-ଭଙ୍ଗି, ବକ୍ତ୍ର ବିକାର-ମୁଖଭଙ୍ଗି ।
୧୧୧ । ସଂଗୃସ୍ତ—ପବନ ଓ ଅଗ୍ନିରବନ୍ତ ।
୧୧୩ । ବଲ୍ଲଭୀ—ସ୍ତ୍ରୀ, ନାହା—ସ୍ୱାମୀ ।

ଭିକ୍ଷୁ ନାପିତ ରଜକେ ଉଲ୍ଲାସେ । ପୂର୍ଣ୍ଣ ସ୍ନାନ ସାର ଦାନ କଲ ସେ ।୧୧୪।
ଦ୍ରବ୍ୟ ତଇଳ ତଣ୍ଡୁଳ ଅମ୍ବର । ଅବଶେଷେ ପଠାଇଲେ ସମ୍ବର । ୧୧୫ ।
ବେଶ କର ସାର ନୃପନନ୍ଦନା । କରାଇଲେ ରବି ଅର୍ଘ୍ୟ ବନ୍ଦନା । ୧୧୬ ।
ବେଶ କହୁବାକୁ ଅଗ ଦଶିଲ । ନେତ୍ରାଞ୍ଜନ ବିବେକକୁ ଧ୍ୱଂସିଲ । ୧୧୭ ।
ଏଣୁ ଉପମାଗଣ ଅନୁକୂଳ । ଅଭଦ୍ରତା ଭଜି ହେଲେ ଆକୁଳ । ୧୧୮ ।
ପୁଣି ଇଷ୍ଟଦେବୀ ନିଜ ମାତାଙ୍କୁ । ନିଉଁଛାଳି ଯେ କରାଇଲେ ତାଙ୍କୁ ।୧୧୯।
ଏଥିଉତ୍ତାରେ ଜ୍ୟୋତିଷକୁମାରୀ । କରଯୋଡ଼ି କହେ ଶୋ ସୁକୁମାରୀ ।୧୨୦।
ହେଲ ମେଲଣି ବରଭୁବନରେ । ଏକାଥିବା ଦିବ୍ୟଅବଧାନରେ । ୧୨୧ ।
କେମା ବାଧ ଅଳଙ୍କାର ଅପାର । ସ୍ନେହବାଣୀ କହି ଦେଲ କୃପାର ।୧୨୨।
ପଢ଼ା ଶୁକ ଗୋଟିଏ ସେହୁ ମାଗି । ସ୍ନେହ ଦତ୍ତ କଲ ତାହା ହେମାଙ୍ଗୀ ॥
ଗଲ ସେ ନାରୀ କର୍ଣ୍ଣାଟ ଦେଶକୁ । ଶୁଭେ ଅସିବ କର୍ମ ଉଦ୍ଦେଶକୁ । ୧୨୪ ।

---

୧୧୪ । ଭିକ୍ଷୁ—ଭିକାରୀ ବା ସନ୍ନ୍ୟାସୀ, ନାପିତ—ଭଣ୍ଡାରି, ରଜକ—ଧୋବା, ଉଲ୍ଲାସେ—ଖୁସି ହୋଇ ।
୧୧୫ । ତୈଳ—ତେଲ, ତଣ୍ଡୁଳ—ଚାଉଳ, ଅମ୍ବର—ଲୁଗା, ସମ୍ବର-ଜଳ ।
୧୧୬ । ରବି-ସୂର୍ଯ୍ୟ, ବନ୍ଦନା—ବନ୍ଦାପନା ।
୧୧୭ । ନେତ୍ରାଞ୍ଜନ—ଆଖି କଜ୍ଜ୍ୱଳ, ଆଖିରକଳା, ବିବେକ—ସଦ୍‌ବୁଦ୍ଧି, ଧ୍ୱଂସିଲ—ନାଶକଲା ।
୧୧୮ । ଅଭଦ୍ରତା—ହୀନ ବ୍ୟବହାର ।
୧୧୯ । ଇଷ୍ଟଦେବୀ—ଆରାଧ୍ୟଦେବୀ, ନିଉଛାଳି—ଗୋଡ଼ତଳେ ପଡ଼ି ।
୧୨୦ । ଜ୍ୟୋତିଷ କୁମାରୀ—ଜ୍ୟୋତିଷ ଘରର ଝିଅ ।
୧୨୧ । ବରଭୁବନ—ଶ୍ରେଷ୍ଠପୁର, ସ୍ୱାମୀଘର, ଦିବ୍ୟ ଅବଧାନରେ—ଉତ୍ତମ ବିଗ୍ରହରେ, ଭଲରୂପେ ଜାଣିବାରେ ।
୧୨୨ । ଅଳଙ୍କାର—ଗହଣା, ସ୍ନେହବାଣୀ—ସ୍ନେହକଥା, ଅପାର—ଅନେକ, କୃପାର—ଦୟାର ।
୧୨୩ । ପଢ଼ା—ଶିକ୍ଷିତ, ଶୁକ—ଶୁଆ, ଦତ୍ତ—ଦାନ, ହେମାଙ୍ଗୀ—ସ୍ୱର୍ଣ୍ଣବର୍ଣ୍ଣା ସ୍ତ୍ରୀ ।
୧୨୪ । ଉଦ୍ଦେଶ—କାମନା ।

କାନ୍ତି ଗନ୍ଧ ଫଳାବଳି ଝଳତ । ଯେ କର୍ବୂରକାନ୍ତି ଗର୍ବ ଦଳତ । ୧୨୫ ।
ଭାବି ସୀତା ରାମ ପଦସାରସ । ଉପଇନ୍ଦ୍ର ସାରବର ହରଷ । ୧୨୬ ।

---

## ଚତୁର୍ଥ ଛାନ୍ଦ

( ଲବଣ୍ୟବତୀଙ୍କୁ ବେଶ କରିବା )

ରାଗ—ରସକୋଇଲି ବାଣୀ

ଏଥୁଅନ୍ତେ ଶୁଣ ରସିକଜନେ । ଦିନେ ବିଚାରି କଲେ ସଖିମାନେ । ଅମ୍ଭ ସଜନୀ ଯେ ସୁନ୍ଦରୀ ସାର । ନାହିଁ ନୋହିବ ନ ଥିବ ସଂସାର ସେ । ପୁଣି ତ ଶୋଭି ବୟସେ ଯେ । ଅମ୍ଭ ଲୋଚନଙ୍କୁ କବି ବଚନଙ୍କୁ ପବିତ୍ର କରିବା ବେଶେ ଯେ । ୧ । ଏମନ୍ତ ଭାବ ଜଣାଇଲେ ଯାଇଁ । ଜନନୀ

---

୧୨୫ । କାନ୍ତି—ରୂପ,ଗନ୍ଧଫଳୀ—ଚମ୍ପା,କର୍ବୂର--ସୁନା, ଗର୍ବ—ଅହଂକାର
ଦଳତ—ଦଳିଦେବା ।
ଲବଣ୍ୟବତୀର ରୂପ ଚମ୍ପାଫୁଲ ବର୍ଣ୍ଣଠାରୁ ଅଧିକ ଉଜ୍ଜ୍ୱଳ ସେହି ରୂପ ତେଜରେ ସୁନାର ଉଜ୍ଜ୍ୱଳତା ପରାସ୍ତ ।

୧୨୬ । ପାଦ ସାରସ—ପାଦପଦ୍ମ, ହର୍ଷ—ଆନନ୍ଦ ।

ଭାବାର୍ଥ

ଲବଣ୍ୟବତୀ ପୁଷ୍ପବତୀ ହେବାରୁ ରଜାଘର ବିଧି ଅନୁସାରେ ଶୁଦ୍ଧ-ସ୍ନାନ ହେଲା । କବି ତାହା ଉପମା ଦେଇ ବର୍ଣ୍ଣନା କରିଛନ୍ତି ।

---

## ଚତୁର୍ଥ ଛାନ୍ଦ

୧ । ରସିକ ଜନ—ରସିକ ଲୋକ, ସୁନ୍ଦରୀସାର—ପ୍ରଧାନ ସୁନ୍ଦରୀ, ଦିନେ ସଖିମାନେ ବିଚାରି କଲେ ଅମ୍ଭର ସଖି (ଲବଣ୍ୟବତୀ) ସମସ୍ତ ସୁନ୍ଦରୀମାନଙ୍କ ମଧ୍ୟରେ ପ୍ରଧାନ ଅଟେ, ଏପରି ସୁନ୍ଦରୀ ଜଗତରେ ନାହିଁ କି ହେବ ନାହିଁ କି ହୋଇ ନାହିଁ । ପୁଣି ତାର ଯୁବା ବୟସ ହୋଇଛି, ଏପରି ତାଙ୍କୁ ବେଶ କରିବା ଯାହା ଦେଖି ଅମ୍ଭମାନଙ୍କ ଆଖି ପବିତ୍ର କି ତୃପ୍ତ ହେବ ଓ କବିମାନେ ସେ ଶୋଭା ବର୍ଣ୍ଣନା କଲେ ତାଙ୍କର କବିତା ମଧ୍ୟ ଜଗତରେ ପ୍ରଶଂସା ପାଇବ ।

ତର୍ଜ୍ଜିଲେ ଅଙ୍କ ଡକାଇ । କି କର ତୁମ୍ଭେ କେମା ପାଶେ ଥାଇ । ସୁବେଶ ମୀତ ନ କର କପାଇଁ ସେ । କେ ଜାଣେ ତାହା ମାନସ ଗୋ । ତୁ ମନେ କରୁଛ ଭୂଷଣଭୂଷା ମୁଁ କାହିଁକି ହୋଇବ ବେଶ ଗୋ । ୨ । ରସବିଷୟ ଶ୍ରବଣ କରିବା । ବନ୍ଧପଟଳପଟଳୁ ଗୃହିବା । ଦିବ୍ୟଅଳଙ୍କାରେ ମଣ୍ଡନ ହେବା । ଏତେ କଥାରେ ବଶ ହୋନ୍ତି ଯୁବା ଯେ । ଶୁଣି ସୀକାର କର ଯେ । ବ୍ୟାଧିବନ୍ତର ବାଞ୍ଛିତ ଉପଚାର ବୈଦ୍ୟ ବିହିଲାର ପରି ଯେ ।୩। ଇଙ୍ଗିତ୍ତୁ ଜାଣିଲେ ସଙ୍ଗିନୀବ୍ରାତ । ହେଲ କୋମଳଅଙ୍ଗୀ ଅଙ୍ଗୀକୃତ । ବାଙ୍କ ନୟନ ବିକାରରୁ ଜାଣି । ଚତୁରୀ ପରିବାରୀମାନେ ପୁଣି ଯେ । ଗୃଙ୍ଗଡ଼ୀ ଭୂଷଣ-ପେଡ଼ି ଯେ । ଯତନ ରତନମଣ୍ଡନ ବସନ ବାଛୁଲେ ସଜନୀ ଫେଡ଼ି ଯେ । ୪ । ମଞ୍ଜୁ ବିଦ୍ୟୁତବିଜ ପରିପ୍ରେ ରାଜି । ଗୃହିଲେ ନୟନ ହୋଇବ ବୁଜି । ଅଳଙ୍କାକୋଷେ ଥିବ ଅବା ତୁଳ୍ପି । ହେଜ କରିବ ଧାଡି ଅବା ମୂର୍ଚ୍ଛି ସେ । ଏକାଳେ ସଜାଡ଼ି ଆଣି ଯେ । ଫୁଲ ଗୃଙ୍ଗୁଡ଼ା ଚନ୍ଦକପେଡ଼ା ଫେଡ଼ି ସୁବାସ-ତଇଲ ପୁଣି ଯେ । ୫ ।

---

୨ । ତର୍ଜ୍ଜିଲେ—ଗାଳିଦେଲେ, ମାନସ—ମନ, ଭୂଷଣଭୂଷା—ଅଳଙ୍କାର ମଧ୍ୟରେ ଶ୍ରେଷ୍ଠ ।

ଏହିକଥା ମନେକରି ସଖିମାନେ ଲାବଣ୍ୟବତୀଙ୍କ ପାଇ କହିଲେ ଅଜ ମା ଜାଙ୍କ ଗାଳିଦେଇ କହିଲେ ତୁମ୍ଭେମାନେ କଣ କରୁଛ ? ଲାବଣ୍ୟବତୀଙ୍କୁ ବେଶକର । ହେ ସଖି ! କିଏ କାହାମନ କଣ ସେ କଥା ଜାଣେ,ତୁମେ ଭାବୁଥିବ ମୋତେ ଏମାନେ କି ବେଶ କରିବେ ମୁଁ ତ ସବୁ ଗହଣାମାନଙ୍କ ଠାରୁ ଅଧିକ ସୁନ୍ଦର । ଅଜ କାହିଁକି ବେଶ ହେବ ।

୩ । ଆଦି ରସ ବିଷୟକୁ ଶୁଣିବା, ବନ୍ଧ ପଟଳ ୬୪ପ୍ରକାର ବନ୍ଧ ଦେଖିବା, ସୁନ୍ଦର ଗହଣା ପିନ୍ଧିବା, ଏତେକ କଥାରେ ଯୁବା ପୁରୁଷ ବଶ ହୁଅନ୍ତି । ଏହା ଶୁଣିକରି ଲାବଣ୍ୟବତୀ ସ୍ୱୀକାର କଲ, ବ୍ୟାଧିମନ୍ତ—ରୋଗୀ, ବାଞ୍ଛିତ—ଇଚ୍ଛା କରିବା,ଉପଚାର—ଔଷଧାଦି,ଅର୍ଥାତ୍ ରୋଗୀ ଯାହା ଭଲପାଏ ବୈଦ୍ୟ ଯେବେ ସେହିପରି ଚିକିତ୍ସା କରେ ସେ ସନ୍ତୋଷ ହୁଏ; ସେହିପରି ସଖିମାନଙ୍କ କଥାରେ ଲାବଣ୍ୟବତୀ ରାଜିହେଲ ।

୪ । ସଙ୍ଗିନୀ—ସଖି, ବ୍ରାତ—ସମୂହ, ନୟନ ବିକାର—ଅଖିଛଟା, ଫେଡ଼ି—ଫିଟାଇ ।

୫ । ମଞ୍ଜୁ—ସୁନ୍ଦର, ବିଦ୍ୟୁତବିଜ—ବିଜୁଳିର ତେଜ, ଅଳଙ୍କାର କୋଷ-ଗହଣା ରହିବା ସ୍ଥାନ, ଚନ୍ଦକପେଡ଼ି—ଗୋଲ ପେଡ଼ି ।

ସଜବଧୂ ସଜ ସଜନୀ ଦେଖି । ଆସନେ ବସାଇ ପ୍ରସନ୍ନମୁଖୀ । ଅଗେ
ଦେଖାଇଲେ ମୁକୁର ମାଜ । ହାର ନିର୍ମଳେ କି ଶରଣ ଭଜ ସେ ।
ଫେଡ଼ିଲେ କୋମଳ ବାଳ ଯେ । ବେଗରେ ଉଭଳ-ଯୋଗରେ ଶଇଳ-
ସୁତାଏ କଲେ କୋମଳ ଯେ । ୬ । ଚରମେ ପଡ଼ି ମନୋରମ ଦିଶେ ।
ମଧ୍ୟେ କି ନିଶା ଘନ ଦୁଇପାଶେ । ପ୍ରଭାବୃନ୍ଦି ଦେଖି ମୁଖଚନ୍ଦ୍ରର । ପଳାଇ
ଯାଉଛି କି ଅନ୍ଧକାର ସେ । ସଖୀଏ ଜାଣନ୍ତି ବିଶେଷ ଯେ । ଚାମର ମୟୂର
ପୁଚ୍ଛ ଯା ଗୁଞ୍ଜନ୍ତି ନିଉଁଛାଛନ୍ଦ କେଶେ ଯେ । ୭ । ମର୍ଦ୍ଦଳାକାର କଙ୍କତିକା
ଫଳି । କାଙ୍ଗୁଲ କାମ ସୁଷମା ପିତୁଳୀ । ସୁସଞ୍ଚ ଘଞ୍ଚ ଦଶନ ଅବଳି ।
ଗଳିବ କି ନାହିଁ କୁନ୍ତଳ ଭୁଲି ସେ । ଅଳୀ ଖେଡ଼ିକା ଗଳାଇ ଯେ ।
ନଖେ ଝଙ୍କାର ଦେଇଣ ବେଶକାରୀ ଦେଲା କେଶ କୁଣ୍ଡିଅଇଁ ଯେ । ୮ ।
ମାଙ୍ଗଭାଙ୍ଗ ରଖି ଉତ୍ତମାଙ୍ଗରେ । ଅସ୍ଫୁଟ କର ସାମନ୍ତଲା ଧୀରେ । କରେ
ଧର ମୂଳେ ଭଡ଼ା ଭଡ଼ନ୍ତେ । ଅଦ୍ଭୁତ ଉପମା ଜନ୍ମିଲା ଚିତ୍ତେ ସେ ।
କି କୋକନଦ ମଧ୍ୟରୁ ଯେ । ସ୍ରବୁଛି କାଳନ୍ଦୀ ଦ୍ରବୁଛି ଶୃଙ୍ଗାର ହା ହା ସେ
ଅତ୍ୟନ୍ତ ଗୂଢ଼ ଯେ । ୯ । ରଙ୍ଗଭଣ୍ଡି ଭର ଧବ୍ୟ ଜୁଡ଼ାକୁ । ସଜାଡ଼ିଲେ
ଯୁବାଜ୍ଞାନ ବୁଡ଼ାକୁ । ତମ ବିଦାର କି ହୋଏ ବାହାର । ପ୍ରଭାତେ ପ୍ରଭାବନ୍ତ
ପ୍ରଭାକର ସେ । ବେଣୀ ବିଧିପାଶ ସିଦ୍ଧି ଯେ । ଯୋଗିଜନମନ-ମୃଗ

---

୬ । ସଜବଧୂ—ବେଶହେବା କନ୍ୟା,ପ୍ରସନ୍ନ ମୁଖି—ପ୍ରଫୁଲ୍ଲ ବଦନୀ,ମୁକୁର-
ଦର୍ପଣ,ଫେଡ଼ିଲେ—ପିଟାଇଲେ,ଶଇଳ ସୁତାଏ—ପର୍ବତ ସୁତାମାନେ

୭ । ଚରମ—ପିଠି, ମନୋରମ—ସୁନ୍ଦର, ପ୍ରଭା—ତେଜ, ଚାମର--ଚଅଁର
ନିଉଁଛାଛନ୍ଦ—ପଦାଳଛନ୍ଦ, ବାଳ ଫିଟାଇ ଦେବାରୁ ତାହା ପିଠି
ଉପରେ ପଡ଼ି ସୁନ୍ଦର ଦେଖାଗଲା । ମଝିରେ ସିନ୍ଥି ଦୁଇପାଖରେ ଘନ
ପର ଦିଶିଲା । ମୁହଁର ଉଜ୍ଜ୍ୱଳତାରେ ଅନ୍ଧାର ଦୂର ହେଲା । ଚାମର ହେବ
ଭଳି ସଖିମାନେ ମୟୂର ପଙ୍ଖାରେ ବିଞ୍ଚିଲେ ।

୮ । ମର୍ଦ୍ଦଳାକାର—ମର୍ଦ୍ଦଳର ଉପରଭାଗ ପର, କଙ୍କତିକା—ପାନିଅ,
ସୁସଞ୍ଚ—ସୁନ୍ଦର, ଘଞ୍ଚ—ଲଗାଲଗି, ଦଶନ—ଦାନ୍ତ, ଅବଳି—ସବୁ,
କୁନ୍ତଳ—ବାଳ, କେଶ—ବାଳ ।

୯ । ମାଙ୍ଗ—ସୁନ୍ଥା, ମାଙ୍ଗଭାଙ୍ଗ ରଖି—ସୁନ୍ଥାକାଟି, ଉତ୍ତମାଙ୍ଗ—ମୁଣ୍ଡରେ,
କୋକନଦ—ରକ୍ତପଦ୍ମ, ଦ୍ରବୁଛି—ତରଳିଯାଉଛି । ଶୃଙ୍ଗାର—
କାମକ୍ରୀଡ଼ା ।

ବନ୍ଧନେ କି କଲେ କିଅପଣୀ ବାନ୍ଧି ଯେ । ୧୦ । ସିନ୍ଦୂରଗାର ସୀମନ୍ତରେ ଦେଲେ । ବିଧୁନ୍ତୁଦକୁ ବିଧୁ ହାଣିଥିଲେ । ଶୁଣି ନାହିଁ କି ସେ ରଥାଙ୍ଗ ଘାତ । ଅଜ୍ଞ ହୋଇଛନ୍ତି ରକତ ବ୍ୟକତ ସେ । ସେ କ୍ଷତ କ୍ଷତଜ ଗ୍ରହି ଯେ । ଲଲସେ ଅସେ ବଦନବିଧୁ ପାଶେ ନ ଗସେ ଭୟୁ ପାଇ ଯେ ।୧୧। ଜ୍ୟୋତିମୋତି ମଥାଜାଲି ମଣ୍ଡିଲେ । ମଣ୍ଡିଲେ ନାହିଁ ଧଇର୍ଯ୍ୟ ଖଣ୍ଡିଲେ । କି ନୀଳମଣି ଧରଣୀରେ ଅପି । ଗବାକ୍ଷେ ଗଳି ପ୍ରକାଶିତ ଶଶୀ ଯେ । ଜୁଡ଼ାଜାଲିଏ ସଦୃଶ ଯେ । ଶ୍ୟାମଳ କମଳ କଳାରେ କଲି କି ମେକ୍ଷଣ ସୁଧାବରଷା ଯେ । ୧୨। ବକଚଉଁରି ହେମଦୁବନ୍ଧସ । ଦେବାରୁ ଦିଶିଲା ଏମନ୍ତ ପରି । କାମ ଯମୁନାଜଳକେଳି ଇଚ୍ଛି । ସୁବର୍ଣ୍ଣନାବ ଯୋପଣୀ କରିଛି ସେ । ଦୁବ ଯା କମ୍ପିଲା ହୋଇ ଯେ । ଠାରେ କି ନାଇ ନର

---

୧୦ । ରଙ୍ଗତୁଣ୍ଡି—ଲାଲପାଟ ଡୋର, (ଭିଡ଼ା) । ତମ—ଅନ୍ଧାର, ପ୍ରଭାବନ୍ତ-ଉଜ୍ଜ୍ୱଳ, ପ୍ରଭାକର—ସୂର୍ଯ୍ୟ, କିଅପଣୀ—ଅଳଙ୍କାରର ନାମ, ଯୁବକ ଜ୍ଞାନ ହରଣ କରିବାକୁ ଜୁଡ଼ାକୁ ପାଟଫୁଲ ଦେଇ ବାନ୍ଧିଲେ, ସେ ଦେଖାଗଲା ଅନ୍ଧାରରେ ଯେପରି ଲାଲସୂର୍ଯ୍ୟ ( ବାଲରବି ) ଉଦୟ ପରି କଳା ବାଳରେ ଲାଲ ପାଟଫୁଲ ସେହିପରି ଦିଶିଲା । ପୁଣି ତା ଉପରେ କିଅପଣୀ ଦେବାରୁ ଯୋଗୀମାନଙ୍କର ମନମୁଗ୍ଧ ହେଲା ।

୧୧ । ସୀମନ୍ତ—ମଥା, ବିଧୁନ୍ତୁଦ—ରାହୁ, ବିଧୁ—ଚନ୍ଦ୍ର, ବିଷ୍ଣୁ । ରଥାଙ୍ଗ—ଚକ ସୁଦର୍ଶନ ଚକ, ବ୍ୟକତ-ପ୍ରକାଶିତ, କ୍ଷତ-ଘା । ରାହୁଗଳା ବିଷ୍ଣୁ ଚକରେ ହାଣିବାରୁ ରକ୍ତ ବୋହିଗଲା, ମୁଣ୍ଡ ସିନ୍ଦୁର ରକ୍ତ ବୋଲି ରାହୁମୁଖ ଚନ୍ଦ୍ରକୁ ଗ୍ରାସ କରି ପାରିଲା ନାହିଁ । କାରଣ ବାଳ ବନ୍ଧା ଥିବାରୁ ମୁହଁରେ ପଡ଼ିଲା ନାହିଁ ।

୧୨ । ଜ୍ୟୋତି ମୋତି—ଉଜ୍ଜ୍ୱଳ ମୁକ୍ତା, ଧଇର୍ଯ୍ୟ—ବିବେକ, ଧରଣୀ—ପୃଥିବୀ, ଗବାକ୍ଷ—ଖିଡ଼କି, ଶଶୀ—ଚନ୍ଦ୍ର, ଶ୍ୟାମଳ—ଶାଗୁଆବର୍ଣ୍ଣ, କମଳକଳା—ପଦ୍ମଅଂଶ । ବର୍ଷାଦନେ, ସୁଧା—ଅମୃତ, ମୁଣ୍ଡରେ ମୋତି ଜାଲି ଥିବାରୁ କଳା ବାଳରେ ଝକ୍ ଝକ୍ ଦେଖାଗଲା । ଏହା ଦେଖି ଯୁବାଙ୍କର ଧୈର୍ଯ୍ୟ ରହିଲା ନାହିଁ, ପୃଥିବୀରେ ନୀଳମଣି ପଡ଼ିଲା ପରି, ଖିଡ଼କିବାଟେ ଚନ୍ଦ୍ର କିରଣ ପଡ଼ିବାରୁ ଜୁଡ଼ା ନାଲି ଦେଖାଗଲା । ଶାଗୁଆ ବର୍ଣ୍ଣ ପଦ୍ମପାଖୁଡ଼ାରେ ଧଳା ଭଅଁର ପଡ଼ିଲା କି ?

ନାଗ ନଗରେ ଏ ସମାନ ଶୋଭା ନାହିଁ ଯେ । ୧୩ । ସହଜେ ତ
କର୍ବୁରିତ ଅଳକା । ପକାଇଲେ ଭୃଙ୍ଗଶ୍ରେଣୀରେ ଡକା । ଦମ୍ଭ ଅରମ୍ଭ
ବିନାଶନ ଅଶେ । ମଞ୍ଜୁଳ କଲେ ଅବତଂସ ଶେଷେ ସେ । ଏମନ୍ତ
ଚିତ୍ତରେ ଭାଳି ଯେ । ମର୍କତନଳୀରୁ ବାହାର ଯାଉଛି କି ଅତି କୁଳିତ
ଗୁଳି ଯେ । ୧୪ । ଅଳକା ଉର୍ଦ୍ଧ୍ୱେ ଝିଲିମିଲିମାଳୀ । ଝଟକେ ଛଟକେ
ଖଞ୍ଜିଲେ ଅଳୀ । ଏମନ୍ତ ଅଦ୍ଭୁତ ନ ଥିଲା ଦେଖା । ବିନା ମେଘରେ
ସ୍ଥିର ବିଦ୍ୟୁଲ୍ଲେଖା ସେ । ପାଶକେ ଧାଡ଼ିଏ ତାରା ଯେ । ଇଚ୍ଛାରେ ନେବ
ବନ୍ଦୀ ହେବ ମଣ୍ଡିଲା ଅନଙ୍ଗ ବିଚିତ୍ରକାରା ଯେ । ୧୫ । ଲଲାଟପଟ୍ଟ ଅର୍ଦ୍ଧ-
ଗିରି ପରି । ମୃଗମଦ ତହିଁ ତିଳକ କରି । ରାହୁ ବାଦ ଇଚ୍ଛି ନିଶାନାୟକ ।
ଭୟଇ ଅଣି ଅଢ଼େଣୀ ଶାୟକ ସେ । ରହିଛି ସଂଯତ ହୋଇ ଯେ ।
ଅଳକା ନିୟମସୀମାକୁ ଲଙ୍ଘିଲେ ହାଣିମ ସଂଶୟ ନାହିଁ ଯେ । ୧୬ ।
କର୍ଣ୍ଣେ ତାଟଙ୍କ ମଣ୍ଡିଲେ ବିଗୃର । କବି ଗୀଷ୍ପତି ନାମ୍ନି ଅଣି ଧରି । ଜୀବ
ଭାର୍ଗବଙ୍କୁ ବାନ୍ଧିଲା କି ସେ । ଆନନ ବେଳାପାଶେ ବେଣୀ ପାଶେ ସେ ।
ନେତ୍ରାନ୍ତେ କରେ ତର୍ଜ୍ଜନ ଯେ । ଶ୍ରୁତିରେ ଉପମା ନାହିଁତ ବୋଲନ୍ତି

---

୧୩ । ବଙ୍କ ଚଉଁରି—ଅଧାଚନ୍ଦ୍ର ତୁଲ୍ୟ ସୁନା ଗହଣା, ସୁନା ଦୁଇଟି ଦେବାରୁ ଦେଖାଗଲା । କାମ ଯମୁନା (କଳାବାଳ) ଜଳକେଳି—ପାଣିରେ ଖେଳିବା, ସ୍ୱର୍ଣ୍ଣନାବ—ସୁନାନାହା, ଯେପରି—ଅହୁଲ, ନର—ମନୁଷ୍ୟ, ନାଗ—ସର୍ପ, ନାକ—ସ୍ୱର୍ଗ । ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତିନିପୁରରେ ଏ ଶୋଭା ସଙ୍ଗେ କେହି ସମାନ ନୁହେଁ ।

୧୪ । ଅଳକା—ଅଳଙ୍କାର ବିଶେଷ ଓ ମୁଣ୍ଡର ଆଗର ଝୋଟବାଳ, କର୍ବୁରିତ—କୁଞ୍ଚୁକୁଞ୍ଚିଆ, ଭୃଙ୍ଗ—ଭଅଁର, ଅବତଂସ—ପଡ଼ିବା ବାହାରିବା, ନଳି ବନ୍ଧୁକ ଆଗରୁ ପଡ଼ିଥିବା ଚୂର୍ଣ୍ଣ କୁନ୍ତଳ ଦେଖି ଭ୍ରମରମାନେ ଲଜ୍ଜା ପାଇଲେ ପୁଣି ତା ଦେହରେ ଝୁମ୍ପା ନାଇବାରୁ ପୁରୁଷମାନଙ୍କ ଦମ୍ଭ ଶେଷ ହେଲା, ମର୍କତ ନଳୀରୁ ଗୁଳି ଗଲାଭଳି ମାରି ପୁରୁଷଙ୍କୁ ମାରିଲା ।

୧୫ । ଅଳକା—ମୁଣ୍ଡରଅଳକା, ଉର୍ଦ୍ଧ୍ୱେ—ଉପରରେ, ଝିଲିମିଲି ମାଳି—ସୁବର୍ଣ୍ଣର ଚକଚକିଆ ମୁଣ୍ଡର ମାଳା, ଅଦ୍ଭୁତ—ଆଶ୍ଚର୍ଯ୍ୟ, ବିଦ୍ୟୁଲ୍ଲେଖା—ବିଜୁଳି, ଅନଙ୍ଗ—ମଦନ, ବିଚିତ୍ର—ଆଶ୍ଚର୍ଯ୍ୟ, କାରା—କଇଦଘର

୧୬ । ଲଲାଟପଟ୍ଟ—କପାଳ, ମୃଗମଦ—କସ୍ତୁରୀ, ନିଶାନାୟକ—ଚନ୍ଦ୍ର, ଅଢ଼େଣୀ—ପାଖିକିଆ ଚାଲ, ଶାୟକ—ଶର, ସଂଯତ—ସ୍ଥିର, ନିୟମସୀମାକୁ ଲଙ୍ଘିଲେ—ବିଶେଷ ଅଲ୍ଲସ୍ଥିତ ହେଲେ ।

ତୁମ୍ଭେ କି କର ବର୍ଣ୍ଣନ ହେ ।୧୭। ରଚନ ଫୁଲ ଅଡହିଁ ଯତନ । ଝଲକେ ଝଲକା ଏ ଅନୁମାନ । ହର ମାରକୁ ଭସ୍ମ କର ଦେଲ । ଏକାଛକଙ୍କ ରଚ୍ଛଠାରେ ଥିଲ ସେ । ଜଣି ଶୋଭ୍ରେରେ ତାହାକୁ ଯେ । ଲୋକେ ବଡ଼ାଇ ଜାଣିବାକ ଛଡ଼ାଇ ମଣ୍ଡନ କଲେ ଏହାକୁ ଯେ । ୧୮ । ମଲ୍ଲୀକଢ଼ୀ ତ ପର-ପର୍ କହ । ମଣ୍ଡିଲେ ବେଣିଖଞ୍ଜାପର୍ ସେହ । ଶୋଭିଲେ ସଜନୀ ଏହି ବିବେକେ । ଭୁଲନ୍ତ ପୁଂସମନ ସଅସ୍କେ ସେ । ତହିଁକେ ପଡ଼ିବ ପୁଣି ଯେ । ବାଳୀ ବୋଲ ଭଲ ଗୁପତ ଶାଙ୍କୋଳୀ ପାଶରେ ରଖିବେ ଅଣି ଯେ ।୧୯। ନେଦ ଭୁରୁ ବାଣ କମାଣ ଯୋଗେ । ମରମକୁ ଭେଦେ ବିନା ପ୍ରୟୋଗେ । ଯାହା କଜ୍ଜ୍ୱଳ ଶାଣି ତହିଁ ଦେଲେ । ଅଜ କି ସଖୀ ସୃଷ୍ଟି ରଖିଥିଲେ ସେ । ବଡ଼ ଭଙ୍ଗା ସୁକୁମାର୍ ଯେ । କୁତ୍ସିତ ଜନକୁ ଏ ଶସ୍ତ୍ରେ ମାରିବ ନ ବିନ୍ଧେ ଏହା ବିଗୁର ଯେ । ୨୦ । ଶ୍ରବଣକୁ ଯାହା ଲଞ୍ଜି ଲଗିଛୁ । ସେ କି ଅଖିକି ତାକ ଶିଖାଉଛୁ । ବ୍ରହ୍ମହତ୍ୟା ହେବ ଧାତା ବଧରେ । ତୋ ଅରି କୁରଙ୍ଗ ହରତ ଧରେ ସେ । ପାରିଲେ ତାହାକୁ ମାର ଯେ । କାହିଁ କାହିଁଛୁ ବୋଲିଛୁ ଖୋଜିବାରେ ଚଅଳ ଗଡକ ତାର ଯେ । ୨୧ । ଘୋଣାରେ ଦେଲେ ମୋତି ନାକଚଣା । ଠିକଣା କର ଏ ଉପଲକ୍ଷଣା । ମାର ନେବ ମନମୀନ ଓଷ୍ଠ ର । ଥୋପ ଲଗାଇ କି ବଡ଼ଶୀ ଧର ସେ । ପୃଷ୍ଠକେ ମାଣିକ୍ୟ ଗୁଣା ଯେ । ଝିଷ୍ଠକେ କି ଦଶେ ଅନଳ କେଂ୍ୟାତ ସେ ଛଷ୍ଠକେ କରୁଛୁ ବଣା

---

୧୭ । ତାଷ୍ଟଙ୍କ—ଅଲଙ୍କାର ବିଶେଷ, କାପ, କବି—ଶୁକ୍ର, ବାଚସ୍ପତ—ବୃହସ୍ପତ, ଜୀବ—ବୃହସ୍ପତ, ଭାର୍ଗବ—ଶୁକ୍ର, ଅନନ—ମୁହଁ, ନେତ୍ରାନ୍ତେ—ଅଖି ଶେଷରେ, ଶ୍ରୁତ—କର୍ଣ୍ଣ ।

୧୮ । ହର—ମହାଦେବ, ମାର—କନ୍ଦର୍ପ, ଏକଛତ୍ରକ—ଏକା ସୁନ୍ଦରୀ ଶିରୋମଣି ।

୧୯ । ମଲ୍ଲୀକଢ଼ି—ଅଳଂକାର ବିଶେଷ, ପରପର୍—ଫିରଫିର୍, ବିବେକେ—ବୁଦ୍ଧିରେ, ସଅସ୍କ—ଭ୍ରମର, ବାଳୀ—ସ୍ତ୍ରୀ, ଶାଙ୍କୋଳ—ବେଡ଼ି ।

୨୦ । ନେଦ—ଅଖି, ଭୁରୁ—ଭ୍ରୂଲତା, କମାଣ—ବନ୍ଧୁକ, ମରମ—ଦେହ, ଭଙ୍ଗା—ପଣ୍ଡିତା, କୁତ୍ସିତ ଜନ—ସାମାନ୍ୟ ଲୋକ ।

୨୧ । ଶ୍ରବଣ—କାନ, ଲଞ୍ଜି—କଳାଗାର, ଧାତା-ବିଧାତା ବଧ—ବିନାଶ, କୁରଙ୍ଗ—ମୃଗ ।

ଯେ ॥ ଗଣ୍ଡେ ତୂର୍ଣ୍ଣେ କର ମକରୀ ଝଳି । ମୁକୁରବିମ୍ବେ ତ ତମାଳବଲ୍ଲୀ ।
ଚିବୁକେ ଭ୍ରମରୀ ଝମ୍ପୁ ବିନ୍ଦୁକୁ । ମଧୁ ନ ପିଏ କି ଏହି ବିବେକୁ ସେ ।
ନାସା କୀର ଅଛୁ ଝାମ୍ପି ଯେ । ବିମ୍ବ ହୋଇ ଥିଲେ ଜମ୍ବୁ ବୋଲି ମୋତେ
ନ ପୁଣ ଚଞ୍ଚୁରେ ଚୁମ୍ବି ଯେ । ୨୩ । କଣ୍ଠେ ଦାଅନ୍ତେ ମୋତି ଗୁପସରୀ ।
ରହିଲେ ଉପମାଏ ଅପସରି । କି କମ୍ବୁ ଜିଣିଲା ଯଶ ପ୍ରକାଶ । ମତ୍
କପୋତ କି କରୁଛନ୍ତି ହାସ ସେ । ଯୋଡ଼ିମାଳି କାଚମାଳି ଯେ । ଅଳି
ମାଳିଅଳି କେତେକ କହିବା ଯେତେକେ ମଣ୍ଡିଲେ ଅଳୀ ଯେ । ୨୪ ।
ଫୁଲ୍ଲ ଲମ୍ବି କଲା ଚରମ ଶୋଭା । ଖେଳାଇବା ପାଇଁ ଉରମ ପ୍ରଭା । ଶରଦେ
କାମ କି ମଣ୍ଡନ କଲା । ନୀଳରଙ୍ଗ ପୀତବର୍ଣ୍ଣେ ଶୋଭିଲା ସେ । ବିଚିତ୍ରଦୃଷ୍ଟି
ପ୍ରକଟି ଯେ । କି ଇନ୍ଦୀବର ଶୋଣକଞ୍ଜ କୁମୁଦ ନିର୍ଜଳ ନଦୀରେ ଫୁଟି ଯେ ॥
ରୋମାବଳୀ-କର ଅଛୁ ପ୍ରସାରି । ଯଉବନ ଗଜ କୁଚ ଅମରୀ । ଚୈଳ
ଘୋଡ଼ଣୀ କି ମଣ୍ଡନ ହାରି । ପ୍ରବାଳ ମାଳା କି ବଳିଲଙ୍ଘି ସେ । ପଦକ
ମାହୁନ୍ତ ସ୍ଥାନୀ ଯେ । ଧନ୍ୟ ଧନ୍ୟ ସୀମା ସୁଷମା କଲେ ତା ଏହି ଉପମାକୁ
ଘେନି ଯେ । ୨୬ । ବାହୁଟିସାର ଭାବ ଦେଲେ ତାହିଁ । ଜ୍ଞାନ ତାଡ଼ନକ
ତାଡ଼କ ବହି । ଅଙ୍ଗୁଳିପଠାରେ ମଣିବନ୍ଧ ପଛେ । ଅଙ୍ଗୁଳି ମଣ୍ଡିଲେ
ଅତ୍ୟନ୍ତ ସ୍ୱଚ୍ଛ ସେ । ଦେଲେ ମରକତ ଚୁଡ଼ି ଯେ । ସଖୀମାନେ ଦାମ

---

୨୨ । ଘୋଣା—ନାକପୁଡ଼ା, ଉପଲକ୍ଷଣା—ଉପମା, ପୁଟକେ—ପୁଡ଼ାରେ
ଅନଳ—ଅଗ୍ନି ।

୨୩ । ଗଣ୍ଡେ—ଗାଲରେ, ତୂର୍ଣ୍ଣେ—ଶୀଘ୍ର, ମକରୀ—ମକର ରୂପ ଚିତ୍ର,
ମୁକୁର ବିମ୍ବ—ଆରସୀ, ତମାଳବଲ୍ଲୀ—ତମାଳପତ୍ର, ଚିବୁକେ—
—ଗାଲରେ ଭ୍ରମରୀ—ଚିତ୍ରମାଛି, ବିମ୍ବ—ପାଚିଲା କଇଁଣିକାକୁଡ଼ି,
କୀର—ଶୁଆ, ଜମ୍ବୁ—ଜାମୁକୋଳି ।

୨୪ । ଗୁପସରି—ଗଳାର ଅଳଙ୍କାର, ଅପସରି—ଘୁଞ୍ଚି, କମ୍ବୁ—ଶଙ୍ଖ,
ଯୋଡ଼ିମାଳି—ମାଳିସବୁ ।

୨୫ । ଫୁଲ୍ଲ—ଝୁମ୍ପା, ଚରମ—ପିଠି, ପ୍ରକଟି—ପ୍ରକାଶ ହୋଇ, ଇନ୍ଦୀବର
—କଇଁ, ଶୋଣକଞ୍ଜ—ରକ୍ତକଇଁ ।

୨୬ । ରୋମାବଳୀ—ଲୋମସବୁ, କର—ହାତ, ହାତୀଶୁଣ୍ଢ-କଳଶ ପ୍ରସାରି
—ଲମ୍ବାଇ, ଗଜ—ହାତୀ, ଅମରୀ—ଦେବସ୍ତ୍ରୀ, ଚୈଳ—କାଞ୍ଚୁଲା,
ଘୋଡ଼ଣୀ—ଘୋଡ଼ାଇବା ଜିନିଷ, ହାରି—ହାର, ପ୍ରବାଳ—
ପୋହଳା, ସୁଷମା—ସୁନ୍ଦର ।

ଭ୍ରମରେ ଭ୍ରମରେ ଭ୍ରମରେ କି ଅବା ଜଡ଼ି ଯେ । ୨୭ । ସଖୀମାନେ ପାଞ୍ଚ ଅଙ୍ଗୁଳି ଗୁହିଁ । କଲେ ପାଞ୍ଚ ପାଞ୍ଚ ନାରାଚ ରହି । ପଞ୍ଚନାରାଚ ଭସ୍ମ ହେଲା ଦିନ । ଧୋଇଲେ କି ଦେଖି ଏ ରମ୍ୟ ସ୍ଥାନ ସେ । ଭେଦିବ ପଞ୍ଚମନଙ୍କୁ ଯେ । ପଞ୍ଚରତ୍ନ ଦେଇ ପୂଜା କରିବା କି ବୋଲି ମୁଦି ଦେଲେ ତାଙ୍କୁ ଯେ । ୨୮ । ହରିତାଳୀ କାଳି ଘେନି ବନିତା । ପଦ ଉପରେ ଉଙ୍କୁ-ଟାଇ ଲତା । ସୁନାକଛପ ବିଧି ବିରଚନା । ଫୁଙ୍କିଲେ ତହିଁ ମରକତ ମୀନା ସେ । ବେଢ଼ରେ ସରୁ ଅଲତା ଯେ । ପାଟସୂତ୍ର ଫାନ୍ଦେ ଫାନ୍ଦିଲେ ତାହାକୁ କିବା କୌତୁକୀ ଧାତା ଯେ । ୨୯ । ହଂସକ ଯାହାଟି ଦେଲେ ବା ପାଦେ । ହଂସକୁ ଏମନ୍ତ କହିବ ନାଦେ । ଇଚ୍ଛାରେ ତ ସମ ନୁହ ଗତିକି । ଭୀତ ନ ଲଭିବ କିଛି ଏତିକି ସେ । ତୁମ୍ଭେ ତ ପୋଷିଲ ପକ୍ଷୀ ଯେ । ଅକ୍ଷି ନଥିବାର ଚିହ୍ନେ ଲକ୍ଷିବାର ତୁମ୍ଭର କି ଦୋଷ ଅଛି ଯେ ।୩୦। ବଳା ପାଦେ ଅଛି ଅବଳା କେହି । ଏହି ବିଚାରେ କି ଖଞ୍ଜିଲେ ସହି । ହୋଇଅଛି ପୁଣି ଅତି ନିର୍ମଳ । ଯୁବା ଚେତନା ଚମକ ଟମକ ସେ । ଖଞ୍ଜିଲେ ମଞ୍ଜୁ ମଞ୍ଜୀର ସେ ।

---

୨୭ । ବାହୁଟିସାର—ହାତରେ ଉତ୍ତମ ବାଜୁ, ଛବି—ଚନ୍ଦ୍ରାକର, ତାଡ଼ନକ—ଯେ ତାଡ଼ିଦିଏ, ତାଡ଼ଙ୍କ—ତାଡ଼, ମଣିବନ୍ଧ—ହାତଗଣ୍ଠି, ଅନ୍ତ୍ରଲୀ-ନଡ଼ୁ ବିଶେଷ, ଅନୁପମ ସ୍ୱଚ୍ଛେ—ପରିଷ୍କାର ଭାବେ, ଗୌରବର୍ଣ୍ଣ-ହାତରେ ମର୍କତ କି କଳାଙ୍ଗୀ ରତ୍ନର ଚୁଡ଼ି ଦେବାରୁ ଭ୍ରମର କି ଭଅଁରମାନେ ଭ୍ରମରେ କେତକୀ ଫୁଲରେ ବସି ଚୁମ୍ବିଲା ପରି ଦେଖାଗଲା ।

୨୮ । ପାଞ୍ଚ—ଛାଡ଼ିବା, ପଞ୍ଚ ନାରାଚ—କନ୍ଦର୍ପ ଫୁଲଧନୁ, ରମ୍ୟ—ସୁନ୍ଦର, ଭେଦିବ—ଭେଦ କରିବ, ପଞ୍ଚମନଙ୍କୁ—ମନଭିତରକୁ, ପଞ୍ଚରତ୍ନ—ପାଞ୍ଚ ପ୍ରକାର ରତ୍ନ ।

୨୯ । ହରିତାଳୀ—ହଳଦିଆ ରଙ୍ଗ, କାଳି—ସ୍ୟାହି, ବନିତା—ସ୍ତ୍ରୀ, ଉଙ୍କୁଟାଇ—କୁଟି । ସୁନାକଛପ—ସୁନା କଇଁଛ, ମୀନା,—ଖଞ୍ଜିବା, ବେଢ଼ରେ—ଗୋଡ଼ରେ, ପାଟସୂତ୍ର—ପାଟସୂତା, କୌତୁକ—କୁତୂହଳୀ, ଧାତା—ବିଧାତା, ମରକତରେ ଲାଲରଙ୍ଗ ପରି ଗୋଡ଼ରେ ଅଲତା ଥିବାରୁ ପାଟ ସୂତାରେ ଗୁନ୍ଥିଲାପରି ଦେଖାଗଲା ବିଧାତା କୌତୁକରେ ଏହିପରି କରିଛି କି ?

୩୦ । ହଂସକ—ବଳା, ଗତିକି-ଗୁଳକି, ଭୀତ-ଭୟ, ଲକ୍ଷିବାର-ଦେଖିବାର ।

ତ୍ରିପୁର ତ୍ରିପୁର ପର ଅତୁରକୁ ସ୍ମର କି ସାଜଲା ତୂର ଯେ । ୩୧ । ଛଡ଼ା-ଇବ ସେ ହିଙ୍କାରୀ ହଙ୍କାର । ବଢ଼ାଇବ ପୁଣି କାମ ବିକାର । ପ୍ରପଦେ ଦେଲେ ଝୁଣ୍ଟିଆ ବାଜେଣୀ । ନ ଜାଣି କାହିଁକି ଏଡ଼େ ସାଜେଣି ସେ । ସହଚରୀ ହୋଇ ଲୋଭୀ ଯେ । ଶାଢ଼ୀ ପାଲଟିବା ପାଇଁ ସେ ଅବନୀଶୋଭୀ କରାଇଲେ ଜଭୀ ଯେ । ୩୨ । ବାହାରକଲେ ନୀଳ ହୀନ-ଶାଢ଼ୀ । ସୁନ୍ଦର ଧଡ଼ୀ ଫୁଲ ଲଗା ପଢ଼ । ରଖିଲେ ରହିବ ମୁଠା ଭିତରେ । ସତେ ରଖିଥିଲେ ବଂଶନଳରେ ସେ । ଉଞ୍ଜିଲେ କୁଞ୍ଚିଲେ ସଖୀ ଯେ । ବାଳା ବଳ ଅଖି କାଚ୍ଛ ପିନ୍ଧାଇଲେ ଉଟମାଏ ରୁଣ୍ଡ ଦେଖି ଯେ । ୩୩ । ଉରଜେ ପଢ଼ ମୋହିଲା ନେତ୍ରକୁ । ମୁଦ୍ଧ ଥୋଇଲା କି ଜଳାଛତ୍ରକୁ । ସ୍ଥୂଳ ଦୁଇ ଲଚ ଲଚ ଧଇଁଲା । ଯନ୍ତ୍ରତୁମ୍ବୀ କି ନୀଳକଞ୍ଚ କଲା ସେ । ତ୍ରିକୋଣ ଚେଳ ଜଘନେ ଯେ । ରୋମାବଳୀଦଣ୍ଡ ମଣ୍ଡନ ଚବଳ ପରାୟେ ପରତେ ମନେ ଯେ । ୩୪ । ନିବଡ଼ ନୀବ ଛବ ଗଲା ଜଣା । କାମ ମନ୍ଦରେ ଜାଗ୍ରତକୁ ଠଣା । ରଚିଲେ କୁଞ୍ଚା ଅଗେ ଲମ୍ବି ପଡ଼ । ଜାଣେ ମଦନ ଯାଉଥିଲା ଯୋଡ଼ ସେ । ଜୀବ ଦେବ କରେ ବାନ୍ଧ ଯେ । ଯୁବାଙ୍କ ଅଧୋଗତିକି ବିଗ୍ରହ କି ତେମନ୍ତ ଏ ଧୂମପନ୍ଥ ଯେ । ୩୫ । ବାଜିବା ବେଳକୁ ଯେଉଁ

---

୩୧ । ଅଚଳା—ସ୍ତ୍ରୀ, ଚମକ—ଚମକାଇବା, ଢମକ-ବାଦ୍ୟ, ମଞ୍ଜୁ—ସୁନ୍ଦର, ମଞ୍ଜୀର—ପାଦଭୂଷଣ, ତ୍ରିପୁର-ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତିନିପୁର, ତ୍ରିପୁରପର—ମହାଦେବ, ଅତୁର—ଅସ୍ଥିର, ସ୍ମର—କନ୍ଦର୍ପ, ସାଜଲା—ଟିକିକଲା, ତୂର—ଶର ।

୩୨ । ହିଂକାରୀ—ଝିଣ୍ଟିକା ବିଶେଷ, ହଙ୍କାର—ଶବ୍ଦ, କାମବିକାର—କାମଭାବନା । ପ୍ରପଦେ—ପାଦଉପରେ,ଅବନୀଶୋଭୀ ପୃଥିବୀ ମଣ୍ଡନୀ ।

୩୩ । ହୀନ—ସରୁ, ବଂଶନଳୀ—ବାଉଁଶ ନଳ, ଉଞ୍ଜିଲେ—ସଜାଡ଼ିଲେ କୁଞ୍ଚିଲେ—କୁଞ୍ଚିକଲେ । ବାଳା—ଲାବଣ୍ୟବତୀ ।

୩୪ । ଉରଜେ-ସ୍ତନରେ, ନେତ୍ରକୁ ଅଖିକୁ, ମୁଦ୍ଧ—ବନ୍ଦକର, ଛତ୍ର—ଛତା ସ୍ଥୂଳ-ପିଣ୍ଡ, ଲୁଚ-ସୁନ୍ଦର, ଯନ୍ତ୍ରତୁମ୍ବୀ-ଲାଉଫଳ ବାଜା, ନୀଳକଞ୍ଚ-ନେଳଅରଙ୍ଗ, ତ୍ରିକୋଣ—ତିନି କୋଣିଆ, ଚେଳ-ଲୁଗା, ଚବଳ—ପତାକା, ପରତେ—ବିଶ୍ୱାସ ।

୩୫ । ନିବଡ଼—ଗାଢ଼, ନୀବ,—ଗଣ୍ଠି, ଜାଗ୍ରତ—ଚେତନା, ଠଣା-ସ୍ଥାନ, ଜୀବ—ପ୍ରାଣ, ଅଧୋଗତି—ମନ୍ଦଦଶା, ଧୂମପନ୍ଥ-ଧୂଆଁ ସରୁ ।

ରସନା । ଯୋଗୀକି ବୋଲିବ ଯୋଗେ ରସନା । ଯୋଗିଙ୍କି ବୋଲିବ ଯୋଗରେ ରସ । କଳାକେଳି ରସ ଲଭି ବିରସ ସେ । ଭାବି କେଶରୀ କଟିକି ଯେ । ଅତି ହରଷରେ ବାନ୍ଧିଲେ ବାନ୍ଧବୀ ବାଙ୍କେଣୀ କ୍ଷୁଦ୍ରଘଣ୍ଟିକି ଯେ । ୩୬ । ଭୁଞ୍ଜାଇଲେ ତଥି କର୍ପୂର ପାନ । ଏଡିକି ଅଧର ଦୁଇକେ ପରସନ୍ନ । ବିଦ୍ରୁମ କପି ରଙ୍ଗାଇଲେ ପୁଣ । ଅରୁଣ ଭଲି କି ସିନ୍ଦୁରେ ସ୍ନାନ ସେ । ଶୀତରେ ମୁକୁର ଦେଇ ଯେ । ହେଲା କି ନୋହିଲା ବୋଲି ପଚାରିଲେ ରମଣୀ ହସିଲା ହୋଇ ଯେ । ୩୭ । ଘୋଡ଼ାଇଦେଲେ ଯେ ଜରି ଘୋଡ଼ଣୀ । ଶମ୍ପାରେ ଅଚ୍ଛାଦିତ ନୀଳମଣୀ । ରୋପଣ ଚିତ୍ର ଅତୁଳା ପିତୁଳା । ଦେ କଲି କରି କେହି ସ୍ଥିର ହେଲା ସେ । ଅକ୍ଷି ପକ୍ଷୀ-ଅଠା କାଠି ଯେ । ଘୋଡ଼ାଇ ଦେଲେ କି ଏହି ଭାବନାରେ ଧନାକେତେ ଥାଇ ସୃଷ୍ଟି ଯେ । ୩୮ । ହିରଣ୍ୟତନୁରେ ଯେ କ୍ଷତକାରୀ । ଦାସବତ୍ସଳ ସ୍ୱାମ ନରହରି । ଧ୍ୟାନେ ଅଜିତ ଅଘ କରି ହତ । ଜୟଇନ୍ଦ୍ର ବୀରବର ରଚିତ ଯେ । ଏ ରସିକସିନ୍ଧୁ ଛାନ୍ଦ ଯେ । କବି ସେ ଜାଣିବେ ଯେତେ ଶ୍ରମ ଏଥି ଏ ବେଶପେଶଳ ଛାନ୍ଦ ଯେ । ୩୯ ।

---

୩୬ । ରସନା—ଜିଭ, ରସ ନା-ମନ୍ତ୍ରନାହିଁ, କେଶରୀ କଟି-ସିଂହ କଟି, କଳାକେଳି—ରତି ।

୩୭ । ଭୁଞ୍ଜାଇଲେ-ଖୁଆଇଲେ, ଅଧର—ଓଷ୍ଠ, ପରସନ—ପ୍ରସନ୍ନ ସୁନ୍ଦର ବିଦ୍ରୁମ—ପୋହଳା, ଅରୁଣ—ବାଳରବି, ମୁକୁର—ଆରସି ।

୩୮ । ଶମ୍ପା—ବିଜୁଳି, ସୃଷ୍ଟି—ପୃଥିବୀ ।

ଲବଣ୍ୟବତୀ ଉପରେ ଜରିଘୋଡ଼ଣୀ ଘୋଡ଼ାଇ ଦେବାରୁ ବିଜୁଳିପରି ଚକ୍‌ଚକ୍ ଦେଖାଗଲା । ଚିତ୍ର ପିତୁଳାକୁ ଦେଖିଲେ ଯେପରି ମନ ଲାଖି ରହେ ଅଠାକାଠିରେ ପକ୍ଷୀ ଯେପରି ଲାଖି ରହେ—ଲବଣ୍ୟବତୀର ରୂପ ମାଧୁରୀରେ ସେହିପରି ଯୁବାଜନଙ୍କ ମନ ଲାଖିଯିବ । ପୃଥିବୀର ଯୁବା ନଷ୍ଟ ହେବେ ଭାବି ଘୋଡ଼ାଇ ଦେଲେ ।

୩୯ । ହିରଣ୍ୟ—ରାକ୍ଷସ, ତନୁ—ଦେହ, କ୍ଷତକାରୀ—ଖଣ୍ଡିଆକାରୀ । ହିରଣ୍ୟ ଅସୁର ଦେହକୁ ଯେ ବିଦାରଣ କରିଥିଲେ, ଅଜିତ—ଅଜେୟ, ଅଘ—ପାପ, ହତ—ନାଶ, ପେଶଳ—ସୁନ୍ଦର ।

ଲବଣ୍ୟବତୀଙ୍କ ସଖିମାନେ ସବୁ ଗହଣା ଓ ଲୁଗା ପିନ୍ଧାଇଦେଇ ନାନା ପ୍ରକାର ହାସ ପରିହାସ କଲେ ।

# ପଞ୍ଚମ ଛାନ୍ଦ

( ଲବଣ୍ୟବତୀର ଫୁଲବଗିଚ୍ଚରେ ଭ୍ରମଣ )

ରାଗ—ବସନ୍ତ

ଏହି ସମୟରେ ସୁନ୍ଦରୀ ଛାମୁରେ ପ୍ରଭ୍ରମଞ୍ଜୁଳା ଜଣାଇଲା । ଅତି ମଧୁର ମଧୁଋତୁ ପ୍ରବେଶ କରୁଛି ଧନ ହେଲ ହୋଇଲା । ଶ୍ରବଣ । କର ନାହୁଁ ନବକାମିନୀ । ପିକବଚନେ ପୁନଃ ପୁନଃ ପ୍ରକାଶ କଲଣି ଅନ୍ଧାର ଯାମିନୀ । ୧ । ମଳୟଶିଖର ଶିରୀ ଗ୍ରେହ କର ବହିଲଣି ମନ୍ଦସମୀର । ସୁମନାକୁ ବାସ ଗ୍ରେହାଇ ନେବଟି ବୋଲି କହିଲଣି ଭ୍ରମର । କେଶର । କେଶରେ ହେଲେଣି ମଞ୍ଜୁଳ । କେଶରେ ମଣ୍ଡନ କରିବା ଭଳିରେ ଫୁଟିଲେଣି କେତେ ବଞ୍ଜୁଳ । ୨ । ମଲ୍ଲୀ ମାଧବୀ ମକରନ୍ଦ ସାଧବୀ ହେଲେଣି ବାନ୍ଧବୀ କାନନେ । ତୁଷାର ନାଶ ଗୃହି ହାସ ପ୍ରକାଶ କଲେଣି ପଙ୍କଜ-ଆନନେ । ହେଲଣି । ଚର୍ଚ୍ଚରୀ ପ୍ରକଟ କଟକେ । ଅତନୁ ଫୁଲର-ବିଶିଖ କାର୍ମୁକ ଘେନି ଚଳିଲଣି କାମୁକେ । ୩ । ଦୋଳା ଲୀଳା ଟଳିଗଲଣି ହରିର ଶରୀର ହେଲଣି ସ୍ୱେଦକୁ । ଚନ୍ଦନ କର୍ପୂର ସୁଧାଲେପପୂର ବ୍ୟଜନ ବଢ଼ାଇ ମୂଦକୁ । ଚତୁର । ଜାଣି ନ ଥିବୁ ତୁ କପାଇଁ । ଅଭି ଅଭିରାମ ଅଗ୍ରାମ ଦେଖିବା ବଜେ କରିବାକୁ

---

## ପଞ୍ଚମ ଛାନ୍ଦ

୧ । ମଧୁର—ମନୋହର, ମଧୁଋତୁ—ବସନ୍ତଋତୁ, ନବ-ନୂଆ, କାମିନୀ—ସ୍ତ୍ରୀ ପିକବଚନା—କୋଇଲି ସ୍ୱର, ପୁନଃ ପୁନଃ—ଥରକୁ ଥର, ଯାମିନୀ—ରାତ୍ରୀ ।

୨ । ମଳୟ ଶିଖର—ମଳୟ ପର୍ବତ ଉପର, ଶିରୀ—ଶୋଭା, ମନ୍ଦଧୀର, ସମୀର ପବନ, ସୁମନା—ଫୁଲ, ସ୍ତ୍ରୀ ବା ବାସ ଓ ବାସନା ଲଗା, ଭ୍ରମର—ଭଅଁର, ପୁରୁଷ କେଶର—ନାଗେଶ୍ୱର ଫୁଲ, କେଶରେ—ବାଳରେ, ଜୁଡ଼ାରେ, ମଞ୍ଜୁଳ—ସୁନ୍ଦର, ବଞ୍ଜୁଳ—ଅଶୋକ ଫଳ ।

୩ । ମକରନ୍ଦ—ମଧୁ, ସାଧବୀ—ସୁଲକ୍ଷଣୀ ପୂର୍ଣ୍ଣ, ବାନ୍ଧବୀ—ସଜନୀ (ଲବଣ୍ୟ ବତୀ) କାନନେ—ବଣରେ, ତୁଷାର—ବରଫ, ପଙ୍କଜଆନନେ—ପଦ୍ମ ମୁଖରେ, ଚର୍ଚ୍ଚରୀ—ପିଚକାରୀ, ପ୍ରକଟ—ପ୍ରକାଶ, ଅତନୁ—କନ୍ଦର୍ପ, ବିଶିଖ—ଶର, କାର୍ମୁକ—ଧନୁ, କାମୁକେ—କାମାସକ୍ତ ପୁରୁଷମାନେ ।

କଣାଇ । ୪ । ସଜନୀ ନିକର ଜାଣି ସୀତ୍କାର ମାର୍ଗ ପରିଷ୍କାର ରଚିଲେ । ଅମଳ କମଳ କୋମଳ ଚରଣ ପୀଡ଼ା ନୋହିବାକୁ ପାଞ୍ଚିଲେ । ପନ୍ନାରେ । ଗନ୍ଧସାର ଗୋଳି ସିଞ୍ଚିଲେ । ଯୂଥୀ ସେବତୀ ପାଖୁଡ଼ା ମିଶାଇ ଘନସାର ଚୂର୍ଣ୍ଣ ବାଞ୍ଛିଲେ । ୫ । ଝରି ପରିଖ ବାଞ୍ଛଣା ପାନମୁଣା ସଜନୀ ସଜାଡ଼ିଲେ ତହିଁ । ମନ୍ତ୍ରୀନନ୍ଦନା ଜଗତ ବନ୍ଦନାକୁ କରଭର ଦେଇ ଉଠାଇ । ସୁନ୍ଦରୀ । ସୃଷ୍ଟି ରାଜା ରାଜକୁମାରୀ । ଶିରରେ ଶ୍ୱେତଆତପତ୍ର ଟେକିଲେ ଚାମର ଚାଳନ ପ୍ରଚୁର । ୬ । କେଉଁ ପ୍ରବୀଣା ବୀଣାକୁ ବଜାଉଛି ଯାଉଛି ପ୍ରତୀତ ହେଉଛି । ବନ୍ଧୁରେ ବନ୍ଧୁର ବୀଥି ଏଥିରେ ସାବଧାନ ଥାଅ କହୁଛି । ଗମନେ । କେମାର ମୁଁ ମନେ କରଇଁ । ମନମଥ ରଥ ଯାତ୍ରା କି କରୁଛି ପଥ ମନୋରଥ ପୂରାଇ । ୭ । ଲଲାଟ ଲପନ ଚନ୍ଦ୍ର ଦରପଣ ଚିକୁର ଚାମର ଯହିଁରେ । ତରଙ୍ଗ କୁରଙ୍ଗନୟନ ଭୁବଙ୍ଗ କି ରଙ୍ଗ କରଇ ତହିଁରେ । କଳଶ । ଚକ୍ର କୁଚ ଶ୍ରୋଣୀ ଚଟୁଳ । କଟୀମେଖଳା ଘଣ୍ଟି ଯହିଁ ପ୍ରକଟି ଅଞ୍ଚଳ ପତାକା ଚଞ୍ଚଳ । ୮ । ଶୋଭି ଏ ବିଧିରେ ପ୍ରବେଶ ସଧୀରେ ପୀନସ୍ତନୀଏ ବିପିନରେ । ବୁଲିବା ଖେଳିବା କୁସୁମ ତୋଳିବା ଆରମ୍ଭିଲେ ତୋଷ ମନରେ । ତହିଁରେ । ଛଳ ଉକ୍ତିମାନ କହିଲେ ।

---

୪ । ସ୍ୱେଦ—ଝାଳ, ଲୀଳା—ଖେଳା, ସୁଧା ଲେପା—ଚୂନଲିପା, ବ୍ୟଜନ—ବିଚଣା, ମୁଦକୁ—ବନ୍ଦହେବାକୁ, ଅଭ—ବର୍ତ୍ତିମାନ, ଅଭିରାମ—ସ୍ନେହ, ସୁନ୍ଦର, ଅଗ୍ରମ—ବଗିଚା ।

୫ । ସଜନୀ ନିକର—ସଖୀସବୁ, ସୀତ୍କାର—ସମ୍ମତ, ମାର୍ଗ—ବାଟ, ଅମଳ—ପରିଷ୍କାର, କମଳ—ପଦ୍ମ, ପନ୍ନାର—ସୁବାସଜଳ, ଗନ୍ଧସାର—ଚନ୍ଦନ, ଘନସାର—କର୍ପୂର ।

୬ । ଝରି—ପାଣିମାଠିଆ, ପରିଖ—ପିକଦାନୀ, ପାନମୁଣା—ପାନ ରଖିବା ଜାଗା, କରଭର—ହାତଭର ଦେଇ, ସୃଷ୍ଟି—ସଂସାର, (ଏଠାରେ ସ୍ତ୍ରୀ ସଂସାର ) ସୁନ୍ଦରୀସୃଷ୍ଟି ରାଜା—ସୁନ୍ଦରୀ ଶ୍ରେଷ୍ଠା, ଶ୍ୱେତ—ଧଳା, ଆତପତ୍ର—ଛତା ।

୭ । ପ୍ରତୀତ—ବିଶ୍ୱାସ, ବନ୍ଧୁର—ଅବଡ଼ା ଖାବଡ଼ା, ବନ୍ଧୁରେ—ଲାବଣ୍ୟ-ବତୀର (ସଙ୍ଗିନୀର) ବୀଥି—ବାଟ, ମନୋରଥ-ମନକାମନା, ଲାବଣ୍ୟ-ବତୀ ଯିବାରୁ ବାଟରେ କନ୍ଦର୍ପର ରଥ ଗଲାପରି ଦେଖାଗଲା ।

୮ । ଲଲାଟଲପନ—ମୁଣ୍ଡ ଓ ମୁଖ, ଚନ୍ଦ୍ର—ଚନ୍ଦ୍ର, ଦର୍ପଣ—ଆରସି, ଚିକୁର—ବାଳ, ଚାମର—ଚଅଁର, ତରଙ୍ଗ କୁରଙ୍ଗ ନୟନ—ତରଳ

ଶୁଣି ପରଭୃତ ଚକିତ ସ୍ତମ୍ଭିତ ମୁନିବିଭୂତକି ବିହୁଲେ । ୯ । କହେ ଏକ
ନାଗ୍ରି ବିଶେଷେ ସୁନାଗ୍ରି ଏ ଦେଶରେ ବାସ କରିଛି । ଭୃଙ୍ଗ କିଂପୁରୁଷ
ଚଞ୍ଚଳ ମାନସ ଏଥି ତଥି ପୁଣ ଯାଉଛି । ତହିଁକି । ଛଳି କହିଲି କେଉଁ
ଭୀରୁ । ମହାବିବେକୀ ହୋଇ ତୁହି କିପାଇଁ ମଧୁପ ନାମକୁ ବିସ୍ମରୁ । ୧୦ ।
ଏକକୁ ଗୃହିଁ ଅବେକ ସଖୀ କହି ନିକଟେ ନାଗେଶ୍ୱର ମୋର । ବୋଇଲି
ହୋଇଥାଇଟି ନାଗେଶ୍ୱର ସୁପର୍ଣ୍ଣର କର ଆଦର । ସେ ଛଳେ । ଶଙ୍କିଲି
ନାଗେଶ୍ୱର କହି । ସୁମନାଭୂଷଣ ଦମ୍ପତି ପାଇବ ତାପରେ ଯାଇଣ

ମୃଗନେତ୍ର, ତୁରଙ୍ଗ—ଘୋଡ଼ା, କୁଚ—ସ୍ତନ, ଶ୍ରୋଣୀ—ପିଚ୍ଛ,
ପ୍ରକଟି—ପ୍ରକାଶ ହୋଇ, ଅଞ୍ଚଳ—କାନି ।

ଆରପଦରେତ ମନ୍ମଥରଥ ଲାବଣ୍ୟବତୀକି ଧରାଯାଇଛି—
ଯେଉଁଣେ ରଥରେ ତ ଚନ୍ଦ୍ରାତପ ଦର୍ପଣ ଥାଏ ଏ ଲାବଣ୍ୟବତୀ ରଥରେ
ମୁଣ୍ଡ ହେଲା ଚନ୍ଦ୍ର—ମୁହଁ ହେଲା ଦର୍ପଣ, ରଥ ପାଖରେ ଚଅଁର ପଡ଼େ
ଏହାର ବାଳ ହେଲା ଚଅଁର, ରଥରେ ଘୋଡ଼ା ଲାଗିଥାଏ—ଏହାର
ତରଳ ଅଖି ହେଲା ଘୋଡ଼ା, ରଥରେ କଳଶ ଓ ଚକ ଥାଏ—
ଏ ରଥରେ ସ୍ତନ ହେଲା କଳଶ, ପିଚ୍ଛ ହେଲା ଚକ, ରଥରେ ଘଣ୍ଟି
ବାଜେ ଏହାର କଟି ଘାଗୁଡ଼ି ହେଲା ଘଣ୍ଟି, ରଥରେ ପତାକା ଥାଏ,
ଏହାର କାନି ହେଲା ପତାକା ।

୯ । ପୀନସ୍ତନାଏ—ଉଚ୍ଚସ୍ତନାଏ, ବିଜନରେ—ବନରେ, ଫୁଲ ବଗିଚାରେ
କୁସୁମ—ଫୁଲ, ପରଭୃତ—କୋକିଳ, ମୁନିବିଭୂତ—ଋଷି ପ୍ରକୃତ ।
ଅର୍ଥାତ୍ ଏହାଙ୍କ କଣ୍ଠସ୍ୱରରେ କୋକିଳ ହାରିଯାଇ ଋଷିଙ୍କ ପରି
ତୁନି ହେଲା ।

୧୪ । ସୁନାଗ୍ରି—ବଣିଆ, ସୁନାଗ୍ରି ଫୁଲଗଛ, ଉତ୍ତମ ସ୍ତ୍ରୀ, ଭୃଙ୍ଗ—ଭଅଁର,
କିଂପୁରୁଷ—ଅସୁନ୍ଦର ପୁରୁଷ, ମାନସ—ମନ, ଭୀରୁ—ସ୍ତ୍ରୀ, ମହା
ବିବେକୀ-ଅତ୍ୟନ୍ତ ଜ୍ଞାନୀ, ମଧୁପ-ଭ୍ରମର, ମଦୁଆ; ବିସ୍ମରୁ-ଭୁଲିଯାଉ ।

ଜଣେ ସଖୀ କହିଲା, ଏଠାରେ ସୁନାଗ୍ରିଫୁଲ ଫୁଟିବାରୁ ଭ୍ରମର ଆସି
ସେ ଫୁଲରେ ବସି ଅବିବେକୀ ହୀନ ପୁରୁଷ ପରି ତାକୁ ଛାଡ଼ି ଅନ୍ୟ
ଫୁଲକୁ ଉଡ଼ି ଯାଉଛି—ଅନ୍ୟ ଜଣେ କହିଲା ନା ତା ନୁହେଁ—ତୁ ଭୁଲ
କରୁଛୁ । ଏଠାରେ ଲାବଣ୍ୟବତୀ ଥିବାରୁ କୁତ୍ସିତ ପୁରୁଷମାନେ ମଦୁଆଙ୍କ
ଭଳି ଅନାଇ ଅନାଇ ଚାଲିଯାଉଛନ୍ତି, ପୁରୁଷତ ଭ୍ରମର ପରି, ସେ ମଧ୍ୟ
କାମ ମଦରେ ମଦୁଆ ପରି ହୁଅନ୍ତି ।

ଅରୋହ । ୧୧ । କେ କାହାକୁ କହେ ମୋହଠାଇଁ ସଖୀ ରଖିଥିବୁ ଏକା କରୁଣା । ଦେବ ବଲ୍ଲଭକୁ ଲଭିବାରୁ ତୋତେ ବାଧାତା କଲଣି ଫୁରୁଣା । ସେ ଶୁଣି । ବୋଇଲା ଏ କଥା ଛାଡ଼ରେ । ଖୋଜିଲେ ନ ପାଇ ମୁଁ ବନ୍ଧୁଜୀବକୁ ପଡ଼ିଲି ବରାହ ଦାଢ଼ରେ । ୧୨ । କେଡ଼େ ଚତୁରରେ କହେ ସହଚରୀ ମୁଖକୁ ତାହାର ଅନାଇ । ବଶ କରିବାରେ ହୋଇଲୁ ଉତ୍ତରେ ମଲ୍ଲି ମଲ୍ଲି ହେଉ କିପାଇଁ । ସେ ବୋଲେ । ଭଙ୍ଗିରେ ଅନାକି ତେତାଇ । କୁଆଲୀ ହେଲଣି ଦେଖିଲୁ ଉତ୍ତରୁ ପଲାଶ ପାଶେ ଯା ଗମଇଁ ।୧୩। କେ କହେ ଅଶୋକ ଲଭିଲୁ ସୁନ୍ଦରୀ କେତକୀ ହେଲଟି ମୋହର । ସେ କହେ

---

୧୧ । ନାଗେଶ୍ୱର-ଫୁଲବିଶେଷ ସର୍ପରାଜ-ବାସୁକୀ, ଐରାବତ-ହସ୍ତୀ, ସୁପର୍ଣ୍ଣ—କଅଁଳପତ୍ର, ଗରୁଡ଼, ସୁମନ ଭୂଷଣ-ଫୁଲହାର ମଣ୍ଡିତ, ଦେବତାଙ୍କର ପିନ୍ଧିବା ପଦାର୍ଥ, ଜଣକୁ ଚାହିଁ ଅନ୍ୟଜଣେ କହିଲା ମୋପାଖରେ ନାଗେଶ୍ୱର ଗଛ ଅଛି । ଅନ୍ୟଜଣେ କହିଲା ନାଗେଶ୍ୱର ତ ବାସୁକୀ ସେ ହୋଇଥିଲେ ଗରୁଡ଼କୁ ଡାକ, ନା ତା ନୁହେଁ—ନାଗେଶ୍ୱର ଗଛର କଅଁଳପତ୍ର ଆଣି ବସିବା, ଅନ୍ୟଜଣେ କହିଲା ତା ନୁହେ, ନାଗେଶ୍ୱର ଐରାବତ ହସ୍ତୀ ଯାଇ ଚଢ଼ିଲେ ଦେବତା ଭୋଗ ପାଇବା, ଅନ୍ୟଲୋକ କହିଲା ନା ତା ନୁହେ, ନାଗେଶ୍ୱର ମହାଦେବଙ୍କୁ ଅରୋହ କି ପୂଜା କର ସୁମନ ଭୂଷଣ—କି ଶ୍ରେଷ୍ଠା ସ୍ତ୍ରୀ ଲାବଣ୍ୟବତୀ ଦମ୍ପତ୍ତି ପାଇବା ଉତ୍ତମ ବର ପାଇବା ।

୧୨ । ଦେବବଲ୍ଲଭ—ପୁନ୍ନାଗଗଛ, ଇନ୍ଦ୍ର, ବନ୍ଧୁଜୀବ—ବଧୁଲି ଫୁଲ, ପତି; ବରାହ ଦାଢ଼—ବଣର ବାରି ଦାଢ଼ରେ, କଣ୍ଟାଗଛ ବିଶେଷ, କେ ସଖି କାହାକୁ କହେ ମୋଠାରେ କରୁଣା କି ଦୟା ରଖିଥିବୁ, ଦେବବଲ୍ଲଭ—ଯେ ଇନ୍ଦ୍ରକୁ ପାଇବାରୁ ଅର୍ଥାତ୍ ଇନ୍ଦ୍ରପର ସ୍ୱାମୀ ପାଇବାକୁ ବାହୁ ତୋତେ ଆନନ୍ଦ କଲଣି, କଏ କହେ, ତୁ କଅଣ ଏ ପୁନ୍ନାଗ ଗଛ ଦେଖିବାରୁ ଆନନ୍ଦ ହେଉଛୁ । ଅନ୍ୟଜଣେ କହେ ସେ କଥା ଛାଡ଼, ମୁଁ ବନ୍ଧୁକଫୁଲ ଆଦ ନ ପାଇବାରୁ ବରାହ ଦାଢ଼ କି କଣ୍ଟାବଣରେ ପଡ଼ିଗଲି, କାତର ନୁହେଁ, ପରମସ୍ୱାମୀ କି ଉତ୍ତମ ସ୍ୱାମୀ ନ ପାଇବାରୁ ବରାହ ହାବୁଡ଼େ ପଡ଼ିଗଲି ।

୧୩ । କରବୀର-କନିଅର, ଉତ୍ତମ ପୁରୁଷ, କୁଆଲୀ-ଫୁଲବିଶେଷ, ସୁନ୍ଦରୀ, ପଲାଶ-ଫୁଲ, ଅସୁନ୍ଦର ପୁରୁଷ, ସଖୀ କେଡ଼େ ଚତୁରତାରେ ଲାବଣ୍ୟବତୀ ମୁହଁକୁ ଅନାଇ କହେ, ଉତ୍ତମପୁରୁଷରେ ବଶ ହେଲାପରେ ଅଭି

ସୁବର୍ଣ୍ଣକାନ୍ତିହର ସେହି ଗୋଡ଼ାଇ ଯିବୁଟି ଶରୀର । ଏକାଳେ, ଆଉ ଜଣେ ଛଳ ପ୍ରଗଲ୍ଭ । ଦେଖାଇ ତରୁ କ୍ଷୁରଅନା ପାଶକୁ ଯିବ କି ନ ଯିବ ପଗ୍ଭର ।୧୪। ଦେଖରେ ରସାଳ ବିଟପୀ ପ୍ରବାଳ ବକୁଳ ମାଳରେ ଶୋହୁଛି । ଶୋଭିବନ ପ୍ରିୟ ଅବଲମ୍ବି ଥିଲେ ବହୁତ ସେଲମ୍ବ ମୋହୁଛି । ଏମନ୍ତ । ଭାବ ବନେ କରୁଁ ବିଳାସ । ଯେଣିକି ଚର୍ଚ୍ଚରୀବଧୂ ସହଚରୀ ପାଦିବାରକାଏ ପ୍ରବେଶ ।୧୫। ଦେଖି ହରଷ ବୃଷ୍ଟି ପାତେ ସାରସଜାତ ରସ ରସପଣ୍ଡିତା । କମନୀୟକମ ଚଳିତନା ଯେନ କାଞ୍ଚଳରେ ହେଲା ଶୋଭିତା । ବାନ୍ଧିଲା । ଭିଡ଼ ମଧ୍ୟେ ଶାଢ଼ୀ ପଣନ୍ତ । ଫଗୁମୁଣା ଖୋସି ହସିବାର ଗୁହିଁ ସଖୀଏ ସାଜିଲେ ତ୍ୱରିତ ।୧୬। ଉନ୍ମତ୍ତ ମତ୍ତକାଶିନୀ ସଙ୍ଗେ ରଙ୍ଗେ ତରଙ୍ଗେ ଖେଳିଲେ କାମିନୀ । ମନ୍ଦ୍ରୀ ଆକାଶେ ଏକ ବେଳେ ପ୍ରକାଶେ କି ଅବା ଅନେକ ଦାମିନୀ । କି ଅବା । ତଳପ୍ରଜ୍ୱଳନା ହେମର । ମହା ଅନୁରାଗ ପରାଗବୃଷ୍ଟିରେ ହୋଇ ଅଛନ୍ତି ତତପର ।୧୭। କଞ୍ଜନ ଗଞ୍ଜନ ଗଞ୍ଜନ-

---

ମଲ୍ଲି ମଲ୍ଲି ଛଳନା କାହିଁକି କରୁ, ଅନ୍ୟଜଣେ କହେ ତା ନୁହେ, ତୁ କନଅରକୁ ଲୋଭ କର ମଲ୍ଲିକା କାହିଁକି ଦଗୁରୁ ନଅଲୀ ଫୁଲକୁ ; ଦେଖିବାରୁ ପଳାଶ ପାଶକୁ ଆଉ ଯିବୁ କାହିଁକି ।

୧୪ । ଅଶୋକ-ଅଶୋକଫୁଲ, ଖୁସି । ଶରୀର-ଦେହ, କିଏ କହେ ଅଶୋକ ଫୁଲକୁ ଦେଖ,ଅନ୍ୟ କହେ ଲବଣ୍ୟବତୀ ଖୁସ ହୋଇ ଯାଉଛ, ପୁଣି କିଏ କହେ କେତକୀ କି ଦେଖ, ଅନ୍ୟ କହେ କେତକୀ କାନ୍ତି ଯେ ଲବଣ୍ୟବତୀ ସେ ତ ସୁବର୍ଣ୍ଣ, କି ସୁନା ରଙ୍ଗକୁ ହରଣ କରନ୍ତି, ତେଣୁ ଦେହ ଗୋଡ଼ାଇ ହୋଇଯିବୁ, କିଏ ଦେଖିଲେ ଲୋଭାଇବ, କୁରିଅନା ଫୁଲକୁ ତୋଳ, ସେ ମାର କ୍ଷୁରପର ଭୂଷିଦେବଟି ।

୧୫ । ରସାଳ—ଆମ୍ବ, ବିଟପୀ—ଗଛ, ପ୍ରବାଳ—ପୋହଳାପର ଲାଲବର୍ଣ୍ଣ । ବକୁଳ—ବଉଳ, ବନପ୍ରିୟ—କୋଇଲି, ଅବଲମ୍ବନ—ଆଶ୍ରୟ, କୋଳ କରିବା,ସେଲମ୍ବ—ଭ୍ରମର, ଚର୍ଚ୍ଚରୀ—ପିଚକାରୀ, ଦେଖ ଆମ୍ବ ଗଛର ବଉଳ ଲାଲବର୍ଣ୍ଣ ହେବୁ, କୋଇଲିକୁ ଅଲିଙ୍ଗନ ଦେଉଛି । ତଥାପି ଭ୍ରମର ମଧ୍ୟ ଯାଉଛି, ଯେପରି ବିଟପୀମାନେ ନିଜସ୍ୱାମୀ ଥାଇ ଜାର ପୁରୁଷରେ ମୋହ କରନ୍ତି, ଏହାପରେ କଥାବ ର୍ତ୍ତା ହେଉ ଅନ୍ୟ ଜଣେ ସହଚରୀ ଅବୀର ପିଚକାରୀ ନେଇ ପହଞ୍ଚିଲେ ।

୧୬, ୧୭ । ସାରସ-ହଂସ, ଜାତ-ଜଣା, କମନୀୟ-ସୁନ୍ଦର, କମ-ଚରିତ । ଫଗୁମୁଣା-ଅବିରମୁଣି, ଉନ୍ମତ୍ତ-ଉତ୍ତେଜିତ ପୂର୍ଣ୍ଣ କି ଯେଉଁ କାମିନୀ ।

ନେତ୍ରୀଙ୍କ ବେଣୀ ସୁହାଇ ସୁଧାଇଛନ୍ତି । ଅଜ ଅସାଧ୍ୟ ହୋଇ ବେଣୀ ସୃଷ୍ଟିକି ବହୁଛନ୍ତି ମନରେ ଧ୍ୟାଇଛନ୍ତି । ନାହିଁକି । ଏତେକ ବିବେକ ତାହାର । କୋଟିଏ ବ୍ରହ୍ମାଣ୍ଡ ଗୋଟିଏ ଭଙ୍ଗିରେ ଜଣିମା ଗୁମାନ ଯାହାର । ୧୮ । ମୁଠାରୁ ଫିଟି ଯିବାରେ ଏ ପ୍ରତୀତ ଫଗୁ ଖେଳିବାରେ ଲଳନା । ବସନ୍ତରାଜା ବଶକୁ କି କରନ୍ତି ରଙ୍ଗପାଟରେଲଗ୍ନଲଳନା । ସେ ରଜ । ଯାହିଁ ଶୂନ୍ୟେ ରୁଣ୍ଡ ହୋଇଲା । ଅତ୍ୟନ୍ତ ଗୁଣିକ ଦିଗପରିବାର ମାଣିକ୍ୟଛନ୍ଦ କି ଧଇଲା । ୧୯ । କଙ୍କଣ-କ୍ୱଣିତଧ୍ୱନିରୁ ମଣ୍ଡିତ ଭୁଜ ଉଣ୍ଡ୍ରିମ କି ବାଇଲା । ଉଚିବାଚ-ବାଣୀ ମଙ୍ଗଳଗୀତ କି ଅଭିଷେକବେଳେ ହୋଇଲା । ସ୍ୱଭାବେ । କୁଚ ପୂର୍ଣ୍ଣକୁମ୍ଭ ସାଜିଛି । ଚାରୁ ଚୋଳି ଚୂତପଲ୍ଲବ ସଂଯୁକ୍ତ ହାର ଉପହାର ସାଜିଛି । ୨୦ । ରମଣୀ ରମଣୀୟ କଲେ ଅମ୍ବରଗୁଣ୍ଡିରେ ସେ ବନସରଣୀ । ମହୀମହିଳା ଋତୁକାଳ ଲଭିଲା ଏସନ ମାନସକୁ ଅଣି । ସେ ଧୂଳି । କାହିଁ ପବନ-ଯୋଗେ ଉଡ଼ି । ଶୁଭସୂଚକ କହି ଜଉତପ କି ଯାଉଛନ୍ତି ଶିରେ ବାନ୍ଧି ଶାଢ଼ୀ ।୨୧। ପଲ୍ଲୀରମାରେ ନିରନ୍ତରେ ପିଚକା ଖେଳନ୍ତେ ମୀନଚକ୍ଷୁହଦୃଶା । ମଞ୍ଜୁ ମଞ୍ଜୀର ଘନରବ ମଧୁର ବସନ୍ତେ କରେ କି ବରଷା । ବିଜୁଳି । ପର

---

ସୁନ୍ଦରୀ ସ୍ତ୍ରୀ । ତରଙ୍ଗ—ଢେଉ । ଦାମିନୀ—ବିଜୁଳି । ହେମ—ସୁନା । ଅନୁରାଗ—ସ୍ନେହ । ମହୀ—ପୃଥିବୀ । ପରାଗ—ଫୁଲର ରେଣୁ ।

୧୮ । କଞ୍ଜନ—ସୁନ୍ଦର । ଖଞ୍ଜନ ଗଞ୍ଜନ—ଖଞ୍ଜନପକ୍ଷୀ ଆଖି କି ଯାହା ଆଖିଛଟା ତୁଚ୍ଛ କରେ ।

୧୯ । ପ୍ରତୀତ—ଜଣାଯିବା । ଫଗୁ—ଅବିର । ଲଳନା—ସ୍ତ୍ରୀ । ରଙ୍ଗପାଟ—ଲାଲପାଟ । ଲଗ୍ନ—ଲଗା । ରଜ—ଗୁଣ୍ଡ । ରୁଣ୍ଡ—ଏକତ୍ରିତ । ପରିବାର—ଗୃହର । ଛନ୍ଦ—ଛଟା ।

୨୦ । କଙ୍କଣ କ୍ୱଣିତ—କଙ୍କଣର ଝଣ ଝଣ ଧ୍ୱନି ବା ଶବ୍ଦ । ଭୁଜ—ହାତ, ଉଣ୍ଡ୍ରିମ—ତେଙ୍ଗୁରି । ବାଣୀ—କଥା, ମଙ୍ଗଳ ଗୀତ—ଶୁଭ ଗୀତ । ଚାରୁ—ସୁନ୍ଦର । ଚୋଳି—କାଞ୍ଚୁଲା । ଚୂତ ପଲ୍ଲବ—ଅମ୍ବ କଅଁଳିଆ ପତ୍ର । ହାତ କଙ୍କଣ ଶବ୍ଦ—ତେଙ୍ଗୁରି, କଥାବାର୍ତ୍ତା; ଶୁଭ ଗୀତ ହେଲା ଅଭିଷେକ ହେଲେ ପୂର୍ଣ୍ଣକୁମ୍ଭ ଅମ୍ବପତ୍ର ଦରକାର ଏଠାରେ କୁଚ ପୂର୍ଣ୍ଣକୁମ୍ଭ କାଞ୍ଚୁଲା ଅମ୍ବପତ୍ର ହେଲା ।

୨୧ । ରମଣୀ—ସ୍ତ୍ରୀ, ରମଣୀୟ—ସୁନ୍ଦର, ବନସରଣୀ—ବଣବାଟ, ମହୀ-ମହିଳା—ପୃଥିବୀରୂପ ସ୍ତ୍ରୀ, ମାନସ—ମନ, ଶୁଭସୂଚକ—ଭଲ ଚିହ୍ନ ।

ଝଳ ଭୂଷା ରତନ । ଅଙ୍ଗରାଗେ ଅଳିଭୃଙ୍ଗ ଉଡ଼ିପଡ଼େ ହୋଏ କି କରକା ପତନ । ୨୨ । କୁଙ୍କୁମ ପିଶକା ବାଜି ଜର ଜର ସୁନ୍ଦର ଉରଜ ଯାହାର । କନକାଚଳରୁ କିବା ହରତାଳ ପ୍ରବାହ ହେଉଛୁ ବାହାର । କର୍ପୂର । ଗୁଣ୍ଡି ମଣ୍ଡିତ ଯାହା ସ୍ତନ । ସୁବର୍ଣ୍ଣ ସ୍ୱୟମ୍ଭୁ ଶମ୍ଭୁଯୁଗଳ କି ହୋଇଲେ ଭସ୍ମ ବିଲେ-ପନ । ୨୩ । ଯାହା କୁଚ ଫଗୁସଙ୍ଗରୁ ସୁସଙ୍ଗ ଏହି ପାଞ୍ଚ ହୋଏ ମାନସେ । ହୃଦୟସରୋବର ମଧ୍ୟେ ଉଦୟ କୋକନଦ କଢ଼ୀଯୁଗ୍ମ ସେ । ଯାହାର । ଛୁଟି ହାର ଖସେ ମୁକୁତା । ପୟୋଧର ଛଳେ କ୍ଷୀରବିନ୍ଦୁ ବୃଷ୍ଟି କର-ବାରେ କି ସେ ଶୋଭିତା । ୨୪ । କାଶ୍ମୀରରଜ କେ ମାରନ୍ତେ ପାଲଟି ଗ୍ରୀବା ବଙ୍କ କରି ଗୃହିଁଲ । ମନ୍ଦମରୁତେ କି ଉଲଟି ନଳିନ ଅଳି ସଂଯୁକ୍ତରେ ରହିଲ । କେ ଯାହା । ମୁଖେ କସ୍ତୁରୀ ପଙ୍କ ଢାଳି । ମୃଗାଙ୍କ କଳଙ୍କ ଛଡ଼ାଇ ହେବାରୁ ବହିଯାଉଛି କିବା କାଳି । ୨୫ । ଯାହା ଲଲାଟୁ ସିନ୍ଦୁର ବହି ପଡ଼େ ସ୍ୱେଦ ହୋଇବାରୁ ଜନିତ । କେଶରାହୁ ଦନ୍ତଘାତରୁ ବ୍ୟକତ ଇନ୍ଦୁ ଦେହରୁ କି ରକତ । ସେକାଳେ । ଅତି ଚଞ୍ଚଳ ନେତ୍ରଗତି । ଦଗଧରାକୁ କି ଶ୍ୟାମଳ କୋମଳ କମଳେ ମଣ୍ଡନ୍ତି ଯୁବତୀ । ୨୬ । ରତ୍ନକିରଣେ ଭାନୁପ୍ରଭା ପ୍ରକାଶ ଶ୍ରବଣେ ତାଟଙ୍କ ଚଳନ୍ତି । ପ୍ରମଦା ପ୍ରମୋଦଭରେ କି କରନ୍ତି ଶ୍ରୀଅଙ୍ଗେ ମଙ୍ଗଳ ଆଳତି । ଚଳିତ । ନାସିକା ମୋତି ଉପହାର ।

---

୨୨ । ପମୀର—ସୁବାସ, ମୀର—ଜଳ, ନିରନ୍ତର—ସର୍ବଦା, ମୀରରୁହ—ପଦ୍ମ, ତୃଣା—ଅର୍ଘି, ମଞ୍ଜୁ—ସୁନ୍ଦର, ମଞ୍ଜୀର—ଗୋଡ଼ ବାଜେଣୀ, ଘନ ରବ—ବର୍ଷା ଶବ୍ଦ, ଭୂଷା—ଅଳଙ୍କାର, ଅଙ୍ଗରାଗ—ଦେହର ଗନ୍ଧ, କରକା—କୁଅପଥର ।

୨୩ । ଉରଜ—ସ୍ତନ, ବକ୍ଷ, କନକାଚଳ—ସୁନା ପର୍ବତ, ହରତାଳ—ହଳଦିଆ ରଙ୍ଗର ଧାତୁ, ପ୍ରବାହ—ସ୍ରୋତ, ସୁବର୍ଣ୍ଣ ସ୍ୱୟମ୍ଭୁ—ସୁନା ମହାଦେବ । ଶମ୍ଭୁ ଯୁଗଳ—ମହାଦେବ ଦ୍ୱୟ, ଭସ୍ମ—ପାଉଁଶ, ବିଲେପନ—ବୋଳି ହେବା ।

୨୪ । ସୁସଙ୍ଗ—ସୁନ୍ଦର । ହୃଦୟ ସରୋବର—ହୃଦୟ ରୂପ ପୋଖରୀ । କୋକନଦ—ପଦ୍ମ । ଯୁଗ୍ମ—ଦୁଇ, ପୟୋଧର—ମେଘ, କୁଚ । କ୍ଷୀର—ଦୁଧ ।

୨୫ । କାଶ୍ମୀର ରଜ—କୁଙ୍କୁମ ଗୁଣ୍ଡି । ପାଲଟି—ଫେରି । ଗ୍ରୀବା—ବେକ । ବଙ୍କ—ବଙ୍କା । ମନ୍ଦମରୁତ—ସୁଗନ୍ଧଯୁକ୍ତ ପବନ, ନଳିନ—ପଦ୍ମ । ମୃଗାଙ୍କ—ଚନ୍ଦ୍ର ।

୨୬ । ସ୍ୱେଦ—ଝାଳ, ବ୍ୟକତ—ପ୍ରକାଶିତ, ଦଗଧରା—ଗୃହଅଡ଼େ ।

ବାଦେ ନୂପୁର ନାଦେ କି ନାଚୁଛନ୍ତି ନର୍ତ୍ତକୀଗଣେ ଅହଙ୍କାର । ୨୭ । କେଉଁ ଲତାରୁ କୁସୁମ ଖସିବାରୁ ଏମନ୍ତ ହେଉଛୁ ପରତେ । ଧନ୍ୟ ଧନ୍ୟବୋଲି ପ୍ରଶଂସା କର କି ରନ୍ଧ୍ର ବର୍ଷୁଛନ୍ତି ନାରତେ । ପରାଗ । ଛଳେ ସିଞ୍ଚୁଛନ୍ତି କର୍ପୂର । ପଲ୍ଲବ ଛଳେ ପଣନ୍ତେ ବର୍ଷୁଛନ୍ତି ଉପକାର ଭୁତେ ତାଙ୍କର । ୨୮ । କେଉଁ କେଉଁ ତରୁ ତରୁଣୀମାନଙ୍କୁ ପକ୍ଷୀ ନାନାଦରେ କହନ୍ତି । ଏପରି ଉତ୍ସବ କେବେ ନୋହିଥିଲା ଦେଖି ନ ଥିବ ସୁରପତି । କେ ତରୁ । ଶାଖା ଲୋଟନ୍ତି ଫଳଭରେ । କି ପରିଚର୍ଯ୍ୟା ଆରମ୍ଭ କରୁଛନ୍ତି ରମ୍ଭୋରୁ ପାଦ ଲାଗୁ ଶିରେ । ୨୯ । ଏମନ୍ତ ବେଳେ ଏକ ସଖୀ କହିଲା ତନି ପ୍ରହର ହେଲା ବେଳ । ସ୍ନାନମାନଙ୍କୁ ଅବଧାନ ନୋହିଲା ଏତେକେ ରହୁ କୁତୂହଳ । ପୁଣି ସେ । ସେ କଥା କଲା ଅଙ୍ଗୀକାର । ଏହି ସମୟେ ଥୋକାଏ ଦାସୀ ଆସି ଘେନିଣ ମାର୍ଜନା ସମ୍ଭାର ॥ ସରୋବର ତୀରେ ପ୍ରବେଶ ସୁବେଶ ଲାଗି ସମ୍ପୂର୍ଣ୍ଣ ଏହି ଛାନ୍ଦ । କବି ଚତୁରି ଅନେକ ଅଛି ପୂରି ଘେନିଲେ ଜନ୍ମିବ ଆନନ୍ଦ । ଜାଣିଲା । ଜନ ମନକୁ ଏ ତୋଷିବ । ମୂର୍ଖସ୍ବଭାବ ଅଦୃଷ୍ଟରଜାପରି ସେ କାହୁଁ ରତି ପ୍ରକାଶିବ । ୩୧ । ଅନନ୍ତଭୂଷଣ ବୃଷଧ୍ବଜ ଯୁତ ସହୃଦ ଭବତାପନାଶି । ଶ୍ରୀନୀଳଯ୍ୟ ଦ୍ବିଜରାଜ ବନ୍ଦନୀୟ ଜନଙ୍କସୁଖକୁ ପ୍ରକାଶି । ସୁମରି । ମନେ ସେ ରାମଚନ୍ଦ୍ର ଶିବ । କହେ ଉପଇନ୍ଦ୍ର ଭଞ୍ଜ ବୀରବର ଯୁବାଜନ କର୍ଣ୍ଣ ଉତ୍ସବ । ୩୨ ।

---

୨୭ । ଭାନୁପ୍ରଭା—ସୂର୍ଯ୍ୟତେଜ, ଶ୍ରବଣ—କାନ, ପ୍ରମଦା—ଯୁବା ସ୍ତ୍ରୀ, ଅନଙ୍ଗ—କନ୍ଦର୍ପ, ପ୍ରମାଦଭରେ—ଖୁସିରେ, ନର୍ତ୍ତକୀ—ନାଚବାଲୀ ।

୨୮ । କୁସୁମ—ଫୁଲ, ଉପକାରଭୁତେ—ଭଲ ନିମନ୍ତେ ।

୨୯ । ତରୁ—ଗଛ, ପକ୍ଷୀନାନାଦ—ଚଢ଼େଇଶବ୍ଦ, ସୁରପତି—ଇନ୍ଦ୍ର, ରମ୍ଭୋରୁ —କଦଳୀଗଛପରି ଜଙ୍ଘ ଯାହାର ବୃକ୍ଷାଳ ।

୩୦ । ସ୍ନାନ—ଗାଧୋଇବା, କୁତୂହଳ—ଆନନ୍ଦ, ଅଙ୍ଗୀକାର—ସ୍ବୀକାର, ମାର୍ଜନା—ଗାଧୁଆ ।

୩୧ । ସରୋବର—ପୋଖରୀ, ତୀର—କୂଳ, ଜନମନ—ଲୋକମନ, ଅଦୃଷ୍ଟ-ରଜା—ବାଳିକା ।

୩୨ । ଅନନ୍ତ—ବାସୁକୀ, ଭୂଷଣ—ଅଳଙ୍କାର, ବୃଷଧ୍ବଜ ଅର୍ଦ୍ଧ ଚନ୍ଦ୍ର, ଯୁତ—ମଣ୍ଡିତ, ସହୃଦ—ହୃଦ ସହିତ ଅର୍ଥାତ୍ ହୃଦରେ ଥିବା, ଭବ—

# ଷଷ୍ଠ ଛାନ୍ଦ

( ଲବଣ୍ୟବତୀର ସରୋବରରେ ସ୍ନାନ ବିଷୟ )

ରାଗ—ରାମକେରୀ

ମନ ଦେଇ ଶୁଣ କୋବିଦେ ନୃପସୁତା ସୁକେଶୀ
କୂଳରେ ବକୁଳ ମୂଳରେ ପୀଠଉପରେ ବସି । ୧
ସରସୀଶୋଭିତ ଅନାଇଁ ମନ ନୋହେ ଲୋଭିତ ।
ତଟ-ଘଟଣ ବିଦ୍ରୁମରେ ପକ୍ଷିପନ୍ତି ବିମ୍ବିତ । ୨ ।
କି ନୀଳଶାଢ଼ୀ ହଂସାବଳୀ ରଙ୍ଗ ଧଡ଼ି ହୋଇଛି ।
ଅବନୀବନିତା ବିସ୍ତାରେ କିବା କରିବା ଇଚ୍ଛି । ୩ ।
ପାବଚ୍ଛ ସ୍ୱଚ୍ଛ-ସ୍ଫଟିକରେ ନୀରତୀର ପ୍ରତୀତ ।
ସୁବେଣୀ ପରଶ ଭାବ କି ତହିଁ ତ୍ରିବେଣୀ ଖ୍ୟାତ । ୪ ।

---

ପୃଥିବୀ, ତାପ—କଷ୍ଟ, ନାଶି—ନାଶକର, ଶ୍ରୀ—ଲକ୍ଷ୍ମୀ, ନିଳୟ—ଘର, ଦ୍ୱିଜରାଜ—ବ୍ରାହ୍ମଣ, ଶ୍ରେଷ୍ଠ—ବ୍ରହ୍ମଜ୍ଞାନୀ, ଜନକ—ଜନକଋଷି, କର୍ଣ୍ଣ ଉତ୍ସବ—କର୍ଣ୍ଣ ପବସ ।

ଯାହାର ନାଗ ଭୂଷଣ କି ନାଗ ଉପରେ ଶୟନ, ବୃଷ ଧନୁ ମକର ପ୍ରଭୃତି ଅଷ୍ଟାଦଶ ଚିହ୍ନ ଯାହା ଦେହରେ ଅଛି, ପୁଣି ଯେ ସଂସାରର ଦୁଃଖ ବିନାଶକାରୀ ଓ ଲକ୍ଷ୍ମୀଙ୍କ ପୁରରେ ବାସ କରନ୍ତି ସେହି ବ୍ରହ୍ମଙ୍କ କି ନର-ମାନଙ୍କର ପୂଜ୍ୟ ଓ କର୍ଣ୍ଣ ପବସକାରୀ ଏ ଗ୍ରନ୍ଥ ଉପେନ୍ଦ୍ର ଭଞ୍ଜ କରିଛନ୍ତି ।

---

## ଷଷ୍ଠ ଛାନ୍ଦ

୧ । ନୃପସୁତା—ରାଜକନ୍ୟା, ସୁକେଶୀ—ଉତ୍ତମ ବାଳଯୁକ୍ତା, ବକୁଳ—ବଉଳ, ପିଠ—ଚଉତରା ।

୨ । ସରସୀ—ପୋଖରୀ, ଶୋଭିତ—ସୁନ୍ଦର, ତଟ—ପାଣିକୂଳ, ଘଟଣ—ସୌନ୍ଦର୍ଯ୍ୟ, ବିଦ୍ରୁମ—ପୋହଳା, ଗଛବିଶେଷ, ବିମ୍ବିତ—ପ୍ରକାଶିତ ।

୩ । ହଂସାବଳୀ—ହଂସସବୁ, ରଙ୍ଗଧଡ଼ି—ଲାଲଧଡ଼ି, ଅବନୀ ବନିତା—ପୃଥିବୀ ରୂପକ ସ୍ତ୍ରୀ ।

୪ । ପାବଚ୍ଛ—ପାହାଚ, ସ୍ୱଚ୍ଛ—ପରିଷ୍କାର, ନୀର—ଜଳ, ତୀର—କୂଳ । ପ୍ରତୀତ—ଦେଖାଯିବା, ସୁବେଣୀ—ଲବଣ୍ୟବତୀ, ପରଶ—ଛୁଇଁବା, ଭାବ—ମନେକର, ତ୍ରିବେଣୀ—ଗଙ୍ଗା ଯମୁନା ଓ ସରସ୍ୱତୀ ସଙ୍ଗମସ୍ଥାନ ।



“କବ ବଗୃବଲ ବଶଦ ହେଲ ତୁମ୍ଭି ବୁଡ଼ଲ,
ନ ବୁଡ଼ି ଗଇଲ ସଲିଲ ଉପରରେ ରହିଲ।”

ଦୀପଦଣ୍ଡୀ ଲଭେ ମରାଳପନ୍ତି ଦଏ ଭଉଁରୀ ।
ବଡ଼ ବଡ଼ଭୀଙ୍କ ବେଢ଼ିକା ଶୋଭା ଚୂର୍ଣ୍ଣ ଚଉଁରୀ । ୫ ।
ଜଳ ଜମ୍ବାଳ ଅଞ୍ଚଳରେ ଜନମନ ହରୁଛି ।
ଜଳ ନିର୍ମଳରେ ଅଧର ଅଦରଶୁଁ ସାରୁଛି । ୬ ।
ଗମ୍ଭୀର ଗୁଣକୁ ପଣ୍ଡିତଠାରୁ ଗୃହୀତ କର ।
ନର୍ତ୍ତକୀଠାବରୁ ଭଉଁରୀ ଶିକ୍ଷା ପରି ଏହାର । ୭ ।
ଅମୃତ ସଙ୍ଗତେ ହୋଇଛି ମିତ ମଧୁର ଗୁଣେ ।
ବିଧୁର ସ୍ନେହକୁ ବିଧୁର କରେ ଶୀତଳ ପଣେ । ୮ ।
କାମ ସରାଳୀରେ ପ୍ରକାଶମାନ ସୁଖଦାନରେ ।
କୁମୁଦରେ ଯେଣୁ ବିଦିତ ତେଣୁ ହରପ୍ରକାରେ । ୯ ।
ସରଶୋଭା ଦେଖି ଦେଖି ସେ ସରେ ମର୍ଦ୍ଦନ ବିଧି ।
ବକ୍ଷପ୍ରମାଣ ଜଳେ ଯାଇଁ ବିକେ ଲବଣ୍ୟନିଧି । ୧୦ ।
କବି ବିଗୃହଳ ବିଚାର ହେଲା ତୁମ୍ବୀ ବୁଡ଼ିଲା ।
ନ ବୁଡ଼ି ଶଇଳ ସଲିଳ ଉପରରେ ରହିଲା ।୧୧।
କିସ ପୁଣି ଦେଖା ନ ଯାଇ ଯେବେ ଥାଇ ଜୀବରେ ।
ବିଷମ ସମସ୍ୟା ପୂରଣ ହେଲା ଏହି ଠାବରେ ।୧୨।
ଅପୂର୍ବ ଅମ୍ବୁଜ ମୁଖକୁ ଚାହିଁ ଭୃଙ୍ଗ ଚମତ୍କାର ।
ଚୁମ୍ବିବା ଲୋଭରେ ଧାଇଁଲେ ଶ୍ରୁତି ଚାହିଁ କାତର ।୧୩।

---

୫ । ମରାଳ—ହଂସ, ପନ୍ତି—ସମୂହ, ବଡ଼ଭୀ—କୋଠା, ଚୂର୍ଣ୍ଣଚଉଁରୀ—ଅଳ୍ପଲମ୍ବିତ ଶ୍ଳେଷ୍ଟ କେଶ, ଚୂନଲପା ।
୬ । ଜମ୍ବାଳ—ପଙ୍କ, ଅଞ୍ଚଳ—ଗୋଳିଆ, ଅଦରଶୁଁ—ଦର୍ପଣରୁ ।
୭ । ଗମ୍ଭୀର—ଶାନ୍ତ, ନର୍ତ୍ତକୀ—ନାଚବାଲି ।
୮ । ବିଧୁର—ଚନ୍ଦ୍ରର, ବିଧୁର—ତୁଚ୍ଛ ।
୯ । କାମ—କନ୍ଦର୍ପ, ସରାଳ—ପକ୍ଷୀ, କୁମୁଦ—କଇଁ, ବିଦିତ—ପ୍ରକାଶିତ । ହର—ବିଷ୍ଣୁ ।
୧୦ । ସରଶୋଭା—ପୋଖରୀ ସୁନ୍ଦର ପଣ, ବକ୍ଷପ୍ରମାଣ—ସ୍ତନପର୍ଯ୍ୟନ୍ତ ।
୧୧ । ବିଚାର—ଅଷ୍ଟର୍ଯ୍ୟ, ତୁମ୍ବୀ—ଲାଉ (କୁଚ), ଶଇଳ—ପର୍ବତ, ପଥର, ଏଠାରେ ଶଇଳ କୁଚ, ସଲିଳ—ଜଳ ।
୧୨ । ଜୀବରେ—ପ୍ରାଣରେ, ବିଷମ—ଅଷ୍ଟର୍ଯ୍ୟ, ସମସ୍ୟା—ପ୍ରସଙ୍ଗ ।
୧୩ । ଅପୂର୍ବ—ସୁନ୍ଦର, ଅମ୍ବୁଜ—ପଦ୍ମ, ଭୃଙ୍ଗ—ଭଅଁର, ଶ୍ରୁତି—କର୍ଣ୍ଣ ।

ଦେଖି ଦରଶନେ ରଥାଙ୍ଗ ଧାଇଁ ଅହାରବଶେ ।
ବିଚ୍ଛେଦ ଭୟରୁ ପଳାଇ ଗଲେ ନ ରହି ପାଶେ ।୧୪।
ନୟନ ଉଜ୍ଜ୍ୱଳ କଜ୍ଜ୍ୱଳଲାଞ୍ଛି ଅନାଇଁ ଦେଇ ।
ଗମ୍ଭୀରଜଳରେ ପଶିଲେ ମୀନ ଭୟକୁ ପାଇ ।୧୫।
ଭୁରୁ ନୟନ ଆନନକୁ ଚାହିଁ ଖଞ୍ଜନମାନେ ।
କୁରଙ୍ଗ ହେ ଅମ୍ଭେ ମଲୁଁ ବୋଲି ଡାକଲେ ସ୍ୱନେ ।୧୬।
ଶମ୍ବରଆନନୀ ସମ୍ବରେ ସେହିକାଳେ ପଶିଲେ ।
ହାସ ପରିହାସ ସରସ-ଉକ୍ତିମାନ ଭାଷିଲେ ।୧୭।
ଦେଖ ରେ ନଳିନୀ ନଳିନୀ ନଳିନୀରେ ପୂରିତ ।
ଭ୍ରମନ୍ତି ଭ୍ରମରେ ଭ୍ରମରେ ଭ୍ରମରେ ଏ ଶୋଭିତ ।୧୮।
ବି-ରାଜି ବିରାଜି ଅଛନ୍ତି ମୀନ ଭକ୍ଷଣ ପାଇଁ ।
ରାଜୀବ ରାଜୀବନୟନା ଏଥି ଶୋଭା ବରଇ ।୧୯।
ସଲିଳେ ଉଡୁପ ଦେଖରେ ହୋଇଅଛି ଶୋଭନ ।
ସଲୀଳେ ଉଡୁପବଦନୀ ଖେଳିବାକୁ ମୋ ମନ ।୨୦।
ନବୀନଜୀମୂତ ଜୀମୂତସ୍ତନୀ କି ଏ ଉଦିତ ।
ଏ ନୀଳକମଳ କମଳବନ୍ଧୁ ବହି ଚେମନ୍ତ ।୨୧।

---

୧୪ । ରଥାଙ୍ଗ—ଚକ୍ରବାକ, ଅହାର—ଖାଦ୍ୟ, ବିଚ୍ଛେଦ—ପୃଥକ ।
୧୫ । ନୟନ—ଚକ୍ଷୁ, ଉଜ୍ଜ୍ୱଳ—ଦୀପ୍ତିମାନ, କଜ୍ଜ୍ୱଳଲାଞ୍ଛି—ଆଖିରକଳାଗାର
୧୬ । ଆନନ—ମୁହଁ, ସ୍ୱନ—ଶବ୍ଦ,
୧୭ । ଶମ୍ବରଆନନୀ—ପଦ୍ମମୁଖୀ, ଶମ୍ବରେ—ପାଣିରେ, ପରିହାସ—ଥଟ୍ଟା, ଉକ୍ତି—କଥା ।
୧୮ । ନଳିନୀ—ସୁନ୍ଦରୀ ସ୍ତ୍ରୀ, ନଳିନୀ—ପୋଖରୀ, ନଳିନୀରେ-ପଦ୍ମରେ, ଭ୍ରମରେ—ଭୁଲରେ, ଭ୍ରମରେ—ଭଅଁରମାନେ, ଭ୍ରମରେ-ଭଉଁରୀରେ ଶୋଭିତ—ସୁନ୍ଦର ।
୧୯ । ବି—ପକ୍ଷୀ, ରାଜି—ସମୂହ, ମୀନ—ମାଛ, ରାଜୀବ ନୟନା—ପଦ୍ମଲୋଚନା ।
୨୦ । ସଲିଳେ—ଜଳରେ, ଉଡୁପ—ଡଙ୍ଗା, ସଲୀଳେ—ଲୀଳାସହକାରେ । ଉଡୁପବଦନୀ—ଚନ୍ଦ୍ରବଦନୀ ।
୨୧ । ନବୀନ-ନୂଆ, ଜୀମୂତ-ମେଘ, ପର୍ବତ, ଉଦିତ-ପ୍ରକାଶିତ ନୀଳକମଳ—ନୀଳପଦ୍ମ, କମଳ—ଜଳ ।

ଭୁବନ ଏଥିରେ ପୂରିତ ମୋହେ ସର୍ବ ଭୁବନ ।
ଜୀବନବନ୍ଧୁ ଏ କିଷ୍ଣୟ ପ୍ରାଣୀଙ୍କର ଜୀବନ ।୨୨।
ଅହିମକର ତାପ ନାଶେ ଶୋଭି ସାରସଚକେ ।
ଅହି ମକର ତାପନାଶେ ଶୋଭି ସାରସ ଚକେ ।୨୩।
ବଣ ପ୍ରକାଶିବ ସୁମନ-ସର ସୁମନସର ।
ମହୀକି ଅଣିଲ ସୁମନ-ସର ସୁମନସର ।୨୪।
ମନ୍ତ୍ରୀଙ୍କା ପୁଚ୍ଛିଲ କେମାନ୍ତୁ ଗୃହବର୍ଣ୍ଣେ ଏସନେ ।
ଏକାକ୍ଷରେ ଖ୍ୟାତ ଧରଣୀ (୧) କରଭୂଷା ଦ୍ୱିବର୍ଣ୍ଣେ (୨) ।୨୫।
ବୟସ ନାମ ଖ୍ୟାତ (୩) ମୃଗ ଯାହା କରେ (୪) ସେ ହେବ ।
ପ୍ରାକର୍ମ ଦ୍ୱିବର୍ଣ୍ଣେ (୫) ବାଲ୍ମେମେ ରାମକୁମର (୬) ହେବ ।୨୬।
ବ୍ୟସ୍ତେ ବସନ୍ତାଦ ଫୁଲେଙ୍କ (୭) ତହିଁ ତହର ନାମ (୮) ।
ସମସ୍ତ ପଢ଼ିଲେ ହୋଇବ ଜଳେ ଥିଲ କୁସୁମ (୯) ।୨୭।
ଚତୁରା ଗୁରବତେ ଜାଣିଲ ହସି କହିଲ ତହିଁ ।
ହଂସ-କରବର (୧୦) ପର୍ଯ୍ୟନ୍ତେ ମୋତେ ପରନ୍ତେ ହୋଇ ।୨୮।
'ଫଳ' ବେଣବର୍ଣ୍ଣ ପ୍ରାନ୍ତରେ ଦେଲେ ମୁକୁତା ନାମା (୧୧) ।
ଶୁଣି ଧନ୍ୟ ବୋଲି ପ୍ରଶଂସା କଲେ ସକଳ ବାମା ।୨୯।

---

୨୨ । ଭୁବନ-ଜଳ, ଭୁବନ-ଦେଶ, ଜୀବନବନ୍ଧୁ-ପ୍ରାଣବନ୍ଧୁ; ଜୀବନ—ଜଳ
୨୩ । ଅହିମକର—ସୂର୍ଯ୍ୟ, ତାପ—ତେଜ, ସାରସଚକ୍ର-ହଂସସମୂହ, ଅହି-ସର୍ପ, ମକର—ମଗର, ସାରସଚକ—ପଦ୍ମସମୂହ ।
୨୪ । ବଣ—ବଣ୍ୟତା, ସୁମନସର—ସ୍ୱର୍ଗଲୋକ, ଦେବତା, ସୁମନସର—ଆନନ୍ଦ, ମହୀ—ପୃଥିବୀ । ସୁମନ—ପୁଷ୍ପ । ସର—ସମୂହ ପୋଖରୀ । ସୁମନଶର—କନ୍ଦର୍ପବାଣ ।
୨୫ ଠାରୁ ୨୯ । ମନ୍ତ୍ରୀଙ୍କା—ମନ୍ତ୍ରୀଝିଅ । ୧—ଧରଣୀ-ଭୂ । ୨—କରଭୂଷା—ହାତଅଳଙ୍କାର ବଳୟ । ୩—ବୟସ ନାମ—ବୟ ।୪-ମୃଗ ଯାହା କରେ—ଲୟ । ୫ - ପ୍ରାକର୍ମ—ବଳ । ୬-ବାଲ୍ମେମେ-ରାମକୁମର—ଲବ, ୭—ବସନ୍ତାଦପୂବେ—ବକୁଳ । ତହରନାମ——କୂଳ । ୯—ଜଳେଥିଲ କୁସୁମ—ପଦ୍ମ । ହଂସ କରବର-କୁବଳୟ । ୧୧—ମୁକ୍ତା—ମୁକୁତା, ବାମା—ସ୍ତ୍ରୀ ।

ଏ ବଧୂରେ ଭୃଷି ଭାରତୀ ଜଳ କ୍ଷେପଣ କର ।
ଦେଖିବା ନ ଥିଲ ଚଞ୍ଚଳ ବରଷିବାର ବାର । ୩୦ ।
ଜଡ଼୍ମାନ ପ୍ଳବନେ ଉରଜମାନେ କି ମନୋହର ।
ନଳଦୀକ୍ଷା ପାଇ ନାୟକ ଭେଳା କଲେ ଭୂଧର । ୩୧ ।
ଅଜ କି କୁସୁମନାରାଜ ରାଜ ବହିତ୍ର ଲୀଳା ।
କରୁଛି ଭେମନ୍ତ ଶୋଭାକୁ ପୁଣି ବହିଲେ ବାଳା । ୩୨ ।
ବୁଝି କେ ତାହାର ଚରଣ ଧରୁଁ ସେ ଜାଣି ଭୃଷି ।
ଗଡରେ ଗଜ ଅଛୁ ବୋଲି ମୋତେ କୁମ୍ଭୀର ଗ୍ରାସି । ୩୩ ।
ନାରୀ ବାର ବାର ନୋହିଲେ ତହିଁ ଘଞ୍ଚଏ ଯାଏ ।
ହାସ କୁମୁଦ ନେତ୍ର ମୀନ, ମୁଖ କମଳ ପ୍ରାୟେ ।୩୪।
କଘନ ପୁଳିନ, ଉରଜ ଚକ୍ରବାକ ମିଥୁନ ।
ରୋମାବଳୀ ଅଳିଅବଳୀ, ଗତି ହଂସ ସମାନ ।୩୫।
ଉଦର କମଳ ପଲାଶ, ନାଭି ଜଳଭଉଁରୀ ।
କରକୋକନଦ, ସୁବାହୁ ଯହିଁ ମୃଣାଳ ସରି ।୩୬।
ବାଳୀ ଜଳେ ମିଳି କରନ୍ତ କେଳି ଏ ହୋଏ ଜଣା ।
ସଖୀ ସଙ୍ଗେ ମିଶି କ୍ରୀଡ଼ଇ ଯହିଁ ଚଞ୍ଚଳେକ୍ଷଣା ।୩୭।
କାହିଁକି ଏମନ୍ତେ ବୋଇଲେ ବୋଲି କେ ବା ବୋଲିବ ।
ସୁଲକ୍ଷଣାକୁ ଏ ଲକ୍ଷଣା କାହୁଁ ସମାନ ହେବ । ୩୮ ।

---

୩୦ । ବଧୂ—ନିଷ୍ପୃମ । ଭାରତୀ—କଥା । ବାରି—ଜଳ । କ୍ଷେପଣ—ଫୋପାଡ଼ିବା । ବରଷିବାର—ପଡ଼ିବାର ।

୩୧ । ଜଡ଼୍ମାନ—ଚତ୍‌ଡ଼ାଇ । ପ୍ଳାବନେ-ପହଁରିବାରେ । ଉରଜ-କୁଚ । ନଳ ଦୀକ୍ଷା—ରାମ ସେନାପତି ନଳର ସ୍ୱଭାବ । ଭୂଧର-ପର୍ବତ । ଭେଳା—ଉଙ୍ଗା ।

୩୨ । କୁସୁମ ନାରାଚ—କନ୍ଦର୍ପ ଧନୁ । ରାଜ—ରାଜା, କନ୍ଦର୍ପ । ବହିତ୍ର ବୋଇତ, ଲୀଳା—ଖେଳ ।

୩୩ ଠାରୁ ୩୬ । ଚକ୍ରବାକମିଥୁନ-ଚକୁଆ ଚକୋଇଦୁଇ ।
ରୋମାବଳୀ—ଲୋମସବୁ, ଅଳିଅବଳୀ—ଭଅଁରମାନେ, ଉଦର—ପେଟ, କର—ହାତ,କୋକନଦ—ରକ୍ତପଦ୍ମ, ମୃଣାଳ—ପଦ୍ମନାଡ଼ ।

୩୭ । ଚଞ୍ଚଳେକ୍ଷଣା (ଚଞ୍ଚଳ+ଇକ୍ଷଣା)—ଶୀଘ୍ର ଦୃଷ୍ଟି ପକାଇବା ।
୩୮ । ଲକ୍ଷଣା—ଉପମା, ବର୍ଣ୍ଣନା ।

ସ୍ନାନ ଅବଶେଷେ କୂଳକୁ କୁଳପାଳିକା ଆସି ।
ଗଜର ଅଙ୍ଗରେ ଜଡ଼ି ସେ ଶାଢ଼ୀ ଏମନ୍ତ ଦିଶି । ୩୯ ।
ସ୍ଫଟିକବାଡ଼ ଫୁଟି ଦିଶେ କି ସେ ହେମ ପିତୁଳା ।
ସ୍ତନସଂପୁଟେ କି ବାରଣଦନ୍ତ ପିଧାନ କଲା । ୪୦ ।
ଅତି ଜରଜର ନୀରରେ ଯହୁଁ ଏମନ୍ତ ଭାବ ।
ସେ ଚନ୍ଦ୍ରଶିଳଶଇଳ କି ହାସଚନ୍ଦ୍ରରେ ଦ୍ରବ । ୪୧ ।
ବିନ୍ଦୁ ବିନ୍ଦୁ ଜଳ ବହୁଛି ଗୁରୁ କୁଟିଳବାଳେ ।
ତୁଷାର ବୃଷ୍ଟି କି ହୋଇଛି ନବତମାଳଦଳେ । ୪୨ ।
ନବଘନେ କିବା ଝରିଛି ତାର ତାରକାଶ୍ରେଣୀ ।
ମୋତିପତନ କି ହୋଇଛି ନୀଳମଣି ଧରଣୀ । ୪୩ ।
ଅଙ୍ଗ ଅଙ୍ଗନାର ପୋଛିଲେ ସଖୀମାନେ ସତ୍ୱରେ ।
କେଶ ପୋଛିଦେଇ ଗଣ୍ଠି କି ଦେଲେ ଅଗ୍ର ଭାଗରେ । ୪୪ ।
କଷିଦେଲେ ପୀତାମ୍ବରକୁ ଊରୁସନ୍ଧିକି ରୁନ୍ଧି ।
ପିନ୍ଧି ନିତମ୍ବିନୀ ନିବଡ଼େ ନୀବିବନ୍ଧକୁ ବାନ୍ଧି । ୪୫ ।
ଟୋକି ହୋଇଲା ଗୋରିଦେହ ଅଲିଙ୍ଗନକୁ ପାଇ ।
ଧଡ଼ି ନ ଥିଲେ ଶାଢ଼ୀ ଥିଲା ପରି ଦିଶନ୍ତା ନାହିଁ । ୪୬ ।

---

୩୯ । ଅବଶେଷେ—ଶେଷରେ । କୁଳପାଳିକା—କୁଳ ସ୍ତ୍ରୀ,ସତୀ ସ୍ତ୍ରୀ, ଗଜର—ଗୋରି, ଅଙ୍ଗ—ଦେହ ।

୪୦ । ହେମପିତୁଳା—ସୁନାରୂପ, ସ୍ତନସଂପୁଟେ—ଉଭୟ କୁଚ ମିଳନ ସନ୍ଧି ।

୪୧ । ନୀରରେ—ପାଣିରେ, ଭାବ—ଚିନ୍ତାକର, ଚନ୍ଦ୍ରଶିଳ—ଚନ୍ଦ୍ରକାନ୍ତମଣି, ଶଇଳ—ପର୍ବତ, ହାସଚନ୍ଦ୍ର—ହସରୂପକ ଚନ୍ଦ୍ର, ଦ୍ରବ-ତରଳିଯାଇ ।

୪୨ । ଗୁରୁ—ସୁନ୍ଦର, କୁଟିଳ—କୁଞ୍ଚ କୁଞ୍ଚିଆ, ତୁଷାର—କାକର,ନବ—ନୂଆ, ତମାଳ-ସତ୍ୟାମ୍ବା, ଦଳେ—ପତ୍ରରେ ।

୪୩ । ନବଘନ—ମେଘ, ତାର—ଉଜ୍ଜ୍ୱଳ, ତାରକାଶ୍ରେଣୀ—ତାରା ସବୁ, ପତନ—ପଡ଼ିବା, ନୀଳମଣି ଧରଣୀ—ନୀଳମଣି ରୂପକ ପୃଥିବୀ ।

୪୪ । ଅଙ୍ଗ—ଦେହ, ଅଙ୍ଗନା—ସ୍ତ୍ରୀ, ସତ୍ୱରେ—ଶୀଘ୍ରରେ ।

୪୫ । କଷିଦେଲେ—ଚିପିଦେଲେ, ପୀତାମ୍ବର—ହଳଦିଆ ପାଟଲୁଗା, ଊରୁସନ୍ଧିକି—ଜଙ୍ଘ ଭିତରକୁ, ରୁନ୍ଧି—ଭିଡ଼ି,ନିତମ୍ବିନୀ-ଉତ୍ତମ ପିଚ୍ଛୁଯୁକ୍ତ ସ୍ତ୍ରୀ । ନିବଡ଼େ—ଗାଢ଼ଭାବରେ, ନୀବିବନ୍ଧ—ଲୁଗାର ଖୋସଣି ।

୪୬ । ଟୋକି—ଟେକୋବନ୍ତ, ଅତିସୁନ୍ଦର ।

ଜଣାଇଲେ ଏବେ ମନ୍ଦରେ ମିବା ଅସ୍ତ ଧନେଶ ।
ଜଗତମୋହନୀ ଜଗତୀପରେ ହେବୁ ସୁବେଶ । ୪୭ ।
ଶୁଣିକର କରପଲ୍ଲବ ଦେଇ ବୋଲେ ସୁନ୍ଦରୀ ।
କାମକଳାଙ୍କୁ ସେ ଅକ୍ଷେପି ସଙ୍ଗମୀକ ପଚାରି । ୪୮ ।
ହରି କରେ କିସ ଶୋଭିତ (୧) ସ୍ୱନେ କେ ହୋଏ ଭିନ୍ନ (୨)
କାମେ କାମୁକ କି କରନ୍ତୁ (୩) ଭ୍ରମ କାହିଁ ଶୋଭନ (୪) । ୪୯ ।
କେ ବରଙ୍ଗ-ଗ୍ରାଜ (୫) ସଂସାରକରତା କେ (୬) ଅଟଇ ।
ନୃପତି ଆଗରେ କି ବୋଲି ପ୍ରତିହାରୀ ଡାକଇ । (୭) । ୫୦ ।
କି ଶୋଭା କରେ ଚନ୍ଦ୍ର କରେ (୮) ତାରା କାହିଁ ଉଦିତ (୯) ।
ବିଷ୍ଣୁର ସର୍ବଦା ମଣ୍ଡନ କି କି (୧୦) କହ ତ୍ୱରିତ । ୫୧ ।
ସେ କହେ କମଳ (୧) ରଥାଙ୍ଗ(୨)ଦର(୩)ଗଦା(୪)ନନ୍ଦକ (୫)
ମଣି(୬) ମା(୭) ହରିତଅମ୍ବର (୮)ବୋଲି ହୋଏ ବିବେକ ।୫୨।
ଶ୍ରବଣେ ପ୍ରଶଂସା ସଂସାରସାର-ରମଣୀ କଲା ।
ସଦନେ ପ୍ରବେଶ ହୋଇ ସେ ପୁଣି ସୁବେଶ ହେଲା । ୫୩ ।
ଏଠାରୁ ଏ ଛାନ୍ଦ ସମ୍ପୂର୍ଣ୍ଣ ଏତେ ଲକ୍ଷଣେ ଯୁକ୍ତ ।
ଶ୍ଳେଷରେ ଅଭଙ୍ଗ ସଭଙ୍ଗ ଭଙ୍ଗାଭଙ୍ଗହିଁ ବ୍ୟକ୍ତ । ୫୪ ।
ଛବିଧି ଯମକ ରୂପକ ଆଶୟରେ ଦୀପକ ।
ବହିର୍ଲାପି ଅନ୍ତର୍ଲାପିକା ଯେମନ୍ତ କର୍ଣ୍ଣରୋଚକ । ୫୫ ।

---

୪୭ । ମନ୍ଦରେ—ଘରକୁ, ଧନେଶ—ସୂର୍ଯ୍ୟ, ଜଗତୀ—କୋଠାଘରର ଛାତ ।
୪୮ । ଅକ୍ଷେପି—ଅନାଇ ।
୪୯ । ୫୦ । ୫୧ । (୧) ପଦ୍ମ (୨)ଚକ୍ରଅଚକୋଣ(୩) ଶୃଙ୍ଗାର(୪) ଗଦା (୫) ନନ୍ଦ (୬) ବ୍ରହ୍ମା (୭) ମଣିମା (୮) ଦଗ (୯) ଅକାଶ (୧୦) ତୁଳସୀ । ସଂସାରକର୍ତ୍ତା—ଜଗତକର୍ତ୍ତା, ନୃପତି—ରାଜା, ପ୍ରତିହାରୀ—ପଡ଼ିହାରୀ, ଚନ୍ଦ୍ରକରେ—ଚନ୍ଦ୍ର କରନ୍ତେ, ଉଦିତ—ପ୍ରକାଶିତ ।
୫୨ । (୧) କମଳ—ପଦ୍ମ (୨) ରଥାଙ୍ଗ—ଚକ୍ର (୩) ଦର—ଶଙ୍ଖ (୪) ଗଦା-କୌମୋଦକୀ (୫) ନନ୍ଦକ—ଖଡ଼୍ଗ (୬) ମଣି—କୌସ୍ତୁଭ (୭) ମା—ଲକ୍ଷ୍ମୀ (୮) ହରିତ ଅମ୍ବର—ହଳଦିଆ ପାଟଲୁଗା ।
୫୩ । ସଦନେ—ଘରେ ।
୫୪ । କର୍ଣ୍ଣରୋଚକ—କାନର ତୃପ୍ତିଦାୟକ ।

ବଳି-ଛଳି ରାମ-ବାମନମୂର୍ତ୍ତି ମନରେ ଧ୍ୟାୟି ।
ଉପଇନ୍ଦ୍ର ବୀରବର ଯେ ଏହୁ ରସ କହଇ । ୫୬ ।

---

## ସପ୍ତମ ଛାନ୍ଦ

( ବାଜିକର ସିଂହଳକୁ ଯାଇ ଇନ୍ଦ୍ରଜାଲ ବିଦ୍ୟା ଦେଖାଇବା )

ରାଗ—ଭୂପାଳ

ଏଥୁଅନ୍ତେ ଶୁଣ ଜନେ ମନଦେଇ । ମନୋହର ବସନ୍ତ ଋତୁକୁ ଚାହିଁ ।୧।
ବିଜେ ଅଗ୍ରମେ କର୍ଣ୍ଣାଟରାଜ-ସୁତ । ସମୀପରେ ବସିଛନ୍ତି ଚାର ମିତ୍ର ।୨।
ସାବଧାନ ମଣିମା ଖୁଣ୍ଟିଆ ତାଙ୍କେ । ସେବା ନିପୁଣ ତହିଁ ଗଣିକା ଲୋକେ ॥
ଯଶ ବର୍ଣ୍ଣନା କରନ୍ତି ଭାଟେ ଶ୍ଳେଷେ । ଏକପଦରେ ଗୀତ କବିତ୍ୱ ବସେ ।୪।
ଚନ୍ଦ୍ର ସେହୁ ଭୂପ ପର ବୀର ଦାନୀ । କୀର୍ତ୍ତି ନିଷ୍ଠେ ତାର ହାର ଧୀରମାନୀ ।୫।
ଯାନ ଜବ ଦେଖି ପର ଦର୍ପ ହାନେ । ପାଏ ସୁଖଭାବନୀୟ ତନ୍ନଦନେ ।୬।
ଭେଟେ କବି ଗୀତକର ନିବନ୍ଧରେ । ପ୍ରାନ୍ତ୍ୟଯମକ ଶୃଙ୍ଖଳା ଗୋମୂତ୍ରରେ ।୭।
ଦ ର ଚ ଯୁ ହ ର ଧୀ ର ପ୍ର ଶଂ ସା ର ।
ସା ର ଅ ଯୁ କ ର କ ର ଏ ସଂ ସା ର ।୮।
ସା ର ସା ର ସ ତ ଗ ଡ ହେ କୁ ମା ର ।
ମା ର ପ ର ଶ ଠ ଅ ଡ ସୁ କୁ ମା ର ।୯।
ହଟ ଦେଖାଉଅଛନ୍ତି ନଟ ତହିଁ । ଚଢ଼ି ବଂଶଶଳାକାରେ ଢୋଲ ବାଇ ।୧୦।

---

୫୬ । ବଳି—ଅସୁର ରାଜା, ଛଳି-କପଟକରି, ଭଗବାନ ବାମନ ହୋଇ ବଳିକୁ ପାତାଳେ ଚାପିଥିଲେ ।

ଲାବଣ୍ୟବତୀ ସଖିମାନଙ୍କ ସଙ୍ଗରେ ନେଇ ବନରେ କ୍ରୀଡ଼ା କରି ପୋଖରୀରେ ସ୍ନାନକରି ନାନାପ୍ରକାର ହାସପରିହାସ ହୋଇ ପରେ ସୂର୍ଯ୍ୟ ଅସ୍ତ ବେଳକୁ ଘରକୁ ଆସି ବେଶ ହେଲା ।

---

### ସପ୍ତମ ଛାନ୍ଦ

୨ । ଅଗ୍ରମେ—ଚଉକୀରେ, ବିଜେ—ବସି, ସମୀପରେ—ପାଖରେ ।
୪ । ଶ୍ଳେଷ—ଗୀତଛନ୍ଦରେ, ଦ୍ୱିଅର୍ଥକ ।
୫ । ଦାନୀ—ଦାନଶୀଳ, କୀର୍ତ୍ତି—ଯଶ, ଧୀର—ବିନୟୀ, ମାନୀ—ଅଭିମାନୀ ।
୬ । ଦର୍ପହାନେ—ଯମତାନାଶରେ, ସୁଖଭାବନୀୟ—ଉତ୍ତମ ମନମତ କଥା
୧୦ । ନଟ—ଖେଳା, ବଂଶଶଳାକା—ବାଉଁଶସ୍ତମ୍ଭ ବା ଶୂଳ, ବାଇ—ବଜାଇ

ନାଟ କରୁଅଛନ୍ତି ଗଣିକା ଅଳୀ । ଗୀତ ଗାଉଅଛନ୍ତି ଗୁଣିକେ ମିଳି । ୧୧ ।
ଗଜ ଅଶ୍ୱ ରତନ ବସନ ମାନ । ମୂଲ୍ୟ କରୁଅଛନ୍ତି ଜ୍ଞାନଶୀଳ ଜନ । ୧୨ ।
ସଂଗ୍ରାମ ନେ ଗତ ଯୁଦ୍ଧକଥା ଭାଷି । କରୁଛନ୍ତି ସାଧନ ପଦାତି ଅସି । ୧୩ ।
ବସନ୍ତଙ୍କ ମୁଖ ଚାହିଁ ପରିହାସେ । ଏହି ସମୟରେ ଗୁଣନିଧି ଭାଷେ । ୧୪ ।
ତୁମ୍ଭ କନ୍ୟା ଲଭ ହେଲ ଦ୍ୱୀପାନ୍ତରେ । କିଛୁ ଅପୂର୍ବ ପଦାର୍ଥ ଏ ତନ୍ତ୍ରରେ ॥
ଯୁବରାଜ ସମ୍ମୁଖରେ ନ କଲ ଭେଟି । ଶୁଣି ସଲଜ୍ଜ ହୋଇ ସେ ବେଗେ ଉଠି ॥
ନିଜ ରମଣୀ ପାଶରୁ ନେଇ କୀର । ଦେଲା ପଢ଼ା ଶୁଣି ସର୍ବେ ତୋଷଭର ।୧୭।
ଏହିକାଳେ ଜଣାଇଲା ବେତ୍ରଧର । ଅଛି ବୋଇତଅଳେକ ଅଛୁ ଦ୍ୱାର ॥
ବୋଲେ ସିଂହଳଦ୍ୱୀପୁଁ ଅଛିଁ ମୁହିଁ । ଇଚ୍ଛା ମୋର ଯୁବରାଜ ଭେଟ ପାଇଁ ।୧୯।
ଶୁଣି ନୃପସୁତ କଲା ସୀକାର । ଅଣି ସମ୍ମୁଖରେ ଭେଟାଇ ପ୍ରତିହାର । ୨୦ ।
ଶିରେ କର ଦେଇ ଭେଟି ଏତେ ଦ୍ରବ୍ୟ । ଦେଲା ପ୍ରମୋଦଚିତ୍ତରେ ସେ ସାଧବ
ମେଷଚକ୍ଷୁ ନୀଳା ବୃହତ୍ଜାତି ହୀରା । ତାର ମୁକୁତା କୁକ୍କୁଟଡିମ୍ବ ପରି । ୨୨ ।
ଅଛି ସୁମାଣିକ୍ୟ ପଦ୍ମରାଗ ଜାତି । ଅଷ୍ଟବଙ୍କ ପ୍ରବାଳହିଁ ପନ୍ତି ପନ୍ତି । ୨୩ ।
ଚନ୍ଦ୍ରକାନ୍ତ ପାଷାଣ ନୀଳେନ୍ଦ୍ର ମଣି । ଲକ୍ଷ୍ମୀ ନାରାୟଣ ଶିଳା ନୋହେ ଗଣି ॥

---

୧୧ । ଗଣିକା ବେଶ୍ୟା, ଅଳୀ—ସ୍ତ୍ରୀ ଗୁଣିକେ—ବିଦ୍ୱାନମାନେ ।
୧୨ । ଗଜ—ହାତୀ, ଅଶ୍ୱ—ଘୋଡ଼ା, ବସନ—ଲୁଗା ।
୧୩ । ପଦାତି—ପାଇକ, ସାଧନ—ଯୁଦ୍ଧବିଦ୍ୟା ଅଭ୍ୟାସ କରିବା ।
୧୪ । ପରିହାସେ—ଥଟ୍ଟାରେ, ଭାଷେ—କହେ ।
୧୫ । ଦ୍ୱୀପାନ୍ତର—ଅନ୍ୟ ଦ୍ୱୀପର ।
୧୬ । ସଲଜ୍ଜ—ଲଜ୍ଜିତ, ବେଗେ—ଶୀଘ୍ରେ ।
୧୭ । ନିଜ—ଅପଣାର, ରମଣୀ—ସ୍ତ୍ରୀ, କୀର—ଶୁଆ ।
୧୮ । ବୋଇତଅଳେକ—ସାଧୁତ୍ର, ବାର୍ତ୍ତାବହ—ଦୂତ ।
୧୯ । ଭେଟ—ସାକ୍ଷାତ ।
୨୦ । ପ୍ରମୋଦ ଚିତ୍ତ—ଖୁସିମନ, ସାଧବ—ସନ୍ତୁ, ଉତ୍ତମଲୋକ ।
୨୨ । ମେଷଚକ୍ଷୁ—ମେଣ୍ଢାଆଖି, କୁକ୍କୁଟ ଡିମ୍ବ—କୁକୁଡ଼ା ଅଣ୍ଡା ।
୨୩ । ସୁମାଣିକ୍ୟ—ଉତ୍ତମ ମାଣିକ୍ୟ, ପ୍ରବାଳ—ପୋହଳା, ପନ୍ତି ପନ୍ତି—ପେନ୍ଥାପେନ୍ଥା, ଅଷ୍ଟବଙ୍କ—ଅଠସ୍ଥାନର ବଙ୍କା, ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣ ଅଗ୍ନି, ଐଶାନ୍ୟ, ନୈଋତ ବାୟୁ, ଅଠ ଦିଗକୁ ।
୨୪ । ଶିଳା—ପଥର, ଲକ୍ଷ୍ମୀ ନାରାୟଣ—ବିଷ୍ଣୁ ଓ ଲକ୍ଷ୍ମୀ ।

ଅଗ୍ରୁ ଚନ୍ଦନ ଅଗର ଶ୍ରୀକର୍ପୂର । ଜନ୍ତୁ ପାଟଳ ଚୂଆ ପମ୍ଭାରମ୍ଭାର । ୨୫ ।
ସମଗ୍ରଜ କୁଅଦ ଜାହ୍ନବୀଜଳ । ମନୋହର ବଂଶପତ୍ରି ହରତାଳ । ୨୬ ।
ରୌପ୍ୟ ଇଚ୍ଛାକୁ ଫୁଲ ତୁଲରେ ଦେଇ । ଜମ୍ବୁନଦ ବିନା ଅନ ହେମ ନାହିଁ ॥
ମଣି ପଦରେ ମିହିରମଣି ଲେଖି । ଦନ୍ତେ ଦନ୍ତିଦନ୍ତ ନଖେ ବ୍ୟାଘ୍ରନଖ ।୨୮।
ଚର୍ମ ଅସନରେ ସାର ବୋଲଦାର । ଚର୍ମ-ଅଡ଼େଣୀ ଖଡ଼୍ଗଚର୍ମ ବାର ।୨୯।
ଜନା ତରବାରି ବୁନ୍ଦ ଯମଦର । ଶଙ୍ଖ ଦକ୍ଷିଣାବର୍ତ୍ତିକ ଶୁଦ୍ଧତର । ୩୦ ।
ଏକମୁଖୀ ରୁଦ୍ରାକ୍ଷରେ ସୁଶୋଭନ । ଗୃରୁ କନକମୃଗ ଚର୍ମସ୍ମିମାନ । ୩୧ ।
ଶୁଭ୍ର କାଗଜ ଲହୁରଦେଶଜାତ । ବାମ କାଞ୍ଚନ ମାଳା ଅପରମିତ । ୩୨ ।
ସିନ୍ଧୁଜାତ ହସ୍ତ ଭାରବାହ ଖର । ବଜ୍ରଜାତ ଗଜ ପାଟଭାଲ କୀର । ୩୩ ।
ନେପାଳଜା ମୂଷିକା ଶାଳଅ ଗୃରୁ । ଲବଙ୍ଗର ଲତା ଜାତିଫଳ ତରୁ ।୩୪।
ଚକୋରକ ଧନଜ୍ଞାତା ପାରିବତ । କଳପନ ଶୂନ୍ୟଖରି ସୁରଞ୍ଜିତ । ୩୫ ।

---

୨୫ । ପାଟଳ—ସରୁ, ପମ୍ଭାର—ସୁବାସ, ମ୍ଭାର—ପାଣି ।

୨୬ । ସମଗ୍ରଜ କୁଅଦ—ଖନିଜଦ୍ରବ୍ୟ ବିଶେଷ, ଜାହ୍ନବୀ—ଗଙ୍ଗା, ମନୋହର—ସୁନ୍ଦର, ବଂଶପତ୍ରି—ବାଉଁଶ ପତ୍ରିଅ ।

୨୭ । ରୌପ୍ୟ—ରୁପା, ତୁଲରେ—ସମାନରେ, ଜମ୍ବୁନଦ—ଉତ୍କୃଷ୍ଟ ସୁନା, ପତ୍ରିସୁନା, ହେମ—ସୁନା ।

୨୮ । ମିହିରମଣି—ସୂର୍ଯ୍ୟକାନ୍ତ ମଣି, ଦନ୍ତିଦନ୍ତ—ହାତିଦାନ୍ତ ।

୨୯ । ଅସନ—ବସିବା ଜାଗା, ସାର—ପ୍ରଧାନ, ବୋଲଦାର—କୃଷ୍ଣାଜିନ ମୃଗଚର୍ମ, ଚର୍ମ ଅଡ଼େଣୀ—ଢାଲ, ଖଡ଼୍ଗ—ଖଣ୍ଡା, ଚର୍ମ—ଚମ ।

୩୦ । ଯମଦର—ଯମଦାଢ଼, ଦକ୍ଷିଣାବର୍ତ୍ତିକ—ଦକ୍ଷିଣମୁହାଁ, ଶୁଦ୍ଧତର—ବିଶୁଦ୍ଧ, ପବିତ୍ର ।

୩୧ । ସୁଶୋଭନ-ସୁନ୍ଦର, ଗୃରୁ-ସୁନ୍ଦର, କନକ ମୃଗ-ସୁବର୍ଣ୍ଣ ସଦୃଶ ମୃଗ ।

୩୨ । ଶୁଭ୍ର କାଗଜ—ଧଳା କାଗଜ ।

୩୩ । ସିନ୍ଧୁଜାତ—ସମୁଦ୍ର ଘୋଟକ ବା ସିନ୍ଧୁ ଦେଶର ଘୋଡ଼ା, ହସ୍ତ—ଘୋଡ଼ା, ଭାରବାହ-ଭାରୁଆ, ଖର-ଗଧ, ବଜ୍ରଜାତ-ଐରାବତଅଂଶ, ଗଜ—ହାତୀ, ପାଟଭାଲ—ଚନ୍ଦନା, ମୁହଁର ଦୁଇ ପାଖରେ ଲାଲ ଚିହ୍ନଥାଏ, କୀର-ଶୁଆ ।

୩୪ । ଜାତିଫଳ—ଜାଇଫଳ, ତରୁ—ଗଛ ।

୩୫ । ପାରିବତ—ପାରା, ସୁରଞ୍ଜିତ—ସୁନ୍ଦର ।

ଲୌହ ଚୁମ୍ବକ ପରଶୁରାବ ଯହିଁ । ଦାସୀକେଶ ଗଜସ୍ୱେବେଣରେ ଶୋହି ।୩୬।
ଶୃଙ୍ଗ କମାଣ ଗୀର ଗୃଡକ ପଣ । ଲଗିଛି ବିଚିତ୍ର ବଣ କରେ କେଣ ।୩୭।
ମାନଦରଶାୟକ ଉତ୍ତମପଣସ୍ୱ । ଅଚ୍ଛି ରୋପଣ ବନକେ ଚନ୍ଦ କର । ୩୮ ।
ଦେଶୀ ଦ୍ରବ୍ୟ ପଦାର୍ଥ ସମ୍ମୋହନରେ । କରେ ସାଧୁଙ୍କୁ ପ୍ରଶଂସା ସୁମନରେ ॥
ଏକ ଦେଶେ ଏ ନ ମିଳେ ବିଚାରିଲେ । କେଉଁ ଦେଶରୁ ଆଗତ ପଚାରିଲେ ॥
ସେ ବୋଇଲା ସିଂହଳ ଦ୍ୱୀପର ମୁହିଁ । ଏ ଦେଶକୁ ଅସିଚ୍ଛି ବାଣିଜ୍ୟ ପାଇଁ ।୪୧।
ଯେହୁ ଲବଣ୍ୟବତୀ ସମ୍ଭବସ୍ଥାନ । ତହିଁ ଅପୂରୁବ କେଉଁ ଦ୍ରବ୍ୟମାନ ।୪୨।
ଲକ୍ଷ୍ମୀ ପରିପୂରିତ ସେ ସବୁକାଳେ । ଏବେ ଅଧିକ ରାଜକୁମାରୀ ବଳେ ।୪୩।
ହେଉ ନାହିଁ ଯେ ଭରସା ତାହାଙ୍କର । ଏହା କହିବାକୁ ଛନ୍ତି ଅନୁସର ।୪୪।
ହବ ଉତ୍ସଙ୍ଗସଦନ ମୋର ଭ୍ରଷ୍ଟ । ନୋହୁ ତାକୁ ନ କରିବୁ ଏ ମୋ ପୁଷ୍ଟ ।୪୫।
ଏ ବଚନ ଶ୍ରବଣେ ସେ ଚାରିମିନେ । ପରସ୍ପରେ ଠରାଠରି ହେଲେ ନେନେ ॥
ମନ୍ତ୍ରୀସୁତ ବୋଇଲା ଭୃତ୍ୟଙ୍କୁ ଚାହିଁ । ଦାନ କେତେ ବେଗ ହେ ! ପଚାରଯାଇ ॥
ଏ ବଚନକୁ ଜାଣିଲା ପ୍ରତିହାରୀ । ହୁଅ ସମସ୍ତେ ମେଲାଣି ନିଜପୁରୀ ।୪୮।
ତାହା ଡାକ ପ୍ରମାଣେ ନିର୍ଜନ ସଭା । ପୁଚ୍ଛେ ସାଧୁଙ୍କୁ ନୃପଜ ହୋଇ ଲୋଭା ॥
ତୁମ୍ଭେ ଯାହା କହିଲ ହେ ଅଲୌକିତ । ସତେ ଏମନ୍ତ ସୁନ୍ଦରୀ ମର୍ତ୍ତ୍ୟେ ଜାତ ।୫୦।
ସେ ବୋଇଲା ଆମ୍ଭ ପରେ ଏତେ କଥା । ଯେନ ପ୍ରଥମପଦରେ ନାହିଁ ମିଥ୍ୟା ॥
ପରଦ୍ରବ୍ୟ ପରସ୍ତ୍ରୀରୀ ହରଣିକୁ । ଲେଖୁଁ ଶୁଭ କର ତହୁଁ ମରଣକୁ । ୫୨ ।

---

୩୬ । ଲୌହ—ଲୁହା, ପରଶୁରାବ—ସ୍ପର୍ଶମଣି ପଥର ।
୩୭ । ଶୃଙ୍ଗ—ଶିଙ୍ଗ, କମାଣ—ତୋପ, ଗୃଡକ—ଗୃଡକପକ୍ଷୀର ପର, ବିଚିତ୍ର—ମନୋହର ।
୩୮ । ମାନଦଶାୟକ—ସର୍ବଶ୍ରେଷ୍ଠ ଧନୁ ।
୩୯ । ସମ୍ମୋହନରେ—ବଶ୍ୟରେ, ସୁମନରେ—ଉତ୍ତମ ମନରେ ।
୪୦ । ଆଗତ—ଆସିଚ୍ଛି ।
୪୧ । ବାଣିଜ୍ୟ—ବ୍ୟବସାୟ ।
୪୨ । ସମ୍ଭବସ୍ଥାନ—ଜନ୍ମସ୍ଥାନ, ଅପୂରୁବ—ଆଶ୍ଚର୍ଯ୍ୟ ।
୪୩ । ରାଜକୁମାରୀ—ରାଜାଝିଅ ।
୪୫ । ଉତ୍ସଙ୍ଗ—କୋଳ, ସଦନ—ସ୍ଥାନ, ଭ୍ରଷ୍ଟ—ନାଶ, ପୁଷ୍ଟ—ଉନ୍ନତ ।
୪୬ । ଭୃତ୍ୟ—ଚାକର ।
୪୯ । ନିର୍ଜନ—ଜନଶୂନ୍ୟ, ନୃପଜ—ରାଜସୁତ, ଲୋଭା—ଲୋଭକର ।
୫୦ । ଅଲୌକିତ—ଆଶ୍ଚର୍ଯ୍ୟ, ମର୍ତ୍ତ୍ୟେ—ପୃଥିବୀରେ ।

ନାହିଁ ଖଳ ଦୁର୍ଜ୍ଜନ ନିର୍ଦ୍ଧନ ଜନ । ଶୁଣିଲ୍ବର ପ୍ରସଙ୍ଗ ନ କହୁଁ ପୁନଃ । ୫୩ ।
ଦୂତ କବ ଝାଠ ତନଜଣେ ଜଣେ । ନୋହୁଁ ଅଧିକ କହିବୁ କି କାରଣେ ॥
ଯାହା ସମେ ବ୍ରହ୍ମାଣ୍ଡ ଉଦରେ ବର । ନାହିଁ ଜଳିଗଲା ଦନୁ ପଞ୍ଚଶର । ୫୫ ।
ତାକୁ ସମାନ ଦେବାକୁ ଅଛୁ ଏହି । ଯାହା ଦର୍ପଣ ମଧ୍ୟରେ ଦଶେ ସେହି ॥
ତାକୁ ଏରୂପେ ନିର୍ମାଣ କଲା ବିହି । କୀଟ କାଠୁ ଯେମନ୍ତେ ଅକ୍ଷର ହୋଇ । ୫୭ ।
ଯେତେ କବ ବର୍ଣ୍ଣିଛନ୍ତି ଯେତେ ନାରୀ । ଠିକେ କହି ରମ୍ଭା ରତି ନୋହେ ସରି ॥
ବଡ଼ କର ବୋଲନ୍ତି ଲାବଣ୍ୟବତୀ । ସେହି ଜନମ ହୋଇଣ ଅଛି କ୍ଷିତି । ୫୯ ।
ଯଥା ନ ଦେଖି ନଖାଇ ସୁଧା ନାମ । ସର୍ବମତେ କହି ସ୍ୱାଦୁ ମନୋରମ । ୬୦ ।
ତଥା ଅଗୁ ଜାତ ହେବ ବୋଲି ବାମା । ଖ୍ୟାତ ହୋଇଲା ଲାବଣ୍ୟବତୀ ନାମା ॥
ହାସ ଅଧର ଚାହିଁଲେ ଏ ସଂଶୟ । କରଅଛୁ କାହା ଶୋଭା କେ ଉଦୟ । ୬୨
ବାଳଅରୁଣ କି ସୁଧା ସ୍ନାନ କରି । ଅନୁରାଗ ହରଷ ମିଶିଲା ପରି । ୬୩ ।
କିବା ମାଣିକ୍ୟକୁହରୁ ମୋତି ଜ୍ୟୋତି । ଦିଶେ ତଥା ଫଟିକଇ ଦନ୍ତପନ୍ତି । ୬୪ ।
ସେ ଅଧରେ ଶୋଭା ତାମ୍ବୂଳବୋଳ । କେ କାହ କୁ ରଙ୍ଗ କଲା ହୋଏ ଗୋଳ
କାହା ରଦନ ସେ କାଳେ କି ସୁନ୍ଦର । ସିନ୍ଦୂରରେ ମାଜିଲା କି ଘନସାର । ୬୬ ।

---

୫୩ । ଦୁର୍ଜ୍ଜନ—ଦୁଷ୍ଟ, ନିର୍ଦ୍ଧନ—ଦୁଃଖୀ, ପ୍ରସଙ୍ଗ—ବିଷୟ ।
୫୫ । ବ୍ରହ୍ମାଣ୍ଡ ଉଦରେ—ସଂସାର ମଧ୍ୟରେ, ବର—ଶ୍ରେଷ୍ଠ, ସ୍ୱାମୀ, ପଞ୍ଚବାଣ—କନ୍ଦର୍ପ ।
୫୭ । କୀଟ—ପୋକ, ନିର୍ମାଣ—ତିଆର ।
୫୮ । ବର୍ଣ୍ଣିଛନ୍ତି—ବର୍ଣ୍ଣନା କରିଛନ୍ତି, ନାରୀ—ସ୍ତ୍ରୀ, ସର—ସମାନ ।
୫୯ । ବଡ଼କର—ପ୍ରଧାନ ବୋଲି, କ୍ଷିତି—ପୃଥିବୀ ।
୬୦ । ସୁଧା-ଅମୃତ, ସର୍ବମତେ-ସମସ୍ତଙ୍କ ବିଚାରରେ, ମନୋରମ-ଭଲ ।
୬୧ । ବାମା—ସ୍ତ୍ରୀ, ଖ୍ୟାତ—ବିଖ୍ୟାତ ।
୬୨ । ଅଧର—ଓଷ୍ଠ, ସଂଶୟ—ସନ୍ଦେହ, ଉଦୟ—ପ୍ରକାଶ ।
୬୩ । ବାଳଅରୁଣ—ବାଳସୂର୍ଯ୍ୟ, (ସକାଳ ସୂର୍ଯ୍ୟ, ସମୁଦ୍ରରୁ ଉଠିଲା ବେଳେ) ସୁଧାସ୍ନାନ—ଜଳରେ ଗାଧୋଇବା । ଅନୁରାଗ—ସ୍ନେହ ।
୬୪ । ମାଣିକ୍ୟ କୁହରୁ—ମାଣିକ୍ୟ ଗୁମ୍ଫାରୁ, ଫଟିକଇ—ଉଜ୍ଜ୍ୱଳ ଦିଶେ, ଦନ୍ତପନ୍ତି—ଦାନ୍ତସବୁ ।
୬୫ । ତାମ୍ବୂଳ—ପାନ, ବୋଳ—ଛିଠ, ଗୋଳ—ଭ୍ରମ ।
୬୬ । ରଦନ—ଦାନ୍ତ, ଘନସାର—କର୍ପୂର ।

ବୋଲ ଚୋବିବା ବେଳେ ଦିଶଇ ଗଳେ । ଫଗୁ ପିଇବା ଯେମନ୍ତ କାଚନଳେ
ଥିଲେ ଥାଇ ପାନପିକ କି ମଞ୍ଜୁଳ । ପକ୍ୱନାଗରଙ୍ଗ ପ୍ରାୟୁ ଗଣ୍ଡସ୍ଥଳ । ୬୮ ।
ଅଙ୍ଗେ ଅଛୁ ନବପୁଷ୍ପ ନବପକ୍ଷୀ । ଏକ ଏକ ଅଙ୍ଗେ ଲଗି ରହେ ଅକ୍ଷି । ୬୯ ।
ଭୁଅଛନ୍ତୁ ଘଣି ଅଣି ଶୋଭାସାର । ଜଗଜ୍ଜୟୀ ଜଙ୍ଗମମୂରତି ମାର । ୭୦ ।
ଅବା ମନ୍ମଥର ମନଭେଦଶର । ମରମକୁ ଭେଦିବାରେ ମନୋହର । ୭୧ ।
ହର ପଥର ହେଲେ କାତର ଘୋଟି । ଯେଣ ଏଥର ଯିବ ହୃଦୟ ଫୁଟି ।୭୨।
ରୂପ ଚୁମ୍ବକଶିଳର ମିଳ କଏ । ହୃଦୁଁ କାଢ଼ିନେବ ମନ ଲୋଭପ୍ରାୟେ ।୭୩।
ବରବର୍ଣ୍ଣିନୀ ବର୍ଣ୍ଣନା କରି ଯେତେ । ଉପମାଙ୍କ ଲଭ ତାହା ହାନି ତେତେ ॥

---

୬୭ । ପାନପିକ ଚୋବିବା ବେଳେ ଗଳା ଲାଲଦିଶେ—ଯେପରି କାଚ ନଳରେ ଅବିର ପାଣି ପଡ଼ିଥିଲେ ଦେଖାଯାଏ ।

୬୮ । ମଞ୍ଜୁଳ—ସୁନ୍ଦର, ପକ୍ୱ—ପାଚିଲା, ନାଗରଙ୍ଗ—ଲେମ୍ବୁ, ଗଣ୍ଡସ୍ଥଳେ—ଗାଲରେ ।

୬୯ । ୧—ନବପୁଷ୍ପ—ନଅଗୋଟି ଫୁଲ, ୨—ନବପକ୍ଷୀ-ନଅଟି ଚଢ଼େଇ । ୧—ପଦ୍ମ ପରି ମୁଖ, ୨—ନୀଳକଇଁ ପରି ଚକ୍ଷୁ, ୩—ବନ୍ଧୁଲି ପରି ଓଷ୍ଠ, ୪—ଶିରୀଷ ଫୁଲ ପରି ଦେହ, ୫—ତିଳଫୁଲ ପରି ନାସା, ୬—କୁନ୍ଦ ଫୁଲ ପରି ଦାନ୍ତ, ୭—ଚମ୍ପାଫୁଲ ପରି ଅଙ୍ଗୁଳି, ୮—କେତକୀ ପରି ବର୍ଣ୍ଣ, ୯—ମଲ୍ଲୀଫୁଲ ପରି ବାସ ।
୧—ନବପକ୍ଷୀ—ଖଞ୍ଜନ ପରି ଚକ୍ଷୁ, ୨—ଶୁଆ ପରି ନାକ, ୩—ମୟୂର ପରି କଣ୍ଠ, ୪—କୋଇଲି ପରି ସ୍ୱର, ୫—ହଂସ ପରି ଚାଲି, ୬—ଚକ୍ରବାକ ପରି ଗଣ୍ଡ, ୭—ସାରସର ଗ୍ରୀବା, ୮—ବଗଦେହ ପରି ଦନ୍ତ, ୯—ହଳଦୀବସନ୍ତ ପରି ବର୍ଣ୍ଣ ।

୭୦ । ଜଗଜ୍ଜୟୀ—ସଂସାର ଜୟକାରୀ, ଜଙ୍ଗମ ମୂରତି—ଗମନଶୀଳ ରୂପ, ମାର—କନ୍ଦର୍ପ ।

୭୧ । ମନ୍ମଥର—କନ୍ଦର୍ପର, ମନଭେଦ ଶର—ମନକୁ ଭେଦ କରିବା ଶର, ହୃଦୟ—ଦେହ, ଫୁଟି—ଫୋଡ଼ିହୋଇ ।

୭୨ । ହର—ମହାଦେବ ।

୭୪ । ବର ବର୍ଣ୍ଣିନୀ—ଦିବ୍ୟ ସ୍ତ୍ରୀ (ଲବଣ୍ୟବତୀ) ଲବଣ୍ୟବତୀ ସଙ୍ଗେ ଯାହାକୁ ତୁଳନା କରିବ ସେ ସବୁ ତୁଳନା କଲାପରି ମର୍ଯ୍ୟାଦା ତୁଟିଯିବ ଅର୍ଥାତ୍ ସେମାନେ ସମାନ ହେବେ ନାହିଁ ।

ଭାବ ହାବଲୀଳା ବିଳାସାଦି ଶାନ୍ତ । ଯାହା ଅଙ୍ଗେ ହୋଇଛନ୍ତି ମୂର୍ତ୍ତିମନ୍ତ ।୭୫।
ତାହା ଶୋଭା କହିଲେ ସରିବ କାହିଁ । ପୂର୍ବେ ନଥିଲା ନୋହିବ ଏବେ ନାହିଁ ॥
ରାଜା କହୁଛନ୍ତି ଜେମାକୁ କର ବର । ମୋର ମିତ୍ର ମନ୍ତ୍ରୀଙ୍କ ହୋଇଛନ୍ତି ଭାର ।୭୭।
କନ୍ୟା ଅନୁରୂପେ ଆଉ ବର ନାହିଁ । ମନ ପ୍ରଧାନ ବାଞ୍ଛୁଅଛନ୍ତି ତହିଁ ।୭୮।
ଶୁଣି ମନ୍ତ୍ରୀସୁତ କଲା ଏ ଉତ୍ତର । ଅମ୍ଭ ନୃପତି ସୁତ ନୂତନ ମାର ।୭୯।
ହୋଇବ କି କାର୍ଯ୍ୟ ଉଦଯୋଗ କଲେ । ଶୁଣି ଶୁକ ପଢ଼ିଦେଲା ସେହି କାଳେ ॥
ସୁଧାପାନ କଲା ରାହୁ ଉପାୟରେ । ପ୍ରୀତି ହୋଇଅଛନ୍ତି ଚନ୍ଦ୍ର କୁମୁଦରେ ।୮୧।
ଗୁଞ୍ଜା ତୁଲା ହୋଇଛନ୍ତି ସୁବର୍ଣ୍ଣ ତୁଲେ । କର୍ମସବୁ ଉଚ୍ଚନୀଚ ପାଞ୍ଚ ବଳେ ।୮୨।
ଶୁଣିକୁମାରବରଆଶ୍ଚର୍ଯ୍ୟଘେନି । ବୋଲେ ତୁହିଦେଖିଛୁ କି ମେଧାବିନୀ ।୮୩।
କୀର କହିଲା ସେ ରସାଭୂଷା ଯୋଷା । ଶିଶୁକାଳରୁ ମୁହିଁ ତାହାଙ୍କ ପୋଷା ॥
ଶୁଣି ଚଞ୍ଚୁ ଚରଣକୁ ଧରି ତାର । ପୁଣି ଧରିଲା ବୋଇତଅଳ କର ।୮୫।
ରାମା ନାମେ ମୋହନ ଉଚ୍ଚାଟ ଘର । ରୂପେ କି ଥିବ ନୋହୁଛୁ ସେ ଗୋଚର ॥
ତୁମ୍ଭ ବଚନ ବସନ୍ତ ଋତୁ ହେଲା । ତାହା ଯୋଗୁଁ ଅଶାତରୁ ପଲ୍ଲବିଲା ।୮୭।
କଲେ ନିରାଶ ହୋଇ ଗ୍ରୀଷ୍ମକାଳ । ତାକୁ ଜାଳିଦେବଟି ବିରହାନଳ ।୮୮।
ଶୁଣି ସେ ବୋଇଲେ ବୀର ହୁଅ ସ୍ଥିର । ଅମ୍ଭମାନଙ୍କୁ ଘେନି ଉପାୟ କର ।୮୯।
ପରବେଶ ହେଲେ ପୁଷ୍ପକାଳ ସାର । ପିକ ନ ଲଭଇ ନିକ ସହକାର ।୯୦।

---

୭୫ । ଅଙ୍ଗେ—ଦେହରେ, ମୂର୍ତ୍ତିମନ୍ତ—ଦେହବନ୍ତ ।
୭୭ । ବର—ସ୍ୱାମୀ
୭୮ । ଅନୁରୂପେ—ସମାନରେ, ପ୍ରଧାନ—ଶ୍ରେଷ୍ଠ ।
୭୯ । ନୂତନ—ନୂଆ, ମାର—କନ୍ଦର୍ପ ।
୮୦ । ଉଦ୍ଯୋଗ—ଚେଷ୍ଟା, ସେହିକାଳେ—ସେହି ସମୟରେ ।
୮୧ । ସୁଧାପାନ—ଅମୃତପାନ, କୁମୁଦ—କଇଁ ।
୮୨ । ଗୁଞ୍ଜା—କାଇଁଚ ।
୮୩ । ମେଧାବିନୀ—ବିଦୁଷୀ, ପଣ୍ଡିତା ।
୮୪ । କୀର—ଶୁଆ, ରସାଭୂଷା—ପୃଥିବୀର ଅଳଙ୍କାର, ଯୋଷା—ନାରୀ
ଶିଶୁକାଳରୁ—ପିଲାଦିନରୁ ।
୮୫ । ଚଞ୍ଚୁ—ଥଣ୍ଟ ।
୮୭ । ଅଶାତରୁ—ଆଶାବୃକ୍ଷ, ପଲ୍ଲବିଲା—ବୃଦ୍ଧିପାଇଲା
୮୮ । ବିରହାନଳ—କାମ ଅଗ୍ନି ।
୯୦ । ପୁଷ୍ପ କାଳ—ଫୁଟିଲା ସମୟ, ବସନ୍ତ ସମୟ, ସହକାର—ଅମ୍ବଗଛ ।

ଏ ବଚନେ ଶାନ୍ତ ଲଭି ସେହୁ ପୁନଃ । ଖଣ୍ଡ ପକାଇ କଲେ ଶକୁନମାନ ।୯୧।
ସାଧୁଙ୍କୁ ତହିଁ ଅନୁକୂଳ ଦେଲେ । ବାଙ୍କ ବ୍ରହ୍ମଗୃଧ୍ର କଣେ ସଙ୍ଗେ କଲେ ॥
ଶୁଭେ ସେ କାଳେ ଅତାୟୀବାଣୀ ଭ୍ରମେ । ଗଲା ଦକ୍ଷିଣେ ଦ୍ୱିଜ ଗୋମାୟୁବାମେ
ପଛୁଁ ପବନ ବହିଲା ହୋଇ ସ୍ୱଚ୍ଛ । ଗୋପୀ ଧୀବରୀ ଡାକିଲେ ଦଧିମାଛ ।୯୪।
ଆଶା ବଢ଼ିଲା ଶୁଭସୂଚକ ଜାଣି । ଗ୍ରନ୍ଥ ସମାପତ ତୋଷ ପୁଂସମଣି । ୯୫ ।
ନୀଳ ରୋହିତଶରୀର ଦରହାରୀ । ଶ୍ରୁତିନିସ୍ତାରକ କୀର୍ତ୍ତିଖ୍ୟାତକାରୀ ।୯୬।
ମୀନମୂର୍ତ୍ତି ରଘୁପତି ଶ୍ରୀପୟୁର । ଭାବେ ଉପେନ୍ଦ୍ର ଭଞ୍ଜ ବୀରବର ।୯୭।

---

## ଅଷ୍ଟମ ଛାନ୍ଦ

( ଲାବଣ୍ୟବତୀର ଶିବପନ୍ଥ ଯୋଗୀ ସନ୍ନ୍ୟାସୀ ଚନ୍ଦ୍ରଭାନୁ ପାଶେ ପ୍ରବେଶ )

ରାଗ—ମଙ୍ଗଳ ଗୁର୍ଜ୍ଜରୀ ।

ଏଥୁ ଅନନ୍ତରେ ରସ ଶୁଣ ସୁଜନ । ମନ୍ତ୍ରୀକି ଡାକି ସିଂହଳଦ୍ୱୀପ ରାଜନ ॥
ବୋଇଲା କିଶୋରଦଶାପ୍ରାପ୍ତ କୁମାରୀ । କରବେଗେ ବର ଦେବା ବିବାହକରି ॥
ଶୁଣିଲେ ସୁନ୍ଦରୀ ଶୋଭା ହରି ତୋଷରେ । ହରଯୋଗିଙ୍କିବେ ଅବା କାଧି

---

୯୧ । ଶକୁନ—ଚିହ୍ନ ।

୯୨ । ବାଙ୍କ—ଜ୍ଞାନୀ, ବ୍ରହ୍ମଗୃଧ୍ର—ଜିତେନ୍ଦ୍ରିୟ ।

୯୩ । ଗୋମାୟୁ—ବିଲୁଆ, ଭ୍ରମେ—ଭୁଲିଲେ, ଦ୍ୱିଜ—ବ୍ରାହ୍ମଣ ।

୯୪ । ଗୋପୀ—ଗଉଡୁଣୀ, ଧୀବରୀ—କେଉଟୁଣୀ, ଦଧି—ଦହି ।

୯୫ । ଶୁଭ ସୂଚକ—ମଙ୍ଗଳ ଚିହ୍ନ, ପୁଂସମଣି—ପୁରୁଷ ଶ୍ରେଷ୍ଠ ।

୯୬ । ନୀଳ—ନୀଳବର୍ଣ୍ଣ,ରୋହିତ—ରୋହିମାଛ,ଶରୀର—ଦେହ,ଦର-ଭୟ
ହାରୀ—ହରଣକାରୀ,ଶ୍ରୁତି—ବେଦ,ନିସ୍ତାରକ—ଉଦ୍ଧାରକ, କୀର୍ତ୍ତି-
ଯଶ, ଖ୍ୟାତକାରୀ—ବିଖ୍ୟାତକାରୀ,ମୀନମୂର୍ତ୍ତି—ମାଛରୂପ, ଶ୍ରୀପୟୁର-
ଲକ୍ଷ୍ମୀଯୁକ୍ତ ପଦ ।

ଶଙ୍ଖାସୁର ବ୍ରହ୍ମାଙ୍କ ବେଦପୋଥି ନେଇ ସମୁଦ୍ରରେ ଲୁଚିବାରୁ ଭଗବାନ ମତ୍ସ୍ୟରୂପଧରି ତାଙ୍କୁ ମାରି ବ୍ରହ୍ମାଙ୍କୁ ଶାନ୍ତ କରିଥିଲେ । ସେହି ଭଗବାନ ରାମଚନ୍ଦ୍ରଙ୍କୁ ମୋର ପ୍ରଣତି ।

---

## ଅଷ୍ଟମ ଛାନ୍ଦ

୨ । କିଶୋର ଦଶା—ଯୌବନ ଅବସ୍ଥା, କୁମାରୀ—ଝିଅ, ବର—ସ୍ୱାମୀ ।

ବଶରେ ।୩। ନୃପତ୍ତ ହୋଇ ପ୍ରମାଦ ସମ୍ପତ୍ତିବାଧ । ଶିରିସ୍ନେହ ତୁଟିଗଲେ-ସେ ହେବେ କୋଧ ॥ ଶୁଣି କରଯୋଡ଼ି କହେ ସଚିବ ତହିଁ । ମୋହ ବରୁବକୁ ବର ଦଶୁଛି ନାହିଁ ।୪। ଶିବଙ୍କୁ ଦେଲେ ପାର୍ବତୀ ଶାପ ପଡ଼ିବ । ଭସ୍ମଭୂଷଣ ଅଙ୍ଗେ ଏ କେହି ଜଡ଼ିବ ।୬। ଚନ୍ଦ୍ର ତ କ୍ଷୀଣ କଳଙ୍କୀ ତହିଁକି ସୁଖ । ଅଶ୍ୱିନୀ-କୁମାର ହେଲେ ତୁରଙ୍ଗ ମୁଖ ।୭। କୁସୁମଧନୁ ଅତନୁ ଅଛୁ ଅତ କେ । ଚିନ୍ତପଟ ଦେଖାଇବା ମାନବଲୋକେ । ୮ । ତୁଣ୍ଡ ନରବରପନ୍ତ କରିବା ଅଣି । ଇଚ୍ଛାବର ବରୁ ପଛେ ରମଣୀ ମଣି । ୯ । ଭୂପତ୍ତ ବର ତହିଁକି ହେଲେ ସମ୍ମତ । ମାନବେ ଲେଖା ନ ଗଲା ସୁନ୍ଦରୀ ଚିନ୍ତ ।୧୦। ଜ୍ଞାନାନନ୍ଦ ନାମେ ଏକ ସନ୍ନ୍ୟାସୀ ଥିଲା । ସଚିବ ପ୍ରତ୍ତରୁ ମାୟା ସମୀପେ ଗଲା । ୧୧ । ସେ କାଳେ ସେ ବିଶ୍ୱକର୍ମୀ ଏକତ୍ରିମନେ । କାମିଣ୍ଟଚିନ୍ତ ପ୍ରତିମା କେମା ସମାନେ । ୧୨ । ଜଗତମଞ୍ଜୁ ମଞ୍ଜୁଷ ମଧ୍ୟେ ପ୍ରତିମା । ଦର୍ପଣ ଫୁଟି ଦଶୁଛୁ ବାଳା ସୁଷମା । ୧୩ । ଏକାଳେ ସନ୍ନ୍ୟାସୀ କର ସାମ ଗାୟନ । ଲାବଣ୍ୟବତୀ ସ୍ୱରୂପ ଘେନିଲା ଦାନ । ୧୪ । ଦାନ କଲାବେଳେ ମାନ କହିଲେ ଏତେ । ଅମ୍ଭ ବଣିଜ୍ୱୀ ଖ୍ୟାତ କର ଜଗତେ । ୧୫ । ସାଜିକାର କର ଯୋଗୀ ବାହୁଡ଼ି ଅସି ।

---

୩ । ହର—ବସ୍ତ୍ର, ହର—ଗୈରିଲ, ବଧୂବଶରେ—ବଧୀତାବଳରେ ।

୪ । ନୃପତ୍ତ—ରାଜା, ପ୍ରମାଦ—ଦୁଃଖ, ଶିରି—ଲକ୍ଷ୍ମୀ, କୋଧ—ରାଗ, ବସ୍ତୁ ଲାବଣ୍ୟବତୀ ଙ୍କ ଦେଖି ଲୋଭକର ନେଲେ ଲକ୍ଷ୍ମୀ ଅମ୍ଭଉପରେ ରାଗକର ଚାଲିଯିବେ ତେଣୁ ଅମ୍ଭେ ଦୁଃଖିତ ହେବା—

୫-୬ । ସଚିବ—ମନ୍ତ୍ରୀ, ଭସ୍ମ ଭୂଷଣ—ପାଉଁଶ ବୋଳା, ଅଙ୍ଗେ—ଦେହରେ ଜଡ଼ିବ—ମିଶିବ ।

୭ । କଳଙ୍କୀ—କଳଙ୍କ ଯୁକ୍ତ, କ୍ଷୀଣ-ସରୁ, ତୁରଙ୍ଗ—ଘୋଡ଼ା ।

୮ । କୁସୁମ ଧନୁ—କନ୍ଦର୍ପ, ମାନବଲୋକେ—ପୃଥିବୀରେ ।

୯ । ତୁଣ୍ଡ – ଏକତ୍ରିତ, ନରବରପନ୍ତ—ରାଜାସବୁ ।

୧୦ । ଭୂପତ୍ତବର—ରାଜାଶ୍ରେଷ୍ଠ ।

୧୧ । ସମୀପେ—ପାଖକୁ ।

୧୨ । ବିଶ୍ୱକର୍ମୀ—ସ୍ୱର୍ଗ କାରଗର, ଏକତ୍ରି—ଏକାଠି, ପ୍ରତିମା—ରୂପ,

୧୩ । ମଞ୍ଜୁ-ସୁନ୍ଦର, ମଞ୍ଜୁଷା-ପେଡ଼ୀ, ସୁଷମା—ସୌନ୍ଦର୍ଯ୍ୟ ।

୧୪ । ସାମ—ବେଦ ।

୧୫ । ବଣିଜ୍ୱୀ—କାରଗର ପଣିଆ, ଖ୍ୟାତ—ପ୍ରଚାର ।

ଦେଖାଇ ସ୍ୱରୂପ ମନ୍ତ୍ରୀ ମତକୁ ତୋଷି । ୧୬ । ସେ ବୋଇଲେ ଧର୍ମତାତ
ଅମ୍ଭେ ତୁମ୍ଭର । ଅମ୍ଭ ବୋଲେ ଏହା ଯେନ ଭ୍ରମ ସଂସାର । ୧୭ ।
ଦେଖାଇ ଭୂପତିଗଣେ ବଶ କରିବ । ଦୋଷ ଗୁଣ ସୁନ୍ଦର ପଣକୁ ବୁଝିବ ॥
ଏ ବଚନେ ଶିଷ୍ୟ କରେ ପେଡ଼ା ବୁହାଇ । ଏଣୁ ଏବେ ଏତେ ଦେଶ ଭ୍ରମିଲି
ସେହି । ୧୯ । ଯେଉଁ ଦେଶେ ଯେଉଁ ରୂପେ କଲେ ଆଦର । କହୁଥାଇ
ଗୃହିଁ ମହୀପତିନିକର । ୨୦ । କୁନ୍ତଳେ କୁନ୍ତଳବର୍ଣ୍ଣେ ସାରିଲେ ଧନ ।
ମତ୍ସ୍ୟକନ ମତ୍ସ୍ୟପରି ନିମିଷହୀନ । ୨୧ । ନିଷଧେ ନିଷେଧି ଆନ ଲୋକନ
କଲେ । ମାଳବରେ ମାଳା କରି ତାହା ଜପିଲେ ।୨୨। ମଘରେ ମଘବାପଦ
ପାଇଲି ପରି । ବିଦେହେ ବିଦେହଶରେ ହୋଇଲେ ଧୀର । ୨୩ ।
କନୋଜଙ୍କ କନ୍ୟା ଓଜ ଶୁଭିଲି ବାଣୀ । ମରୁଦେଶ ମରୁ ରମ୍ଭା ଏମନ୍ତେ
ଭଣି । ୨୪ । ଅଙ୍ଗରେ ଅଙ୍ଗନା ଅଙ୍ଗ ପ୍ରଶଂସା କଲେ । ଏହି ରମ୍ଭା ବୋଲି
କଳି କଳିଙ୍ଗେ ହେଲେ ॥ ଧାତା ହଠ ଏହି ମରହଟ୍ଟ କରିବ । ସଉରାଷ୍ଟ୍ରେ
ଭାଷି ସଉଦାମିନୀ ସ୍ଥିର । ୨୬ । ଗୈ୍ରଳେ ନିଗ୍ରେଳେ ଯୋଡ଼ାଇ ରଖିବା
ଚିନ୍ତା । ଦ୍ରାବିଡ଼େ ନିବିଡ଼େ ଆଲିଙ୍ଗନେ ମମତା । ୨୭ । ଗୁଜୁରାଟ
ରାଜନନେ ଦେଖିବା ଇଚ୍ଛା । ବିଦର୍ଭରେ ଦର୍ଭହାସୀ ଦର୍ଶନ ବାଞ୍ଛା । ୨୮ ।
ଉତ୍କଳେ ଉତ୍କଳ ହୋଇ ବିରହେ ଭାସି । ଗଉଡ଼ ଏ ଗଉରବ ଗଉଡ଼େ
କରି । ୨୯ । ନେପାଳେ କପାଳେ ଥିଲେ ପାଇବା ଭାବି । ମାଗଧେ

---

୧୬ । ବାହୁଡ଼ି—ଫେରି, ସ୍ୱରୂପ—ସେହିପରି ରୂପ ।
୧୭ । ଧର୍ମତାତ—ଧର୍ମପିତା, ଭ୍ରମ—ଭୁଲ, ସଂସାର—ଜଗତ ।
୧୮ । ଭୂପତିଗଣେ—ରାଜାମାନଙ୍କୁ ।
୨୦ । ଆଦର—ସମ୍ମାନ, ମହୀପତି ନିକର—ରାଜାସବୁ ।
୨୧ । କୁନ୍ତଳବର୍ଣ୍ଣ—ବାଳର ବର୍ଣ୍ଣପରି କଳା, ନିମିଷହୀନ—ଚକ୍ଷୁର ପଲକ ନ ପକାଇବା ।
୨୨ । ନିଷେଧି—ମନାକରି, ଲୋକନ—ଦେଖିବା, ମାଳା—ହାର ।
୨୩ । ମଘବାପଦ—ଇନ୍ଦ୍ରପଦ, ବିଦେହଶର—କନ୍ଦର୍ପ ବାଣ ।
୨୪ । କନ୍ୟା—ସ୍ତ୍ରୀ, ଓଜ—ଶ୍ରେଷ୍ଠ, ବାଣୀ—କଥା, ଭଣି—କହି ।
୨୬ । ଧାତା—ବିଧାତା, ହଠ—ଗୈ୍ଳକି, ସୌଦାମିନୀ—ବିଜୁଳି ।
୨୭ । ନିଗ୍ରେଳ—ଲୁଗା, ଚିନ୍ତା—ଭାବନା, ନିବିଡ଼େ—ଭଲଭାବରେ । ଆଲିଙ୍ଗନ—କୋଳକରିବା, ମମତା—ଇଚ୍ଛା ।
୨୮ । ଦରହାସୀ—ମୃଦୁହାସୀ, ସୁନ୍ଦରୀ ।
୨୯ । ଉତ୍କଳ—ଉତ୍କଣ୍ଠିତ, ଗଉରୀ—ଶିବସ୍ତ୍ରୀ, ଗଉରବେ—ମାନ୍ୟସହିତ ।

ମାଗଧମୁଖେ ବର୍ଣ୍ଣାଇ ଛନ୍ଦ ।୩୦। କୁଞ୍ଜଗଳେ ଗଳେ ବାନ୍ଧି ବୁଲିବା ସ୍ନେହ୍ନା ।
ବଙ୍ଗାଳୀ ଗାଳି ଉପମାବଳୀକି ଦେଇ । ୩୧ । ଲୋମଶ ଲୋମହର୍ଷିତ ଦେଖି
ଦ୍ୱିରଡ । କଳେବରରେ କଳେବରରେ ଆନନ୍ଦ କାଡ । ୩୨ । କେରଳେ
ଶ୍ରବେ କେରଳମାୟା ହୋଇବ । ଯମନ ମନରୁ ଭିନ୍ନ ନୋହିଲା ଭାବ ।୩୩।
ସିନ୍ଧୁରେ ଭାସିଲେ ସିନ୍ଧୁରେ ଯେ ଝାସିବ । ସିନ୍ଧୁରଗମନା ପ୍ରତିଅଙ୍ଗେ
ମିଶିବ । ୩୪ । ବାଳା ତୁଳାପିତୁଳାକୁ ଗୃହି ସରାଗେ । ପିତୁଳା କର
ରଖିଲେ ନୟନ ଯୁଗେ । ୩୫ । ବିଦଗଧେ ବିଦଗଧ କାମ ଦହନେ । ସେ
ଭାବନା ନ ଛାଡ଼ିଲେ ରଜନୀ ଦିନେ । ୩୬ । କେ ବୋଲେ ପଟ କି
ଏ କାହାର କପଟ । ଦେଖିଲେ କାହିଁତ ଚିତ୍ତ ହୋଏ ଲମ୍ପଟ । ୩୭ । କେ
ବୋଲେ ଏ କେବ୍ଭ ହେଲା ଦମ୍ଭରହାଇଁ । ସାତକୁମ୍ଭ କୁମ୍ଭଜରକାକୁ
ବହିଲା । ୩୮ । କେ ବୋଲେ ସତେ କାମିନୀ ଅଛି ଏମନ୍ତେ । କେମନ୍ତେ
ଗଢ଼ିଲା ବିହି ଅପୂର୍ବ କେତେ । ୩୯ । କେ ବୋଲେ ସତେ ଏ ରୂପ ଥିଲେ
ତରୁଣୀ । ଏତେକାଳେ ଅଳଙ୍କୃତା ହେଲା ଧରଣୀ । ୪୦ । କେ ବୋଲେ
ମୋହନ ମୂର୍ତ୍ତିମନ୍ତ ହୋଇଲା । ସକଳସୁନ୍ଦର ଅଙ୍ଗେ ଘେନି ଅଇଲା । ୪୧ ।
କେ ବୋଲେ କି ଅନ୍ୟ ନୋହେ ନେତ୍ରସୁକୃତ । ଦେଖିଲାଇ ଲାବଣ୍ୟ-
ବତୀର ଆକୃତ । ୪୨ । ବର୍ତ୍ତିଲେ ଯୁବା ସୃଷ୍ଟି କିବା ପ୍ରଳୟ । ହୋଇଲା
ହୋଇଛି ଉତପାତ ଉଦୟ । ୪୩ । ବିଦ୍ୟୁସ୍ଥିର ଇନ୍ଦୁ ଶର କାଣି ଧବଳ ।

---

୩୦ । ମାଗଧମୁଖେ—ଭାଟମୁହଁରେ ।

୩୧ । ଉପମ ବଳୀ—ଉପମା ସବୁ ।

୩୨ । ଲୋମହର୍ଷିତ—ଲୋମଟାଙ୍କୁରିବା, କଳେବରେ—ଦେହରେ ।

୩୩ । କେରଳ—କେଳା, କେରଳଦେଶ ।

୩୪ । ସିନ୍ଧୁରେ—ସମୁଦ୍ରରେ, ଝାସିବ—ବୁଡ଼ିବ, ସିନ୍ଧୁର ଗମନା—
ହାତୀଗମନା, ପ୍ରତିଅଙ୍ଗେ—ସାରାଦେହରେ ।

୩୫ । ସରାଗେ—ସ୍ନେହବଶରେ, ନୟନଯୁଗେ—ଚକ୍ଷୁ ଦୁଇରେ ।

୩୬ । ବିଦଗଧ—ବ୍ୟସ୍ତ, କାମଦହନ—କନ୍ଦର୍ପାଘାତ, ରଜନୀ—ରାତି ।

୩୮ । ସାତକୁମ୍ଭ—ସୁନାକୁମ୍ଭ ।

୪୦ । ତରୁଣୀ—ସ୍ତ୍ରୀ, ଅଳଙ୍କୃତା—ଭୂଷିତା, ଧରଣୀ—ପୃଥିବୀ ।

୪୨ । ନେତ୍ରସୁକୃତ—ଚକ୍ଷୁ ତପସ୍ୟା, ଆକୃତ—ରୂପ,

୪୩ । ପ୍ରଳୟ—ବିନାଶ, ଉଦୟ—ପ୍ରକାଶ ।

ଅମଳିନ ହୋଇ ତ ନଳିନ ବିକାଶ ॥ ପୁଣି ବିଗ୍ରହଲେ ବଳଭୂମି ବିଗ୍ରହ ।
ଅଙ୍ଗେ ଅନଙ୍ଗ ରହିଲା କି ଦୁର୍ଗକର ।୪୫। ଦେଖ ଏ ପ୍ରତ୍ୟକ୍ଷ କଥା
କରୀ କି ହରି । ମାରେ ଏବେ ଅରୋହିଛି ହରିକି କରୀ ।୪୬। ଦର୍ଶନେ
ରଜନ ଯୋଗ ଅଗେ ଦେଉଛି । କଞ୍ଜପରେ ରଞ୍ଜନ ଖଞ୍ଜନ ହୋଇଛି ।୪୭।
ଯେ କାମିନୀ କେତେ ଅନୁମାନ କି ତାର । ନୋହେ ସେ ପୁରୁଷ କେଉଁ
ଥସୁ ତା କର ।୪୮। ହେଲେ ହୋଇଥିବ ଅବା ବିଧାତାମାତା । ମନେ
ମନାସିବା କଥା ହୁଅଇ କି ତା ।୪୯। ପ୍ରୟୋଗେ ଅସୁରୀ ସୀତାସଦୃଶ
ପର । ଏ ରୂପକୁ ଅଛି କି ସେ କାମିନୀ କର ।୫୦। ଏମନ୍ତେ ସ୍ଵମା
ପ୍ରଶଂସା ସଂସାରେ ଖ୍ୟାତ । ନୃପତି ସମୂହ ହେଲେ ଉଛନ୍ନ ଚିତ୍ତ ।୫୧।
ମନକୁ ପ୍ରେଷିତ କଲେ ସିଂହଳଦ୍ଵୀପ । ଶୟନେ ଦେଖିଲେ ସ୍ଵପ୍ନେ ବାଳାସ୍ଵରୂପ ॥
ଅସର ପାଇ କନ୍ଦର୍ପ କୁସୁମ ଶର । ସାରିଲେ ଉଶୀର ବାଟୀ ଶିଶିରକର ।୫୩।
ଶିଶିରକରରେ ରବି ଛବି ପାଇଲେ । ନବ-ପଲ୍ଲବଶୟନ କରି ଶୋଇଲେ
।୫୪। ଦ୍ଵିଜ ତୁଣ୍ଡୀଭୂତ କରି ଚଣ୍ଡୀ-ବଚଣ । ପ୍ରତିଦିନ କରିବାରେ
ହେଲେ ନିପୁଣ ।୫୫। ଶମ୍ପାଗୋପ୍ୟ ଅନୁକମ୍ପା କରିବା ପାଇଁ । ଶିରେ
ଗୋଦୋହନ କରି ଚମ୍ପା ଚଢ଼ାଇ ॥ ଅଜନ୍ମସୁଖୀ ନୟନେ ଦେଖିବା ପାଇଁ ।
ଗଣେଶଙ୍କୁ ଲଡ଼ୁ ଦେବା ଗଣନା ନାହିଁ ।୫୬। କରେ ଛୁଇଁବାକୁ ତା'ର
କୁଚକଳସୀ । ରମାବଲ୍ଲଭଙ୍କୁ ଦେଲେ ଲକ୍ଷେ ତୁଳସୀ ।୫୮। କାମଶାସ୍ତ୍ର ଦେଖି

---

୪୪ । ଚପଳା—ବିଜୁଳି, ଇନ୍ଦୁ—ଚନ୍ଦ୍ର, ଚିର—ସ୍ଥାୟୀ, ଅମଳିନ—ମଳିନ ନ ଯାଇ, ନଳୀନ—ପଦ୍ମ, ବିକାଶ—ଫୁଟିବା ।

୪୫ । ବଳଭୂମି—ଯୁଦ୍ଧକ୍ରୀଡ଼ାସ୍ଥାନ, ଅନଙ୍ଗ—କନ୍ଦର୍ପ ।

୪୬ । କରୀ—ହାତୀ, ହରି—ସିଂହ, ଆରୋହିଛି—ଚଢ଼ିଛି ।

୪୭ । ଦଶନେ—ଦେଖିବାରେ, କଞ୍ଜ—ପଦ୍ମ ।

୪୯ । ମନାସିବା—ବାଞ୍ଛିବା, ବିଧାତାମାତା—ଅଦନାସ୍ତ ।

୫୨ । ପ୍ରେଷିତ—ଉତ୍ସୁକ, ପଠାଇବା, ବାଳାସ୍ଵରୂପ—ଲାବଣ୍ୟବତୀ ରୂପ ।

୫୩ । ଅସର—ଫୁରସତ, ଉଶୀର—ବେଣାଚେର, ଶିଶିରକର—ଚନ୍ଦ୍ରକିରଣ ।

୫୪ । ଶିଶିରକର—ଚନ୍ଦ୍ରର କିରଣ, ରବି—ସୂର୍ଯ୍ୟ, ନବପଲ୍ଲବ—ନୂଆପତ୍ର, କଅଁଳିଆ ପତ୍ର ।

୫୫ । ତୁଣ୍ଡୀଭୂତ—ଏକତ୍ର, ନିପୁଣ—ପାରଗ ।

୫୬ । ଶମ୍ପାଗୋପ୍ୟ—ବିଜୁଳିପରି ଉଜ୍ଜ୍ୱଳ, ଦେହା ଅନୁକମ୍ପା—ଦୟା ।

୫୮ । କୁଚକଳଶୀ—ବର୍ତ୍ତୁଳ କୁଚ, ରମାବଲ୍ଲଭ—ନାରାୟଣ ।

ସ୍ତ୍ରିଗ୍ରିବଶୀକରଣ । କଲେ ମନ୍ତ୍ର ଅଜପଥ୍ ମଣି ଭଅଣ । ୫୯ । ଶୋଭା ଅର୍ଥେ ମଣ୍ଡି ହେଲେ ରନ୍ନାଳଙ୍କାରେ । ପଉଣ୍ଡ୍ରିକ ବାସୁଦେବ ହେଲ ପ୍ରକାରେ ।୬୦। କେତକୀଫୁଲ ବାଞ୍ଛା ଚ୍ଛ ଯଥା ମଧୁପ । ତଥା ନୃପମଣ୍ଡଳ ବାଳାରେ ଲୋଲୁପ ॥ ନ ଛୁଟିଲ ପୁଣି ଆଶା କେବେ ତାଙ୍କର । ବରଦ୍ଧଣୀନାୟିକା ଛିବଳୀ ପ୍ରକାର । ୬୨ । ଉଇତରୁଫଳେ ଖଦ୍ୱେ ଅଶାୟୀ ପର । ଲବଣ୍ୟବତୀ ନାମକୁ ମନ୍ତର କର । ୬୩ । ବାଳା ପ୍ରତିଅଙ୍ଗ ଶୋଭା ମାନସେ ଥୋଇ । ଅପଣା ଶୋଭାକୁ ଅଦରଶରେ ଗୃହି । ୬୪ । ବାହ୍ୟରେ ଅରମ୍ଭ ସେ ଅନ୍ତରେ ବ୍ୟାକୁଳ । ଭସ୍ମ ଅଚ୍ଛନ୍ନରେ ଥାଇ ଯଥା ଅନଳ । ୬୫ । ବିଚକ୍ଷଣ ଜନ ପେଷି ସିଂହଳଦ୍ୱୀପେ । ପ୍ରୀତି ଲଗାଇଲେ ରତ୍ନେଶ୍ୱର ମହୀପେ । ୬୬ । ଲବଣ୍ୟବତୀ ସ୍ୱରୂପ ଅସିବା ଦୋଷ । ଅଗୁଁ ପ୍ରକଟ ହୋଇଲ କର୍ଣ୍ଣାଟ-ଦେଶ । ୬୭ । ଚନ୍ଦ୍ରଭାନୁ ଭାବ ଯାହା ସାଧୁର କହି । ତାକୁ କେ କାମିଣି ରୂପ ଚେ ପଟେ ଲହି । ୬୮ । ରୂପକାର ରଙ୍ଗାଜୀବ ମର୍ତ୍ତ୍ୟରେ ତାହିଁ । ମନକୁ ଅସେ ମଘବା ଭୁବନେ ନାହିଁ । ୬୯ । ହୋଇଥିଲ ମୋ ନେତ୍ରର ବାଧାତା ରଣୀ । ଶୁଣିବ ବୋଲ୍ କି ଅପଣେ ପ୍ରତି ତରୁଣୀ ।୭୦। ଗୁରୁଦ୍ରୋହୀ ପୁଣ ସ୍ୱର୍ଗ ଭୋଗ ପାଇଛୁ । ସାତସିନ୍ଧୁ ଚନ୍ଦ୍ରଭିତରରେ ରହିଛୁ । ୭୧ । ପକ୍ଷ ବିନା ହୋଇଅଛୁ ଗଗନଗଢ । ଜଳ ଉପରେ ଶଇଳ ଭାସି ଅଛନ୍ତ । ୭୨ ।

---

୬୦ । ରନାଳଙ୍କାରେ—ସୁନା ଗହଣାରେ, ପୌଣ୍ଡ୍ରିକ ବାସୁଦେବ—ପୌଣ୍ଡ୍ରିକରାଜା ଯେପରି ନକଲ ଗଦା ପଦ୍ମ ଧରି କାଠଗରୁଡ଼ ଚଢ଼ି ବାସୁଦେବ ହୋଇଥିଲେ ।

୬୧ । ବାଞ୍ଛା ଚ୍ଛ—ଇଚ୍ଛା କରିବା, ମଧୁପ—ଭ୍ରମର, ନୃପମଣ୍ଡଳ—ରାଜାମାନେ ଲୋଲୁପ—ଲୋଭୀ ।

୬୨ । ତ୍ରିବଳୀ—କପାଳର ତିନିରେଖା ବା ପେଟର ତିନି ରେଖା ।

୬୩ । ଉଇ ତରୁଫଳ—ଡେଙ୍ଗାଗଛ ଫଳ, ଖଦ୍ୱେ—ବାଙ୍ଗରମାନେ ।

୬୪ । ମାନସେ—ମନମଧ୍ୟରେ, ଅଦରଶରେ—ଅରସିରେ ।

୬୫ । ବାହାରରେ—ବାହାରେ, ଅନ୍ତରେ—ମନରେ, ଭସ୍ମ—ପାଉଁଶ, ଅଚ୍ଛନ୍ନ—ଘୋଡ଼ହେବା, ମହୀପେ—ରାଜା ।

୬୬ । ବିଚକ୍ଷଣ—ଚତୁର, ମହୀଶ—ରାଜା ।

୬୯ । ରଙ୍ଗାଜୀବ—ଚିତ୍ରକର, ମର୍ତ୍ତ୍ୟରେ—ପୃଥିବୀରେ, ମଘବାଭୁବନ—ଇନ୍ଦ୍ରପୁର ।

୭୨ । ପକ୍ଷୀ—ଡେଣା, ଗଗନଗଢ—ଅକାଶରେ ଠିବା ।

ଯେଉଁ ଦଇବେ ହୋଇଛୁ ଏତେ ବଧାନ । ସେହି ଦଇବେ ହେଲ କି ବାଳାରତନ । ୭୩ । ଜ୍ୟୈଷ୍ଠ ତୃଷିତ ଗୃତକ ଯେମନ୍ତ ହୋଇ । ଜଳଦ ଦର୍ଶନେ ତନମନ କରଇ । ୭୪ । ଅଷାଢ଼େ ଘନଦୁର୍ଦ୍ଦିନ ଚକୋରପନ୍ତି । ଅଶା ଯେହ୍ନେ ଶରଦ ଅଗମେ କରନ୍ତି । ୭୫ । ସ୍ୱରୂପ ପ୍ରବେଶ ତଥା ଚେଷ୍ଟିଲ ଅଶା । ଅସର ହୋଇଲ ତେଣୁ ବାସର ନିଶା । ୭୬ । ପାଶ୍ଲେଷ୍ଟାଇ ପିଠିଆଇ ମନକୁ ମୁଦେ । ଚର୍ଣ୍ଣ ତେରେ ଯଥା ମୃଗ ଘଣ୍ଟି ଶବଦେ । ୭୭ । ସପ୍ରେମ ନୟନ ସେହି ଦଗକୁ ଚେଷ୍ଟି । ନିରେଖେ କାଗଜଚକ ଯଥା କୁତୁକୀ । ୭୮ । ନିଦ୍ରା କ୍ଷୁଧା ବାଧା କରିପାରିଲେ ନାହିଁ । ଅଲପ ଅନୁରାଗ କି ହୋଇବ କହି । ୭୯ । ବିନାୟକ ପୂଜ୍ୟ ସଦାଶିବ ତୋଷଦ । ସୁମନସ ଗଣର ଯେ ହରେ ବିଷାଦ । ୮୦ । ଉପଇନ୍ଦ୍ର ଭଞ୍ଜ ବୀରବର ବଗୃବେ । ଏ ଗୀତ ଶେଷ କରିବ ତାଙ୍କ କୃପାରେ । ୮୧ ।

---

## ନବମ ଛାନ୍ଦ

(ଚନ୍ଦ୍ରଭାନୁ ପାଖରେ ଲବଣ୍ୟବତୀର ଚିତ୍ରପଟ ନେଇ ସନ୍ନ୍ୟାସୀ ପ୍ରବେଶ)

ରାଗ—ସମଗୁଜ୍ଜରୀ

ହୋଇଲ ପ୍ରବେଶ ଗ୍ରୀଷମ ସମୟ ସୁଷମା ପ୍ରୌଢ଼ା ଯୁବତୀକି । ରଜନୀ ମନୋହର କରି ବହିଲ ପକ୍ୱତରୁଫଳକାନ୍ତିକି । ପ୍ରଫୁଲ୍ଲ । ମଲ୍ଲିକା ହାସକୁ ବିକାଶି । ରସିକଭ୍ରମର ଗୃଢ଼ୁକୁ ନିରତ ପାଟଳ ଶ୍ରବଣ ନିବେଶି । ୧ ।

---

୭୪ । ତୃଷିତ—ଶୋଷି, ଜଳଦ—ମେଘ, ତନମନ—ଏକାନ୍ତରେ ।

୭୬ । ପାଶ୍ଲେଷ୍ଟାଇ—ଲେଉଟାଇ, ମୁଦେ—ଆନନ୍ଦେ ।

୭୭ । ଅସର—ସରିଲ ନାହିଁ, ବାସର—ଦନ, ନିଶା—ରାତ ।

୭୮ । କାଗଜଚକ—ଗୁଡ଼ି, କୁତୁକୀ—ଆନନ୍ଦମନ ।

୮୦ । ବିନାୟକ—ଗଣେଶ, ତୋଷକ—ଆନନ୍ଦକାରୀ, ସୁମନଗଣ—ଦେବତାମାନେ, ବିଷାଦ—ଦୁଃଖ ।

---

## ନବମ ଛାନ୍ଦ

୧ । ଗ୍ରୀଷମ-ଖରା, ସୁଷମା—ସୁନ୍ଦର, ପ୍ରୌଢ଼ା—ବୟସ ପ୍ରାପ୍ତା, ରଜନୀ—ରାତ, ପକ୍ୱ—ପାଚିଲ, ଚୂତ—ଅମ୍ବ, କାନ୍ତି—ବର୍ଣ୍ଣ, ପ୍ରଫୁଲ୍ଲ—ଆନନ୍ଦ ବିକାଶି-ପ୍ରକାଶ କରି, ଗୃଢ଼ୁ—ଖୋସାମଦ କଥା, ପାଟଳ-ଫୁଲବିଶେଷ ।

ଝିଙ୍କାରି ଝଙ୍କାର ଝଂ ଶୁଣିଅ ଝମକେ ଚମକ ପକାଇ ଯୁବାରେ । ଚଗିଲ
ମନକୁ ଘନରସେ ନେଇ ଚନ୍ଦ୍ର କିରଣେ ଶୋଇବାରେ । ଶାଳ୍ମଳୀ । ରଙ୍ଗେ
ଅନୁରାଗ ଦେଖାଇ । ନବ ବିଟପକୁ ବିରହଦାବାଗ୍ନି ସଂଯୋଗରେ ଦହି-
ପକାଇ । ୨ । କେତେ ରଞ୍ଜନ ବ୍ୟଜନ ପ୍ରଭଞ୍ଜନପର କେ ଶାନ୍ତିକି ବହିଲ ।
ଜଳଯନ୍ତ୍ରପୂର କର୍ପୂର ଚନ୍ଦନ ମଣ୍ଡନରେ ଚିତ୍ତ ବହିଲ । ଜାଣିଲି । ଶୁଚି
ମୂର୍ତ୍ତିମନ୍ତ ହୋଇଲି । ବିଦେଶ ନ ଯାଅ ବୋଲି ଜନକଙ୍କ କି ରଜେ ତୃଷାନଳ
ଥୋଇଲି । ୩ । ଏମନ୍ତକାଳେ କାନନେ ନୃପସୁତ ପୁଷ୍କରିଣୀମଧ୍ୟ-ମଣ୍ଡପେ ।
ହୋଇ ମିତ୍ରସଙ୍ଗ ବାଳାର ପ୍ରସଙ୍ଗ ପକାଇ ତାହା ନାମ ଜପେ । ପ୍ରକାଶେ ।
ବେଳୁଁବେଳ ଏହି ଭାଷାକୁ । ସାଧୁ କହିଲ ପରି ବିଧୁବଦନା ଅଛି ଅସୁଛି
ମାନସକୁ । ୪ । କହିଲେ ମିତେ ନ ଘେନ ଏତେ ଚିତ୍ତେ ନ ଥିଲକୁ
ନିକି ଜଗତ । ଘଟଣ ଘଟସ୍ତନା ସମେ ଘଟଣା ପିତୁଳା ହେଉଛି ଅଗତ ।
ଏ କାଳେ । ମାଳିକ କହେ ସନ୍ନିଧାନେ । ମହଲାରୁ ଅସିଛି ନାମ ମଦନିକା
ଗଣିକା ତବ ଦରଶନେ । ୫ । ପରୁରେ କୁମାର ପ୍ରଶଂସା ଯାହାର
ଶୁଣୁଥିଲଇଁ ଏ ସେ ନାରୀ । ଯାହା ଜନମକାଳୁ ମର୍ତ୍ତ୍ୟମଣ୍ଡଳେ ଅସିଲେ
ନାହିଁ ଅପସରୀ । ତହିଁକି । ହୋଇ କଲା ନନ୍ଦୀନନ୍ଦନ । ଜାଣି ସୀତକାର
ଥଣି ମାଳାକାର ଭେଟାଇଲା ରମାରତନ । ୬ । ନବଯଉବନ ଶାଣରେ
ଶାଣିତ କାହା ମନ ବଶ ନୋହିବ । ସ୍ତମ୍ଭନ ମୋହନ ବଶ୍ୟ ଉଚ୍ଚାଟନ
ମୂର୍ତ୍ତିମନ୍ତ କଲା ଦଇବ । ଦେଖିଲ । ମାତ୍ରେ ଗାତ୍ରେ ଅଙ୍ଗ ଲଖିଲ । ଚାପରେ
ରୋପ ବସାଇ କୋପଭରେ ମାର ମରମରେ ଯୋଖିଲ । ୭ । ସୁବର୍ଣ୍ଣ
ସୁବର୍ଣ୍ଣବଳୟୁ ଯାହାର ଏ ସଂଶୟକୁ କରାଉଛି । କାହାକୁ କେ ବଡ଼
ତାରତମ୍ୟ ଅତ ବାରଣହିଁ ଯହିଁ ନୋହୁଛି । ଠିକିର । ଲୋଟଣୀକୁଡ଼ାରେ

---

୧ । ଝିଂକାରୀ—ପତଙ୍ଗବିଶେଷ, ଝମକେ—ଝଁନ ୨ ଶବ୍ଦରେ, ଘନରସ—ବର୍ଷା, ଶାଳ୍ମଳୀ—ଶିମିଳି, ନବବିଟପ—ନୂଆଗଛ, ନୂଆପୁରୁଷ, ଦାବାଗ୍ନି—ବନସ୍ତର ଅଗ୍ନି, ଦହିପକାଇ—ପୋଡ଼ି ପକାଇ ।

୩ । ବ୍ୟଜନ—ବିଚଣା, ପ୍ରଭଞ୍ଜନ—ପବନ, ତୃଷାନଳ—ତପୁନିଆଁ ।

୪ । କାନନେ—ବନରେ, ମଣ୍ଡପ—ପିଠ, ଚଉତରା; ପୁଷ୍କରିଣୀ—ପୋଖରୀ, ବିଧୁବଦନା—ଚନ୍ଦ୍ରବଦନା ।

୫ । ଜଗତ—ସଂସାର, ଘଟସ୍ତନା—ବର୍ତ୍ତୁଳକୁଚଯୁକ୍ତା, ଗଣିକା—ବେଶ୍ୟା ।

୬ । ଅପସରୀ—ସ୍ୱର୍ଗବେଶ୍ୟା ।

୭ । ଶାଣିତ—ଶାଣଦିଆ, ଗାତ୍ର—ଦେହ, ଚାପ—ଧନୁ ।

ଶୋଭନ । ଏ ଭାବେ ବାଳକା ପୁରୁଷଙ୍କ ମନ ବୋଲି କେ କରନ୍ତୁ ବନ୍ଧନ ।୮। ମୋତିଜାଲି ଝଳି ତାରତାରକା କି ଉଦୟ ହେଲେ ନବ-ଘନେ । କିବା ଇନ୍ଦୁକୁ ଗ୍ରାସୁ ସୁଧାବିନ୍ଦୁକୁ ବହୁଛନ୍ତି ରାହୁ ଅପଘନେ । ତଳକୁ । ଦିବ୍ୟ ଚନ୍ଦ୍ରଝୁମ୍ପା ଲମ୍ବିତ । ଅର୍ଦ୍ଧେନ୍ଦୁ ଅଧୋଭାଗେ ଲଭି ଉଦୟ, ସପ୍ତଋଷି କିବା ଜଳିତ ।୯। ଗୁରୁ ଅଳକା ଝିଲିମିଲି ମାଳିକା ଅଗ୍ରେ ଲମ୍ବିତ କ୍ଷୁଦ୍ର ମୋତି । ହେମଲତା ଶିଖେ ମଧୁକରପନ୍ତି ମଧୁ କିବା ସଞ୍ଚୁଅଛନ୍ତି । କସ୍ତୁରୀ । ଉର୍ଦ୍ଧ୍ୱ ତିଳକ ଭାଲଦେଶେ । ବିକାଶ ସାରଣି ମଧୁ ଅଳିବଂଶ ଗମନ କି ତମାଳ ପାଶେ ।୧୦। ତାହାଙ୍କ ଦ୍ୱାରରେ ହସୁଛନ୍ତି ଶ୍ରବଣ ପ୍ରାସାଦ ଉପମାନଙ୍କୁ । ଅଦ୍ଭୁତ ବଙ୍କ ମଲ୍ଲୀକଢ଼ି ଧରନ୍ତି ଧୈର୍ଯ୍ୟ-ଧର ଧ୍ୱଂସନକୁ । ବଦନ । ବିକାରେ କର୍ଣ୍ଣକୁ ବହୁଛନ୍ତି । ହା ହା ବାଳୀ ପୁରଝଲକ ଝଳକ ପଲକ ଘଞ୍ଜ ଦେଉଛନ୍ତି ।୧୧। ଲଳିତ-ଜ୍ୟୋତିଜ୍ୱଳିତ ମୋତିବର ଜ୍ଞାନ ନାଶନ ଯେ ତାହାର । ନିର୍ମଳ ଭାବର ବିମ୍ବଓଷ୍ଠ ବିମ୍ବାଧର ଅର୍ଦ୍ଧତରୁଣତର । ଅବନ୍ଦ୍ୟା । ରୋହିଣୀଙ୍କ ଘେନି କୋଳରେ । କଳଙ୍କହୀନ ପଞ୍ଚଦଶ ଶଶୀ କି ଉଦିତ ଶରଦକାଳରେ ।୧୨। ବଶୀକରଣ ବିବିଧ ମଣି ମନ୍ତ୍ର ଔଷଧ ଯେଉଁ ନେନେ ଅଛି । ଶୂଳୀ ଭଳି ଯତି ଟାଣି ଅନାଇଲେ ତଳବେ ମନକୁ ପାଉଛନ୍ତି । ଯହିଁର । ଅଞ୍ଜନ ଦମ୍ଭକୁ ତରାସେ । ଭାଲ ଚନ୍ଦ୍ର ଖଣ୍ଡଚନ୍ଦ୍ରମା-ସୁଷମାସୀମାବାର ଗାର ପରା ସେ ।୧୩। ରୋମାବଳୀ ଝଳି ମର୍କତ ପ୍ରବାଳ କଣ୍ଠି ଘଣ୍ଟିରବ ସଂଯୁତ । ଉଦର ଯୁଗ ଚୁମ୍ବି ସାରସିବଳୀ ରଚ ବଳୟ କିଛି ଜାତ । ବଧିରେ ।

---

୮ । ସୁବର୍ଣ୍ଣବଳୟ—ସୁନାପାହୁଡ଼, ସଂଶୟ—ସନ୍ଦେହ, ତାରତମ୍ୟ—ତୁଳନା । ବାରଣି—ଚିହ୍ନ, ଚିକୁର—ବାଳ ।

୯ । ଝଳି—ଚକଚକ ହୋଇ, ତାର—ତେଜ, ତାରକା—ତାରା, ଅପଘନେ—ଦେହରେ, ଅର୍ଦ୍ଧେନ୍ଦୁ—ଅଧାଚନ୍ଦ୍ର, ଅଧୋଭାଗ—ତଳଦେଶ ।

୧୦ । ମଧୁକର—ଭ୍ରମର, ପନ୍ତି—ସମୂହ, ମଧୁ—ମହୁ, ଉର୍ଦ୍ଧ୍ୱ—ଉପର, ତିଳକ—ଟୀକା, ଭାଲ—କପାଳ, ଅଳିବଂଶ—ଭ୍ରମର ବଂଶ ।

୧୧ । ଶ୍ରବଣ—କାନ, ଧ୍ୱଂସନ—ନାଶ ।

ବିମ୍ବ-କାନ୍ତି, କଇଁଚକାକୁଡ଼, ପଞ୍ଚଦଶଶଶି—ପୂର୍ଣ୍ଣିମା ଚନ୍ଦ୍ର ।

୧୩ । ଶୂଳୀ-ମହାଦେବ, ଯତି— ଇନ୍ଦ୍ରିୟଜୟକାରୀ, ଅଞ୍ଜନ-କଳା ।

ବଧିର ବୁଦ୍ଧି ଭ୍ରମ ହେଲା । ମନ୍ଦ ମଧୁର ଘନସାର ହାସଟି ଜାଣିଲି ଏତେ-ଦୂର କଲା । ୧୪ । କରି କାଞ୍ଚଲା ପାଟଡୋର ଚରମେ ଭଣ୍ଡ ଅଚ୍ଛାଦଛନ୍ତି ଯତନେ । ହିରଣ୍ୟଗର୍ଭ ହୁଡ଼ ବ୍ୟକ୍ତ ନୋହିବ ଏହି କାମନା କରି ମନେ । ତାହାର । ଖେଳ ପର୍ଯ୍ୟେ ସେ ଦଶଇ । ଉଚ୍ଚ ପୃଥୁଳ ଗୋପିତ ନୋହେ କଦା ନେନେ ଅବନୀ ନ ଦେଖଇ । ୧୫ । ଏମନ୍ତ ମଣୁଛି ଅଙ୍ଗରାଜ ପଦ ଅଙ୍ଗନାଠାରେ ସମ୍ଭାବିତ । ମହାଜତପାତ ମନ୍ଦ ବୋଲି ତାକୁ କରୁଅଛି ଯେଣୁ ଗୁପତ । ସେ କଥା । ଯୁକ୍ତ ନୁହଇ ଦେଖିବାର । ଚୀର ଅଚ୍ଛାଦିତ ଏଥକୁ କରିଛି ଫଳ ଚୁମ୍ଭୁଛି ମଧୁକର । ୧୬ । କର ସନାଳ କୋକନଦ ବାହାର କି ତନ୍ତୁ ଶୋଭା ସରସୀରୁ । ଅତୁଲ୍ୟ ପଦ୍ମେ ଅନ ଭୂଷା ଧରିଛି ରୂପଗର୍ବିତା ଲକ୍ଷଣାରୁ । ରଣିତ । କିଙ୍କିଣୀ କଟୀରେ ଖଞ୍ଜିଛି । କାମିନୀକି କାମରଥ ବୋଲିବାର ସତ ଘଣ୍ଟିଚୟ ସାଜିଛି । ୧୭ । ନାହିଁ ତୁଳା-କୋଟି-ଜଗତରେ ବୋଲି ଘେନିଛି ପାଦରେ ଆଦରେ । କ୍ଷୁଧା ନାସ୍ତି ଧନ୍ୟ ବୋଲାଇ ଅଲକ୍ତ ପଦରାଗ ବ୍ୟକ୍ତ ହେବାରେ । ଦଶୁଛି । ଏପରିରେ ତନ୍ତୁ ଗଢ଼ିର । ଚମ୍ପକ ଗନ୍ଧ ପଦ୍ମିନୀ ଶ୍ରେଣୀ ଥିବା ଚିକୁର ଧାଡ଼ିରୁ ଗୋଚର । ୧୮ । କାର୍ଯ୍ୟକୁ କାରଣ କରି କହିଲେଁ ମଦନକାର ଶୋଭା କଛି । ବିମ୍ବର କହି ବସିଲେ ଏହି ଶଙ୍କା ବହୁତ ଗ୍ଲାନ ହେବା ଅଛି । ଶୋଭାକୁ । ଗୁହିଁ ସ୍ଥଗିତ ନେନପୁଂସ । ଜଣେ ଜଣାଇ ସିଂହଳ ପତି ଜେମା ସ୍ୱରୂପ ହୋଇଲା ପ୍ରବେଶ । ୧୯ । ସମ୍ମୁଖେ ଉଠି ପାଖେଟି ଯିବା ମନ ଜାଣି ନିଷେଧ କଲେ ମିତ । ଅସ ଅସ ବୋଲି ସନ୍ନ୍ୟାସୀ ପାଶକୁ ଦ୍ରୁତ ଉପରେ ଗଲେ ଦୂତ । ପ୍ରବେଶେ । ଅସନ ଦେଇ ତସା-

---

୧୪ । ପ୍ରବାଳ—ପୋହଳା, କଟୀ—ଅଣ୍ଟା, ବଲ୍ଲକୀ—ବୀଣାରଦଣ୍ଡ, ଘନସାର—କର୍ପୂର ।

୧୫ । ଚରମେ—ପିଠିରେ ହିରଣ୍ୟଗର୍ଭ—ବ୍ରହ୍ମା, କାମନା—ଇଚ୍ଛା, ପୃଥୁଳ—ମୋଟା ।

୧୬ । ଅଙ୍ଗନା—ସ୍ତ୍ରୀ, ଚୀର—ଲୁଗା. ଅଚ୍ଛାଦିତ—ଘୋଡ଼ାହେବା ।

୧୭ । କରସନାଳ—ପଦ୍ମନାଡ଼ ତୁଲ୍ୟ ହସ୍ତ, କୋକନଦ—ପଦ୍ମ, ସରସୀ—ପୋଖରୀ, ରଣିତ—ଶବ୍ଦ କରିବା, ଘଣ୍ଟିଚୟ—ଘାଗୁଡ଼ିସବୁ ।

୧୮ । ତୁଳାକୋଟି—ନୂପୁର, ଯୁବନାରୀ—ଭଣ୍ଡାରୁଣୀ, ଅଲକ୍ତ—ଅଳତା ଚିକୁର—ବାଳ ।

୧୯ । ଶଙ୍କା—ଭୟ ।

ଇଲେ । ଚତୁର ମିଳେ ଚତୁର ବାରବଧୂ ପ୍ରଶଂସାବାଦରେ କଥା ହେଲେ । ୨୦ । କେ ବୋଲେ ଗୃହିଁ ଚଞ୍ଚଳ ଚକ୍ଷୁପକ୍ଷ୍ମ ପତନେ ବୁଦ୍ଧି କରେ ବଣା । ଚନ୍ଦ୍ରେ ଚକୋର ବସି ସୁଧା ପିଇବା ମର୍ତ୍ତ୍ୟେ କି କମାଉଛି ତେଣା । କେ ବୋଲେ । ଗୃହିଁ ନାସାଫୁଲ ପଣକୁ । ଏ ଗୃତ୍ରୁସିର ଗୃତ୍ରୁସି କରୁଛନ୍ତି ବିଜୟ ଏ ଫୁଲବାଣକୁ । ୨୧ । କେ ବୋଲେ ଗୃହିଁ ଗୃହିଁ ଦେଇ ନୟନ ଉରଜପରେ ଯା ନିଅଇ । ଏହୁ ଶିବସେବା କାମ ପରାଭବ ନ କରିବ ଏହା କହଇ । କେ ବୋଲେ । ଗୃହିଁ ତା ମଧୁର ହାସକୁ । ଅଧର ଦେଖାଇ ଦେଉଛି ତରୁଣ ଅରୁଣ ଜିଣିଲ ଯଶକୁ । ୨୨ । ସନ୍ନ୍ୟାସୀ ଭାଷି ଯାହା ପ୍ରତିପ୍ରତିମା ଅଣିଛି ଦର୍ଶନ ଦେବାକୁ । ଏ ଯୋଷା ଯୋଗ୍ୟ ନୋହେ ତା ପଦଘଷା ଉପଲ ଉପମା ହେବାକୁ । ଭୋ ଯତ । କି କହି ମନ୍ତ୍ରୀଜ ବୋଇଲେ । ପ୍ରତ୍ୟକ୍ଷ କଥାରେ କେଉଁ ଅନୁମାନ ବୋଲି ସେ ପେଡ଼ାକୁ ଫେଇଲେ । ୨୩ । ଏ ବାମାକୁ ବାସ ଉପହାର ଦିଅ ଅଧିକାରୀଙ୍କ ଅଜ୍ଞା ଦେଇ । ତନୁନା ହେଲ ରାମା ରୂପ ଲୋକନେ ବିଷୟ ପଛକୁ ପକାଇ । ସମ୍ପୂର୍ଣ୍ଣ । ଏ ଛାନ୍ଦ ଚତୁର୍ବିଂଶପଦ । ଅଯୋଧ୍ୟାଇନ୍ଦ୍ର ଧ୍ୟାନରେ ଉପଇନ୍ଦ୍ର ନାଶିବ ଅର୍ଜିତ ଅପଦ । ୨୪ ।

---

୨୦ । ନିଷେଧ—ମନା, ବାରବଧୂ—ବେଶ୍ୟା ।

୨୧ । ଚକ୍ଷୁପକ୍ଷ୍ମ—ଆଖିପତା, ପତନ—ପକାଇବା, ଗୃତ୍ରୁସି—ଗୃଲଙ୍ଘି । ଫୁଲବାଣ—କନ୍ଦର୍ପ ।

୨୨ । ଶିବସେବା—ମହାଦେବସେବା, କାମ—କନ୍ଦର୍ପ, ପରାଭବ—ହାରିଯିବା ଅଧର—ଓଷ୍ଠ ।

୨୩ । ପ୍ରତିପ୍ରତିମା—ରୂପଲକ୍ଷ୍ୟରେ, ଯୋଗ୍ୟ—ଉପଯୁକ୍ତ, ପଦଘଷା—ଗୋଡ଼ଘଷା, ଉପଲ—ପଥରଖଣ୍ଡ, ମନ୍ତ୍ରୀଜ—ମନ୍ତ୍ରୀପୁଅ ।

୨୪ । ତନୁୟା—ଉଛନ୍ନଅ, ଲୋକନେ—ଦେଖିବାରେ, ଅପଦ—ଦୁଃଖ । ଚନ୍ଦ୍ରଭାନୁ ପାଶରେ ଲାବଣ୍ୟବତୀର ଚିତ୍ରପଟ ନେଇ ସନ୍ନ୍ୟାସୀର ପ୍ରବେଶ ।

# ଦଶମ ଛାନ୍ଦ

( ଚନ୍ଦ୍ରଭାନୁ ଲାବଣ୍ୟବତୀର ଚିତ୍ରପଟ ଦର୍ଶନ )

ରାଗ—ଦେଶାକ୍ଷ

ଏଥୁଅନନ୍ତରେ ରସିକସାର । କର୍ଣ୍ଣମୁଖରେ ସୁଧାପାନ କର ।
ନୃପସୁତ ଅଗେ ପେଡ଼ି ଫେଡ଼ିଲେ । ସେ ରୂପ ଉପରେ ନେତ୍ର ପଡ଼ିଲା ।
କି ପଡ଼ିଲା । ନାହିଁ ଜଡ଼ିଲା ଯେନ । ଜଡ଼ିଲା ନାହିଁଟି ବୁଡ଼ିଲା ଜ୍ଞାନ । ୧ ।
ମୂର୍ତ୍ତିମନ୍ତ କଲା ମଦନ କଲା । କନକନଭ ମଦନ ପିତୁଳା ।
କାଚବାଡ଼ପୁରେ ବସିଲା ପରି । ମୁକୁରେ ଫିଟି ଦିଶୁଛି ମାଧୁରୀ ।
କି ସୁନ୍ଦର । ସମେ ଅଙ୍ଗ ଚାହିଁଛି । ସଚେତ ହୋଇ ବଚନ ହୋଇଛି । ୨ ।
ସରସିଜେ ଶିଶୁଅଳିଆବଳୀ । ବସିଥିଲା ପରି ଅଳକା ଝଳି ।
ଅଧରେତ ଅଛି ହାସ ଝଳକ । କର୍ପୂରେ ମାଜିଲା ପରି ମାଣିକ୍ୟ ।
କି ସୁନ୍ଦର । ପୁଣି ପକ୍ଷ୍ମ ଚାତୁରୀ । ଗୁଳଦେବ ପରି ଧୈର୍ଯ୍ୟକତୁରୀ । ୩ ।
ଅଗ ଅନୁରାଗ ଭ୍ରମ ଉପୁଜି । ରମା କି ପ୍ରତିମା ନ ପାରେ ହେଜି ।
ଚକିତ ସ୍ଥକିତ ଦଣ୍ଡେ ହୋଇଲା । ମନେ ମନେ ଲକ୍ଷେ ଚୁମ୍ବନ ଦେଲା ।
କି ସୁନ୍ଦର । ମନ ନୟନ ପ୍ରାଣ । ସେହି ଶୋଭାରେ କଲା ସମର୍ପଣ । ୪ ।
ଏଣୁ ସେ ସୁତନୁ ତନୁତନୁକୁ । ଅସେ ଅନୁମାନ ଅନୁମାନକୁ ।
ଅଲୋକିତ ହେଲା ଲୋକିତ କର । କରଇ ଉପମା ନୁହଇ ସର ।
କି ସୁନ୍ଦର । କବି ବଚନ ପଥ । କୃତାର୍ଥ କରଣେ ହେଲା ସମର୍ଥ । ୫ ।

---

## ଦଶମ ଛାନ୍ଦ

୨ । ମଦନକଲା—କାମକଳା, କନକ—ସୁନା, ନଭ—ଉଜ୍ଜ୍ୱଳ, ପିତୁଳା—ରୂପ, କାଚବାଡ଼ପୁର—କାଚରେ ବାଡ଼ହୋଇଥିବା ଘର, ମୁକୁର—ଅରସି, ମାଧୁରୀ—ସୌନ୍ଦର୍ଯ୍ୟ ।

୩ । ସରସିଜ—ପୁଷ୍କରଣୀ, ପଦ୍ମ । ଶିଶୁଅଳିଆବଳୀ—ଛୋଟ ଭଅଁର ସବୁ, ଅଧର—ଓଷ୍ଠ, ପକ୍ଷ୍ମ—ଆଖିପତା ।

୪ । ଅନୁରାଗ—ସ୍ନେହ, ଚକିତ—ଚାବା, ସ୍ଥକିତ—ସ୍ଥିର, ସମର୍ପଣ—ଦେବା ।

୫ । ତନୁ ତନୁକୁ—ଦେହକୁଦେହ, ସବୁଦେହ; ଅଲୋକିତ—ଆଶ୍ଚର୍ଯ୍ୟ, ଲୋକିତ—ଦେଖିବା, ସମର୍ଥ—ସକ୍ଷମ ।

ବେଣୀ ଶୋଭା ଅବା ସାଧିବା ପାଇଁ । ରତୀଶ ପଛୀଶ ଅଛି ଭିଆଇ ।
କନକ ପିହାଣିଅଳୁ ଅସମ । ମୁକୁତାଜାଲ ମୁଠାଜାଲ କମ ।
କି ସୁନ୍ଦର । ପଣି ଦାଣେ କୁସୁମେ । ପୂଜା କରେ କି ଜଗଜ୍ଜୟୀକାମେ । ୬ ।
ଦ୍ୱିତୀୟାତିଥି ଭ୍ରମ ସେହିଠାରେ । ଅବତଂସ ଚନ୍ଦ୍ର ଝୁମ୍ପି ଥିବାରେ ।
ଜାଜ୍ଜ୍ୱଲ୍ୟ ତାରକା ବୃନ୍ଦ ବିଧିତ । ସୁଧାବିନ୍ଦୁ ସ୍ରବ ପରାୟେ ମୋତି ।
କି ସୁନ୍ଦର । କାମ ରତ୍ନତୋରଣୀ । ଝିଲମିଲମାଳୀ ସେହି ଲକ୍ଷଣୀ । ୭ ।
କର୍ଣ୍ଣ ହୋଇଅଛି ବନ୍ଦ-ଅବାସ । ଏଥିକି ଉପମା କରିବା କସ ।
ଭ୍ରୂ ଭ୍ରୂ ଦୃଷ୍ଟି ପତନ ହେଲା । ବାଳିବୋଲି ମନେ ଯତନେ କଲା ।
କି ସୁନ୍ଦର । ଫୁଲ ସୁମଲ୍ଲୀ କଢ଼ୀ । ଫଳକ ଉପମାକୁ ଗଲା ହୁଡ଼ି । ୮ ।
ଭାଲ ଗୁହିଁ କଲା ଭାଲ ବିଗ୍ରହ । ଏ ହେମକାପ ତରସ ଧାତାର ।
ଲେଖିଛି ଚିହ୍ନକବିତ୍ୱ ଏଥିରେ । ଏ ବାଳା ସମାନ ନାହିଁ ପୃଥ୍ୱୀରେ ।
କି ସୁନ୍ଦର । ଗୁଣେ ନାଗଭୁବନେ । ସ୍ୱର୍ଗପୁରେ ଅଛି ନାହିଁ ସମାନେ । ୯ ।
ବଡ଼ କି ଚତୁର ପାଣ୍ଡୁବା ଏହା । ବଡ଼ କବି ଜଡ଼ ଘେନିବେ ଯାହା ।
ରଙ୍ଗ ଶୁକ୍ଳ କଳା ତନିଜାତ । ଟୋପିଛଲେ ଅଛି ଅକ୍ଷରପନ୍ତି ।
କି ସୁନ୍ଦର । ଦୃଷ୍ଟି ଚଳିବ ନାହିଁ । ଦେଉଥିଲେ ତାର ଚିତାକୁ ଗୁହିଁ ।୧୦।
ଶିବ ଶିର କଳାକର କଳାଏ । କଳା ହୋଇ ବିଷଜ୍ୱାଳାର ଭୟେ ।
ଭ୍ରୂକୁ ଠାରେ ଖିଞ୍ଚି ପଳାଇ ଆସି । ଲକ୍ଷପ୍ରକାରେ ଏହି ଲକ୍ଷ୍ୟ ଦାଶି ।
କି ସୁନ୍ଦର । ପର୍ଶୁରାମ ପରଶୁ । ବାମା କହେ ରାମା ଶବଦବଶୁଁ । ୧୧ ।

---

୬ । ରତୀଶ—କନ୍ଦର୍ପ, କନକ—ସୁନା, କୁସୁମେ—ଫୁଲରେ, ଜଗଜ୍ଜୟୀ—ସଂସାରଜେତା ।

୭ । ଅବତଂସ—ପ୍ରକାଶ, ଜାଜ୍ଜ୍ୱଲ୍ୟ—ତେଜୀୟାନ, ବିଧିତ—କରଣି, ରତ୍ନତୋରଣୀ—ସୁନା ଫାଟକ ।

୮ । ବନ୍ଦ ଅବାସ—କଏଦଘର, ବନ୍ଦଅ ନାମକ ଅଳଙ୍କାର ସ୍ଥାନ, ସୁମଲ୍ଲୀକଢ଼ୀ—ଉତ୍ତମ ମଲ୍ଲୀକଢ଼ି, ହୁଡ଼ି—ଭୁଲି ।

୯ । ଭାଲ—କପାଳ, ତରସ୍ତ—ଭୟ, ଏକପ୍ରକାର ଚିହ୍ନ, ନାଗଭୁବନେ—ନାଗପୁରେ ବା ପାତାଳପୁରେ ।

୧୦ । ଅକ୍ଷରପନ୍ତି—ଅକ୍ଷରସବୁ, ଜଡ଼—ମୂର୍ଖ ।

୧୧ । ଶିବ—ମହାଦେବ, କଳାକର—ଚନ୍ଦ୍ର, ଖିଞ୍ଚି—ରଯ୍ୟାନ୍ତି, ଲକ୍ଷ୍ୟ—ଉପମା ।

ଅଭ ବିଚାର ରୁଚିରକା ନୟନ । ଅଞ୍ଜନଲଞ୍ଛିବ୍ୟାଜେ ମହାମୁନ ।
ନ ମାରୁ ଗୃହିଁଣି ଛଟଳ କର । ମରମକୁ ଭେଦପାଇ ବାହାର ।
କି ସୁନ୍ଦର । ଦୃଷ୍ଟି କରାଇ ସତ । ଅନ୍ତେ ରକ୍ତ ହେବାରୁ ବ୍ୟକତ ।୧୨।
ଏ ପାଞ୍ଚେ ଗୃହିଲ୍ଲ ଅନେକ ବାର । ଅପଣା ଗାଏକୁ ନେଏକୁ ଢାର ।
କ୍ଷତ ନ ଦେଖି ଲଭିଲ୍ଲ ତପୃର । ଚମତକାରରେ ଚମତକାର ।
କି ସୁନ୍ଦର । ସମେ ଆନ ନ ଦର୍ଶି । ଏହୁ ପଦଙ୍କ ସେ ହୋଇଲା ଘୋଷି ।୧୩।
ଯେଉଁ ନୟନର ଏଡ଼େ ବଡ଼ାଇ । ମୃଗକୁ ଦେଲା ନଗର ଛଡ଼ାଇ ।
ରୁଦ୍ଧା କରଦେଲା ମୀନ କମଳ । ମୋ ସଙ୍ଗେ ହେଉଥାଅ ବୋଲି ତୁଲ ।
କି ସୁନ୍ଦର । ପଦ୍ମ ଥିଲକୁ ଦୋଷେ । ଦଣ୍ଡ ଦଅଇଲା ତୁହିନ ବଶେ ।୧୪।
ଗଣ୍ଡେ ଚନ୍ଦିତା ପ୍ରକାର ମଙ୍କସ୍ୱ । ଏ ଅନୁମାନରୁ ଆନ ନ କର ।
ନାସାରଥ ସଜ ହେବା ହେତୁରେ । ମଣ୍ଡିଲା କନ୍ଦର୍ପ ନିଜ କେତୁରେ ।
କି ସୁନ୍ଦର । ନାସାପୃଷ୍ଠ ଭେସର । ତୂଣୀର ସ୍ଥିତ ରତ୍ନପୁଙ୍ଖଶର ।୧୫।
ଏମନ୍ତ ସାଜେଣି ଗୃହିଁ କ ଡର । ସ୍ୱୟମ୍ଭୁ ଶମ୍ଭୁ କୁଚ ରୂପ ଧର ।
ଆଚ୍ଛାଦତ ହୋଇ ଚେଲ-କବଚେ । ବାଳାରେ ଶରଣ ଉତ୍ତମ ପାଞ୍ଚେ ।
କି ସୁନ୍ଦର । ହାର ଜାହ୍ନବୀ ଦଶେ । ରୋମାବଳୀ କାଳ ଭୁଜଙ୍ଗ ପାଶେ । ୧୬
ଫପୃଷ୍ଠ ଉପମା ଉରଜେ ମଞ୍ଜୁ । ମୁକୁତାମାଳା କୁନ୍ଦକାଳ ଚଞ୍ଚୁ ।
ଯଉବନ ରାଜା ସର୍ବସ୍ୱ ତହିଁ । ପ୍ରେମାଳଙ୍କାର ସହିତେ ପୁରାଇ ।
କି ସୁନ୍ଦର । କର ଘୋଡ଼ାଇଅଛୁ । ଜାଗ୍ରତପଣ ଲଜ୍ଜାକୁ ଦେଇଛୁ ।୧୭।
ନୀଳ ଜଳଦ ବିଜୁଳିକ ଭଣ୍ଡ । ଥିଲା ପରି କରେ ମର୍କତ ଚୁଡ଼ି ।
ଭୁଜେ ବାଜୁବନ୍ଧ ରତ୍ନ ମାଧୁରୀ । ନଦୀ ଲହରୀରେ କହ୍ଲାର ପରି ॥
କି ସୁନ୍ଦର । କଣି ଅଶୋକ କଳୀ । ମାଣିକ୍ୟମୁଦରେ ଝଳ ଅଙ୍ଗୁଳି ।୧୮।

---

୧୨ । ଅଞ୍ଜନଲଞ୍ଛି—କଳାଗାର, ବ୍ୟର୍ଥ—ଛଳନା, ବ୍ୟକତ—ବାହାର ।
୧୩ । ଗାଏ—ଦେହ, ନେଏ—ଆଖି, କ୍ଷତ—ଖଣ୍ଡିଆ ।
୧୪ । ନଗର—ପୁର, ମୀନ—ମାଛ, କମଳ—ପଦ୍ମ, ପାଣି, ତୁହିନ-କାକର ।
୧୫ । ଅନୁମାନ—ମନେକରିବା, କେତୁ—ପତାକା, ତୂଣୀର—ଶରଖୋଳ ।
୧୬ । ସ୍ୱୟମ୍ଭୁ—ବ୍ରହ୍ମା, ଶମ୍ଭୁ—ମହାଦେବ, ଆଚ୍ଛାଦତ—ଘୋଡ଼ିହେବା, ବାଳା—ସ୍ତ୍ରୀ, ଜାହ୍ନବୀ—ଗଙ୍ଗା, କାଳଭୁଜଙ୍ଗ—କାଳସର୍ପ ।
୧୭ । ଫପୃଷ୍ଠ—ଫରୁଆ, ଉରଜେ—ବକ୍ଷରେ, ମଞ୍ଜୁ—ସୁନ୍ଦର, ଚଞ୍ଚୁ—ଦଉଡ଼ି, ଜାଗ୍ରତପଣ—ଚୁପିଆର ପଣିଅ ।
୧୮ । ନୀଳଜଳଦ—ନୀଳମେଘ, କହ୍ଲାର—ରକ୍ତପଦ୍ମ ।

ଚିବୁକ ଚତୁର୍ଥୀଚନ୍ଦ୍ର ଭ୍ରମସ୍ତି । କଳଙ୍କ ଅସିଲା ପର ଅଙ୍କୁର ।
ଗୃହପସସ୍ତିରେ ମନୋରମ ଗଳା । ବ୍ୟାଧ ବୁଦ୍ଧି କି ଚିଧି ଏବେ କଲା ।
କି ସୁନ୍ଦର । ମତ୍ତକପୋତ ପାଶେ । ବାନ୍ଧ ଥୋଇଛୁ ଗିରିପରେ କି ସେ ।୧୯।
ସୁନ୍ଦରୀ ଅବଳାପଦକୁ ଭିଲ । ନିବିଧେ ବନ୍ଧନ ହୋଇଛୁ ବଳୀ ।
ଅଛୁ କି ନାହିଁ ଏ ସଂଶୟ ମଧ୍ୟେ । ଭଙ୍ଗି ପଡ଼ିବାକୁ ସେଗୁଣେ ବାନ୍ଧେ ।
କି ସୁନ୍ଦର । ତହିଁ ଖଞ୍ଜି କଙ୍କଣୀ । ଏଣୁ କଟୀ ଥିବ ହେଉଛୁ ଜାଣି । ୨୦ ।
ଟିନ୍ଦାଇଅଛୁ ବାସ କୁଞ୍ଚା ଦେଇ । ଗଢ଼ିଛୁ ପୁଣି ପିତୁଳା ବସାଇ ।
ନାଭିଅବଧି ତନୁମାନେ ତାହାର । ଗୁଲ୍ଫ ପର୍ଯ୍ୟନ୍ତ ନୋହିଲେ ଗୋଚର
କି ସୁନ୍ଦର । ତହିଁ ଦିଶୁଛୁ ପାଦେ । ସ୍ଥଳ ସରସିଜ ଶୋଭିରେ ନିନ୍ଦେ ।୨୧।
ଡୋଡ଼ିର ଚୂଳୀ ମୃଗମଦଚିତା । ପଣ୍ଟିମାଣୀ ଝୁଣ୍ଟିଅରେ ମଣ୍ଡିତା
ହୋଇଛୁ ବ୍ୟକ୍ତ ଅଳକ୍ତ ରଙ୍ଗରେ । ଶରଣ ରକ୍ଷଣ ଅନୁରାଗରେ ।
କି ସୁନ୍ଦର । ଚରଣକୁ ବାଳାର । ଶରଣ ଅର୍ଥରେ ପ୍ରସାରୁ କର ।୨୨।
ମିଛ ଭଣେ ନୋହେ ଲବଣ୍ୟଧାମା । ଥସିଅଛୁ ସିନା ପ୍ରତିପ୍ରତିମା ।
ସନ୍ନ୍ୟାସୀ ଭାଷିଲା ସେହି ବାଳକୁ । କେମା ସୁନ୍ଦରମା ତୁଳେ ତିଳକୁ ।
ହେ ସୁନ୍ଦର । ଅଙ୍ଗେ ଅଙ୍ଗେ ଏହାର । କାମୀଙ୍କି ସିନା ଅଛୁ ରୂପକାର ।୨୩।
କୁମାର ଦମ୍ଭକୁ ଊଣା ଦିଶିଲା । ବଚୂର ସଚିବସୁତ ଭାଷିଲା ।
ସୁବର୍ଣ୍ଣ ସୀତାରେ ବଶ ଶ୍ରୀରାମ । ଯାହାର ଯହିଁରେ ବଳଇ ପ୍ରେମ ।
କି ଗୋସାଇଁ । ଏଥୁଁ ଅଧିକ ବୋଲ । ଅମ୍ଭ ବିଚୂରେ ନାହିଁ ଏହାତୁଲ୍ୟ ।୨୪।
ନୃପଜ ବୋଲେ କିପାଁ ନୋହିଥିବ । ଅଜୀବେ କଲା ଯେ କାମ ସଜୀବ ।
ସଜୀବ ବିଶେଷେ ଯୁବତୀ ହେଲେ । ଶୋଭା ହୋଇଥିବ ନବଯୌବନୀ ।
କି ସଙ୍ଗାତ । ନୟନର କି ତପ । ଦେଖିଲା ଠିକି ସେ ବାଳା ସ୍ୱରୂପ ।୨୫।

---

୧୯ । ଚିବୁକ—ଗାଲ, ଭ୍ରମସ୍ତି—ଏକପ୍ରକାରଚିତା, ଅଙ୍କୁର—ଜାତହୋଇ । ମନୋରମ—ସୁନ୍ଦର, ବ୍ୟାଧ—ଶବର, ଗିରି—ପର୍ବତ ।
୨୦ । ଭିଲ—ମନେକର, କଟୀ—ଅଣ୍ଟା
୨୧ । ଗୁଲ୍ଫ—ଗୋଡ଼ଗଣ୍ଠି ।
୨୨ । ମୃଗମଦ—କସ୍ତୁରୀ, ବ୍ୟକ୍ତ—ପ୍ରକାଶ, ଅଳକ୍ତ-ଲାଖ, ପ୍ରସାରୁ-ଲମ୍ବାଉଁ
୨୩ । ଲବଣ୍ୟଧାମ—ଶୋଭାସ୍ଥାନ, ରୂପକାର—ଚିତ୍ରକାର ।
୨୪ । ସଚିବସୁତ—ମନ୍ତ୍ରୀପୁଅ ।
୨୫ । ନୃପଜ—ରାଜପୁତ୍ର, ଅଜୀବେ—ଜୀବହୀନରେ ।

ଏ ରୂପେ ବୋଲି କରିବାକୁ ଧ୍ୟାନ । ଦ୍ୱାର ହେଲା ଗତି ଦେବାକୁ ଯେନ
ପ୍ରାଣେ ତ ଅଛି ନ ରଖିବ ମାର । ଏହି କଥା ହେଲା ଏଥିର ସାର ।
କି ସଙ୍ଗାତ । ଅମ୍ଭ ସୁକୃତିରାଶି । ପିତୁଳା ଅଣିଲା ହୋଇ ତପସ୍ୱୀ ।୨୬।
ବୀରକୁ ଉଚ୍ଚାଟ କରି ସନ୍ନ୍ୟାସୀ । ଚକ୍ଷୁ ବନ୍ଧନ ମାୟାକୁ ପ୍ରକାଶି ।
ଶିଷ୍ୟ ସଙ୍ଗେ ସେହିକ୍ଷଣି ଅନ୍ତର । ପ୍ରତେ ଅନ୍ତର୍ଦ୍ଧାନ ହେଲା ପ୍ରକାର ।
କି ସୁନ୍ଦର । ମନେ ହେଲା ଏ ଧାତା । ନୋହିଲେ ଗଢ଼ନ୍ତା କିଏ ବନିତା ॥
ଚିତ୍ତୁଁ ନ ଛାଡ଼ିଲା ଏହି କାତର । ମାଗନ୍ତି ସୁଗତିସଙ୍ଗତି ବର ।
ଦମ୍ଭକୁ ହେଲା ତାହାର କାରଣ । ସ୍ୱରୂପକୁ ଛାଡ଼ିବାରୁ ଜାଣ ।
ସେ ସୁନ୍ଦର । କଲା ଏହି ଭରସା । ପ୍ରାପତି ମୋତେ ହେଇବ ସୁଦୃଶା ।୨୮।
ଗୃହୁଁ ପ୍ରତିମା ଚକ୍ଷୁ ନ ପିଛାଡ଼ି । ତାତ ହେବ ପ୍ରତିବନ୍ଧ ପଡ଼ି ।
ପ୍ରତିବନ୍ଧ ପଡ଼ି ହୋଇବ କିସ । ଲେଖା ହେଲା ସେ ରୂପ ପ୍ରତିଦଶ ।
କି ସୁନ୍ଦର । ଚିତ୍ରପଟ ତା କଲା । ସଭାରେ ବସିବା କାଳ ହରିଲା ।୨୯।
ଯୋଗୀନ୍ଦ୍ର ପ୍ରବେଶ ସିଂହଳଦ୍ୱୀପେ । ଏକାନ୍ତେ କହିଲେ ମନ୍ତ୍ରୀ ସମୀପେ ।
କର୍ଣ୍ଣାଟ ଦେଶ ମହୀପତିସୁତ । କନ୍ୟାର ଅନୁରୂପେ ବର ସେ ତ ।
କି ସୁନ୍ଦର । ଗୁଣମନ୍ଦିର ସେହି । ବୀରତୁଲ୍ୟ ହୋଇ ଜଗତେ ନାହିଁ ।୩୦।
ତାକୁ ଯେ ଦେଲା ଯୁବରାଜ ପଦ । ଜାଣିଲି ବିଧାତା ଅତି କୋବିଦ ।
ଅନ ରାଜପୁତ୍ରେ କୁଳବେଶ୍ୱର । ଯୁବତୀ ଚିତ୍ତ ରତନଚଜର ।
କି ସୁନ୍ଦର । ଜାତି କାମ ମହୀରେ । କୁମାର ଏଣୁ କହେ ବିଜ୍ଞନରେ ।୩୧।
ତାତ ବିବେକପଣେ ରାଜପଣ । ଜାଣି କରନ୍ତୁ ତାକୁ ସମର୍ପଣ ।
ଉଚ୍ଚାଟ ହୋଇଛୁ ସ୍ୱରୂପ ଦେଖି । ତାକୁ ପ୍ରଦାନ କରିବା ସୁମୁଖୀ ।
କି ସୁନ୍ଦର । କଥା ସଚିବ ଶୁଣି । ନୃପତି ଆଗେ ଜଣାଇଲା ପୁଣି ।୩୨।
କାହିଁକି ସଦୃଶ ରାଜା ବୋଇଲା । ମନ୍ତ୍ରୀ କହେ କେବେ ଲେଖା ନ ଥିଲା
ଭୂପତି କହେ ତାକୁ କି ପ୍ରକାରେ । ଦୂତ ନ ପେଷି ଆଣିବା ଏ ପୁରେ
କି ସୁନ୍ଦର । ପାଞ୍ଚ ମନ୍ତ୍ରୀ କଥନ । କରିବା ଅପୂର୍ବ ଯାତ୍ରା ରଚନ ।୩୩।

---

୨୬ । ଧ୍ୟାନ—ଚିନ୍ତା, ସୁକୃତିରାଶି—ଯଶସବୁ ।
୨୮ । ଚିତ୍ତୁ—ମନରୁ । କାତର—ଭୀରୁ । ସୁଗତି—ଉତ୍ତମ ଗତି ।
୨୯ । ତାତ—ପିତା, ପ୍ରତିବନ୍ଧ—ବାଧା, ପ୍ରତିଦଶ—ପ୍ରତ୍ୟେକ ଦଶା ।
୩୦ । ଯୋଗୀନ୍ଦ୍ର—ସନ୍ନ୍ୟାସୀ, ଏକାନ୍ତ—ଏକୁଟିଆ, ସମୀପେ—ପାଖରେ ।
୩୧ । କୋବିଦ—ଜ୍ଞାନୀ, ବିଜ୍ଞନର—ଜ୍ଞାନୀଲୋକ ।
୩୨ । ଉଚ୍ଚାଟ—ଅସ୍ଥିର ।
୩୩ । ସଦୃଶ—ସମାନ, ଭୂପତି—ରାଜା ।

ବଣ ହୋଇଛୁ ଘୋଷ ଶୁଣି ଅସ୍ମୁ । ଅସ୍ମର କନ୍ୟା ଯାଚିବା ନ ଦିଶୁ ।
ସର୍ବ ସମ୍ମତେ ଏ ବିଗ୍ରହର ମୂଳ । ଧୀର୍ଘ ଦିନରେ କଲେ ଯାହା ଗୋଳ ।
କି ସୁନ୍ଦର । ଛାନ୍ଦ ହୋଇଲା ଶେଷ । ରାମ ରାମ ସ୍ତୁତି ଅଭଙ୍ଗଶ୍ଳେଷ ।୩୪।
ତାତବତ୍ସଳ ମୃଗବେଶଧାରୀ । ଅଧିକ ଭୂଜଦର୍ପହତକାରୀ ।
ଉପଇନ୍ଦ୍ର ବୀରବର ଭାବଇ । ଏ ଗୀତ ଶୁଭେ ଶେଷ ହେବାପାଇଁ ।
ହେ ସୁଜନେ । ଶୁଣି ହୁଅ ସନ୍ତୋଷ । ଖଳ କର୍ଣ୍ଣବିଳେ ନୋହୁ ପ୍ରବେଶ ।୩୫

## ଏକାଦଶ ଛାନ୍ଦ

( ଲାବଣ୍ୟବତୀର ସ୍ୱପ୍ନ ଦର୍ଶନ )

ରାଗ—ଗୌଣ୍ଡି

ଏଥୁଅନ୍ତେ ଶୁଣ ରସ ରୀଷମେ **ଲ**ଗି ପ୍ରବେଶ ଉଦୟ ତାରା ଜୀବେଶ ହେଲେ ଅକାଶେ । ଚକ-ସୁଖଚକ-ନକ ଛେଦନେ ସ୍ୱାରକଚକ ଫିଗିଛୁ ତାତସିଦ୍ଧରେ କାମ କ ରୋଷେ । ବେଶ ହେବେ କ ରାଜିବାଳୀ । ସ୍ଫଟିକ ପେଟୀରେ କବା କସ୍ତୁରୀ ଦଳ । ୧ ।

---

୩୪ । ଘୋଷ—ଶବ୍ଦ, ଧୀର୍ଘ ଦିନରେ—ସାବଧାନ ।

୩୫ । ତାତବତ୍ସଳ—ପିତୃସ୍ନେହୀ, ଦର୍ପ—କ୍ଷମତା, ଖଳ—ଦୁଷ୍ଟ, କର୍ଣ୍ଣବିଳ—କାନ ଗହ୍ୱର ।

ଲାବଣ୍ୟବତୀର ଚିତ୍ରପଟ ସନ୍ନ୍ୟାସୀ ଚନ୍ଦ୍ରଭାନୁଙ୍କୁ ଦେଖାନ୍ତେ, ସେ ମୋହିତ ହେଲେ ଓ କିପରି ଏ କନ୍ୟାକୁ ପାଇବେ ବୋଲି ଉତ୍କଣ୍ଠିତ ହୁଅନ୍ତେ ସନ୍ନ୍ୟାସୀ ନିଜର ବିବେକ ବଳରେ ବୁଝି ଫେରିଯାଇ ମନ୍ତ୍ରୀଙ୍କୁ କହିଲେ । ମନ୍ତ୍ରୀ ରାଜାଙ୍କୁ ଚନ୍ଦ୍ରଭାନୁ ସମ୍ବନ୍ଧେ ସବୁକଥା ବୁଝାଇ ଦେବାରୁ ରାଜା କହିଲେ, ଅମ୍ଭେ କନ୍ୟା ଦେବାକୁ ଡାକିବା ଅପେକ୍ଷା ଗୋଟିଏ ଯାତ୍ରା କରିବା ସେ ଦେଖିବାକୁ ଆସିଲେ କନ୍ୟା ବର ପାରିଲେ ଭଲ ହେବ ।

---

## ଏକାଦଶ ଛାନ୍ଦ

୧ । **ଲ**ଗି—ରବି, ତାରାଜୀବେଶ-ଚନ୍ଦ୍ର, ଚକ—ଚକୁଆ ଚକୋଇ, ନକ—କୁମ୍ଭୀର, ସ୍ୱାରକଚକ—ସ୍ୱାରଚକ, ତାତସିଦ୍ଧି—ପିତାଙ୍କର କାର୍ଯ୍ୟ, ଗ୍ରୀଷ୍ମ ଋତୁରେ ରବି ହେବାରୁ ଚନ୍ଦ୍ର ଉଦୟ ହେଲେ । ଚନ୍ଦ୍ରକୁ ଦେଖି ଚକୁଆ

ଅଜ କି ବିଭାବରୀକି ହୋଇବ ବିଭାକର କି ମଣିମାଳା ଦେଇ ବିଧୁ କରଣେ ମଣି । ଏ ବିଚାର ସ୍ୱୟମ୍ବର ନାୟିକୁ ବରଇ ବର ଏତେ କାଳେ ଦେଖାଗଲା ଏ କଥା ପୁଣି । ରବିକରେ ମହୀମହିଳା । ତାପି ହୋଇଥିଲା କି ଚନ୍ଦନ ଲେପିଲା । ୨ ।

ଶୀତଳ ଯାହା କିରଣ ପରଶରେ ସମୀରଣ ରଣରଣ ମିଶ୍ରପଣ ଘେନି କି ଏବେ । ବିରହୀଗୁଣ ବିରହୀଠାରେ ଅଦରଇ ସେହି ସେ ଅଛି ଯା ଗର୍ଭେ ତହୁଁ ଜାତ ସ୍ୱଭାବେ । ଧ୍ୱଂସ ହୋଇ ସୁଧାଚଦ୍ଦ୍ୱର । ଚନ୍ଦ୍ର ଗ୍ରହି ହୋଇଲା ଅଧିକେ କାତର । ୩ ।

ହାସ ନାସା ଗତ ଗୀତ ବଚନ ରମ୍ୟତା ପ୍ରୀତି ଏକାନ୍ତ ହେବାନ୍ଦ ଯେତେ କଥା ସ୍ମରେ । ସ୍ୱରଭଙ୍ଗ ପ୍ରବଳରେ ଭାଷା କେ ବର୍ଣ୍ଣେ ଜଗତରେ ତଥାପି ବାଳା ଭାବନା ଥାଇ ତହିଁରେ । ସବର୍ଣ୍ଣାଦ ଶବଦ ଶୁଣି । ସାଧୁ ଶୁକ ଅଇଲେ କି ହୁଅଇ ଗୁଣି ।୪।

ଯେମନ୍ତ ଦେଖିଛୁ ଶନେ ତେମନ୍ତ ଦଶଇ ନେନେ କେମନ୍ତେ ଲଭିବି ମୂଳ ବଚୂର ଏହି । ଯେବେ ଏ ଯୁବାବୟସେ ଦିବ୍ୟାଙ୍ଗମା ନାହିଁ ପାଶେ କି ଲଭ ତହୁଁ ନୃପତି ସମ୍ପତ୍ତି ଥାଇ । ଆରତେ ଯେ ଚଳିଲ ଜୀବ । ତାକୁ ଦେଖାଅ ନୋହିଲେ ଯାଉ ଏ ଜୀବ ।୫।

---

ଚକୋଇଙ୍କର ତ ରାତିରେ ବିଚ୍ଛେଦ ହୁଏ, ସେହି ବିଚ୍ଛେଦ ହେଲା କୁମ୍ଭୀର ତାହା ନାଶ କରିବାକୁ କନ୍ଦର୍ପ "ବିଷ୍ଣୁ ଯେପରି ଚକ୍ରରେ ନକ୍ରକୁ ନାଶ ହାତୀକୁ ଉଦ୍ଧାର କରିଥିଲେ" ସେହିପରି ହାସ୍ୟରକ୍ତ ପେଷିଛୁ । ପୁଣି ରାତିରୂପକ ସ୍ତ୍ରୀ କଣ ବେଶ ହେବ ବୋଲି କସ୍ତୁରୀ ଦଳାହୋଇ କାଉପେଡ଼ିରେ ରହିଛୁ କି ?

୨ । ବିଭାବରୀ—ରାତି, ବିଭା—ବାହା, ବର—ବରଣ କର, ବିଧୁ—ଚନ୍ଦ୍ର, କର୍ପୂର, ମହୀମହିଳା—ପୃଥିବୀରୂପକ ସ୍ତ୍ରୀ ।

୩ । ସମୀରଣ—ପବନ, ରଣରଣ—କନ୍ଦର୍ପ, ବିରହୀ—ନାଥ , ବିରହୀ—କାମୁକ, ସୁଧାଚଦ୍ଦ୍ୱର—ଚୁନଲିପା ଅଗଣା, କାତର-ବିକଳ, ହତାଶ ।

୪ । ବଚନ—କଥା, ରମ୍ୟତା—ମଧୁରତା, "ହାସନାସା ଗତ ଗୀତ ବଚନ ରମ୍ୟତା ପ୍ରୀତି ଏକାନ୍ତ" ଏହି ପଦର ପ୍ରଥମ ଅକ୍ଷର ହା,ନାଗୀବର ପ୍ରିୟେ ହେଉଅଛି, ସ୍ମରେ—ମନେକରେ, ସ୍ୱରଭଙ୍ଗ—ଗଳାବସିବା, ସବର୍ଣ୍ଣାଦ—ସ ଯେଉଁ ଶବ୍ଦର ଅଗରେ ଥାଏ ।

୫ । ଦିବ୍ୟାଙ୍ଗମା—ସୁନ୍ଦରୀ ସ୍ତ୍ରୀ ।

ତେଣେ ନୃପତିନନ୍ଦନୀ ରୁଚିରତର ଶୃଦ୍ଧନୀ ଗ୍ରହରେ ମଣ୍ଡି ଶୃଦ୍ଧନୀ ଚନ୍ଦ୍ରକୁ ଗ୍ରହି । ପଦ୍ମିନୀ ହୋଇ ତାହର ଭକ୍ତ ମଦନବିକାର କରଇ ଚିତ୍ତେ ବିଶ୍ବର ଶାସ୍ତ୍ର ପକାଇ । ମୋହସମ କରମହୀନ । ତାହିଁ ପତିସଙ୍ଗ ନାହିଁ ଲଭି ଯୌବନ । ୬ ।

ସୁବର୍ଣ୍ଣ ସମାନ ନାରୀ ବିନୟୀ ଟାଙ୍ଗଣୀ ପରି ବିରହ ଅନଳେ ହୋଇଥାଇ ଯେ ଦହି । ଗ୍ରୀବଜଳଯୁକ୍ତବେଶେ ତୋଳ କଷଟିରେ କଷେ ପରଶ ରସାଣ ପ୍ରୀତି ବାନ ବଢ଼ାଇ । କାମ କରି କରଇ ଭୋଗ । ବଣିକ ଗୁଣିକପ୍ରିୟ ବହି ସରାଗ ।୭।

ଦୁର୍ଗା ମୋ ଦୁର୍ଗତି ହରି ଏମନ୍ତ ବ୍ୟାକୁଳ ତାର ହରି ଉମା ଦୟା କଲେ ସେ ନାରୀ ପୁଂସେ । ନିଦ୍ରାବଶରେ ସ୍ବପନ ଦେଖିଲେ ସତି ବିଧାନ ଏକ ଯୋଗିନୀ ପ୍ରବେଶ କୁମାର ପାଶେ । କର ଧରି ନିଦ୍ରା ଭାଙ୍ଗିଲା । ଗଗନ ମାର୍ଗେ କୁମାରୀପୁରକୁ ନେଲା । ୮ ।

ବୋଇଲା ଲାବଣ୍ୟବତୀ ଅଛଇ ଏହି ଯୁବତୀ ଶୃଦ୍ଧନୀତେ ଶୋଇଛି ଯେ ପଲ୍ୟଙ୍କପରି । ସଖୀ ବେଢ଼ି ଗୃହପାଖେ ଜ୍ଞାନହୀନ ନିଦ୍ରାବଶେ ମନାଇ ପାରିଲେ ଭୋଗ କର ନାଗର । ଏତେ କହି ହେଲା ଅନ୍ତର । ଶୋଭା ଗ୍ରହି ଲୋଭୀ ହୋଇ ଉଠି କୁମର ।୯।

ମନେ ପାଞ୍ଚେ ମଞ୍ଚେ ଜାତ ତାହିଁକି ଏ ଅଦଭୁତ ଏବେ ଜାଣିଲି ମୋହର ନୟନଭାଗ୍ୟେ । ଏ ବର୍ଣ୍ଣ ସୁବର୍ଣ୍ଣକମ ହୁଅନ୍ତା କି ତାରତମ ଭିନ୍ନ ଜାଣି ହେଲା ପିନା ରତନ ଯୋଗେ । ହରଷ ଏମନ୍ତ ସ୍ବରୂପ । ଏତେ କାଳ ଯାଏ ହୋଇଥିଲା ଏ ଗୋପ୍ୟ । ୧୦ ।

ଏକା ଏ ନୁହେ ହରଷ ପୁଣି ମିଶିଛି ସରସ ମିଳିଛି ଶୋଭା ବିଶେଷ ଦୀପ୍ତିକୁ ଘେନ । ସୁବାସ ମନ୍ଦର ଏହି ଦିଶୁଅଛି ବ୍ୟକ୍ତ ହୋଇ ବହିଲା

---

୬ । ନୃପତି ନନ୍ଦନୀ—ରାଜକନ୍ୟା, ରୁଚିରତର—ଅତ୍ୟନ୍ତ ସୁନ୍ଦର, ଶୃଦ୍ଧନୀ—ଚନ୍ଦ୍ରଭବ, କରମହୀନ—ଭାଗ୍ୟହୀନ ।

୭ । ପରଶ—ଛୁଇଁବା, ରସାଣ—ମାଜିବା, ସରାଗ—ସ୍ନେହ ।

୮ । ଦୁର୍ଗତି—ଦୁଃଖ, ହରଉମା-ଶିବପାର୍ବତୀ, ନିଦ୍ରାବଶରେ—ନିଦରେ,

୯ । ଜ୍ଞାନହୀନ—ଚେତାଶୂନ୍ୟ ।

୧୦ । ମଞ୍ଚ—ପୃଥିବୀ, ନୟନ—ଚକ୍ଷୁ, ଗୋପ୍ୟ—ଲୁଚିବା ।



"ସଖୀବେଢ଼ି ଶୃବପାରେଣ ଜ୍ଞାନହୀନ ନିଦ୍ରାବଶେ
ମନାଇ ପାରିଲେ ଭୋଗ କର ନାଗର"

ସୁକୃତ କରିଥିଲ ଅବନୀ ! ଭାବ ହାବ ଲୀଳା ପ୍ରସନ୍ନ । ଦୁଷ୍ମନ୍ତ ଯାହା ପ୍ରସାଦେ ସେ କି ସମାନ । ୧୧ ।

ଅଣିମାଦସୁଖଦାୟୀ ଶୋଇଅଛୁ ଅଣିଅଛି ପଲ୍ୟଙ୍କଅଙ୍କରେ ଧଣେ ଏମନ୍ତ ଶୋଭା । ରସାଣ ରଜତବାଡ଼େ କନକଲତା କି ଜଡ଼େ ବିଶଦ ଘନରେ କି ସେ ଚପଳା ପ୍ରଭା । ବାମକର କପୋଳତଳ । କେନ୍ଦୁ ପଲ୍ଲବେ ଥୁଆ କି ଫୁଲ୍ଲ କମଳ । ୧୨ ।

ଭୃକୁଟିବାରୁ ଶୋଭାନେଇ କି ନୀଲେନ୍ଦୀବରପତ୍ର ଭଲ୍‌ଟାଇ ଦର୍ପଣେ ଥୋଇଛନ୍ତି କୁତୁକେ । କି ଅବା ଖଞ୍ଜନ ଯୁଗ ନିଶ୍ଚଳ ହେବାରୁ ଯୋଗ ଅଞ୍ଜନ ଅଠାକାଠିରେ ଏକାବେଳକେ । ମୀନରାଶି ଉଦୟ ଅସି । ମୃଗାଙ୍କ ଅଙ୍କରେ ହେଲ ପରସ୍ପ ଦାଶି । ୧୩ ।

ବାମା ବାମଦେବ ଦୁଇ ଯେଣୁ ନିଶ୍ଚୟବିଜୟୀ ଦ୍ୱନ୍ଦ୍ୱକର ପୂର୍ଣ୍ଣଚନ୍ଦ୍ର ଦ୍ୱିଭାଗ କଲେ । ଖଣ୍ଡେ ଖଣ୍ଡେ ଭାଲଦେଶେ କୀରତ ପ୍ରକାଶ ଅଶେ ନିଃଶେଁ ପ୍ରମୋଦ ମାନସେ ଅଣି ବହିଲେ । ଯେଣୁଅଛି ଚନ୍ଦନପାଟି । ଲୋକେନେ ଏହି ଉପମା ମନେ ପ୍ରକଟି । ୧୪ ।

ଝିଲମିଲମାଳ ପାନ ପଡ଼ିରେ ଅତି ଶୋଭନ ମାର ମଙ୍ଗଳ ପଲ୍ଲବ ତୋରଣା ପରି । କତୁସ କୁନ୍ତଳୀ ଝଲା ବାତେ ଚଳେ ଅଳଅଳା

---

୧୧ । ଦୀପ୍ତି—ତେଜ, ସ୍ୱବାସ—ନିଜ ରହିବାଘର ।

୧୨ । ଅଣିମାଦ—ଅଷ୍ଟଐଶ୍ୱର୍ଯ୍ୟ, ପଲ୍ୟଙ୍କ ଅଙ୍କ-ପଲଙ୍କ ଉପରେ, ରଜତବାଡ଼—ରୁପା ବାଡ଼ରେ, କନକଲତା—ସୁବର୍ଣ୍ଣଲତା, ଜଡ଼େ—ଗୁଡ଼ାଇ ହୁଏ, ବିଶଦ—ଧଳା, ଘନ—ମେଘ, ଚପଳା—ବିଜୁଳି, କେନ୍ଦୁ-ପଲ୍ଲବେ—କେନ୍ଦୁ ପତ୍ରରେ ।

ଖଟ ଉପର ଧଳା ବିଛଣା ଉପରେ ଲାବଣ୍ୟବତୀ ହଳଦିଆ ଚୈରିକ ଶେଯସଜାଇ ଥିବାରୁ ପ୍ରତ୍ୟକ୍ଷ ମନେକରେ ରୁପା ଭିତରେ ସୁନାଲତା ମାଡ଼ିଛନ୍ତି କି ବା ଧଳା ମେଘରେ ବିଜୁଳି ଦେଖାଯାଉଛି କି ?

୧୩ । ନୀଲେନ୍ଦୀ ବରପତ୍ର—ନୀଳକଇଁ ପାଖୁଡ଼ା, କୁତୁକେ—କୌତୁକରେ । ମୃଗାଙ୍କ—ଚନ୍ଦ୍ର, ଅଙ୍ଗ—ଦେହ,

୧୪ । ବାମଦେବ—ମହାଦେବ, ଦ୍ୱନ୍ଦ୍ୱ—କଳହ, ଭାଲ—କପାଳ, କୀରତ—ଯଶ, ଲୋକେନେ—ଦେଖିବାରୁ, ପ୍ରକଟି—ପ୍ରକାଶ ହୋଇ ।

ପକ୍ଷ ଶୃଙ୍ଗ କରି ଉଡ଼ି ଯିବାକୁ ଭୂରି । ମୁକୁତା ସୀମନ୍ତଉପରେ । କାଳନ୍ଦୀ ମଧ୍ୟେ କି ବହେ ଜାହ୍ନବୀଧାରେ । ୧୫ ।

ଶିଙ୍ଗାରୁ ଭରିଛି ଯୋଷା ଚୂର୍ଣ୍ଣ ଚିକୁରକୁ ଖୋସା ଦିଶୁଛି ଯହିଁ ଚଉଁରୀ ରହି ଭଉଁରୀ । କେତୁମୁଣ୍ଡ ତୁଣ୍ଡେ ପଶି ଗଲାଣି ଶରଦ ଶଶୀ କେବଳ କାରଣ ଦିଶୁଅଛି ମାଧୁରୀ । ଅଡ଼ଖୋଷା କୁସୁମ ତୋରି । ହାହାକାର କରି ରୁଣ୍ଡୀଭୂତ କି ତାରି । ୧୬ ।

ଗଣ୍ଡଖଣ୍ଡପରେ ପଦ୍ମରାଗଗଢ଼ାଟଙ୍କର ସଦ୍ମ ଚନ୍ଦ୍ରଠାରେ ସାନ୍ଦ୍ର ସ୍ନେହୀ ଅବତ୍ରା କି ସେ । କରେ ବିପରୀତ ରତି ସେପରି ହୋଏ ପ୍ରତୀତ ମିଶିଣ ସେ ଜ୍ୟୋତି ଅସି ଫୁଲେ କି ଦଶେ । ଜଣାଉଛି ରସିକା ବର୍ଣ୍ଣ । ତୋ ଶୋଭା ଯଶ ହେଲାଣି ମହୀରେ ପୂର୍ଣ୍ଣ । ୧୭ ।

ଅଛୁ ବଜ୍ରମଲ୍ଲୀକଢ଼ୀ ବିଧାତା କି ବଜ୍ରେ ଗଢ଼ି ସୁନ୍ଦରୀ ସଂସାରେ ଇନ୍ଦ୍ର କରି ଦେଇଛି । ଧଇର୍ଯ-ବୃନ୍ଦଅସୁର ନାଶ କରିଣ ଏଥିର ଥିରଗମନା କି ଥିର ହୋଇ ରହିଛି । କହୁଛି ଝଲକା ଝଲକ । ମୁହିଁ ରଖିନାହିଁ ସୁର ନେତ୍ର ପଲକ । ୧୮ ।

ପାନ କଲ ପୁର ତୁଣ୍ଡେ ଫୁଟି ଦିଶୁଅଛି ଗଣ୍ଡେ ମୁକୁରେ ଜବା କୁସୁମ ପ୍ରତିବିମ୍ବେ କି । ଶ୍ୱାସବଶେ ଫୁଲେ ଘୋଣା ତହିଁ ଲୀଳା ନାକଚଣା ଉତ୍ଫୁଲ୍ଲ ତିଳଫୁଲକୁ ଭୃଙ୍ଗ ଚୁମ୍ବେ କି । ଥୋପିପଡ଼େ ରଙ୍ଗଅଧରେ । ଭସ୍ମ ହୀନ ପକ୍ୱବିମ୍ବେ ମନ ନ ଧରେ । ୧୯ ।

ଦମ୍ଭ ଉଦଧି ମନ୍ଥନ ଅଚଳସ୍ତନ ଚନ୍ଦନ ଲେପନ ହୋଇ ଶୋଭନ ବସନ ଗଲା । ସୁଧାକୋଷ ବେନି ଅଣି ଢାଙ୍କି କି କାଚ ଟାଙ୍କୁଣୀ ଭଲା

---

୧୫ । ପକ୍ଷ୍ମବତୋରଣ—ପକ୍ଷ୍ମରେ ହୋଇଥିବା ଫାଟକ, କବୁରି କୁରୁଳି—ମୁହଁ ଉପରକୁ ପଡ଼ିଥିବା ଛୋଟବାଳ, ବାତେ—ପବନରେ, ଅଳି-ଅଳି—ଭ୍ରମର ସବୁ, ସୀମନ୍ତ—ମୁଣ୍ଡର ସିନ୍ଥି, ସୁନ୍ଥା ।

୧୬ । ଚିକୁର—ବାଳ, ଚୂର୍ଣ୍ଣ—ଛୋଟ, କେତୁମୁଣ୍ଡତୁଣ୍ଡ—ରାହୁପାଟିରେ, ରୁଣ୍ଡୀଭୂତ—ଏକତ୍ରିତ ।

୧୭ । ଗଣ୍ଡ—ଗାଲ, ସଦ୍ମ—ସ୍ଥାନ, ସାନ୍ଦ୍ର—ଅତ୍ୟନ୍ତ, ପ୍ରତୀତ—ବିଶ୍ୱାସ ।

୧୮ । ବଜ୍ର-ହୀରା, ଇନ୍ଦ୍ର—ଶ୍ରେଷ୍ଠ, ଥିରଗମନା-ଧୀରଗମନା, ସୁର-ଦେବତା ।

୧୯ । ପ୍ରତିବିମ୍ବ—ପ୍ରକାଶହେବା, ମୁକୁର—ଅରସୀ, ଜବା—ମନ୍ଦାର, ଘୋଣା—ନାକପୁଡ଼ା, ଉତ୍ଫୁଲ୍ଲ—ଅନନ୍ଦ, ଭୃଙ୍ଗ—ଭଅଁର, ପକ୍ୱବିମ୍ବ—ପାଚିଲା କଇଁଚ କାକୁଡ଼ ।

ଦମ୍ଭିତ ଭୋଗକୁ ରଖିଛନ୍ତି ବାଳୀ । ସ୍ଫଟିକ ପ୍ରାସାଦ ସଦୃଶୀ । ନବଘନ କାନ୍ତି ଅଛି ତହିଁରେ ମିଶି । ୨୦ ।

ଯାଉଁଳ ଗାଡ଼ ସଜାଡ଼ି କଳଅଗ୍ର ଶଙ୍ଖଚୁଡ଼ୀ ସୁପ୍ରୀତରେ ଯେନ୍ନ- ବାରୁ କାନ୍ତି ଅଧିକା । ସ୍ମୀତେ ମୀତେ କରସ୍ଥିତ ନଖେ ମଞ୍ଜୁ ମଞ୍ଜୁଅତ ଚଳିତ ହୋଇଛି ପୁଣି ଗୃନ୍ଦ ତାରକା । ତୁମ୍ବୀ ଦଣ୍ଡସାର ଉଅଳ । ବୀଣା ହେବ ଗୁଣ ଅଣି ଯାଇଛି ବାନ୍ଧ । ୨୧ ।

ଦରଶନେ ପ୍ରେମରାଜ ଦଣ୍ଡେ ସଂଶୟ ଉପୁଜ କର ନାହିଁ ବେଣୀ ଫୁଟି ଦିଶୁଛି କସ । ଗୃହି କଚ୍ଛପ ଜଘନ ଭାଜଲ ସନ୍ଦେହମାନ ଏ ତାହା ବନ୍ଧନରକ୍ଷୁ କଲ ମାନସ । ଜରୁ ଦେଖି ଦୂରୁଁ ସେ ଲେଖା । ମାଂସଳ ଗଭର ପକ୍ୱ ଚୂତ କି ଶୋଭା । ୨୨ ।

ଶାଢ଼ୀଧଡ଼ି ପଡ଼ି ଜଡ଼ି ନିବଡ଼େ ନୀବି ନିବାଡ଼ି ଅଛି କେତେ ଛନ୍ଦେ ଭିଡ଼ି ବିବେକ ଭଳି । କନ୍ଦମ୍ବ ଭୂଧର ପବିଚ୍ଛବି ମନୋହର ଚଉ ମଣ୍ଡ ଦ୍ୱିରଦ ବନ୍ଧନ ଶିକୁଳି । ଉପମା ବୁଡ଼ାଇବ କୂଟେ । ଶୋଭାନଦୀ କି ଭଉଁରି ଦେଇ ପ୍ରକଟେ । ୨୩ ।

---

୨୦ । ଉଦଧି—ସମୁଦ୍ର, ଅଚଳ—ପର୍ବତ, ବସନ—ଲୁଗା, ସୁଧାକୋଷ—ଅମୃତଭାଣ୍ଡ, ଦମ୍ଭିତ-ରାକ୍ଷସ ଓ ପୁରୁଷ, ପ୍ରାସାଦ-କୋଠା, ନବଘନ—ନୂଆମେଘ । ଦମ୍ଭରୂପ ସମୁଦ୍ରକୁ କୁଚରୂପ ପର୍ବତରେ ମନ୍ଥୁଛି । ସମୁଦ୍ର ମନ୍ଥନରେ ସୁଧା ବାହାରେ ଏଠାରେ ଚନ୍ଦନ ବୋଳ ହୋଇଥିବା ଓ ଲୁଗା ଘୋଡ଼ାଇ ହୋଇଥିବାରୁ ସେହିପରି ଦିଶେ । ଅମୃତ ଭାଣ୍ଡ ହେଲା କୁଚ, ସେଦୁଇଟିକୁ ଅଣି ତା ଉପରେ କାଚ ଢାଙ୍କୁଣୀ ଘୋଡ଼ାଇଲା ପରି ଲୁଗା ଘୋଡ଼ି ହୋଇଛି । କାରଣ କାଳେ ରାକ୍ଷସ ଅମୃତ ଖାଇବେ ଏଠାରେ କାଳେ ପୁରୁଷ ଭୋଗ କରିବ ।

୨୧ । ସ୍ମୀତେ—ପିଠିରେ, କର—ହାତ, ମୀତେ—ତଳରେ, ମଞ୍ଜୁ—ସୁନ୍ଦର, ତୁମ୍ବୀ—ଲାଉ, ଦଣ୍ଡସାର—ବୀଣାଦଣ୍ଡ ।

୨୨ । ସଂଶୟ—ସନ୍ଦେହ, ଉପୁଜ—ଜାତହୋଇ, କଚ୍ଛପ—କଇଁଛ, ଜଘନ—ଜଙ୍ଘ, ପକ୍ୱ—ପାଚିଲା, ଚୂତ—ଅମ୍ବ ।

୨୩ । ନିବଡ଼େ—ଟାଣକରି, ନୀବି—କଚ୍ଛା, ଭୂଧର—ପର୍ବତ, ପବି—ବଜ୍ର, ଦ୍ୱିରଦ—ହାତୀ ।

ନିତମ୍ବ ନିଗମ ସ୍ଥାନ ପାଶ ପାଉନ୍ତି ମଦନ ଧରିବାକୁ ଅଭିପ୍ରାୟୀ କରି ମମତା । କଲେ କି ନୟନ ମନ ନୀବିରେ ତାର ସଦନ ହେଲେ ସେ ନୀବି ସଦନ ଏ କ୍ଷଣସ୍ଥିତା । ଅବକାଶ ରଖିଲା ନାହିଁ । ଅଙ୍ଗ ଶୋଭା ଦେଖିବାକୁ ଇଚ୍ଛିଲା ଯହିଁ । ୨୪ ।

ଉଠୁ ନ ଉଠୁ ବାନ୍ଧବୀ ଅଗ ମୁଁ ନିଦ୍ରା ଭାଙ୍ଗିବ ତନୁ ହେଲେ ଛୁଇଁଥିବ ଏ ବଡ଼ ଲାଭ । ଯେ ପରେ ବାଳା ମନାଇଁ ନିଷ୍ଠେଁ ମର୍ତ୍ତ୍ୟ ଇନ୍ଦ୍ର ସେହି ମନରେ ଭାବନା କରି ପରମ ଶୁଭ । ଜାନୁ ଧରି ଦେଲା ଟୁଲାଇ । ପୁଂସ-କର ଲାଗି ନିଦ୍ରା ବିନାଶ ହୋଇ । ୨୫ ।

ଉଠି ଭାଙ୍ଗନ୍ତେ ଅଳସ କି ଶୋଭା କୁଚକଳଶ ଟେକା ହୋଏ କି ମେରୁକୁ କଣିବା ଗର୍ବେ । ଊର୍ଦ୍ଧ୍ୱ ଛନ୍ଦ କରି ବେନି ଶୋଭା ଲପନକୁ ଘେନି ଚନ୍ଦ୍ରେ କି ବିଦ୍ୟୁପରିଧି ହୋଇଲା ଏବେ । ମୁଖ ଜୃମ୍ଭାବଶେ ରାଜିତ । ଦରବିକଶିତ କୋକନଦ ଯେମନ୍ତ । ୨୬ ।

ନୟନେ ଚଞ୍ଚଳ ମିଶେ ଗଣବଣା ଏଣୀ କି ସେ ଶର ପ୍ରାୟେ ଯାଇ ପୁଂସଲାଖେ ପଡ଼ିଲା । ସେ ସୁନ୍ଦର ପାରାବାର ରସରତନଆକର ମୀନ ପ୍ରାୟେ ହୋଇ ତହିଁ ବେଗେ ବୁଡ଼ିଲା । ଲାଜେ ମୁଖ ନୁଆଇଁ ଘେନେ । ସମ୍ଭାବନା କଲା ପ୍ରାୟେ ଉଠିଲା ଛନ୍ଦେ । ୨୭ ।

ଭାଳୁଛି ନୁହଇ ମାର ନାହିଁ ଫୁଲ ଧନୁଶର ସୁଧାକର ନୋହେ ତହିଁ କଳଙ୍କ ଅଛି । ଅଙ୍ଗ ଦେବତାମାନଙ୍କ କପାଁ ଅଣିବ ମନକୁ ମୋହିବ ସୁକୃତୁଁ ଏ ପୁରୁଷ ହୋଇଛି । ମୋର ପୁଣି ସୁକୃତ କେତେ । ଏମନ୍ତ ଶୋଭା ହେବାରୁ ଜାତ ଜଗତେ । ୨୮ ।

---

୨୪ । ନିତମ୍ବ—ପିଚ୍ଛ, ମଦନ—କନ୍ଦର୍ପ, ମମତା—ଇଚ୍ଛା, ସଦନ—ଗୃହ ଅବକାଶ—ଫୁରସତ ।

୨୫ । ତନୁ—ଦେହ, ମର୍ତ୍ତ୍ୟ—ପୃଥିବୀରେ, ବିନାଶ—କ୍ଷୟ ।

୨୬ । ଲପନ—ମୁଖ, ବିଦ୍ୟୁପରିଧି—ବିଜୁଳିରେ ବେଢ଼ାଇବା, ଜୃମ୍ଭା—ହାଇ, ରାଜିତ—ଶୋଭିତ, ଦରବିକଶିତ—ଦରଫୁଟା, କୋକନଦ—ପଦ୍ମ

୨୭ । ଗଣ୍ଡବଣା—ପଲଛଡ଼ା, ଏଣୀ—ମୃଗୀ, ପାରାବାର—ସମୁଦ୍ର, ଆକର—ଖଣି, ସମ୍ଭାବନା—ଆଦର ।

୨୮ । ସୁଧାକର—ଚନ୍ଦ୍ର, ଜଗତ—ସଂସାର ।

ନିକଟେ ଗୋକୁଳେ ହରି ମୋହନରୂପକୁ ଧରି ଥିଲେ ନାଶ କରିଛନ୍ତି ଅବନୀଭରି । ଏତେବେଳେ ଅବତାର ରୂପାଁ ହୋଇବ ତାଙ୍କର କି ମୂର୍ତ୍ତି ମନ୍ତ୍ର ଜପମାତ୍ରବ୍ୟଙ୍କ ସାର । ଏ ରୂପେ ବିଗୃହୁଁ ସୁକେଶୀ । କ୍ଷୀର ନୀର ପ୍ରାୟ ମନ ପ୍ରତ୍ୟୁଷେ ମିଶି । ୨୯ ।

ଏକାଳେ କରି କୋରକ କର ତରୁଣତଳକୁ ବୋଇଲା ହେ ଜୀବେଶ୍ୱର ବିନସ୍ତ୍ର ଘେନ । ଚରଣେ ଅଳତା ପରି ପଛେ ପଛେ ଛାଇ ପରି ଅନୁସରିଥିବାକୁ ମୋ ହେଉଛି ମନ । ମୋତେ ଦିଅ ବସନ ଭାଗ୍ୟ । ହେଲଣି ସବୁମତେ ମୁଁ କୃତାର୍ଥ ଯୋଗ୍ୟ । ୩୦ ।

ଯେବେ ମୋର ଭାଗ୍ୟ ନାହିଁ ତୋତେ କି ପାରନ୍ତି ଗୃହି ବିଶେଷତ ତନୁ ଛୁଇଁ ଏ କଥା ଭାବ । ମୋ ମତେ ମୁଁ ତୋ ସେବକ ହେଲଣି କାମପାବକ ଜାଳିଲେ ଏହୁ ଅଯଶ କାହାକୁ ହେବ । ବିନସ୍ତ୍ର ପ୍ରଶଂସାକୁ ବାଣୀ । ନାହିଁ ମୁଁ କି କହିବି ତୁ ଦୟାଳୁ ମଣି । ୩୧ ।

ମିଥ୍ୟା ନୋହେ ନିଦ୍ରାବ୍ୟାଜେ ନେଇ ଯମଦାଢ଼କୁ ଯେ ରଖିଥିଲୁ ପଦ୍ମକୋଷୁ କରି ବାହାର । ହୃଦରେ ମାରି ଓଠାରି ଘେନିଗଲୁ ଝଟ କରି ଦେଖି ମୁକୁରେ ରୁଧିରେ ହୋଏ ଜର୍ଜ୍ଜର । ହାସ ଔଷଧୀଶ ପ୍ରକାଶ । ନ କଲେ ନବୀନା ଗଲି ସିନା ବିନାଶ । ୩୨ ।

ସେ ରମଣୀ ଚନ୍ଦ୍ରମଣି ହୋଇଲା ଏମନ୍ତ ମଣି ଗୃହଚନ୍ଦ୍ରେ ଦ୍ରବିଭୂତ କଲା ନାଗର । ହାସ ପୂରିଲା ପର୍ଯ୍ୟନ୍ତେ ଶ୍ରୀମୁଖ ପ୍ରସନ୍ନ ହୋଏ ହେଲା ଜାଣି ବଳନେନେ ତା ସୀତ୍କାର । କରଧରି ଶିରେ ଲଗାଇ । କୋଳ କରି ସୁରସିକ ପଲ୍ୟଙ୍କେ ନେଇ । ୩୩ ।

---

୨୯ । ଅବନୀଭର—ପୃଥ୍ୱୀଭପରେ, ଗୋକୁଳ—ଗୋପକୁ, ଅବତାର—ଜନ୍ମ, କ୍ଷୀର—ଦୁଧ, ନୀର—ପାଣି ।

୩୦ । କୋରକ—କୋଳ, ତରୁଣ—ଯୁବା, ଚରଣ—ପାଦ, ବସନଭାଗ୍ୟ—ଲୁଗାରଭାଗ୍ୟ, ଅର୍ଥାତ୍ ଲୁଗା ତ ସବୁବେଳେ ଦେହରେ ଲଗିଥାଏ ମୋତେ ସେହିପରି ସବୁବେଳେ ଘେନିଥାଅ ।

୩୧ । କାମପାବକ—କନ୍ଦର୍ପ ଅଗ୍ନି, ଅଯଶ—ନିନ୍ଦା, ବାଣୀ—କଥା ।

୩୨ । ନିଦ୍ରାବ୍ୟାଜେ—ନିଦଛଳରେ, ପଦ୍ମକୋଷୁ—ପଦ୍ମକୋଷରୁ, ରୁଧିର—ରକ୍ତ, ଔଷଧୀଶ—ଚନ୍ଦ୍ର ।

୩୩ । ସୀତ୍କାର—ମାନିବା ।

ବସି ବସାଇଲା କୋଳେ ଲପନ ଚୁମ୍ବିବାବେଳେ ଜେମା କରେ ଦେଲା ବେଗେ ରତନମୁଦି । ଜେମା କାଢ଼ି ମୋତିମାଳା ଲମ୍ବାଇଲା ପ୍ରସଙ୍ଗଲା ପରସ୍ପର ବରଣେ ହୋଇଲେ ପ୍ରମୋଦ । ସେକାଳକୁ ଅସ୍ତ ଚନ୍ଦ୍ରମା । କୁମାର ସ୍ୱରୂପବାଢ଼େ ଲେଖି ପ୍ରତିମା । ୩୪ ।

ଦେବୀ ଯେ ମାୟା ହରଲା ବୀରକୁ ସ୍ୱପ୍ନରେ ନେଲା ରଜନୀ ବିନାଶ ନିଦ୍ରା ସେକାଳେ ହତ । ବଜ୍ର କମ୍ପିା ନ ପଡ଼ିଲା ଏ ଦଣ୍ଡ କାହିଁକି ହେଲା ପିଶୁନ ଧାତା କି କଲା ଦାରୁଣ କୃତ । ରାମ ବୋଲି ବିସ୍ମୟ ହୋଇ । ଉପେନ୍ଦ୍ର ବୀରବର ଏ ରସ କହି । ୩୫ ।

---

## ଦ୍ୱାଦଶ ଛାନ୍ଦ

( ଲାବଣ୍ୟବତୀର ବିଳାପ )

ରାଗ—କଉଶିକ

ଚେତ ଚତୁର ଗୃହିଲା ନିଶିନାଶେ ପାଶେ ନାହିଁ ଦିବ୍ୟ ତରୁଣ ।
ମାର ହୃଦେ ହାତ ନାଥ ନାଥ ବୋଲି ଅତି ଉଚେ କଲା କାରୁଣ୍ୟ ।
ଖୋଜେ ଅଧୀରେ । ଚେତନା ହତ ସେ ବିଧୁରେ ।
ଶେଯ ଲେଉଟାଇ କବରୀ ଫିଟାଇ କର ଭିଡ଼ି କୁଚ ସନ୍ଧିରେ । ୧ ।

---

୩୪ । ରତନମୁଦି—ସୁନାମୁଦି, ପ୍ରମୋଦ—ଆନନ୍ଦିତ ।

୩୫ । ରଜନୀ—ରାତି, ବିନାଶ—ଶେଷ, ପିଶୁନ—ଖଳ, ନିଷ୍ଠୁର ।

ଲାବଣ୍ୟବତୀ ଚନ୍ଦ୍ରଭାନୁ ରୂପରେ ମୁଗ୍‌ଧ ହୋଇ ମନରେ ଚିନ୍ତାକରି ଶିବ ପାର୍ବତୀଙ୍କି ଡାକନ୍ତେ ଶିବ ପାର୍ବତୀ ଯୋଗୀଦ୍ୱାରା ଚନ୍ଦ୍ରଭାନୁକୁ ଲାବଣ୍ୟବତୀ ପୁରକୁ ନେଲେ, ସେଠାରେ ଚନ୍ଦ୍ରଭାନୁ ଲାବଣ୍ୟବତୀଙ୍କ ଉଠାଇ ପରସ୍ପର ବର ଣମାଳା ଦେଇ ଆନନ୍ଦରେ ଶୋଇବା ସମୟରେ ଯୋଗୀମାନେ ଚନ୍ଦ୍ରଭାନୁକୁ ସେଠାରୁ ଆଣି ନିଜପୁରରେ ଛାଡ଼ି ଦେଇ ଗଲେ ।

---

## ଦ୍ୱାଦଶ ଛାନ୍ଦ

୧ । ଚେତ—ଚେଇଁ, ନିଶିନାଶେ—ରାତିଶେଷରେ, କାରୁଣ୍ୟ—କାନ୍ଦିବା, ଶେଯ—ବିଛଣା, କବରୀ—ବାଳ, କୁଚସନ୍ଧି—ସ୍ତନମଧ୍ୟ, ଏହାଲେଖିବା ତାତ୍ପର୍ଯ୍ୟ ଏହି ଯେ ଚନ୍ଦ୍ରଭାନୁ ଯିବାରୁ ଲାବଣ୍ୟବତୀ ଉଠି ଦେଖିଲା

ପୁଣି ବୋଲଇ ହେ କାଣି ମୁଁ ନ ଥିଲି ଦଇବ ତୁ ଏଡ଼େ ଦାରୁଣ ।
କ୍ଷୁଧାତୁରକୁ ସୁଧାତୁଲ୍ୟ ଭୋଜନ ପରଷିଲୁ କେଉଁ କାରଣ ।
ଭୁଞ୍ଜି ବସିବା-, ବେଳେ କୁଳିଶ ବୃଷ୍ଟି କଲୁ ।
ଯେବେ କଲୁ ତେବେ ପରାଣ ନ ନେଲୁ ଏଡ଼େବ୍ୟାକୁଳ କରାଇଦେଲୁ ।୨।
ଏ ବାଣୀ ଶ୍ରବଣେ ଶୁଣି ସଖୀଗଣେ ପଚାରିଲେ ଏ କି ବିଷୟ ।
ତାରତରଳ ନୟନରେ ସରଳ ହୃଦୟା ପୁରାଇଛୁ ଲୁହ ।
ବାଳୀ ରତନ । ବାଳିଶ ପରାୟ ହୋଇଲୁ ।
ପୁରୁଷପଦ ଦିବାକର ଅଗମ୍ୟ ପୁରେ କାହୁଁ ପ୍ରିୟ ପାଇଲୁ ।୩।
ବୋଲେ ନାଗରୀ ସାଗରେ ସ୍ନାନ କରି ଯେମନ୍ତେ ତୃଷା ନ ତୁଟିଲା ।
କଳ୍ପତରୁରେ ଫଳ ନାହିଁ ଯେମନ୍ତ ତେମନ୍ତ ଦଶା ତ ଘଟିଲା ।
ଦିବ୍ୟ ପୁରୁଷେ । ଅସି ରସି ବସି ମୋ ପାଶେ ।
ଅଙ୍ଗେଅଙ୍ଗମେଳେ ରସ ଜାତବେଳେ ବିଚ୍ଛେଦହୋଇଲେ କି ଦୋଷେ ।୪।
ଅଳି ଭାଳିଲେ ଚନ୍ଦନ ମହୀରୁହ ପରାୟ ଏହି ଅନ୍ତଃପୁର ।
ଉରଗ କଞ୍ଚୁକେ ବେଷ୍ଟିତ ହେବାରେ ଗଣି ଦିବସେ ଭୟଙ୍କର ।
ଅଛୁ ତହିଁରେ । ପବନର ମାତ୍ର ସ୍ମରଣ ।
ଏ କେଉଁଦେବରେ ଗମ୍ୟ ହୋଇଥିବ ଭେଦ ତ ନ ଥିବ ମନୁଷ୍ୟ ।୫।

---

ପୁରୁଷ ନାହିଁ । ତହୁଁ ଶେଯ ଲେଉଟାଇଲା—ତା ନା ଚନ୍ଦ୍ରଭାନୁ ଚନ୍ଦ୍ର ଓ ଭାନୁ ତୁଳାରାଶିକୁ ଯାନ୍ତି—ଶେଯରେ ତ ତୁଳା ଅଛି କାଳେ ଯାଇଥିବେ, ପୁଣି ବାଳକୁ ଫିଟାଇଲା କାରଣ ଚନ୍ଦ୍ର ତ ମେଘରେ ରହନ୍ତି କାଳେ ବାଳ ରୂପ ମେଘରେ ଏ ଲୁଚିଥିବେ, ପୁଣି ଚନ୍ଦ୍ର ତ ପର୍ବତ ମଧ୍ୟରେ ଅସ୍ତ ହୁଅନ୍ତି, ଏ କାଳେ କୁଚପର୍ବତ ସନ୍ଧିରେ ଥିବେ ।

୨ । ଦାରୁଣ—ନିଷ୍ଠୁର, କ୍ଷୁଧାତୁର—ଭୋକ, ସୁଧାତୁଲ୍ୟ—ଅମୃତ ସମାନ, ଭୁଞ୍ଜିବସିବା—ଖାଇବସିବା, କୁଳିଶ—ବଜ୍ର ।

୩ । ତାର—ଉଜ୍ଜ୍ୱଳ, ତରଳ—ଚଳ ଚଳ, ନୟନ—ଆଖି, ବାଳୀରତନ—ନାରୀଶ୍ରେଷ୍ଠ, ବାଳିଶ—ବାତୁଳ, ଦିବାକର—ସୂର୍ଯ୍ୟ, ପ୍ରିୟ—ସ୍ୱାମୀ । ସଖୀମାନେ କହିଲେ ଏ ପୁରମଧ୍ୟକୁ ତ ସୂର୍ଯ୍ୟକିରଣ ପଡ଼େ ନାହିଁ କେଉଁ ପୁରୁଷ କିପରି ଅସିଲା ?

୪ । ସାଗର—ସମୁଦ୍ର, ସ୍ନାନ—ଗାଧୋଇବା, ତୃଷା—ଶୋଷ, କଳ୍ପତରୁ—କଳ୍ପବୃକ୍ଷ, ଅଙ୍ଗ—ଦେହ ।

୫ । ଅଳୀ—ସଖୀ, ଚନ୍ଦନ ମହୀରୁହ—ଚନ୍ଦନ ଗଛ, ଅନ୍ତଃପୁର—ଭିତରପୁର, ଉରଗ—ସର୍ପ, କଞ୍ଚୁକ—ପ୍ରହରୀ, ଗମ୍ୟ—ଅସିବା ।

କେମାକୁ ପୁଛିଲେ ତାଣ୍ଡବ ଚନ୍ଦକୁ ଦେଖିଛୁ ତ ଶିବ ସଦନେ ।
ତହିଁ କେଉଁ ଦେବେ ବଣ ହେଲୁ ଏବେ କାଅବା ରସିଲୁ ମଦନେ ।
ଶୁଣି ସୁନ୍ଦରୀ । ଶିର କମ୍ପାଇ କଲା ନାହିଁ ।
ଧାତ୍ରୀ ପୁତ୍ରୀ ମନ୍ତ୍ରୀ ସୁତାକୁ ବୋଇଲା ସ୍ୱପନରେ ଭୁଲ କପାଇଁ ।୬।

ଚିକୁର ଶୋଭି ମୁକୁର ପ୍ରତିବିମ୍ବ ଅଲିଙ୍ଗନେ ଯେବେ ଅସିବ ।
ମୃଗତୃଷ୍ଣା ଜଳ ତୃଷାକୁ ନାଶିବ ସ୍ୱପ୍ନ ତେବେ ସତ ଦିଶିବ ।
କହେ ସଚିବ-, ସୁତା ସବୁ ବଡ଼ ଦଇବ ।
କାହା ମନେ ଥିଲା ଅଗାଧ ସମୁଦ୍ର ଚଳୁ ଭିତରେ ସମ୍ଭାଇବ ।୭।

ସେ ପୁଣି ବୋଇଲା ସେ କଥା ସେରୂପେ ଏ କଥା କୁଜ୍‌ଝଟିପ୍ଳବନ ।
ପବନକୁ ଫାଶ ପାତିବସିଥିଲେ ସେ କାହିଁ ହୋଇବ ବନ୍ଧନ ।
ପୁଣି ସେ କହେ । ଊଷା-ଅନିରୁଦ୍ଧ କେମନ୍ତ ।
ସେ ବୋଲେ ସେତ ଯଦୁପୁରେ ସେ ଥିଲା ଜାଣିଲେ ଏ କାହୁଁ ସମ୍ଭୂତ ।୮।

ପରିମଳା ନାମେ ସଜନୀ ବୋଇଲା କେମାକୁ ଅନାଇଁ ସହାକ୍ଷ ।
ଅଖିଥାଉଁ ଦେଖି ନ ପାର ସଙ୍କେତ ଭୋଳ ହୁଅ କାହିଁ ପାଇଁକ ।
ନୋହେ ସ୍ୱପନ । ସତ କାହିଁକି ନା ବାଳାକୁ ।
କେଉଁ ଦେବୀର ଏ ମାୟା ହେଲେ ହେବ ଲଭିବୁ ବଲ୍ଲଭ ଲୀଳାକୁ ।୯।

---

ସଖିମାନେ କହିଲେ ଚନ୍ଦନ ଗଛର ସୁବାସ ଥିବାରୁ ସାପମନେ ତା ଦେହରେ ଥାନ୍ତି, ଏ ପୁରରେ କେମା ଥିବାରୁ ସର୍ପରୂପ ପହରୀବାଲା ଘେରି ରହିଛନ୍ତି, କେମାନ ପବନ ଅସିପାରେ, ଆଜ କିଏ ଅସିବ, ଏଠାକୁ କେଉଁ ଦେବତା ବା ଅସିଥିବ, ମନୁଷ୍ୟର ତ ଅସିବା ସାଧ୍ୟନୁହେ ।

୬ । ତାଣ୍ଡବଚନ୍ଦ—ମହାଦେବ ତାଣ୍ଡବ ନୃତ୍ୟ ବେଳେ ସବୁ ଦେବତା ଥାନ୍ତି, ସେ ଚନ୍ଦ ଦେଖିଥିବ, ଶିବସଦନେ—ମହାଦେବଙ୍କ ମନ୍ଦିରରେ,ମଦନ-କନ୍ଦର୍ପ, ଧାତ୍ରୀପୁତ୍ରୀ—ଦାସୀଝିଅ ।

୭ । ଚିକୁରଶୋଭି—ଅତିସୁନ୍ଦରୀ, ମୁକୁର ପ୍ରତିବିମ୍ବ—ଦର୍ପଣରେ ଦେଖାଯିବା ରୂପ, ମୃଗତୃଷ୍ଣା—ମରୀଚିକା, ଅଗାଧ—ଅସୀମ, ଚଳୁ—ଅଞ୍ଜୁଳା, ଅଗସ୍ତି ସପ୍ତ ସମୁଦ୍ରକୁ ଚଳୁକରି ଧରିଥିଲେ ।

୮ । ସେରୂପେ—ସେହିଭଳି, କୁଜ୍‌ଝଟି ପ୍ଳବନ—କୁହୁଡ଼ିରେ ପହଁରିବା, ବା ବୁଡ଼ିବା, ଊଷା ଅନିରୁଦ୍ଧ—ବାଣାସୁର ଝିଅ ଊଷାକୁ ଗୁପ୍ତଭାବରେ କୃଷ୍ଣଙ୍କ ପୁଅ ଅନିରୁଦ୍ଧ ହରଣ କରିବାରୁ ଯୁଦ୍ଧହେଲା, ଶେଷରେ ବାଣ ପରାସ୍ତ ହୋଇ ଊଷାକୁ ଅନିରୁଦ୍ଧ ସହିତ ବିବାହ କଲା ।

୯ । ସଙ୍କେତ—ଚିହ୍ନ, ବଲ୍ଲଭଲୀଳା—ସ୍ୱାମୀସୁଖ ।

ଗଣ୍ଡମଣ୍ଡଳ ପାଟଳ ଚୁମ୍ବିବାରେ ତାମ୍ବୁଲବୋଳ ତ ଲାଗିଛି ।
ପାନବଶରେ ରଦବାସ ବିଶେଷ ଶୋଭା ଦନ୍ତ କ୍ଷତେ ହୋଇଛି ।
ଚନ୍ଦ୍ର ଚନ୍ଦନ । ଠାବେ ଠାବେ ଅଙ୍ଗେ ଜଡ଼ିଛି ।
କାମକାତରେ ଭିଡ଼ିଛୁ ତରତରେ କଙ୍କଣ ପଦରେ ପୀଡ଼ିଛି ।୧୦।
ଛୁଇଁବା ବେଳରେ ଶ୍ରୀଅଙ୍ଗ କେମାର ଦେଇଥିବ ସିନା ଆଦରେ ।
ଯେଉଁ ମୁଦ୍ରିକା ଅନାମିକାମଣ୍ଡନ କେହୁ ଦେଖିଛ କି ଏ ପୁରେ ।
ଯହୁଁ ଦେଖାଇ । ଏରୂପେ ସଙ୍କେତନିକର ।
ଏକାଳେ ଜଣେ ଗୃହୀ ବୋଲେ ବାଡ଼କୁ ସେ ପଟ୍ଟ ଏ ଚିତ୍ର ସୁନ୍ଦର ।୧୧।
ଉପମାସୃଷ୍ଟି ସୃଷ୍ଟି କର ବିମ୍ବୋଷ୍ଠୀ ଦୁର୍ଲ୍ଲଭ ବଲ୍ଲଭ ରୂପକୁ ।
ଦେଖି ଭାଳିଲେ ପରମେଷ୍ଠୀ ଗୋଟିଏ କଲି କୋଟିଏ କନ୍ଦର୍ପକୁ ।
ସବୁ ସଜନୀ । ଅନିମିଷ ହୋଇ ରହିଲେ ।
ନୋହିଲେ କାହିଁକି ଜଗତମୋହିନୀମନକୁ ମୋହିଲା କହିଲେ ।୧୨।
ପ୍ରବୋଧ କଲେ ଏ ବିଧିରେ ସଧୀରେ ବୁଦ୍ଧିରେ ଦେଖାଇ ପ୍ରମାଣ ।
ପୁରୁଷପଦେ ଏହାକୁ ସ୍ତ୍ରୀପଦେ ତୋତେ ଧାତା କଲା ନିର୍ମାଣ ।
ଅଳ୍ପ ଅଳପରେ । ସଙ୍ଗତ କାହୁଁ ଉଇବ ।
ତୁଳାପାନେ ଉଣା ଅଧିକ ପଦାର୍ଥ ପଡ଼ିଲେ କି ସମେ ରହିବ ।୧୩।

---

୧୦ । ଗଣ୍ଡ ମଣ୍ଡଳ—ଗାଲସହ ଓଷ୍ଠ, ପାଟଳ—ଲାଲ, ତାମ୍ବୁଲବୋଳ—ପାନବୋଳ, ପାନ ବଶରେ—ପିଇବା ଇଚ୍ଛାରେ, ରଦବାସ-ଓଷ୍ଠ, ଦନ୍ତକ୍ଷତ—ଦାନ୍ତ ଦାଗ, ଦାନ୍ତଦ୍ୱାରା ଖଣ୍ଡିଆ, ଚନ୍ଦ୍ର—କର୍ପୂର, କାମକାତରେ—କନ୍ଦର୍ପ ଭୋଳରେ, କଙ୍କଣ ପାଦରେ ପୀଡ଼ିଛି--କଙ୍କଣ ଦାଗ ଗୋଡ଼ରେ ରହିଛି ।

୧୧ । ମୁଦ୍ରିକା—ମୁଦି, ଅନାମିକା—କାଣିଅଙ୍ଗୁଠି ପାଖ ଅଙ୍ଗୁଠି, ସଙ୍କେତ—ନିକର—ଚିହ୍ନସବୁ, ବାଡ଼—ଚିତ୍ରପଟ ।

୧୨ । ଉପମାସୃଷ୍ଟି—ଉପମାସବୁ, ସୃଷ୍ଟି—ତିଆର, ବିମ୍ବୋଷ୍ଠୀ—ଲାବଣ୍ୟବତୀ, ଦୁର୍ଲ୍ଲଭ—ଦୁଷ୍ପ୍ରାପ୍ୟ, ସୁନ୍ଦର, ପରମେଷ୍ଠି—ବ୍ରହ୍ମା, ଅନିମିଷ—ଏକ ଦୃଷ୍ଟିରେ ଚକ୍ଷୁପତା ନ ପକାଇ ।

୧୩ । ପ୍ରବୋଧ—ଶାନ୍ତ, ବିଧିରେ—ନିୟମରେ, ସଧୀରେ—ଧୀରଭାବରେ, ଧାତା—ବିଧାତା, ନିର୍ମାଣ—ତିଆରି, ତୁଳାପାନ—ଓଜନକରିବା—ତରାଜୁ ।

ଏତେ କହି ଦେଲେ ନୀତକୁ ବଢ଼ାଇ ସେ ଦିନୁ ବହିଲା କ୍ଷୀଣକୁ ।
ସ୍ୱପନସଙ୍ଗ ପ୍ରସଙ୍ଗ ଚନ୍ଦ୍ର ଶବ ଗୃହିଁ ହରୁଥାଏ ଦିନକୁ ।
ବଡ଼ା ହେବାକୁ । ଶରଧା ହୋଏ ଏହା ଭାବି ।
ପୁଣି ସେ ପୁରୁଷପାଶକୁ ଅଇଲେ ଅଞ୍ଚଳେ ଚଞ୍ଚଳ ବାନ୍ଧିବି ।୧୪।
ବିରହ ଅଧିକ ଧିକ କଲା ବେଶ ହାସ ଭୂଷାଧରାଶୟନ ।
ଅପଘନେ ଘଉକଲା ସ୍ମରଜ୍ୱର ନୀରପୂର ହେଲା ନୟନ ।
ମହା ଆକୁଳ । ଜନତ ହୋଇଲା ନିରତେ ।
ସ୍ତୋକ ସ୍ତୋକ କରି ତନୁକୁ କାଟିଲା ମଦନ ବସାଇ କରତେ ।୧୫।
ବୋଲଇ ସଖି ରେ ବିଚାର ନାଗର-ସ୍ନେହସାଗରରେ ମଜ୍ଜିଲି ।
ଅବଶ୍ୟ ଲଭିବି ଭାବରତନକୁ ଏମନ୍ତ ଚିତ୍ତରେ ହେଜିଲି ।
ଏତେ ବେଳକୁ । ଜୀବନ ଆଶାକୁ ତେଜିଲି ।
କାମଭ୍ରମେ ପଡ଼ି କରମବଶରେ ସ୍ଥଳ ନ ପାଇ ମୁଁ ବୁଡ଼ିଲି । ୧୬ ।
ଯିବାକୁ ଜୀବ ଶୋଚନା ହେଉନାହିଁ ଏହି କଥାକୁ ମନେ ଭାବି ।
ସାଗର ଝାସ ଫଳ ଲିଙ୍କ ବ୍ୟର୍ଥ ହେବ ମନାସିବା ପାଇବି ।
କୃପା କରିକି । ଅଜ କର୍ଣ୍ଣଧାର ହୋଇବ ।
କଲା କଥା ଯେହି ଅନ୍ୟଥା କରିଛୁ ଏମନ୍ତ ଦାରୁଣ ଦଇବ । ୧୭ ।
ସଖୀ କହିଲେ ଦୁଃଖ ସହି ଧଇର୍ଯ୍ୟ ହେଲେ କାର୍ଯ୍ୟ ଲଭି ଅବଶ୍ୟ ।
ହରି ଅରିଘାତ ସହି ରହିଲାରୁ ରାହୁ ପିଇଛୁତ ପୀୟୂଷ ।
ତୁ ଯେ ତୃଷାର୍ତ୍ତୀ-, ଗୃତକୀ ତୋ ତୃଷା ହରିବ ।
ମଙ୍ଗଳ ଚଳନେ ଉଇଁଲା ଘନ କି ଜଳ ବରଷା ନ କରିବ । ୧୮ ।

---

୧୪ । ନୀତ—ପ୍ରାତଃକୃତ୍ୟ, କ୍ଷୀଣ—ସରୁ, ପ୍ରସଙ୍ଗ—ବିଷୟ, କଥା, ଅଞ୍ଚଳ—କାନି, ସ୍ୱପନ ସଙ୍ଗେ—ସ୍ୱପନରେ ମିଳନହେବା ।

୧୫ । ଧିକ—ତୁଚ୍ଛ, ଧରା—ପୃଥିବୀ, ଶୟନ—ଶୋଇବା, ଅପଘନ—ଦେହ, ସ୍ମରଜ୍ୱର—ମଦନବିକାର, ନୀର—ପାଣି, ପୂର—ପୂର୍ଣ୍ଣ, ସ୍ତୋକ ସ୍ତୋକ—ଟିକି ଟିକି ।

୧୭ । ଶୋଚନା—ଦୁଃଖ, ସାଗର—ସମୁଦ୍ର, ବ୍ୟର୍ଥ—ଅକାରଣ, କର୍ଣ୍ଣଧାର—ନାବିକ, ଦାରୁଣ—ନିଷ୍ଠୁର ।

୧୮ । ହରି—ମାଙ୍କଡ଼ ବିଷ୍ଣୁ, ଅରି—ଶତ୍ରୁ, ଶସ୍ତ୍ର, ଘାତ—ଆଘାତ, ସମୁଦ୍ର ମନ୍ଥନ ବେଳେ ବିଷ୍ଣୁଙ୍କ ଚକ୍ରଘାତ ସହିକରି ରାହୁ ଅମୃତ ପିଇଥିଲା । ତୃଷାର୍ତ୍ତୀ—ଶୋଷୀ, ମଙ୍ଗଳଗ୍ରହ ଚଳିଲେ ବର୍ଷା ବେଶି ହୁଏ ।

ଏକାଳେ ବଳୟୁଶୋଭା କୁବଳୟନୟନା ମଳୟ ସମୀରେ
ଛଳେ ଦ୍ୱେଗୀ ପ୍ରୀତ ତୁମ୍ଭଙ୍କୁ ବୋଲୁଛି ସେହୁ ଗୁଣ ବହ ମୋଠାରେ ।
ଅହେ ପବନ । ବୋଲାଅ ଜଗତଜୀବନ ।
ଏବେ ମୋ ଜୀବନ ନେବାକୁ ହୋଇଛ ଯଥା ସନ୍ନିପାତେ ଜୀବନ ।୧୯।
ଯହିଁ ତହିଁ ତୋତେ ମଧୁକାଳ ହୋଏ ଦକ୍ଷିଣା ଶବଦ ପ୍ରକଟ ।
ସେତୁ ହେତୁରେ ଯେଉଁମାନେ ରଖିଲେ କ ନନ୍ଦବା ସେତ ମର୍କଟ ।
ମନ୍ଦ ମରୁତ । ବୋଲୁଛି ଯେଣୁ ତନୁ ପୋଡୁ ।
ଦେବତା ହୋଇଲେ ପୁଣ ମାତାଗୁଣ ରାବଣ ପରାୟେ ନ ଛାଡୁ ।୨୦।
ଲାଗିଲେ, କମ୍ପାଁ ବ୍ୟଥିତ ନ କରରୁ କାଳେ ବୋଲାଇ ଖଣ୍ଡଭୂତ ।
ଏତେକ ବିବେକ ଇନ୍ଦ୍ରର (୧) ନୋହିଲା ଦେହରୁ ହେବ ବଳବନ୍ତ ।
ଜଳ ପବନ । ଏକ ସିନା ସ୍ତୁତ ନ ଘେନ ।
ରାମଠାରୁ (୨) ଜଣାଯାଉଛି ନିସତ ହେବ ଗଲାବେଳେ ଜୀବନ ।୨୧।
ପୁଣି ଶୁଣି ପିକବାଣୀ ଗୁଣି ଜୈମିନିଙ୍କ ମଣିଣ ବଜ୍ରପାତ ।
ଚେତନାବଶେ ଅବଶେ ବସେ ଭାଷେ ମୋ ହତର କେଉଁ ମହତ ।
ମୁଁ ଯେ ଅବଳା । ମୋ ବଧ ଜଗତେ କଳୁଷ ।
ବକୁଳଅସବ ଅଗୁଁ ଦ୍ୱିଜ ହେଲେ ହୋଇଲୁ କ ଜ୍ଞାନ-ବିନାଶ ।୨୨।

---

୧୯ । ବଳୟ—ଖଡୁ, କୁବଳୟ—ରକ୍ତପଦ୍ମ, ନୟନ—ଚକ୍ଷୁ, କୁବଳୟ ନୟନା—ରକ୍ତପଦ୍ମନେତ୍ରୀ, ମଳୟ—ସୁଗନ୍ଧଯୁକ୍ତ, ସମୀର—ପବନ, ଜଗତ ଜୀବନ—ସଂସାରର ପ୍ରାଣ ଓ ପବନ, ଜୀବନ—ପାଣି ।

୨୦ । ମଧୁକାଳ ବସନ୍ତ ସମୟ, ଦକ୍ଷିଣା ଶବଦ—ଦକ୍ଷିଣ ନାୟକର ଆଖ୍ୟା, ଦକ୍ଷିଣ ନାୟକ ତାର ସ୍ତ୍ରୀ ବ୍ୟତୀତ ଅନ୍ୟକୁ ଅନାଏ ନାହିଁ । ସେତୁ—ବନ୍ଧ, ଏଠାରେ ସେତୁବନ୍ଧ । ମର୍କଟ—ମାଙ୍କଡ଼, ମରୁତ—ପବନ, ତନୁ—ଦେହ,ରାବଣର ମାତା—ନିକଷା ଅସୁରୁଣୀ, ରାବଣ ଋଷିପୁତ୍ର ହେଲେ ମଧ ମା ଗୁଣରେ ବଡ଼ ଦୁଷ୍ଟ ଥିଲା ।

୨୧ । ଖଣ୍ଡଭୂତ—ଖଣ୍ଡିଅଭୁତ (୧) ଇନ୍ଦ୍ର ମାତା ଗର୍ଭରେ ପବନକୁ ଅଣଚାଶ ଖଣ୍ଡ କରଥିଲେ ମଧ ସେ ଅକ୍ଷୟ ହେତୁ ଅଣଚାଶ ରୂପ ଧରି ବଳବାନ ହେଲେ (୨) ରାମ ସମୁଦ୍ରକୁ ସ୍ତୁତ କରିଲା ଠାରେ ସମୁଦ୍ର ନ ଶୁଣନ୍ତେ ରାମ ମାରିବାକୁ ବସନ୍ତେ ବାଟଦେଲା ।

୨୨ । ପିକବାଣୀ—କୋଇଲି ସ୍ୱର ଅର୍ଥାତ୍ କୋଇଲସ୍ୱର, ବଜ୍ରପର କଣାଗଲା ବଜ୍ର ପଡ଼ିଲେ ଯେପିରି ଜୈମିନିଙ୍କ ସ୍ମରଣ କଲେ ତାହା ନିବାରଣ ହୁଏ, କଳୁଷ-ନିନ୍ଦା,ବକୁଳ-ବଉଳ, ଅସବ-ମଦ, ଦ୍ୱିଜ-ବ୍ରାହ୍ମଣ, ପକ୍ଷୀ ।

ପଞ୍ଚମସ୍ୱରେ ତୋ ପଞ୍ଚଶର ଥିଲା ପଞ୍ଚତ୍ୱ ଇଚ୍ଛା କର ମୋର ।
କଳକଣ୍ଠ ନାମ ଅଦ୍ୟ ବର୍ଣ୍ଣ ଏବେ ଅଶ୍ଳେଷ କଲୁ କି ଅକାର ।
ଅଗୁଁ ଜାଣି ମୁଁ । ନ ଥିଲି ଏମନ୍ତ ବୋଲିଣ ।
ବ୍ୟାଧ ପୋଷି ବଧ ବିଚାରିଥିଲେ ତୁ କପାଁ ଦେଖାଉ ବଡ଼ପଣ ।୨୩।
କୁସୁମଶରକୁ ପୁଣି ବୋଲୁଅଛୁ ହତ୍ୟା ଘେନିବୁ କି ମୋହର ।
ଏ ଜେଣୁ ବଢ଼ାଇ ମନୁ ଜାତ ହୋଇ ମନ୍ମଥ ପଦ ପୁରସ୍କାର ।
ତୁ କି କସ୍ତୁରୀ- । ଠାରୁ ଏ ଦୀକ୍ଷାକୁ ପାଇଲୁ ।
ପଶୁସମ୍ଭବ ଅଚେତ ଦ୍ରବ୍ୟ ସଙ୍ଗେ ବିଚାରେ ତୁଳନା ହୋଇଲୁ ।୨୪।
ଯେ ବୋଲେ ମାର ତାହାକୁ ତୁହି ମାର ନମାର ବୋଲେ ମୁଁ ନିରତେ ।
ମୋ ତନୁ ନାଶ କର ବାସ କରିବୁ କାହିଁ ବିଚାର କରୁ ଏତେ ।
ଦେଖ ଅନଳ । କାଷ୍ଠକୁ ନଷ୍ଟ କର ଲିଭେ ।
ପ୍ରେତ ହେବାରୁ ପ୍ରେତପତି ସମୀପେ ନେବା ବିଚାର କରୁ ଏବେ ।୨୫।
ଯାହା କୁମାର ତେତେ ସିଦ୍ଧି କି କର ଛାଡ଼ିବୁ କି ନୋହେ ବେଭାର ।
ଯାହାକୁ ମାର ତହିଁରୁ କେତେ ଭୂତି ପ୍ରାପତ ହେଲାଣି ତୋହର ।
ମୁଁ ତା ହୁଡ଼ିଛୁ । ଏହି ସୁକୃତରୁ ନିଷ୍ଟୟ ।
ଗର୍ବରେ ଭୂତି ସ୍ୱରୂପ ହୋଇଥିଲୁ ଅନୁଚିତ ଚିତ୍ତ ଜଦୟ ।୨୬।
ରୋଗ ଭଣ ଶେଷକୁ ରଖିଲେ ଅପଣାର ବାଧା ସେ କଥା ।
ସର୍ବ ସର୍ବଜ୍ଞତା କଲା କଥା ପୁଣି କାହିଁକି କଲେ ସେ ଅନ୍ୟଥା ।

---

୨୩ । ପଞ୍ଚମସ୍ୱରେ—କୋଇଲି ସ୍ୱରପରି ମଧୁର ସ୍ୱରରେ, ପଞ୍ଚଶର—ଫୁଲଶର, ପଞ୍ଚତ୍ୱ—ମରଣ, କଳକଣ୍ଠ ଅଦ୍ୟରେ ଅକାର ଦେଲେ, କାଳକଣ୍ଠ ହେଲା, ବ୍ୟାଧ—ଶବର ।

୨୪ । କୁସୁମଶର—କନ୍ଦର୍ପ ବାଣ, କସ୍ତୁରୀ ଦୀକ୍ଷା—କସ୍ତୁରୀ ଯେଉଁ ମୃଗଠାରୁ ବାହାରେ ସେ ନାଶହୁଏ । ସେହିପରି କନ୍ଦର୍ପ ମନରୁ ଜାତ ହୋଇ ମନକୁ ଦହିଲା ।

୨୫ । ମାର—କନ୍ଦର୍ପ, ମାର—ମାରପକାଇବା, ପ୍ରେତପତି—ଯମ, କନ୍ଦର୍ପ ମରିବାରୁ ପ୍ରେତ ହୋଇ ଯମ ନିକଟକୁ ଗଲା ପୁଣି ଜୀବନ ପାଇଲା ।

୨୬ । କୁମର—ପୁତ୍ର, ଭୂତି—ସମ୍ପତ୍ତି, ଚିତ୍ତଜଦୟ—ମନଦେବା ।

ନାହିଁ ଶୋଚନ । ହେଲେ ହେଲ ମୁଁ ଗ୍ଳାନମାନ ।
ପୁଣି ଜାଣିବେ ବିଷବୃକ୍ଷ ସ୍ଥାପିବା ଉମା କର ଯେ ଧନ ମାନ । ୨୭ ।
କାମିର କେଉଁ ଦେବତାରେ ବିଶ୍ୱାସ ନିଶ୍ୱାସ ଦୁଇ କଥା ନାହିଁ ।
ସିନ୍ଧୁ ଶମ୍ବରେ ସମ୍ବର ବୁଡ଼ାଇଲା ତେବେ ରହିଲା ଜୀବେ ତୁହି ।
ଏତେ କହି ସେ । ଖରଶ୍ୱ ସ ତେଜି ମଦନ ।
ଅଳୀଅଙ୍ଗେ ଢଳ ପଡ଼ିଲାବେଳକୁ କର୍ଣ୍ଣ ଫୁଙ୍କି କଲେ ଚେତନ । ୨୮
ସଲିଳ ସିଞ୍ଚିଲେ ସଧୀଟେ ବିଞ୍ଚିଲେ ପଲ୍ଲବଶଯ୍ୟାରେ ଶୁଆଇ ।
ଦେଖିଲେ ମୃଣାଳ ବ୍ୟାଳ ମଣି ରମଣୀ ଚମକି ସୁପର୍ଣ୍ଣ ବୋଲଇ ।
କରେ ଭଜନ । ଶିବ ଶିବ ବୋଲି ବନିତା ।
ଗଳାର ହାର କରୁ କରୁ ବାହାର ଫୁଟିଫାଟିଗଲେ ମୁକୁତା । ୨୯ ।

---

୨୭ । ସର୍ବଜ୍ଞାତା—ମହାଦେବ, ଅନ୍ୟଥା—ଅକାରଣ, ଉମା—ପାର୍ବତୀ, ମହାଦେବ କାମକୁ ତୁଚ୍ଛ କରିଥିଲେ । ଉମା ମାନକରିବାରୁ ପୁଣି ଓ କନ୍ଦର୍ପକୁ ଜୀବଦାନ ଦେଲେ ଏ ହେଲା ଯୋଗୀ ପକ୍ଷରେ ବିଷ ସଦୃଶ ।

୨୮ । କାମୀର—କାମୁକଲୋକର, ସିନ୍ଧୁଶମ୍ବର—ସମୁଦ୍ରପାଣି, ସମ୍ବର—ସମ୍ବରାସୁର, କାମ ଆସି ରୁକ୍ମିଣୀ କୋଳରେ ଜନ୍ମ ହୁଅନ୍ତେ ସମ୍ବରାସୁର ଅନ୍ତୁଡ଼ିଶାଳରୁ ଗ୍ରେସିଇ ନେଇ ସମୁଦ୍ରରେ ପକାଇ ଦେଇଥିଲା ସେଠାରେ ତାକୁ ମାଛ ଗିଳିଥିଲା । ସେ ମାଛ ସମ୍ବରାସୁରକୁ କେଉଟ ଧରି ଭେଟିଦେଲା, ମାଛ କାଟନ୍ତେ ତା ଭିତରୁ ସୁନ୍ଦର ଶିଶୁ ମିଳିଲା । ସମ୍ବରାସୁର ବଳପୂର୍ବକ ରତିକୁ ନିଜ ସ୍ତ୍ରୀ କରିବ ବୋଲି ଘରେ ରଖିଥିଲା । ରତିକି ସେ ଶିଶୁକୁ ଦେଲା । ନାରଦ ଏ ସବୁ ବିଷୟ ରତିକୁ କହନ୍ତେ ସେଠାରେ କନ୍ଦର୍ପ ବଡ଼ ହୋଇ ସମ୍ବରାସୁରକୁ ମାରି ରତିକୁ ଉଦ୍ଧାର କରିଥିଲେ । ଏତେକଷ୍ଟରେ କନ୍ଦର୍ପର ଜୀବନ ରହିଲା ।

୨୯ । ସଲିଳ—ପାଣି, ପଲ୍ଲବଶଯ୍ୟା—କଅଁଳିଆପତ୍ର ବିଛଣା, ମୃଣାଳ—ପଦ୍ମନାଡ଼ ବ୍ୟାଳ—ସର୍ପ, ସୁପର୍ଣ୍ଣ—ଗରୁଡ଼, ଥଣ୍ଡା ହେବବୋଲି ପଦ୍ମନାଡ଼ ଦିଅନ୍ତେ ସାପ ମନେକରି ଗରୁଡ଼କୁ ସ୍ମରିଲାପରି ସେ ଉଠି ବସିଲା, ତାର ବିରହ ବେଦନା ବେଶି ହେବାରୁ ବେକର ହାର ଗରମ ହୋଇଥିବା ହେତୁ ଥରବର କରି ଛିଣ୍ଡାନ୍ତେ ମୁକ୍ତା ସବୁ ଫାଟିଗଲା ।

ସହଚରୀଏ ତା ଚରିତ ଅନାଇଁ ତୁରିତେ ଏମନ୍ତ ବିଚାରି ।
ଦୂର କରିଣ ଶୁକ ସାରୀପଞ୍ଜରୀ ଉପାଡ଼ିବା ପୁଷ୍ପମଞ୍ଜରୀ ।
ଜଳାକବାଟି । ଉଶୀର ବାଟି କଲେ ହତ ।
ବିଚାରିଲେ ନବବଧୂ ବିଧୁ କେହି ନ ଦେଖିବ ଏହା ଭାବି ତ ।୩୦।
କେଣେ କହିଲା ଅଛି ଯତ୍ନ କରିଣ ଗୋପ୍ୟ ମନ୍ଦିରେ ରଖିଥିବା ।
କେ କହେ ଜନନୀ ହକାରି ସେ କାଳେ ହେଲେ କି ଉପାୟ କରିବା ।
କେଉଁ ସଜନୀ । ବୋଇଲା ଏ ବିଚାର ଭଲ ।
ଘାସ ଦିଅଇ ଶଶ କୃଶ ହରିବା ମାଡ଼ିବସୁ ଚନ୍ଦ୍ର ମଣ୍ଡଳ ।୩୧।
କେ କହେ ଏ କାହ୍ନ ନୋହେ ଗଗନକୁ କେ ପୁଣି କରିବେ ଗମନ ।
ରାହୁ ଯୋଡ଼ ହେବା ନିମିତ୍ତ କରିବା ଜଗଦ୍ଦୈବତୀଙ୍କ ପ୍ରସନ୍ନ ।
ଶୁଣି ସେ ବୋଲେ । ସେ ପାପୀ ଶରୀର ଅମର ।
ସିଂହିକାସୁତ ଉଦରକୁ ଚିରିବ ପରି ହନୁମାନ ପ୍ରକାର ।୩୨।
ଚତୁର ସଖୀ ବୋଇଲା ସବୁପର ବିଚାର ଏହି ରେ ସଜନୀ ।
କି ମନ୍ତ୍ରେ ବଶ କରନ୍ତାଇଁ ରହନ୍ତା ଏ ପୁରେ ଦିବସ ରଜନୀ ।
ମହାମାନ୍ତ୍ରିକ । ଜନମାନଙ୍କ ଗୋ ପରିହର ।
ମନ୍ତ୍ରୀନନ୍ଦନା ବୋଇଲା ଏଥୁ ତହୁଁ କପାଁ ବୃଥା କର ବିଚାର ।୩୩।
ବଡ଼ ହୋଇବ କସ ହୋଇ ଅର୍ଜିଲା କର୍ମ ସିନା ଭୋଗ ହୋଇବ ।
ସାଗର ମନ୍ଥନେ ଗରଳ ପାଇଲେ ଭୋଗ କରଛି ମହାଦେବ ।
ଶୁଣି ଏ ବାଣୀ । ସମସ୍ତ ବୋଇଲେ ପ୍ରମାଣ ।
ଶିରୀଷଦେହାରେ ଏହା ଅବଜାଲ୍ଲ କଲେ ଅତି ଉଚେ କାରୁଣ୍ୟ ।୩୪।

---

୩୦ । ପୁଷ୍ପମଲ୍ଲୀ—ଫୁଲଗଛ, ଉଶୀର—ବେଣା, ଯେଉଁସବୁ ସୁନ୍ଦର ଜିନିଷ ଦେଖିଲେ କାମ ଜାତ ହୁଏ ସେ ସବୁକୁ ସଜନୀମାନେ ପାଖରୁ ଦୂର କଲେ । କାରଣରେ ବିରହ ଅବେଶ ହେଲେ କାଳେ ପ୍ରାଣ ଯାଇପାରେ ।

୩୨ । ଜଗ ଦୈବତୀ—ଜଗତମାତା, ଜଗ ଦୁଇଫାଳ ହୋଇଥିଲା ତାକୁ ସେ ଯୋଡ଼ି ଜୀବଦାନ ଦେଇଥିଲା, ହନୁ ସିଂହିକାର ଗର୍ଭକୁ ଚିରିବାହାରିଲା, ଚନ୍ଦ୍ର ରାହୁକୁ ପରାସ୍ତ କରି ବାହାରେ ।

୩୩ । ମହାମାନ୍ତ୍ରିକ—ଯେଉଁମାନେ ଭଲ ମନ୍ତ୍ର ଜାଣନ୍ତି ।

୩୪ । ଶିରୀଷଦେହା—ଶିରୀଷ ଫୁଲ ଦେହୀ ଯେ ଲାବଣ୍ୟବତୀ ।

ଲାବଣ୍ୟନିଧିର କି ବ୍ୟାଧି ବୁଝିବେ ଶବ୍ଦ ରାଜା ରାଣୀ ଶୁଣିଲେ ।
ହୋଇ ଉତ୍ସୁକ ଚିକିତ୍ସକ ମନ୍ତ୍ରୀଙ୍କ ହକାରି କରାଇ ଆଣିଲେ ।
ଶୁଣି ସେ ଯାଇଁ । ଦେଖିଲେ ରମଣୀରତନ ।
କରତା ମୃଦୁସୁଲ୍ଲୀ ଆଗେ କହିଲେ ଏ ଜ୍ୱରକୁ ଏହି ବିଧାନ । ୩୫ ।
ରସବିନା ଏ ନ ଘୁଞ୍ଚିବ ରୁଚିବ ମଧୁର ଆହାର ହୋଇଲେ ।
ଶାନ୍ତ ହେବ ଚିନ୍ତା ତାପ ରାଜେ ଚନ୍ଦ୍ରଭାନୁରେ ଏକ ଶଯ୍ୟା କଲେ ।
ରୋଗ ବିଷମ । ରାଗଜନ୍ୟ ହୋଇ ହୋଇଛି ।
ପୁଟପାକରେ ଯେତେକ ଔଷଧି ଏ ଗୁଣ ନ କରିବେ କିଛି ।୩୬।
କତିରେ ଯେତେ ସଖୀ ଥିଲେ ଶ୍ରୁତରେ ରହିଲେ ବିରସ ମତରେ ।
ଚତୁରା ନାମେ ମାଳମୀ ପରବେଶ ଏହି ସମୟେ ଅନ୍ତଃପୁରେ ।
ପୁଷ୍ପ ଭୃଙ୍ଗାରା । ଘେନି ସନ୍ନିକଟ ହୋଇଲା ।
ଯେମନ୍ତ ସୁଟବେଶ ପଦ୍ମିନୀ ପ୍ରବେଶ ଅରବିନ୍ଦକୁ ସେ ରହିଲା । ୩୭ ।
ହେ ରାମ କାମସୁନ୍ଦର ଗୁଣବନ୍ତ ଶିଳୀମୁଖ ଧନୁ ଧାରଣ ।
ସିତାମ୍ବୁଜମୁଖୀ ପ୍ରୀତ ପ୍ରମୋଦିତ ହରି ମିନଦପଣ ପ୍ରମାଣ ।
ଜାଣ ବିରହ । ବିପତ୍ତି ହର ତତପର ।
କହେ ଉପେନ୍ଦ୍ର ଭଞ୍ଜ ବୀରବର ଏ ଛାନ୍ଦ ଅତି ମନୋହର । ୩୮ ।

---

୩୫ । ବ୍ୟାଧି—ରୋଗ, ଉତ୍ସୁକ-ଉଚ୍ଛନ୍ନ, ଚିକିତ୍ସକ—ବୈଦ୍ୟ, ମୃଦୁସୁଲ୍ଲୀ-ଗୃହକରାଣୀ ।

୩୬ । ରସ-ବୃକ୍ଷ ଲତାଦି ରସ, ପୁଣି ଶୃଙ୍ଗାର ରସ, ସୁମଧୁର ଆହାର—ସୁମିଷ୍ଟ ଖାଦ୍ୟ, ଓଷ୍ଠର ମଧୁପାନ, ଚନ୍ଦ୍ର ଭାନୁ—ସନ୍ଧ୍ୟାସମୟେ, ରାଜପୁଅ, ଚନ୍ଦ୍ର କିରଣ; ରାଗଜନ୍ୟ—କ୍ରୋଧ ସକାଶ, ବିରହ ସକାଶ ।

୩୮ । ଶିଳୀମୁଖ—ଭ୍ରମର, ସୀତାମ୍ବୁଜ—ଧଳା ପଦ୍ମ, ହରି—ସୂର୍ଯ୍ୟ ଓ ବିଷ୍ଣୁ । କାମ ଯେପରି ଭଅଁରକୁ ନେଇ ଧନୁ କରିଥାଏ ରାମ ସେହିପରି ଶିଳୀମୁଖ କି ବାଣକୁ ଧରିଛନ୍ତି—ସୂର୍ଯ୍ୟ ଯେପରି ସୀତାମ୍ବୁଜ ଧଳାପଦ୍ମକୁ ପ୍ରେମ କରନ୍ତି ରାମ ସେହିପରି ସୀତାଙ୍କର ମୁଖ ପଦ୍ମକୁ ଦେଖି ପ୍ରେମ ହୁଅନ୍ତି—

# ତ୍ରୟୋଦଶ ଛାନ୍ଦ

( ମାଳଣୀର ବେଶ ବର୍ଣ୍ଣନ )

ରାଗ—କଳସୀକ, ମୁନିବର ବାଣୀରେ ଗାଇବ

ଏଥୁ ଅନନ୍ତରେ ରସ । ଶୁଣ ହେ ମାଳଣୀ ବେଶ । ଟଭ୍ରଫଳ ପରି ଗୋପା । ଖୋପିଛୁ ଯୋଷା ଯେ । ୧ । ଗର୍ଭକ କଳ୍ପ ଚଉଁରୀ । ପ୍ରକାଶେ ରତ୍ନ ଭଉଁରୀ । ଖଞ୍ଜିଅଛୁ ଗୋଟି ଚମ୍ପା । ଧରଣୀ କମ୍ପା ଏ । ୨ । ଅନ୍ଧାର ନିଶାରେ ନଭେ । ନିର୍ମଳ ତାରା କି ଶୋଭେ । ଦିଶଇ ତେମନ୍ତ ପରା । ଲୋଚନ-କାରା ଏ । ୩ । ଏଥକୁ କେଶ ନିଭଙ୍ଗେ । ଧାରା ଦେଖାଇଛୁ ମାଙ୍ଗେ । ଘନ ରାହୁ ଭୃଙ୍ଗଶ୍ରେଣୀ । ଅଛୁ କି ଜିଣି ଏ ।୪। ଲଲାଟେ ଚନ୍ଦନ ଟିଡା । ସିନ୍ଦୁର ବିନ୍ଦୁ ଶୋଭିତା । ଚନ୍ଦ୍ର କୋଳେ କି ସବିତା । ଏହି ଭଙ୍ଗିତା ଏ । ୫ । ଶ୍ରବଣେ ରୁଚିକୁଣ୍ଡଳ । ଦୋହଲେ ଗଣ୍ଡ ମଣ୍ଡଳ । ସୁବର୍ଣ୍ଣ ପାଣି ଉପରେ । ଚଉକୁ ହରେ ଏ । ୬ । ଫୁଲଗୁଣା ମାଠଗୁଣା । କରଇ

---

ଲାବଣ୍ୟବତୀ ବିରହରେ ଅସ୍ଥିର ହେବା ଦେଖି ନାନାଦି ଉପଚାରରେ ଶାନ୍ତ କରାଇବାକୁ ଚେଷ୍ଟା କଲେ । ପିତାମାତା ଶୁଣି କିଛୁ ରୋଗ ମନେକରି ବୈଦ୍ୟକୁ ଡକାଇ ପଠାଇଲେ । ବୈଦ୍ୟ ଦେଖିଲେ, ଏ ବିରହ ବ୍ୟାଧି ଏହାକୁ ଉପଚାର କାମଭୋଗ ତେଣୁ ଜଣତା ଧାଈଙ୍କ ଏହି କଥା କହିଦେଇ ଗଲେ ।

---

## ତ୍ରୟୋଦଶ ଛାନ୍ଦ

୧ । ଟଭ୍ରଫଳ—ନାରଙ୍ଗ ଲେମ୍ବୁର ଫଳ, ଯୋଷା—ସ୍ତ୍ରୀ ।

୨ । ଗର୍ଭକ—ଭିତରେ ପୁରାଇବା, ରତ୍ନଭଉଁରୀ—ସୁନାଭଉଁରୀ ।

୩ । ନିଶାରେ—ରାତିରେ, ନଭେ—ଆକାଶରେ, ଲୋଚନ—ଚକ୍ଷୁ, କାରା—ବନ୍ଦିଗୃହ ।

୪ । କେଶ—ବାଳ, ନିଭଙ୍ଗେ—ତିନିଧାରରେ, ଘନ—ମେଘ,ରାହୁ—ରାହୁଗ୍ରହ, ଭୃଙ୍ଗଶ୍ରେଣୀ—ଭଅଁର ସବୁ ।

୫ । ଲଲାଟେ—କପାଳରେ, ସବିତା—ବାଳସୂର୍ଯ୍ୟ, ।

୬ । ଶ୍ରବଣରେ—କାନରେ, ରୁଚି—ସୁନ୍ଦର ।

ବିବେକ ବିଣା । ନାସା ପୂଷ୍ଠକେ ପୃଷ୍ଠକେ । ଥାଇ ଝିଷ୍ଠକେ ଏ । ୭ । ଲଜ୍ଜି
ବିହୀନେ କଜ୍ଜ୍ୱଳ । ନୟନେ ଦିଶେ ଉଜ୍ଜ୍ୱଳ । ପଦ୍ମେ କି ଭ୍ରମର ଖେଳା ।
ତେମନ୍ତେ ଡୋଳା ଏ । ୮ । କଣ୍ଠେ ସୁନାକଣ୍ଠି ମାଳି । ପ୍ରବାଳେ ହୋଇଛି
ଝଳି । ପଛକୁ ରୁଚିର ଫୁଲ । ମାନସ ଭୁଲି ଏ । ୯ । ଉଚ୍ଚ ଘଞ୍ଚ କୁଚ
ବେନି । ହେଲାଦନ୍ତ ଯଉବନୀ । ଦେଖି ତ ନାହିଁ ଅବନୀ । ଲୋଚନ
ବେନି ଏ । ୧୦ । ମାଦବାକୁ ଯୁବାକୁଳ । କାମ କର ଅନୁକୂଳ ।
ଚେକନ୍ତି କି ଶାଢ଼ୀଧର । ତଥା ସୁନ୍ଦର ଏ । ୧୧ । ବିଦମାଳୀ ପାଟବ୍ରତ ।
ତାଡ଼ରେ ଭୁଜ ଦୀପିତ । କାମ ଅଦ ଖଡ଼୍ଗବାହ୍ନୀ । ହସ୍ତରେ ଶୋହିଏ । ୧୨ ।
ବାମକରର ଅଙ୍ଗୁଳି । କିସର ମୁଦିରେ ଝଳି । ଚରଣକେ ବଳା ପଟେ ।
ନାଦ ପ୍ରକଟେ ଯେ । ୧୩ । ପ୍ରପଦରେ ହଂସାମୁଦ୍ଧୀ । ଶବଦେ ଧଇର୍ଯ୍ୟ
ଖେଦ । ବେଢ଼ରେ ଅଳତା ଚିନ । ଅତି ବିଚକ୍ଷ ଯେ । ୧୪ । ବ୍ୟକ୍ତ
ବିଞ୍ଚଣୀ ପଣନ୍ତ । ଉରୁଉପରେ ଲମ୍ବିତ । ବନ୍ଧନ ଛନ୍ଦନ ନୀବି । ମୋହନ
ଛବି ଯେ । ୧୫ । ସ୍ତନ ଊର୍ଦ୍ଧ୍ୱେ କଣ୍ଠତଳେ । ମଣିବନ୍ଧେ କରମୂଳେ । ପାଦ
ପରେ ଚିବୁକରେ । କି ମନୋହରେ ଯେ । ୧୬ । ହରତାଳୀ କାଳୀ
ଚିତା । ଉଲୁଠାଇଛି ବନିତା । ଦେହ ତ ଅତ୍ୟନ୍ତ ଗୋରି । ତହିଁକି
ଚୋରି ଯେ । ୧୭ । ନୋହେ ଉଚ୍ଚ ଖର୍ବ ଅତି । କଥା ଏ ନୋହେ

---

୭ । ବିବେକ—ବୁଦ୍ଧି, ନାସା—ନାକ, ପୃଷ୍ଠକେ—ପୂଢ଼ାରେ ।

୮ । ଲଜ୍ଜି—ଲଜ୍ଜା, ଉଜ୍ଜ୍ୱଳ—ତେଜ ।

୯ । ପ୍ରବାଳ—ପୋହଳା, ରୁଚିର—ସୁନ୍ଦର, ଫୁଲ—ଝୁଣ୍ଟି ବା ଫୁଲ, ମାନସ—ମନ ।

୧୦ । ଘଞ୍ଚ—ଲଗାଲଗି, ଯୌବନୀ—ଯୁବାବସ୍ଥା ପାଇଥିବା ସ୍ତ୍ରୀ ।

୧୧ । ଶାଢ଼ୀଧର—ଲୁଗାରଧର,

୧୨ । ପାଟବ୍ରତ—ପାଟବରତ, ଭୁଜ—ହାତ, ଦୀପିତ—ସୁନ୍ଦର ।

୧୩ । ବାମକର—ବାଁ ହାତ, ଚରଣକେ—ଗୋଟାଏ ଗୋଟାଏ ଗୋଡ଼ରେ, ନାଦ—ଶବ୍ଦ, ପ୍ରକଟେ— ବାହାରେ ।

୧୪ । ପ୍ରପଦରେ-ପାଦ ଅଙ୍ଗୁଠିରେ, ଧଇର୍ଯ୍ୟ-ମନ, ବେଢ଼ରେ—ଗୋଇଠିରେ

୧୫ । ବ୍ୟକ୍ତ—ପ୍ରକାଶିତ, ବିଞ୍ଚଣୀ— ବିଞ୍ଚଣା, ଉରୁ—ଜଙ୍ଘ ।

୧୬ । ମଣିବନ୍ଧ—ଖଡ଼ୁ ପିନ୍ଧିବା ଜାଗା ଗଣ୍ଠି ।

୧୭ । ଉଲୁଠାଇଛି—ଲୁଠାଇଛି, ବନିତା—ସ୍ତ୍ରୀ ।

ଯୁବତୀ । ପୀନ କୋହ୍ନ କ୍ଷୀଣ କୋହ୍ନ । ଏମନ୍ତ ଦେଖ୍ଣ ଯେ । ୧୮ ।
ଛବର୍ଜିତ ଗଣ୍ଡ ଶିର । ପାଚିଲା ରସାଳ ପର । ବୟସ ଷୋଳ ସନ୍ତର ।
ଏଥିଭିତର ଯେ । ୧୯ । କୁସୁମ ଗୁଙ୍ଗଡ଼ା କରେ । ଗୋଡ଼ାଇଛନ୍ତି
ଭ୍ରମରେ । ଗଜ ପରାୟେ ମନ୍ଥର । ଗମନ ତାର ଯେ । ୨୦ । ପଶନ୍ତି
ଦେଉଳେ ଶିରେ । ଧରିଛି ଦକ୍ଷିଣ କରେ । ମୁଖ ହସିଲାର ପ୍ରାୟେ ।
କ ଶୋଭା ପାଏ ଯେ । ୨୧ । ମନ୍ତ୍ରୀସୁତା ଅଗେ ନେଇ । ସୁମନ
ସମ୍ଭାର ଥୋଇ । ଧୀରେ ହର ରମା ଅଙ୍କା । କହିଲା ବଞ୍ଚା ଯେ । ୨୨ ।
ସତ କ ବୋଲ୍ ପରସ୍ପର । କେତକୀଜତ ଗଉର । ଘୁମୁଁକୁ ନେଲା ସତ୍ୱରେ ।
ପ୍ରମୋଦ ଭରେ ଯେ । ୨୩ । ବୋଲେ ରେମା ସାବଧାନ । ହୁଅ ଅପୂର୍ବ
ବିଧାନ । କହୁଛି ଚତୁରସ୍ର ଅସି । ସୁଧାବରଷି ଯେ । ୨୪ । ରମା ଶୁଣି
ବୋଲେ ବସ । କେମନ୍ତ କଥା ସେ ଭ୍ରଷ । ଶୁଣି ଅରମ୍ଭିଲା ତହିଁ ।
ମାଳମୀ କହି ଯେ । ୨୫ । ତୋ ଖଞ୍ଜଣୀଫୁଲ ମୋର । ଏଣୁ ଭଲ ବାଞ୍ଛା
ତୋର । ବରକୁ ମୁଁ କହୁଥାଇଁ । ହରେ ଜଣାଇଁ ଯେ । ୨୬ । ଗଲା କାଲି
ଚତୁର୍ଦ୍ଦଶୀ । ହୋଇଥିଲି ଉପବାସୀ । ଦେଉଳ ଭିତରେ ଯାଇଁ । ଜାଗର
ଦେଇ ଯେ । ୨୭ । ବସିଥିଲି ଉଜାଗରେ । ରଜନୀ ଅଛି ପ୍ରହରେ ।
ଅଳପ ଅସିଲା ଦୋଳ । ଏମନ୍ତ ବେଳ ଯେ । ୨୮ । ଇଷିତେ ଭଥା
ସୁନ୍ଦର । କ୍ଷେଣି ବେମ ଠାକୁର । ଶିରେ ଜଟା ଅର୍ଦ୍ଧଶଶୀ । ମଞ୍ଜୁଳ ଦଶି
ଯେ । ୨୯ । କୁନ୍ଦ କ୍ଷୀର ଦର ରୁଚି । ତେଜ ଚନ୍ଦ୍ରି ତହିଁ ଶୁଚି ।
ହୋଇଛନ୍ତି ଦିଗମ୍ବର । ଭସ୍ମଧୂସର ଯେ । ୩୦ । ପାର୍ବତୀଙ୍କି ବାମକରେ ।

---

୧୮ । ଗର୍ବ—ବାଙ୍ଗର, ପୀନ—ମୋଟା, କ୍ଷୀଣ—ସରୁ ।
୧୯ । ଛବର୍ଜିତ—ନଥିବା, ରସାଲ—ଅମ୍ବ ।
୨୦ । କୁସୁମ—ଫୁଲ, ମନ୍ଥର—ଧୀର ।
୨୨ । ସୁମନସମ୍ଭାର—ଫୁଲସବୁ, ହରରମା—ଶିବପାର୍ବତୀ, ବିଜ୍ଞାନ—ଜ୍ଞାନ
୨୩ । କେତକୀଜତ—କେତକୀ ଫୁଲ ବର୍ଣ୍ଣଠାରୁ ବଳି, ପ୍ରମୋଦଭରେ—
ଅତିଆନନ୍ଦରେ ।
୨୪ । ସୁଧା—ଅମୃତ ।
୨୫ । ରମା—ସ୍ତ୍ରୀ, ଲବଣ୍ୟବତୀ, ଭ୍ରଷ—କ୍ରୁଦ୍ଧ ।
୨୬ । ବାଞ୍ଛା—ଇଚ୍ଛା ।
୨୮ । ଉଜାଗରେ—ଅନିଦ୍ରାରେ, ରଜନୀ—ରାତି, ଦୋଳ—ନିଦ ।
୨୯ । ଅର୍ଦ୍ଧଶଶୀ—ଅଧାଚନ୍ଦ୍ର, ମଞ୍ଜୁଳ—ସୁନ୍ଦର ।



"କୁସୁମ ଗୁଙ୍ଗଡ଼ା କରେ, ଗୋଡ଼ାଉଛନ୍ତି ଭ୍ରମରେ"

ଧରିଅଛନ୍ତି ସ୍ନେହରେ । ଦକ୍ଷିଣ କରରେ ବେତ । ବାଙ୍କ ତିନେତ୍ର ସେ ୩୧ । ସେ ବେତ ମୋତେ ଛୁଅଇଁ । ତକ୍ଷଣେ ମୋ ଚେତା ହୋଇ । ଗୃହିଁ ଶିବ ଶିବା ରମ୍ୟ । କଲି ପ୍ରଣମ୍ୟ ଯେ । ୩୨ । ମୁଖ ମୃଦୁହାସେ ପୂର୍ଣ୍ଣ । କଲେ ମୋତେ ଅବଧାନ । ନୃପଜାପାଇଁ ତୁ ମୋତେ । କଣାଇ ନିତ୍ୟେ ଗୋ । ୩୩ । ଚନ୍ଦ୍ରମୁଖୀ ଏ ନିଶାରେ । ଶୋଇଥିଲା ଚନ୍ଦ୍ରକରେ । ମୋର ଅଙ୍କରେ ଯୋଗିନୀ । ପ୍ରତ୍ୟକ୍ଷେ ଦେଖି ଯେ । ୩୪ । ପ୍ରବେଶ ବାଳା ପାଶର । ଚହ୍ଲାଇଦେଇ ଅନ୍ତର । ସେ ପୁଣି ନିଦ୍ରା ଭାଙ୍ଗିଲା । ବିସ୍ମୀ ହେଲା ଯେ । ୩୫ । ରାମା ସୀତ୍କାର ବେଳେ । ଆଲିଙ୍ଗନ ହେବା କାଳେ । ଯୋଗିନୀ ମାୟାର ବଶ । ହରିଲା ପୁଂସ ଯେ । ୩୬ । ଏଣୁ କହୁଛି ବ୍ୟଥିତ । ହେଉଅଛି ଜେମାର ଚିତ୍ତ । ତୁ ଯାଇ କହ ବାଳାକୁ । ଲଭିବ ତାକୁ ଯେ । ୩୭ । ମୁଁ ପୁଚ୍ଛା କଲି ଏମନ୍ତ । କେଉଁ ରାଜାର ସେ ସୁତ । ନାମ ତାର କିସ ପୁଣି । କହିଲେ ଶୁଣି ସେ । ୩୮ । କର୍ଣ୍ଣାଟ କାଞ୍ଚି ନଗରେ । ଶଶିଶେଖର କୋଳରେ । ହୋଇଅଛି ସେ ଜନମ । ଲୋକାଭିରାମ ଯେ । ୩୯ । ଚନ୍ଦ୍ରଭାନୁ ତାର ନାମ । କାମିନୀମୋହନ କାମ । ରମଣୀ ତାକୁ ପାଇବ । ସୁଖୀ ହୋଇବ ଯେ । ୪୦ । ସାଧୁକୁଳ ବ୍ରହ୍ମଚାରୀ । ପରବେଶ କାଲି ପରି । ଦେଖି ତାହାର ସନ୍ଦେଶ । ହେବ ଏ ଦେଶ ଯେ । ୪୧ । ଏତେ ଆଜ୍ଞା ଦେଇ ହର । ହୋଇଲେ ହେଁ ଅନ୍ତର । ଆଜ ମୋତେ ନିଦ୍ରା ନାହିଁ । ଅଇଲି କହି ଯେ । ୪୨ । ନାମ ଶ୍ରବଣ

---

୩୦ । କୁନ୍ଦ—କୁନ୍ଦଫୁଲ, କ୍ଷୀର-ଦୁଧ,ଦର-ଶଙ୍ଖ, ଏସବୁ ଧଳା, ଦିଗମ୍ବର—ଲଙ୍ଗଳା, ଭସ୍ମଧୂସର—ପାଉଁଶ ବା ବିଭୂତିରେବୋଲି ହେବାରୁ ପାଉଁଶିଆ ଦିଶୁଥିଲେ ।

୩୨ । ରମ୍ୟ—ସୌନ୍ଦର୍ଯ୍ୟ, ପ୍ରଣମ୍ୟ—ନମସ୍କାର ।

୩୩ । ନୃପଜା—ରାଜସୁତା, ନିତ୍ୟେ—ପ୍ରତିଦିନ ।

୩୪ । ଚନ୍ଦ୍ର କରେ—ଚନ୍ଦ୍ର କିରଣରେ ।

୩୬ । ସୀତ୍କାର—ସମ୍ମତ, ଆଲିଙ୍ଗନ—କୋଳ ।

୩୯ । ଲୋକାଭିରାମ—ମନୁଷ୍ୟ ମଧ୍ୟରେ ଅତି ସୁନ୍ଦର ।

୪୦ । କାମିନୀ ମୋହନ—ସ୍ତ୍ରୀ ମୋହକାରୀ, କାମ—କନ୍ଦର୍ପ ।

୪୧ । ସନ୍ଦେଶ—ଖବର, ବ୍ରହ୍ମଚାରୀ—ଯୋଗୀ ।

ତାହାର । ହେଲା ଚନ୍ଦ୍ର ଦବାଇବ । ସଂଶୟ ଅନ୍ଧାର ଦୂର । କଲା ତାହାର ଯେ । ୪୩ । ପୁଣି ସେ ଜଳ ପର୍ଯ୍ୟେ । ଅଶୋକରୁ ପଲ୍ଲବାଏ । ପ୍ରମୋଦ ପଦ୍ମପ୍ରକାଶେ । ରବ ସଦୃଶେ ଯେ । ୪୪ । ଶୁଣି ଯଥା ଘନଘୋଷ । ତୃଷାର୍ତ୍ତ ଗୃତକ ତୋଷ । ବରଷିବ କର ମତ । ହୋଇ ନୃପତ ଯେ ।୪୦। ଦେବଣ ଚକୋର ମୋହ୍ନା । କର୍ପୂରକୁଡ଼କୁ ଗୃହି । ସେ ଚନ୍ଦ୍ର ପାଇଲେ ଯଥା । ତଥା ଏ କଥା ଯେ । ୪୬ । ଚୂତ ହେଲେ ପଲ୍ଲବତ । ଭ୍ରବ ହେବେ ମୃକୁଳତ । ପିକ ଯଥା ଅନନ୍ଦତ । ହେଲେ ତେମନ୍ତ ଯେ । ୪୭ । ସନ୍ନିପାତର ନାଠିକା । ଲଗିଲେ ଯଥା ତାଟକା । କୁଛୁ କୁଛୁ ହୋଏ ଭଳା । ତେମନ୍ତ ମନ ଯେ । ୪୮ । ବାଳକ ପର୍ଯ୍ୟ ହୋଇ । ପୁଚ୍ଛା କଲେ ତାହ୍ନ ତାହ୍ନ । ମାଳମୀକ କଲେ ଦାନ । ବନ୍ନ ବସନ ଯେ । ୪୯ । ଟିରଜା ନମିତ୍ତେ ପୁଣି । ଦେଲେ ସେ ଚାତା କାଛେଣୀ । ଖଞ୍ଜିଲେ ମନ୍ଦାରମାଳୀ । ଜପନ ବଳି ଏ । ୫୦ । ଶମ୍ଭୁଅଙ୍ଗେ ଗୋଦୋହନ । ପାଇଁ ଦେଲେ ଧେନୁମାନ । ବିଲ୍ୱପତ୍ର ଜଳଶାୟୀ । ଭୋଗର ପାଇଁ ଯେ । ୫୧ । ବିରାଟକ ଦେଲେ ଚଣି । ନାଗ ଚନ୍ଦ୍ର ପାଇଁ ପୁଣି । ସୁବର୍ଣ୍ଣ ବଣିକ କରେ । ଦେଲେ ହର୍ଷରେ ଯେ । ୫୨ । ଚତୁରକୁ କହେ ଜେମା । ଜଣାଇବ ହର ଉମା । ଗୁମ୍ଫରେ ବାଣୀ ଏମନ୍ତ । ମୋର ଶପଥ ଗୋ । ୫୩ । ଯେବେ ଲଭିବ ସେ ଯୁବା । ମୋ ଜୀବଥିବାରେ ସେବା । କଦ୍ଭୁହି ନୋହିବ

---

୪୩ । ଚନ୍ଦ୍ର ଦବାଇବ—ଚନ୍ଦ୍ରଭାନୁ ।

୪୪ । ଅଶୋକରୁ—ଅଶୋଗଛ, ରବ—ସୂର୍ଯ୍ୟ ।।

୪୫ । ଘନଘୋଷ—ମେଘଶବ୍ଦ, ତୃଷାର୍ତ୍ତ—ଶୋଷୀ, ତୃପତ—ସନ୍ତୋଷ

୪୭ । ଚୂତ—ଅମ୍ବ, ମୃକୁଳତ—ବଉଳବା ।

୪୯ । ତାହ୍ନ ତାହ୍ନ—ଥରକୁ ଥର, ବନ୍ନ ବସନ—ସୁନା ଓ ଲୁଗା ।

୫୦ । ଗିରଜା—ପାର୍ବତୀ, କାଛେଣୀ—ଲୁଗା, ମନ୍ଦାରମାଳୀ—ମନ୍ଦାରଫୁଲର ମାଳା, ଜପନ—ପୂଜା, ବଳି—ଭୋଗଦ୍ରବ୍ୟ ।

୫୧ । ଶମ୍ଭୁ—ମହାଦେବ, ଗୋଦୋହନ—ଗାଈ ଦୁହିଁବା, ଧେନୁମାନ—ଦୁଧିଅଳ ଗାଈସବୁ; ବିଲ୍ୱପତ୍ର—ବେଲପତ୍ର ।

୫୨ । ବିରାଟକ—କଜଳ, ନାଗ—ସର୍ପ, ଚନ୍ଦ୍ର—ଗୃନ୍ଦ, ସୁବର୍ଣ୍ଣ ବଣିକ—ସୁନାରୀ ବଣିଆ ।

୫୩ । ଚତୁରକୁ—ମାଳମୀକ, ଶପଥ—ରଣ ।

ଧନେ । ବନ୍ଧୁ ବ୍ୟାଧନେ ଯେ । ୫୪ । ନ ଥିଲେ ଲଭିବା ଯୋଗ । ମରଣ କରିବେ ବେଗ । ମୋ ଭୂଷା ଚମ୍ପା ଚଢ଼ାଇ । ପୂଜିବେ ସଖୀ ଯେ ।୫୫। ପୂର୍ଣ୍ଣ ବୋଲେ ସହଚରୀ । ଅଥିର ନୁହ ସୁନ୍ଦରି । ଦୁଇ କରେ ଭୁଞ୍ଜେ ଭୋଗ । ହେଲେ କି ସୁଖୀ ଗୋ । ୫୬ । ପକ୍ଷୀ ପକ୍ଷ ଥିଲେ ପାଇ । ଶକ୍ୟାନୁରୂପେ ଗମଇ । ହେଲଣି ଏ କାର୍ଯ୍ୟ ପୂର୍ଣ୍ଣ । ସୂଚକମାନ ଗୋ ।୫୭। ଦିଶୁଛି ବନ୍ଧୁ ସମ୍ମୁଖ । ସ୍ୱପ୍ନ ଗତ ହେଲା ଦୁଃଖ । କିଛିକାଳ ଧର ଧୈର୍ଯ୍ୟ । ଲଭିବୁ କାର୍ଯ୍ୟ ଗୋ । ୫୮ । ହେମନ୍ତ ଋତୁ ପ୍ରବେଶ । ପଦ୍ମବନ କରେ ଧ୍ୱଂସ । ମୂଳ ଥିବାରୁ ବସନ୍ତେ । ପଲ୍ଲବେ ସତେ ଯେ । ୫୯ । କ୍ଷୀଣ ହୋଇ କଷ୍ଟ ସହି । ଜୀବମାନେ ଥିଲେ ତୁହି । ଲଭିବୁ ପରମ ଭୋଗ । ଅଛୁ ଏ ଯୋଗ ଗୋ । ୬୦ । ମାଳତୀ ଅଗମ୍ୟ ବନେ । ଫୁଟିଲେ ବଗୁର ମନେ । ଭୃଙ୍ଗେ କି ଭୋଗ୍ୟ ନୁହଇ । ପବଣ ସହି ଗୋ ।୬୧। ଏ କଥା ଭାବି ତୁ ଚିତ୍ତ । ମଧୁମକ୍ଷିକା ସଞ୍ଚିତ । ଦେବଭୋଗ୍ୟ ହୁଏ କେହି । ବଗୁର ସହି ଗୋ । ୬୨ । ଫଣୀ ଜାଗ୍ରତେ ଚନ୍ଦନ । ଥିଲେହେଁ କର ଭାବନ । ଭୋଗ ହେଉଛି କି ନାହିଁ । ପବଣ ସହି ଗୋ । ୬୩ । ଯେତେବେଳେଟି କୁସୁମ ଫୁଟଇ । ତେବେ ସୁଗନ୍ଧ ପ୍ରକଟେ । ଯହିଁ ତହିଁ ନଦୀଜଳ । ସମୁଦ୍ରେ ମେଳ ଗୋ । ୬୪ । ଏମନ୍ତ ବଚନ ସିଞ୍ଚି । କରି ମାନସ ପ୍ରବୋଧି । ଯତନ କଲେ ଲଳନା । ସଖୀ ପାଳନା ଏ । ୬୫ । ନାୟକ ସୁଖଦାୟକ ।

---

୫୪ । ଜୀବ ଥିବାରୁ—ପ୍ରାଣ ଥିବାଯାଏ, ସେବା—ପୂଜା ।

୫୫ । ଭୂଷା—ଅଳଙ୍କାର, ଚମ୍ପା—ଚମ୍ପାଫୁଲ ।

୫୬ । ଅଥିର—ଅସ୍ଥିର, ଭୁଞ୍ଜେ—ଖାଏ ।

୫୭ । ଶକ୍ୟାନୁରୂପେ (ଶକ୍ୟ+ଅନୁରୂପେ) ଶକ୍ତି—କ୍ଷମତା, ଅନୁରୂପେ—ଅନୁସାରେ, ସୂଚକ—ଚିହ୍ନ ।

୫୯ । ଧ୍ୱଂସ—ନାଶ ।

୬୦ । ପରମ ଭୋଗ—ଶ୍ରେଷ୍ଠଭୋଗ ।

୬୧ । ଅଗମ୍ୟ ବନ—ଘୋର ଜଙ୍ଗଲ, ଭୃଙ୍ଗ—ଭଅଁର ।

୬୨ । ମଧୁମକ୍ଷିକା—ମହୁମାଛି ।

୬୩ । ଫଣୀ—ସର୍ପ ।

୬୪ । ସୁଗନ୍ଧ—ବାସନା, ପ୍ରକଟେ—ବାହାରେ ।

୬୫ । ମାନସ—ମନ ।

ତା ନାମ ଲବ ତାରକ । ଜପିଲ୍ ହୃଦରେ ଧର । ଅବନୀଶିର ଏ । ୬୬ ।
ମାଳିନୀ ହେଲ ମେଲଣି । ଗଲ ନିଜପୁର ପୁଣି । ଏ ଛାନ୍ଦ ହୋଇଲ ଶେଷ ।
ଅଡ ହରଷ ଏ । ୬୭ । ହଂସବଂଶକୁ ତୋଷି ତ । ସତ୍‌ବା ଶ୍ରୁତି ରଞ୍ଜିତ ।
କର୍ବୁରକାନ୍ତ ଗଞ୍ଜିତ । କାନ୍ତ ଦୀପିତ ଏ । ୬୮ । ସେ ରାମ ବିଧିରେ ଧାୟି ।
ଭଞ୍ଜ ବୀରବର କହି । ଭୂମ୍ନ ରଚନା ସମସ୍ତ । ପୂରୁ ଏ ଗୀତ ହେ । ୬୯ ।

## ଚତୁର୍ଦ୍ଦଶ ଛାନ୍ଦ

( ଚନ୍ଦ୍ରଭାନୁର ଖେଦ ଓ ଶୋକ )

ରାଗ—ଚଳହଂସ କେଦାର

ଶୁଣ ରସିକ ରସ ଏଥି ଅନ୍ତରେ । କୁମର ଶୋଇଅଛି ପୁରଚତ୍ୱରେ ଯେ । କାତର ହୋଇ ଗୃହିଁ ନିଦ୍ରା ବିନାଶେ । ନାହିଁ ଯାମିନୀ ନାହିଁ କାମିନୀ ପାଶେ ଯେ । ୧ । ବସି ଘୋଷିଲ ଆଉ ତାଠାରେ ମନ । ଏଣୁ ସ୍ୱପନେ ଦେଖା ଦେଲ ସେ ଧନ ଯେ । ଜରଦେଶକୁ ଗୃହିଁ ଦେଖିଲ ହାର । କୁଙ୍କୁମେ ହୋଇଅଛି ସେ ଜରଜର ଯେ । ୨ । ଅହା ରେ ସୁକୁମାର

---

୬୬ । ନାୟକ—ପୁରୁଷ, ତାରକ—ମନ୍ତ୍ରର ନାମ, ଅବନୀ ଶିର—ପୃଥିବୀର ସୁନ୍ଦରୀ ।

୬୮ । ହଂସବଂଶ—ସୂର୍ଯ୍ୟବଂଶ, ଶ୍ରୁତିରଞ୍ଜନ—କର୍ଣ୍ଣମୋହନ, କର୍ବୁର—ଶ୍ୟାମଳବର୍ଣ୍ଣ, କାନ୍ତ—ତେଜ ।

ଲାବଣ୍ୟବତୀର ବିରହ ଅବସ୍ଥା ଭୋଗବେଳେ ମାଳିନୀ ଫୁଲ ନେଇ ଆସି ଶିବ ପାର୍ବତୀ ଦେଇଥିବା ବର ବିଷୟ କହିବାରୁ ଲାବଣ୍ୟବତୀ ସନ୍ତୋଷ ହେଲା । ସେ ମାଳିନୀକୁ ପୁରସ୍କାର ଦେଇ ବିଦାୟ କଲା । ଲାବଣ୍ୟବତୀ ଭକ୍ତିଭରେ ଶିବ ପୂଜା କରାଇଲା ।

---

## ଚତୁର୍ଦ୍ଦଶ ଛାନ୍ଦ

୧ । ପୁରଚତ୍ୱରେ—ନଅର ଅଗଣାରେ, ଯାମିନୀ—ରାତି, କାମିନୀ—ସ୍ତ୍ରୀ, ( ଚନ୍ଦ୍ରଭାନୁ ନଅରର ଅଗଣାରେ ଶୋଇ ରାତି ଶେଷରେ ନିଦ୍ରା ଭଙ୍ଗନ୍ତେ ଦେଖିଲ ଅଉ ରାତି ନାହିଁ କି ସେ ସ୍ତ୍ରୀ ମଧ୍ୟ ନାହିଁ । )

୨ । ଜରଦେଶ—ଛାତି, ସେ ସ୍ତ୍ରୀଠାରେ ମନଦେଇ ଭାବିଲ, ସ୍ୱପନ ନା ସତ, ମାଟ ଛାତିକି ଦେଖେ ତ ହାର ଓ ହଳଦୀ ଚିହ୍ନ ଅଛି ।

ନୃପକୁମାରୀ । ବୋଲି ହୃଦରେ ଦୃଷ୍ଟ କରନ୍ତି ମାନ ଯେ । ଜଳକଳଶେ ଚନ୍ଦ୍ର ବିମ୍ବକୁ ଧରି । ପାରିଲି ନାହିଁ ସୁଧା ଭୋଗକୁ କରି ଯେ । ୩ । ମନ୍ତ୍ରମୂର୍ଚ୍ଛନ୍ତି ଅବା ସ୍ୱପନ ବୋଲି । ଜାଣିଲି ଏହି ଦେହେ କୃତାର୍ଥ ହେଲି ରେ । ସାକ୍ଷାତ ପରି ଦେଇ ସ୍ୱପନ ସଙ୍ଗ । କଲୁ ତ କାମବ୍ୟାଧକର-କୁରଙ୍ଗ ରେ । ୪ । ସ୍ୱର୍ଗ ସମ୍ପଦ ଯେଉଁ କର୍ମରେ ଥାଇ । ଚିତ୍ରାଙ୍କ ମଣେ ବଜ୍ର ପଡନେ ତହିଁ ରେ । ତୋର ହୃଦସ୍ଥ ବନ୍ଧ କରୁଣା ସ୍ଥାନ । ଉଠୁ ଅଙ୍କୁର ଯଥା କଠିନ ସ୍ତନ ରେ । ୫ । ମନକୁ ଯେବେ ପାଶେ ରଖିଲୁ ତୋର । କି ଅପରାଧେ ମୋତେ କଲୁ ଅନ୍ତର ରେ । ଜାଣିବାରେ ମୋ ଦୋଷ ନାହିଁ ତ କିଛି । ଦଣ୍ଡେ ଯା ଦଣ୍ଡ ପୂର୍ଣ୍ଣ କରୁଣା ଅଛି ରେ । ୬ । କି ଅବା ମୋତେ କାନ୍ତ ବୋଲିବା ପାଇଁ । ଲାଜ ପାଇଲୁ ଗୃହୁ ଚନ୍ଦ୍ରମା-ମୁହିଁ ରେ । ସେବି ମୁଁ ଥାନ୍ତି ପାଶେ ହୋଇ ଭୋସୁର । ଏହା କପାଁ ନ କଲୁ ନାଗରୀବର ରେ । ଶିବ କେମନ୍ତେ ଦେଖ ବହିଲେ ଶିରେ । ଶଶୀ ଶବଳ ଥାଉଁ ଚନ୍ଦ୍ର ସ୍ନେହରେ ଯେ । ଏମନ୍ତ ଅଣ ତୋର ଅବ-ଧାନକୁ । ପ୍ରଭୁ ସେ ବଡ଼ କରେ ଦାସଜନକୁ ରେ । ୮ । ଭସ୍ମକୁ ଅଙ୍ଗୀକରି ତାହା ନୟନ । ତା ଥାଉଁ ଭସ୍ମ ହେଲେ ଅଶାସ୍ତ୍ରଜନ ରେ । ଏ ଅପଯଶ ଦୋଷ ହେବ କାହାର । ଚରଣ ଧରେ ମୁଁ ଯେ ଶରଣ ତୋର ରେ । ୯ । କଲେ ତୁ ବର ଅନୁଗ୍ରହ ସୁଦନ୍ତି । ଅଳତା ଚନ୍ଦେ ଚନ୍ଦକାର ତୁଅନ୍ତି ରେ । ସେବାରେ ଅଳୀ ଫୁଲ ଗୁନ୍ଥାରେ ମାଳୀ । ହୋଇ ଲଗାନ୍ତି କାମବଦନେ କାଳି ରେ । ୧୦ । ପରାଣେଶ୍ୱରୀ ବିନା ଅନ ବଚନେ । ଡାକନ୍ତି ନାହିଁ

---

୩ । ଜଳ କଳଶିରେ-ପାଣି ମାଠିଆରେ, ଚନ୍ଦ୍ରବିମ୍ବ-ଚନ୍ଦ୍ରର ପ୍ରତିମୂର୍ତ୍ତି ବା ଛାଇ ।

୪ । କାମବ୍ୟାଧ—କାମବାଣୁଆ, କର କି ହାତରେ କୁରଙ୍ଗ କି ହରିଣ ପରି ହେଲି ।

୫ । ସ୍ୱର୍ଗସମ୍ପଦ—ସ୍ୱର୍ଗସୁଖ, ଚିତ୍ରାଙ୍କ—ଅସ୍ତଙ୍ଗ, କରୁଣା ସ୍ଥାନ –ଦୟାର ଜାଗା, ଅଙ୍କୁର—ଜାତ ହୋଇ ।

୬ । ଅପରାଧେ—ଦୋଷରେ, ଦଣ୍ଡେ—ଦଣ୍ଡକରେ ପୁଣି ଦେଖିବାରେ ।

୭ । ଭୋସୁର—ଗୃହକର, ନାଗରୀବର—ନଗରୀ ଶ୍ରେଷ୍ଠ ।

୮ । ଅବଧାନ—ଜାଣିବା ।

୯ । ନୟନ—ଚକ୍ଷୁ, ଅଙ୍ଗୀକରି—ଜାତ କରାଇ, ଅପଯଶ—ନିନ୍ଦା ।

୧୦ । ସୁଦନ୍ତି—ସୁନ୍ଦରଦନ୍ତି, ଅଳୀ—ସଖୀ ।

ତୋତେ ରଜନୀ ଦନେଇ । ପ୍ରସଙ୍ଗବଶେ ଅଇସିଲେ ତୁ କୋପ । ଛଡ଼ାଉଥାନ୍ତୁ ଗୃହୁଁ ପ୍ରକାଶି ତାପ ରେ । ୧୧ । ଦ୍ରାକ୍ଷାରୁ ସ୍ୱାଦୁ ଘନସାରୁଁ ଶୀତଳ । ପିକୁଁ ସୁସ୍ୱର ଲବଣୀରୁ କୋମଳ ରେ । ଭାଷା କହିଲାବେଳେ ନାସା ଫୁଲଇ । ଚକ୍ରବର୍ତ୍ତୀପଣକୁ ଗଣନ୍ତି ନାହିଁ ରେ । ୧୨ । ଏତେ ସହିଲ ନାହିଁ ଖଳ ବିଧାତା । ମୁଁ ତାର କେଉଁ ଶତ୍ରୁ ନ କଲା ଚିନ୍ତା ଯେ । ତୁଷାର ନାଶ କରେ ଜନମସ୍ଥାନ । ତାଠାରେ ନ ସମ୍ଭାଦେ ଏ କୁଟ-ମାନ ରେ । ୧୩ । ଦୁର୍ବଳ ମାରିବାକୁ ସମସ୍ତେ ଅଗ । କାମକୁ ମହାଦେବ କଲେ ଅନଙ୍ଗ ଯେ । ନୋହିଲା ତାଙ୍କ ଦର୍ପ ଦଳନ ଜଳି । ବିନା ଦୋଷରେ ଶରେ ମୋତେ ତ ଜାଳି ରେ । ୧୪ । ମିତେ ଶୁଣି ବୋଇଲେ ଜୀବନ ରଖ । ଜୀବନରୁ ଅଧିକ କେହି ନ ଲେଖ ହେ । ଜୀବନ ଥିଲେ ହୁଏ ସବୁ ପ୍ରାପତ । ହୁଅଇ ସମ୍ଭାବିତ ଅସମ୍ଭାବିତ ହେ । ୧୫ । ଧ୍ରୁବ-ବାଳକ ବ୍ରହ୍ମଜ୍ଞାନ କହିଲା । ଅଗସ୍ତି କରୋଦରେ ସିନ୍ଧୁ ରହିଲା ଯେ । ପକ୍ଷ ନ ଥାଇ କପି ଗଗନ ଗତ । କର୍ପୂରରୁ ବିରହେ ଜାତ ତପତ ଯେ । ୧୬ । ବିଷହିଁ ହୁଏ ହିତ ସନ୍ନିପାତରେ । ବାସୁକୀ ବିନା ପୃଥ୍ୱୀ ଧାରଣ ନରେ ଯେ । ରାଜ୍ୟ ନ ଥାଇ ସର୍ବସମ୍ମତେ ରାଜା । କନ୍ଦର୍ପ ପାଉଅଛୁ ପୃଥ୍ୱୀରେ ପୂଜା ଯେ । ୧୭ । ଜଳ ବିହୀନେ ସବୁକାଳେ ପ୍ରକାଶ । ସବିତା-କରେ ହୋଇଅଛୁ ସାରସ ଯେ । ଶବଦ ଶୁଣେ ସର୍ପ ଶ୍ରୁତି ନ ଥାଇ । ପ୍ରହ୍ଲାଦ ମହୀନ୍ଦ୍ର ଜନକଦ୍ରୋହୀ ହେ । ୧୮ । ଏ କଥାମାନ ଯଥା ହୋଇଛୁ ଯେନ । ତଥା ସତ ହୋଇବ ତୁମ୍ଭ ସ୍ୱପନ ହେ । ସ୍ୱପନ ଯେବେ ତୁମ୍ଭେ ସତ ନ କର । କହ କାହିଁକି ଅଛୁ ତା ଦେଲା ହାର ଯେ । ୧୯ ।

---

୧୧ । ପ୍ରସଙ୍ଗ ବଶେ—କଥାରେ ।

୧୨ । ଦ୍ରାକ୍ଷା—ଅଙ୍ଗୁର, ଘନସାର—କର୍ପୂର, ଲବଣୀ—ଲହୁଣୀ, ଚକ୍ରବର୍ତ୍ତୀ—ଲକ୍ଷେ ରାଜାଙ୍କ ଉପରେ ଯେ ବଡ଼ ।

୧୩ । ତୁଷାର—କାକର, ଧାତା ଜନୁସ୍ଥାନ—ପଦ୍ମବନ ।

୧୪ । ଅନଙ୍ଗ—ଦେହଶୂନ୍ୟ, ଦର୍ପ—କ୍ଷମତା ।

୧୬ । କରୋଦରେ—ହାତର ଭିତରେ, ଅଗସ୍ତି ସମୁଦ୍ରକୁ ହାତରେ ଧରି ଚଳୁ କରିଥିଲେ । ହନୁମାନର ପକ୍ଷୀ ନ ଥାଇ ସେ ଶୂନ୍ୟରେ ଯାଉଥିଲା । ବିରହରେ କର୍ପୂର ମଧ୍ୟ ଅଗ୍ନିପରି ଜଣାଯାଏ ।

୧୮ । ସବିତା—ସୂର୍ଯ୍ୟ, କରେ—କିରଣରେ, ସାରସ—ପଦ୍ମ, ଶ୍ରୁତି—କାନ, ମହୀନ୍ଦ୍ର—ରାଜା, ଜନକ—ପିତା ।

ବୋଲ୍ କୁହା ନ ଯିବ ଶେଷେ ଯେ । ଏମନ୍ତ ହେଲେ ବାଣୀ ପବାଜ ପାଇଁ । ବର୍ଣ୍ଣନା କରୁଥାଇ ଉପମା ଦେଇ ଯେ । ୨୮ । ସୁନ୍ଦର ସଦନେ କି ସ୍ୱର୍ଣ୍ଣ ପଞ୍ଜରୀ । ଧାତା ରଖିଛି ଅକ୍ଷିପକ୍ଷିଙ୍କ ଧରି ଯେ । ମେରୁ ଏଡ଼ିବ ବୋଲି ଉଚ୍ଚ ଦେଖାଇ । ମନ ମିହିରକର ଛାଡ଼ି ନ ଯାଇ ଯେ । ୨୯ । ବାଳୀ ଅନେକ ଦାହ କନକ ବଲ୍ଲୀ । ଭୁଜାନ୍ତରକୁ ଯୋଡ଼ି ସମସ୍ତେ ବୋଲି ଯେ । ସ୍ତନ ମଧୁର ମଧୁ କୋଷକୁ ଆଣି । ସଞ୍ଚିଲେ ରୋମାବଳୀ ସରଘାଶ୍ରେଣୀ ଯେ ।୩୦। ଶୃଙ୍ଗାର ରସଲତା ରୋମାଳୀ ବ୍ୟାଜ । ଫଳିଛି ପ୍ରେମାମୃତ ଫଳ ଉରଜ ଯେ । ଇତର ଭାଗ୍ୟେ ସଂଘଟ ହେବ ସେ । ଧନ୍ୟ ବର୍ତ୍ତିଲ ସ୍ତନ ମଲ୍ଲିକ ଭାଷେ ଯେ । ୩୧ । ଜାଣିଲି ସେହି ସ୍ତନ କିଛି ସମାନ । ଲଭି ଏମାନ ଲଭିଲେ କି ଏ ମାନ ଯେ । ଶ୍ରୀଫଳ ଯେ ଶ୍ରୀମନ୍ତ ପ୍ରଥମେଁ ହୋଇ । ତୃଣରାଜ ପଦକୁ ପଛେ ପକାଇ ଯେ । ୩୨ । ରୁଦ୍ର ଶିବ ହେବାର ସଂଶୟ ଦୂର । ଏତେ କାଳକେ ଅସି ହେଲ ମୋହର ଯେ । ଯେବେ ଲଭିଲଣି ସେ ସ୍ତନସ୍ପରଶ । ଜାନୁସିଂହାସନେ ବସିବ ଅବଶ୍ୟ ଯେ । ୩୩ । କୁମାର ବୋଲେ ଆନ ବ୍ୟବସାୟକୁ । କର କି କାର୍ଯ୍ୟ ବର୍ଣ୍ଣୁଥିବା ତାହାକୁ ଯେ । କାନ୍ତି ଏମନ୍ତ ଯୌଳ ତହିଁକି ଗୃହି । ଭାଲେ ଉଳଙ୍କ ଲେଖି ହୋଇବ ଯହିଁ ଯେ । ୩୪ । ପୀୟୂଷ ପିତୁଳାକୁ ସୁନା ରସାଣ । ଏକା ଭାବି ବିଧାତା କଲା ଉଆଣ ଯେ । ସଂସାର ସାର ସବୁ ଲାବଣ୍ୟମାନ । ପ୍ରତିବିମ୍ବ ଦେଖିବ ହେବାକୁ ସ୍ଥାନ ଯେ ॥ କି ଗଜରବ ଅନ୍ୟ ଗଜର ଦ୍ରବେ । କୁଙ୍କୁମ ଶୋଭା କରେ ଯେ ଅବୟବେ

---

୨୮ । ସୁସଙ୍ଗ—ସୁନ୍ଦର, ଘଙ୍ଗ—ଲଗାଲଗି, ବାଣୀ—ସରସ୍ୱତୀ ।

୨୯ । ସଦନ-ଘର, ମିହିର-ସୂର୍ଯ୍ୟ, କର-କିରଣ, ମେରୁରୁ ଖରା ଯାଏ ନାହିଁ ।

୩୦ । ଦାହ କନକ—ପୋଡ଼ାସୁନା, ବଲ୍ଲୀ—ଲତା, ଭୁଜାନ୍ତର—(ଭୁଜ + ଅନ୍ତର ) ଭୁଜ—ହାତ, ଅନ୍ତର—ଅଲଗା, ମଧୁକୋଷ-ମଧୁଫେଣା, ସରଘାଶ୍ରେଣୀ—ମହୁମ ଛୁମାଚନ ।

୩୧ । ରୋମାଳୀ—ରୋମ ସବୁ, ବ୍ୟାଜ—ଛଳନା, ସଂଘଟ—ମିଳିବା ।

୩୨ । ଶ୍ରୀଫଳ—ନଡ଼ିଆ, ବେଲ । ଶ୍ରୀମନ୍ତ—ଲକ୍ଷ୍ମୀବନ୍ତ, ଶୋଭାଯୁକ୍ତ । ତୃଣରାଜ—ନଡ଼ିଆ ।

୩୩ । ରୁଦ୍ର—ଭୟଙ୍କର, ମହାଦେବ । ଶିବ—ମହାଦେବ, ସ୍ତନପରଶ—ସ୍ତନ ଛୁଇଁବା ।

୩୫ । ପୀୟୂଷ ପିତୁଳା—ଅମୃତମୟ ରୂପ ପ୍ରତିମା, ଲାବଣ୍ୟବତୀ । ପ୍ରତିବିମ୍ବ—ଛାଇ । ସୁନାରସାଣ—ସୁନାକୁ ଘଷିବା ।

ଯେ । ସିନ୍ଧୁକୁ ଗୁରୁ କର ମନ ଏମନ୍ତ । ମିଶିବା ଅଙ୍ଗେ ଜଳେ ଜଳ ଯେମନ୍ତ ଯେ । ୩୬ । ମମତା ଏହୁ ଖଗବର ପ୍ରକାର । ତା ଅଗେ ବସିଥିବେ ଯୋଡ଼ଣି କର ଯେ । ପାର୍ବତୀ ଶିବ ଅର୍ଦ୍ଧଅଙ୍ଗ ପରରେ । ସେ ଅଲିଙ୍ଗନ ହୋଇଥିବ ଶରୀରେ ଯେ । ୩୭ । ବିଷ୍ଣୁ କୋଳୁଁ କମଳା ପରାୟେ ସେହୁ । ଅନ୍ତର ହୋଇ ଦଣ୍ଡେ ନ ଯିବ କାହିଁ ଯେ । କଳେବରକୁ ଯଥା ନ ଛାଡ଼େ ଛାଇ । ମୁଁ ତାକୁ ନ ଛାଡ଼ିବି ତେମନ୍ତ ହୋଇ ଯେ । ୩୮ । ଯେବେ ଜୀବନେ ଥିବ ଉପାୟ କର । ତପେ ହେଲେ ମନାଇ ହର ଗଜରୀ ଯେ । ଲଭିବ ବଲ୍ଲଭୀ-ରତନ ଅବଶ୍ୟ । ଯୋଗେ ସଙ୍ଗମ ନୋହୁଁ ହୋଇଲେ ନାଶ ଯେ । ୩୯ । ତାକୁ ପାଇବି ଅଛୁ ଏହୁ ଭରସା । ଚନ୍ଦ୍ର ଲଭିଲା ମଲ ଉପରୁ ଶଶା (୧) ଯେ । ତା ନାମ କରୁଥିବ ମୁଁ ସୁମରଣ । ଗଲେ ତା ଜୀବ ହେବ ମୋ ସୁମରଣ ଯେ । ୪୦ । ପ୍ରବୋଧାସୁତ ବୋଲେ ତୋ ଶତ୍ରୁ ମରୁ । ଦୁର୍ଗା କୃପାରୁ ଭୋଗ କର ତୁ ଭୀରୁ ଯେ । ସାଧୁତ ଶୁକ ବ୍ରହ୍ମପୁରୀ ଯାଇଛୁ । ସେ ଅସିଲେ ଉପାୟ କରିବା କହୁ ଯେ । ୪୧ । ଦ୍ୱୀପ ସପତ ଶୋଭେ ଜମ୍ବୁ ପ୍ଲକ୍ଷରେ । କୁଶ କୌଞ୍ଚ ଶାକ ଶାଲ୍ମଳୀ ପୁଷ୍କରେ ଯେ । ଲବଣେକ୍ଷୁ ସୁରା ସର୍ପି ଦଧି ଦୁଗ୍ଧ । ପୟ ବେଳା ସପତ ସମୁଦ୍ର ସିଦ୍ଧ ଯେ । ୪୨ । ପୂର୍ବେ ନରରାଜାଏ ଅଛନ୍ତି ଭ୍ରମି । ସିଂହଳଦ୍ୱୀପେ ଅଛୁ କରୀନ୍ଦ୍ର-ଗାମୀ ଯେ । ଏଥି ପାଇଁ ଛାଡ଼ିବ କିପାଁ ଜୀବନ । ଅବିରତେ କରିବା ଉପାୟ ମାନ ଯେ । ୪୩ । ସେ ତ ସ୍ୱଭାବେ ସ୍ତ୍ରୀ ପୁଂସ ଭଜିବ । ରସିକ ଜଣେ ସିନା ବିଜ୍ଞ ହୋଇବ ଯେ । ଏମନ୍ତ ବଚନରେ ବୋଧିଲେ ତହିଁ । ଏ ଛାନ୍ଦ ଅତି ରମ୍ୟ ହୋଇଲା ପ୍ରାନ୍ତ ଯେ । ୪୪ । ଦୈତ୍ୟହନ୍ତା ଚତୁରଭୁଜ

---

୩୬ । ଗଜର—ଗୋରା, ଧଳା । ଅବୟବ—ଦେହ, ଶରୀର ।

୩୭ । ଖଗବର—ଗରୁଡ଼ ।

୩୮ । କଳେବର—ଦେହ ।

୪୦ । ବଲ୍ଲଭୀରତନ—ସ୍ତ୍ରୀ ଶ୍ରେଷ୍ଠ (୧) ଶଶା ଯେପରି ଚନ୍ଦ୍ର କିରଣକୁ ଜଳ ମନେ କରି ଯାଇ ମରିଯିବାରୁ ଚନ୍ଦ୍ର ଦେହରେ ରହିଲା, ସେ ହେଲା ଚନ୍ଦ୍ରର କଳଙ୍କ, ସୁମରଣ—ଉତ୍ତମ ମରଣ ।

୪୧ । ପ୍ରବୋଧା—ପୁରୋହିତ, ସୁତ—ପୁଅ, ଭୀରୁ—ଭୟାଳୁ ।

୪୩ । କରୀନ୍ଦ୍ରଗାମୀ—ହାତୀଗମନା, ଅବିରତ—ସର୍ବଦା ।

୪୪ । ରମ୍ୟ—ସୁନ୍ଦର, ପ୍ରାନ୍ତ—ଶେଷ ।

ରଞ୍ଜିତ । ଶିଖିଭାନୁ ପରାୟେ ତେଜ ଜ୍ୱଳିତ ଯେ । ହେ ରାମ ନାରାୟଣ ଦୁରିତ ଧ୍ୱଂସ । କହଇ ଉପେନ୍ଦ୍ର ଭଞ୍ଜ ନରେଶ ଯେ । ୪୫ ।

---

## ପଞ୍ଚଦଶ ଛାନ୍ଦ

( ଐନ୍ଦ୍ରଜାଲିକ ଖେଳ ଦେଖାଇବା )

ରାଗ—ବସନ୍ତ ଭୈରବ

ଶୁଣ ଜନେ ଏଣୁ ବିଧାତାଙ୍କୁ ବଡ଼ ବୋଲି । ବ୍ୟାଜେ ଧନ ଅର୍ଜ୍ଜନେ ଅନେକ ଦେଶ ବୁଲି ସେ । ସିଂହଳଦ୍ୱୀପେ ପ୍ରବେଶ ହେଲା ନଟବର । ଚେଟକବଶକାରୀ ସେ ବିନୋଦ ନାମ ତାର ଯେ । ହସ୍ତେ ବାନ୍ଧି କାଖେ ଯାକି ଅଛୁ ସର୍ପପେଟୀ । ଦେହେ ଘଷି ହୋଇଛୁ ଚନ୍ଦନ ପରା ମାଟି ଯେ ।୧। ମଲ୍ଲବିଦ୍ୟା ପଣ୍ଡିତ ଫଳାନ୍ତୁ ବାହୁ ବେନି । ତହିଁ ତ ଶୋଭିତ ଯେ ମୟୂରଚୂଳ ଫେନି ଯେ । ବଙ୍କଜୁଡ଼ାକୁ ବେଢ଼ିଛୁ ଅଏଁଲାର ଫୁଲ । ଉଦ୍ଧାର ଧରିଛୁ ଭଲ କଳା ଔରମାଳି ଯେ । ସୁନାମୋଡ଼ିଆ ପନସକଢ଼ିଆ କୁଣ୍ଡଳ । ଦୋହଲି ଶୋଭା କରୁଛୁ ତା ଗଣ୍ଡମଣ୍ଡଳ ଯେ ।୨। ହସ୍ତେଁ ଦଶେ ସୁନାଖିଳି ଝଁଳ ଝଁଳ ଦନ୍ତେ । ପାନେ ପାଚିଯାଇଛୁ ସେ ଜମ୍ବୁଫଳ ମତେ ଯେ । ସିନ୍ଦୂର ଚାହିଁ ତା ହାଟକେଶ୍ୱର ଟେଣି । ବିଭୂତି ଘଷି ହୋଇଛୁ ଯୁଗଳ ଈକ୍ଷଣେ ଯେ । ବକଶ୍ୟାମଳ ବାନା ତା ଭୁଜଙ୍ଗ ପଇତା । ମହା ମହା ଗୁରୁମାନଙ୍କର ଦର୍ପ

---

୪୫ । ଶିଖିଭାନୁ—ଅଗ୍ନି, ଦୈତ୍ୟହନ୍ତା—ରାକ୍ଷସନାଶକାରୀ, ରଞ୍ଜିତ—ଶୋଭିତ, ଦୁରିତ—ଦୁଃଖ ।

ସ୍ୱପନ ପ୍ରସଙ୍ଗ ଶୁଣି ରାଜସୁତ ଲାବଣ୍ୟବତୀଙ୍କ ଚିନ୍ତାରେ ଦୁଃଖିତ ହେଲେ ଓ ଏହି ସମୟରେ ବୟସ୍ୟମାନେ ତାଙ୍କୁ ପ୍ରବୋଧ ଦେଲେ ଓ ସେ ଲାବଣ୍ୟବତୀର ସନ୍ଧାନ ମଧ୍ୟ ପାଇଲେ ।

---

### ପଞ୍ଚଦଶ ଛାନ୍ଦ

୧ । ବ୍ୟାଜେ—ଛଳନାରେ, କପଟରେ । ସର୍ପପେଟୀ—ସାପପେଡ଼ି ।

୨ । ବଙ୍କଜୁଡ଼ା—ବାଙ୍କଜୁଡ଼ା ଗଣ୍ଡମଣ୍ଡଳ—ଗାଲ ।

୩ । ଝଁଳ ଝଁଳ—ଚକଚକ, ଜମ୍ବୁଫଳ—ଜାମୁକୋଳି, ଯୁଗଳ—ଦୁଇ, ଈକ୍ଷଣ—ଆଖି, ବକ—ବଗ, ଶାମଳ—ଶାଳଦପକ୍ଷୀ, ଭୁଜଙ୍ଗ—ସାପ, ଦର୍ପହନ୍ତା—ଗର୍ବନାଶକାରୀ ।

ହନ୍ତା ଯେ । ୩ । ରୁଣ୍ଡ ଶିଞ୍ଜିନୀ ଚରଣେ କର କଙ୍କଣରେ । ବିରାଜୁଛି ହେମ ମାଳୀ ବାମଶ୍ରବଣରେ ଯେ । ପିନ୍ଧିଛି ପଟ୍ଟନୀ ଫେଟା ପରି ନୀବି କରି ! ରଙ୍ଗପାଟ ଖଣ୍ଡ ଆଏ କଟିରେ ମାଧୁରୀ ଯେ । ବେଢ଼ିଛନ୍ତି ଶିଷ୍ୟଜପଶିଷ୍ୟ ବେଶ ହୋଇ । କେ ଚଳଭନା କେ ପାଗ ମୁଣ୍ଡେ ମଣ୍ଡିଥାଇ ଯେ । ୪ । ପିନ୍ଧି ଚଳନାକାଛକୁ ବାନ୍ଧିଛନ୍ତି ତାହି । ଭାଲେ କାଳ ଟିକା କେ ବିଭୂତିଭୂଷା ଦେଖାଇ ଯେ । ବହିଛନ୍ତି ସେ ଦୀର୍ଘଶଳାକା ଅଧ ତୋଳ । ଘଟ ନାଟ ଅବଟା ରଣପା ଯେ ମଞ୍ଜୁଳ ଯେ । ମଧ୍ୟବର୍ତ୍ତୀ ପ୍ରେମରୂପା ନାମେ ନଟୀସାର । ବୟସରେ ଷୋଡ଼ଶୀ ବେଶରେ ମନୋହର ଯେ । ୫ । ସେ ବିଟପୀ ବିଟପଧଇର୍ଯ୍ୟା ବିଟପୀକି । ଛେଦନେ କୁଠାର ପରି ମନରେ ତରକି ଯେ । ଶତ୍ରେ କରି ଧରିବାକୁ ଦର୍ପଣ ଫିଟକ । ମୃଗ ମାଠି ତଳେ କରିଛି ଜକ ଜକ ଯେ । ଅଙ୍ଗେ ସଙ୍ଗ କରିଅଛି ସେ ବନହଳଦୀ । କାନ୍ତି ହୋଇଛି ପାଟଳିଅମ୍ବ ପ୍ରତିଦ୍ୱନ୍ଦୀ ଯେ । ୬ । କବରୀରେ ଅଳକାକୁ ନୂତନେ ଗୁନ୍ଥିଛି । ଫୁଲଗୁଡ଼ାଏ ଜଟାରେ ଯତନେ ମଣ୍ଡିଛି ଯେ । ଦଣ୍ଡିଛି ସେ ଜଳଦ ବକାଳୀ ମହୋଜ୍ଜ୍ୱଳ । ବହଳ କରି ଦେଇଛି ନୟନେ କଜ୍ଜ୍ୱଳ ଯେ । ମୃଗ ହୋଇ-ଯାକୁ ଅଛି ଚଞ୍ଚଳମୃଗୀରି । ଖେଳା ଭୂମିଯାକ ବାଝିଦେଇଛି କସ୍ତୁରି ଯେ ।୭। ଅଭ୍ରଟିକା ଶୁଭ୍ର ହୋଇଅଛି ଭାଲପଟ । ଭାନୁକର ଲାଗି ଝଟକଇ ଝଟ ଝଟ ଯେ । ଜଳେ କି ତହିଁ ଜ୍ୱଳନ କାମଜାଳୀ ବହି । ଅସୁଥିଲି ଉପମାକୁ ସେ ବାମା ଲଭଇ ଯେ । ଶରଲକ୍ଷ୍ୟ କଟାକ୍ଷ ତା ପାଇଁ ଯୋଗୀ-ରାଜ । ବାନ୍ଧିବା ଭୟେ ଥିଲେ ମୃଗଚର୍ମ ତେଜ ଯେ । ୮ । ବେଣୀପୃଷ୍ଠରେ

---

୪ । ରୁଣ୍ଡ—ଏକତ୍ରିତ, ଚରଣ—ଗୋଡ଼, ହେମ—ସୁନା, ଶ୍ରବଣ—କାନ ।

୫ । ଭାଲେ-କପାଳରେ, ବିଭୂତି-ପାଉଁଶ, ଦୀର୍ଘ-ଲମ୍ବା, ଶଳାକା-ବାଉଁଶ, ନଟୀ—ନାଚବାଲି ।

୬ । ବିଟପୀ—ଅସତୀ, ବିଟପ—ଲମ୍ପଟ, ବିଟପି-ଗଛ, ପ୍ରତିଦ୍ୱନ୍ଦୀ—ଶତ୍ରୁ ।

୭ । ଜଳଦ—ମେଘ, ବକାଳୀ—ବଗସବୁ, କଳାବାଳ ମେଘଠାରେ ତା ପରେ ବଗପରି ଫୁଲ ନାଇଚି ।

୮ । ଭାନୁକର—ସୂର୍ଯ୍ୟକିରଣ, କାମଜାଳୀ—କନ୍ଦର୍ପ, ଜାଲପାରଧି (ଜାଲପାରଧି ହେଉଛି, ଶବରମାନେ ମୁଣ୍ଡରେ କାଅଁ ଖପରି ହାତରେ କାଅଁଖୁଣ୍ଟା ଧରି ବଣରେ ବୁଲିଲେ ମୃଗମାନେ ପନକି ଆସିଲେ ତାକୁ ମାରନ୍ତି ଏହାକୁ ଜାଲ ପାରଧି କହନ୍ତି ।) କଟାକ୍ଷ—ଗୃହାଣୀ ଯୋଗରାଜ—ତପସ୍ୱୀମାନେ ।

ତା ଗୁଣା-ନାକଚଣା ଅଛୁ । ନାସାଦଣ୍ଡି ଫୋଡ଼ାଇ ଗୁଣାଏ ଲଗାଇଛୁ ଯେ । ତନ୍ତ୍ର ପୃଚରେ ମୋତେ ରତ ବଚକ୍ଷଣାପଣେ । ନାସ୍ତି ନାହିଁ ବୋଲି ଚନ୍ଦ୍ର ବହୁଛୁ ଅପଣେ ଯେ । ସୁନା ମଲ୍ଲୀକଢ଼ୀ ଫୁଲ ଜାଲିପଟିଅମ । ବାଳାର କରଛୁ ଶ୍ରବଣକୁ ମନୋରମ ଯେ । ୯ । ତହିଁରେ ହଲଇ ସେ ଝଲକ ଝଲକାକୁ । ଅସ ବୋଲି ପାଶକୁ ଡାକଇ ପୁରୁଷଙ୍କୁ ଯେ । ଅଧରେ ଯେ କରଅଛୁ ପାନରଙ୍ଗ ସଙ୍ଗ । ପ୍ରବାଳ ଉପିଲ ଥୋପି ପଡ଼ଇ କି ରଙ୍ଗ ଯେ । କୁଟାଇଛୁ ଚବୁକେ ମକ୍ଷିକା ସ୍ତୁରୁଚନ୍ଦ୍ର । ଓଷ୍ଠେ ମଧୁ ସମ୍ଭବାକୁ କି ସେ ଉପସ୍ଥିତ ଯେ । ୧୦ । ଲକ୍ଷା ଚିଶ୍ଚାରସେ ପଗୃଇଛୁ ଦନ୍ତରାଜ । ଦେଉଛୁ ସେ ପାଚିଲ ଡାଳିମ୍ବମଞ୍ଜି ଗଞ୍ଜି ଯେ । କାଚମାଳୀ ମୋତିମାଳୀ କଣ୍ଠ ମାଳୀ ମଞ୍ଜୁ । କମ୍ବୁକଣ୍ଠେ ଲଗାଇଅଛୁ କି କୁନ୍ଦାରକୁ ଯେ । ନବଘନ ଦେଲ ପ୍ରାୟ ଗିରିଶୃଙ୍ଗ ଚିଲ । ଉଇକୁଚେ ସଜତ ହୋଇଛୁ ନୀଳଚେଲୀ ଯେ ।୧୧। କକ୍ଷଭୁଜ ଅର୍ଦ୍ଧକୁ ବୋଲି ସେ ଅଛୁ ଗ୍ରାସି । କାଳନ୍ଦୀରୁ ମୃଣାଳ ବାହାର ପଗ୍ ଧଣି ଯେ । ସେ ଭୁଜେ ବ ନ୍ଧିଛୁ ରୂପାସୁତା ବଦମାଳୀ । ପାଣିରେ ତା ପାଣିକାଚ ମିନ୍ଧା କଡ଼ଅଳୀ ଯେ । ଅଞ୍ଜନ ଚନ୍ଦେ ରଞ୍ଜନ କରଜ ପାପୁଲି । ଦର୍ପଣବସା ମୁଦରେ ଥାପିତ ଅଙ୍ଗୁଳୀ ଯେ । ୧୨ । ଅଛୁ ଜଙ୍ଘତଳେ ଭଣ୍ଡ ଦେଇ କଟୀ ତୋରେ । ପିନ୍ଧିଛୁ ସେ ଅତଲସ ଲହଙ୍ଗା ଉପରେ ଯେ । ବାନ୍ଧିଅଛୁ କ୍ଷୁଦ୍ରଘଣ୍ଟି ବାଜେ ଝମଝମ । କନ୍ଧେ ଉପରଣି ଜସ୍ତିକଢ଼ିତ ସୁଷମ ଯେ । ରଣଝଣ ହୋଇ ଖଞ୍ଜାପାହୁଡ଼େ ଚରଣେ । ଡାକେ ରସିକେ ସମ୍ପତ ଧନ ବାତରଣେ ଯେ । ୧୩ । ରୋମାବଳୀ ଗୃହିଁ ଜନେ ଭ୍ରମ ଉପୁଜଇ ।

---

୯ । ରତବଚକ୍ଷଣା—ରତରେ ପାରଦର୍ଶୀ ଅର୍ଥାତ୍ ରତ ପଣ୍ଡିତା ।

୧୦ । ଅଧର-ଓଷ୍ଠ, ମକ୍ଷିକା-ମାଛି, ମଧୁ-ମହୁ, ଅମୃତ ।

୧୧ । ଲକ୍ଷା-ଅଲତା, ଦନ୍ତରାଜି-ଦାନ୍ତସବୁ, ମଞ୍ଜୁ-ସୁନ୍ଦର, କମ୍ବୁ-ଶଙ୍ଖ, ନବଘନ-କଳାମେଘ, ଗିରିଶୃଙ୍ଗ-ପର୍ବତଶିଖ, ନୀଳଚେଲୀ-ନୀଳ ବର୍ଣ୍ଣ କାଞ୍ଚୁଲ, ନେଳଅ ଶାଢ଼ୀ ।

୧୨ । କକ୍ଷ-କାଖ, ଭୁଜ-ହାତ, ମୃଣାଳ-ପଦ୍ମନାଡ଼, ପାଣି-ହାତ, କରଜ-ନଖ, ଅଞ୍ଜନଚନ୍ଦ୍ର-କଳା ଚିତା ।

୧୩ । ଉପରଣି-ଓଢଣୀ ଗୃଦର, ଜସ୍ତିକଢ଼ିତ-ଜରି କାମ ହୋଇଥିବା, ସୁଷମ-ସୁନ୍ଦର, ବାତରଣେ—ଦାନ କରିବା ନିମନ୍ତେ ।

ସ୍ତନପେଟୀରୁ କି କାଳବ୍ୟାଳ ବାହାରଇ ଯେ । ମୁଦ୍ରା ଲଗାଇଛୁ ତନ୍ନ ତନ୍ନ
ପ୍ରପଦରେ । ଧରଛୁ ଅମୃତ ଘଷାଧନ ବେନି କରେ ଯେ । ଏମନ୍ତରେ ନଟ
ନଟୀ ରାଜଦ୍ୱାରେ ଯାଇ । ଦେଖିବାକୁ ଲୋକେ ଛନ୍ତି ସଙ୍ଗତେ ଗୋଡ଼ାଇ
ଯେ । ୧୪ । ସିଂହଦ୍ୱାରେ ବସି ବଜାଇଲେ ଢୋଲ ତୁରୀ । ନୃପତଛାମୁରେ
ଯାଇଁ ଜଣାଇଲେ ଦ୍ୱାରୀ ଯେ । ହେ ବିଭୋ ବନ୍ଧୁ କୁମୁଦ ବଧୂ ମହାରାଜ ।
ଆସିଛୁ ଇନ୍ଦ୍ରଜାଲିକ କର୍ଣ୍ଣାଟ ତା ରାଜ୍ୟ ଯେ । ଶୁଣି ଦମ୍ଭ ଦାତୃଗୁଣ
କରିବାକୁ ହଟ । ଆସୁ ବୋଲିବାକୁ ତହିଁ ନୃପତି ମୁକୁଟ ଯେ । ୧୫ ।
ଗୃହିଁ ଦେଲେ ପ୍ରତିହାରୀ ଦଶ ବିଂଶ ଧାଇଁ । ଛାମୁରେ ସେ ଭେଟାଇଲେ
ନଟ ନଟୀ ନେଇ ଯେ । ରାଜା ପଚାରିଲେ ଅହୋ କି କି ବିଦ୍ୟା ଜାଣ ।
ସେ କହିଲା ଦ୍ୱୀପେଶ୍ୱର ସାବଧାନେ ଶୁଣ ହେ । କୁହୁକ ଗୋଟିକାଞ୍ଜନ
ସ୍ତମ୍ଭନ ମୋହନ । ବଶ୍ୟ ଉଚ୍ଚାଟନ ଜାଣେ ହେ ଭୋଜ ରାଜନ ଯେ । ୧୬ ।
ଗଦ ପଦେ ବିଷଝାଡ଼ନେ ମୁଁ ଧନ୍ୱନ୍ତରୀ । ଗୁରୁଏ ଘେନନ୍ତି ମୋତେ
ମହାଗୁରୁ କରି ଯେ । ମାୟା ରଚନରେ ମୟ ପରି ମୋତେ ଘେନ । ପୁଣ
ଏ ଅଙ୍ଗନାସାରେ ଗୁଣ ଅକଥନ ଯେ । ନୃତ୍ୟ ଦେଖିଲେ ବାସବ ରମ୍ଭା
ପାସୋରିବେ । ଗାନ ଶୁଣିଲେ ବାଣୀକୁ କିପାଁ ପ୍ରଶଂସିବେ ହେ । ୧୭ ।
ଆମ୍ଭ କୁଳଧର୍ମ ବିଦ୍ୟାରେତ ନାହିଁ ସରି । ତୁମ୍ଭେ କି ଜ୍ଞାନ କରୁଛ କହ
ଦଣ୍ଡଧାରି ହେ । ନୃପତି ବୋଇଲେ ରହ କରି ସାରୁ ସନ୍ଧ୍ୟା । ସମାପୁଣ
ଦେଖାଅ ଜାଣିବା ତୁମ୍ଭ ବିଦ୍ୟା ହେ । କେତେବେଳେ ହେଲା ତହିଁ ସନ୍ଧ୍ୟା
ଅବଶେଷ । ରାଜା ଅବରୋଧନାରୀ ଜଗତୀ ପ୍ରବେଶ ଯେ । ୧୮ । ବଡ଼

---

୧୪ । ରୋମାବଳୀ—ଲୋମସବୁ, ଭ୍ରମ-ଭୁଲ, ସ୍ତନ ପେଟିରୁ—ସ୍ତନ ପେଡ଼ିରୁ, କାଳବ୍ୟାଳ—କାଳସର୍ପ, ପ୍ରପଦ-ଗୋଡ଼ ଅଙ୍ଗୁଠି ।

୧୫ । ଦାତୃଗୁଣ—ଦାନପଣ, ନୃପତି ମୁକୁଟ—ରାଜଶ୍ରେଷ୍ଠ, କୁମୁଦ—କଇଁ ବଧୂ-ଚନ୍ଦ୍ର, କଇଁଫୁଲ ବନ୍ଧୁ ଚନ୍ଦ୍ରକୁ ଦେଖିଲେ ଯେପରି ଆନନ୍ଦ ହୁଏ ଆପଣ ବନ୍ଧୁ ଦେଖିଲେ ସେହିପରି ଆନନ୍ଦ ହୁଅନ୍ତି ।

୧୬ । ପ୍ରତିହାରୀ—ପଡ଼ିହାରୀ, ଦଶବିଂଶ—ଦଶ କୋଡ଼ିଏ ଜଣ, ଭୋଜ ରାଜନ—ଭୋଜବାଙ୍କରେ ଶ୍ରେଷ୍ଠ ।

୧୭ । ଧନ୍ୱନ୍ତରୀ—ଦେବତାଙ୍କର ବୈଦ୍ୟ, ମୟ—ବଡ଼ ମାୟାବୀ ଅସୁର, ଅଙ୍ଗନା—ସ୍ତ୍ରୀ, ସାର—ଶ୍ରେଷ୍ଠ, ଅକଥନ—କହି ନୋହିବା ।

୧୮ । ଅବଶେଷ—ଶେଷ, ଅବରୋଧ—ବନ୍ଦୀ, ଅନ୍ତଃପୁରରେ ଥିବା ସ୍ତ୍ରୀ—ନାରୀ, ଏଠାରେ ରାଣୀ ।

ବଡ଼ଭାଗ୍ୟ ମସ୍ତକ ମଣ୍ଡିଲା କୁମାରୀ । କେବଳ ଅଛନ୍ତି ସଙ୍ଗେ ପ୍ରିୟ ସହଚରୀ ଯେ । କରନ୍ତୁ କବୀନ୍ଦ୍ରଗଣ ଏ ପାଞ୍ଚ ସ୍ୱଭାବ । ରାମଚରିତ ଦେଖିଲେ କାମ ପୂର୍ଣ୍ଣ ହେବ ଯେ । ଏହିକାଳେ ବାଳିକ ବୋଇଲା ନେଇ ବୁଜ । ନେଇ ବୁଜନ୍ତେ ରଚିଲା ଏ ମାୟାସମାଜ ଯେ । ୧୯ । ରୁହିଁ ଲୋମଦ୍‌ଗମ ଜନେ ଲୋମପାଦେ ବୋଲେ । ଜରତା ଚତୁରେ ଋଷ୍ୟଶୃଙ୍ଗ ଆସି ହେଲେ ଯେ । ସେ ଦେଶରେ ବୃଷ୍ଟି କଲା ତୁଷ୍ଟି ହେଲେ ରାଜା । ଶାନ୍ତା କାନ୍ତା ଦେଇକରି କଲେ ଦିବ୍ୟ ପୂଜା ଯେ । ଦଶରଥ ମନୋରଥ ସାର୍ଥ ହେବା ପାଇଁ । ସେ ମୁନିଙ୍କି ଘେନି ଗଲେ ରଥରେ ବସାଇ ଯେ । ୨୦ । ରୁଚିରୁ ଚରୁ ସ୍ୱରୂପେ ହୋଇଲେ ପଦ୍ମନାଭ । କଉଶଲ୍ୟା କୈକେୟୀ ସୁମିତ୍ରା ଭକ୍ଷି ଜବ ଯେ । ଅଭିରାମ ଶ୍ରୀରାମ ଭରତ ଶୁଭରତ । ସୁଲକ୍ଷଣେ ଲକ୍ଷ୍ମଣ ଶତ୍ରୁଘ୍ନ ହେଲେ ଜାତ ଯେ । କ୍ରତୁ ରକ୍ଷା ହେତୁ ବିଶ୍ୱାମିତ୍ର ଅସି ନେଲେ । ବନେ ତାଡ଼କା ଶମନଭୁବନେ ପେଷିଲେ ଯେ । ୨୧ । ସୁବାହୁ ସୁବାହୁ ଛଳେ ମାରି ମାରୀଚକୁ । ଆକାଶରେ ଶରେ ଉଡ଼ାଇଲେ ଯେ ଯଶକୁ ଯେ । ପଥରେ ପଥରେ ନାରୀ କରି କଲେ ମୋଦ । ଦାସ ବତ୍ସଳ ଦାସରେ ଧୁଆଇଲେ ପଦ ଯେ । ଖଣ୍ଡପରଶୁକୋଦଣ୍ଡ ବେନି ଖଣ୍ଡ କରି । ସୀତା ବିବାହ ନିର୍ବାହ ନୃପଦର୍ପ ହରି ଯେ । ୨୨ । ବଜ୍ରପରି

---

୧୯ । ବଡ଼ଭାଗ୍ୟ—କୋଠା, ମସ୍ତକ—ଉପର, କୁମାରୀ—ଲାବଣ୍ୟବତୀ ।

୨୦ । ଲୋମୋଦ୍‌ଗମ—ରୋମ ଟାଙ୍କୁରିବା, ଲୋମପାଦ—ଜଣେ ସୂର୍ଯ୍ୟବଂଶୀୟ ରାଜା, ଜରତା— ଜଣେ ବେଶ୍ୟା, ଚତୁରେ—ଛଳନାରେ, ଋଷ୍ୟଶୃଙ୍ଗ—ଋଷିଜଣେ, ତୁଷ୍ଟି—ସନ୍ତୋଷ, କାନ୍ତା—ସ୍ତ୍ରୀ, ସାର୍ଥ—ସଫଳ, ଲୋମପାଦ ଦେଶରେ ବର୍ଷା ନ ହେବାରୁ ଜରତା ବେଶ୍ୟା କୌଶଳରେ ଋଷ୍ୟଶୃଙ୍ଗ ମୁନିଙ୍କ ଦେଶକୁ ଆଣିବାରୁ ବର୍ଷା ହେଲା, ଲୋମପାଦ ଖୁସିହୋଇ ତାଙ୍କ ଝିଅ ଶାନ୍ତାକୁ ଋଷ୍ୟଶୃଙ୍ଗଙ୍କୁ ବିଭାକରି ଅନନ୍ଦ ହେଲେ, ଦଶରଥ ମଧ୍ୟ ପୁତ୍ର ସକାଶ ତାଙ୍କୁ ନେଲେ ।

୨୧ । ରୁଚିରୁ—ସୁନ୍ଦର, ଚରୁ—ଯଜ୍ଞ ଅନ୍ନ,ପଦ୍ମନାଭ—ବିଷ୍ଣୁ, ଶୁଭରତ—ମଙ୍ଗଳ କାମୀ, ସୁଲକ୍ଷଣରେ—ଉତ୍ତମ ଲକ୍ଷଣରେ ପୂର୍ଣ୍ଣ, କ୍ରତୁ—ଯାଗ, ଶମନ ଭୁବନ—ଯମପୁର ।

୨୨ । ସୁବାହୁ—ଦୀର୍ଘବାହୁ (ରାମଚନ୍ଦ୍ର), ପଥରେ—ବାଟରେ, ମୋଦ—ଅନନ୍ଦ, ଦାସରେ—କେଉଟ ଦ୍ୱାରା, ଖଣ୍ଡପରଶୁ—ମହାଦେବ, କୋଦଣ୍ଡ—ଧନୁ ।

ଭୃଗୁପଥ ଭୃଗୁକୁ ଭେଦିଲେ । ଅଭିଷେକ କରିବା ମମତା ପିତା କଲେ ଯେ । ମନ୍ଥରାମନ୍ତ୍ରନେ କାନ୍ତାନୁଜ ଘେନି ସଙ୍ଗେ । ବିଚାରି ଶକ୍ରକୂଟରେ ବିହରିଲେ ରଙ୍ଗେ ଯେ । ଚକ୍ର ହେଲେ, ଶକ୍ରସୁତଚକ୍ର ନେତ୍ରସଙ୍ଗେ । ଭରତ ପ୍ରବୋଧି ସୁବୁଦ୍ଧିରେ ଗିରି ତେଜି ଯେ । ୨୩ । ବିରାଧୁଧେ ବୀରାୟୁଧେ ବଧ ବିଗ୍ରହିଲେ । ଅମଳାନବସ୍ତ୍ର ବ୍ରହ୍ମଶସ୍ତ୍ରକୁ ପାଇଲେ ଯେ । ଦଣ୍ଡକାରଣ୍ୟକୁ ମଣ୍ଡି ସୂର୍ପଣଖା ଦଣ୍ଡି । ଖର ଖର ଦୂଷଣ ତ୍ରିଶିର ଶିର ଖଣ୍ଡି ଯେ । ହେମସାରଙ୍ଗରଙ୍ଗରେ ଲଙ୍କା ଦଣ୍ଡଧାରୀ । ସୀତା ଶୀତାଂଶୁମୁଖୀଙ୍କ ଉଟଜରୁ ହରି ଯେ । ୨୪ । ଫଳଦାନେ ମୋକ୍ଷଫଳ ଲଭିଲା ଶବରୀ । କ୍ଷୀରପାନେ ବର-ବରଜରେ ବାଞ୍ଛା ପୂରି ଯେ । କାମ କାମନାକୁ ମୂଳ ଚାପେ ଜନ୍ମାଇଲେ । ପମ୍ପାସରେ କୋକଶୋକକାରକ ହୋଇଲେ ଯେ । ମିତ୍ରବଂଶୀ ମିତ୍ର ବସି ମିତ୍ରପୁତ୍ର ସଙ୍ଗେ । ଭେଦ ଶାଳ ଦୁନ୍ଦୁଭି ଅସ୍ଥିକି ଗୃଲେ ରଙ୍ଗେ ଯେ । ୨୫ । ଶାଖାମୃଗରାଜ ମୃଗରାଜ କୋଟିବଳ । ଶର ଶରଭରେ କଲେ ବିନାଶ ଚପଳ ଯେ । ମାଲ୍ୟବନ୍ତ ଧରଣୀଧରରେ ପୂରି ବଳ । ରଘୁବୀର ବିରହେ ବରଷାକାଳ ବଞ୍ଚି ଯେ । କୁକ୍କୁଟକୁ ମୁକୁଟ ସେ ଗିରିକୂଟ ଦେଇ । ଲଭି ବଲ୍ଲଭୀ ଉଦନ୍ତ ଦୂତ ପଠାଇ ଯେ । ୨୬ ।

---

୨୩ । ଭୃଗୁପଥ—ପର୍ଶୁରାମ, ଭୃଗୁ—ପର୍ବତ, ମମତା—ଇଚ୍ଛା, ମନ୍ଥରା ମନ୍ତ୍ରନେ—ମନ୍ଥରାଦାସୀ କପଟରେ ।
କାନ୍ତାନୁଜ (କାନ୍ତ+ଅନୁଜ) କାନ୍ତା—ସ୍ତ୍ରୀ (ସୀତା) ଅନୁଜ—ସାନ ଭାଇ (ଲକ୍ଷ୍ମଣ), ଶକ୍ରସୁତ—ଇନ୍ଦ୍ରପୁଅ, ଚକ୍ର—ଗୋଲ ।

୨୪ । ବୀରାୟୁଧେ—ବୀର ଅସ୍ତ୍ରରେ, ବିରାଧୁଧେ—ବିରାଧ ରାକ୍ଷସକୁ, ବଧ—ବିନାଶ, ଖର—ଶୀଘ୍ର, ଖର—ଖର ରାକ୍ଷସ, ହେମ—ସୁନା, ସାରଙ୍ଗ—ମୃଗ, ଦଣ୍ଡଧାରୀ—ରାଜା, ଶୀତାଂଶୁମୁଖୀ—ଚନ୍ଦ୍ରମୁଖୀ, ଉଟଜ—ପତ୍ର କୁଡ଼ିଆ ।

୨୫ । ବର ବରଜ-ଶ୍ରେଷ୍ଠ ଗୋପାଳ, ବାଞ୍ଛା-ଇଚ୍ଛା, କୋକ-ଚକ୍ରବାକ ପକ୍ଷୀ, ମିତ୍ରବଂଶୀ—ସୂର୍ଯ୍ୟବଂଶୀ, ମିତ୍ର—ସୂର୍ଯ୍ୟଙ୍କ ପୁଅ ସୁଗ୍ରୀବ ।

୨୬ । ଶାଖାମୃଗ—ବାନର, ମୃଗରାଜ—ସିଂହ, ଶରଭ—ଏକବାନର, ଚପଳ—ଶୀଘ୍ର, ଧରଣୀଧର—ପର୍ବତ, କୁକ୍କୁଟ—କୁକୁଡ଼ା, ଗିରିକୂଟେ—ପର୍ବତ କୋଡ଼ରେ, ବଲ୍ଲଭୀ—ସ୍ତ୍ରୀ, ଉଦନ୍ତ—ବାର୍ତ୍ତା ।

କଳେ ସେତୁ କଲେ ଶିଳେ ନଳେ ଦେଇ ଯଶ । ଲଙ୍କା ବେଢ଼ି ଶଙ୍କା
କରାଇଲେ ଦୈତ୍ୟବଂଶ ଯେ । ବିଷଧରପାଶ ତ୍ରାସ ନାଶ କଲା ବୀଶ ।
ଅନୀକିନୀ ଅନେକ ହୋଇଲେ ରଣେ ନାଶ ଯେ । ଘଟକର୍ଣ୍ଣ ଘଟତ୍ୟାଗ
ଅତିକାୟ କ୍ଷୟ । ପୁରୁହୂତଜିତ ହତ ବ୍ରହ୍ମାସ୍ତ୍ର ଉଦୟ ଯେ । ୨୭ ।
ହନୁମାନ ଗନ୍ଧମାଦନ ଗମନ ଲୀଳା । ଭରତ ଉଦନ୍ତ ପ୍ରାପ୍ତ ଲକ୍ଷ୍ମଣ ଜୀଇଁଲ
ଯେ । ଶ୍ରୀରାମଚନ୍ଦ୍ର ନରେନ୍ଦ୍ର ଶର ସର୍ପ ନେଇ । ଲଙ୍କପତି ଅଙ୍କପେଟି
ଭିତରେ ପୂରାଇ ଯେ । ଅଭୀଷଣ ବିଭୀଷଣେ ଅଭିଷେକ କରି । ବଇଦେହୀ
ଦହି ଅନଳରେ ହେମ ପରି ଯେ । ୨୮ । ପୁଷ୍ପକରେ ପୁଷ୍କରେ ସବଳେ
କଲେ ଗତି । ଯୋଦ୍ଧାବର ଅଯୋଧ୍ୟାରେ ହୋଇଲେ ନୃପତି ଯେ ।
ଦେଖାଉଁ ଦେଖାଉଁ ରାମାୟଣ ମହୋତ୍ସବ । ଚନ୍ଦ୍ରବଦନୀକି ଦେଖାଇଲା
ଅନ୍ୟଭାବ ଯେ । କର୍ଣ୍ଣାଟରାଜନନ୍ଦନ ରାମ ଆଗେ ଉଭା । ବିଶ୍ୱମ୍ଭର ଆଗେ
ବିଶ୍ୱକେତୁ ଯଥା ଶୋଭା ଯେ । କୁମାରୀକି ଶୁଭୁଛି ଏମନ୍ତ ଜଣାଉଛି ।
ଅନବରେ ମୋର ପ୍ରୟୋଜନ ନାହିଁ କିଛି ଯେ । ୨୯ । ହେ ରାମ ଶ୍ୟାମ
ସୁନ୍ଦର ଅଛ ଦଉକରି । ସୁଗ୍ରୀବକୁ ତାରା ବିଭୀଷଣେ ମନ୍ଦୋଦରୀ ଯେ ।
ଲାବଣ୍ୟବତୀ ଯୁବତୀ ଶିରୋମଣି ମୋର । ମନୋହାରୀ ହୋଇବ ଏମନ୍ତ
କୃପା କର ହେ । ୩୦ । ସେ ନବୀନା ବିନା ଆନେ ନ ରସେ ମୋ ମନ ।
ଦହନ କରୁଛି ମୋତେ ମଦନଦହନ ହେ । ପ୍ରଭୁ ତୁମ୍ଭେ ବିରହବେଦନା
ଅନୁଭବୀ । ନ ଘେନିଲେ ଅଉ କାହା ଆଗେ ଜଣାଇବି ଯେ । କରୁଣା
ଲୋକନେ ରାମ ଅସ୍ତୁବାଣୀ ଭଣି । ଦେଖି ଶୁଣି ଏମନ୍ତ ସେ କସ୍ତୁରୀସୁବାସୀ
ଯେ । ୩୧ । ଅଳୀକ ଦେଖାଇଦେଲ ଅଙ୍ଗୁଳି ଦେଖାଇ । ସ୍ୱପନ ସମସ୍ତ

---

୨୭ । ସେତୁ—ବନ୍ଧ, ଶିଳେ—ପଥରରେ, ଶଙ୍କା—ଭୟ, ବିଷଧର ପାଶ—ନାଗପାଶ, ତ୍ରାସ—ଭୟ, ବୀଶ—ଗରୁଡ଼, ଅନୀକିନୀ—ପାଇକ ସୈନ୍ୟ, ଘଟତ୍ୟାଗ—ଦେହ ଛାଡ଼ିବା, କ୍ଷୟ—ନାଶ, ପୁରୁହୂତ—ଇନ୍ଦ୍ର, ପୁରୁହୂତଜିତ—ଇନ୍ଦ୍ରଜୟକାରୀ (ଇନ୍ଦ୍ରଜିତ) ।

୨୮ । ଉଦନ୍ତ—ବାର୍ତ୍ତା, ନରେନ୍ଦ୍ର ଶର—ଶ୍ରେଷ୍ଠଶର, ଅଭୀଷଣ—ଶାନ୍ତ, ଦହି—ପୋଡ଼ି, ଅନଳ—ନିଆଁ, ହେମ—ସୁନା ।

୨୯ । ପୁଷ୍ପକରେ—ପୁଷ୍ପକ ଯାନରେ, ପୁଷ୍କରେ—ଆକାଶରେ, ସବଳେ ଦଳ ବଳ ସହିତ, ବିଶ୍ୱମ୍ଭର—ବିଷ୍ଣୁ, ବିଶ୍ୱକେତୁ—କନ୍ଦର୍ପ, ଏଣେ ରାମାୟଣକୁ ତେଣେ ମାୟାରେ ଲାବଣ୍ୟବତୀକୁ କର୍ଣ୍ଣାଟ ରାଜସୁତ ଚନ୍ଦ୍ରଭାନୁକୁ ଦେଖାଉଛି ।

୩୧ । ଅନୁଭବୀ—ଭୋଗୀ, କରୁଣା—ଦୟା, କସ୍ତୁରୀ ସୁବାସୀ—କସ୍ତୁରୀବାସୀ

ପତି ପୁରୁଷ ମୋ ଏହୁ ଯେ । ସଖୀ ବୋଇଲା ସୁନ୍ଦରସୃଷ୍ଟି ପୁରନ୍ଦର । ଏଥର ଅଇଲେ ପାଶେ ଏ ଉପାୟ କର ଯେ । ଉଦ୍ଧତକୁ ବିସ୍ମର ନ କର କମ୍ବୁକଣ୍ଠୀ । ଭେଟୁଁ ଦେବୁ ଅଞ୍ଚଳେ ଅଞ୍ଚଳେ ଦୃଢ଼ଗଣ୍ଠି ଯେ ।୩୨। ବାହୁବନ୍ଧନେ ବାନ୍ଧିବୁ ଅତିଯତ୍ନ କରି । ଯାଇ ନ ପାରିବ ଶେଷ ହୋଇଲେ ଶର୍ବରୀ ଗୋ । ରତିଭୋଗ ଯାଏ ଯେବେ ସହିବ ଦାଇବ । ସେ ପ୍ରେମ ରଜ୍ଜୁରେ ବାନ୍ଧ ହୋଇଣ ରହିବ ଗୋ । ଯେଉଁ ରତି ରସ ବଶକରଇ ବ୍ରହ୍ମାଙ୍କୁ । ଅଧିକ କି କରିବା ପୁରୁଷ ଭ୍ରମରକୁ ଗୋ ॥ ସଜନୀ ଏ ମଧୁର ବଚନେ କହୁଁ କହୁଁ । ଜଗତୀ ପ୍ରବେଶ ସେ କୁମାର ଗୃହୁଁ ଗୃହୁଁ ଯେ । କୁମାରୀ ବଗୃରେ ସ୍ୱପ୍ନ ସଙ୍ଗ ଦନ ନିଶୀ । ସେହି ଶୁଭଲଗ୍ନ ଘେନି ବାହୁଡ଼ି କି ଅଛି ଯେ । ଏମନ୍ତେ ସେ ରସିକ ପ୍ରକାଶେ ବଚନକୁ । କଣ୍ଠିଲ ଧନ ଜୀବନ ମନ ଲୋଚନକୁ ଗୋ ।୩୪। ମଧୁବିନା ମଧୁପର ଆନ ରତି ନାହିଁ । ବିଧୁ ବିନା ଆନେ କି କୁମୁଦ ପ୍ରକାଶଇ ଗୋ । ବନ୍ଧୁ ବିନା ଆନ ଗତି ନାହିଁ ମୋ ଜଗତେ । ଆନକୁ ନ ବରି ଏକା ବରିବୁ ତୁ ମୋତେ ଗୋ । ଏତିକି ମାଗୁଣି ମୋ କେତକୀ ବିରନାକୁ । ସେ କୁମର କରୁଁ ଏ ବିନୟ ବଚନକୁ ଯେ ।୩୫। ସଖି ବୋଲେ ଅମ୍ଭ ସଖୀ ସତ୍ୟର ଜନନୀ । ବରଣି ଯେ କଣ୍ଠେ ମୁକୁତାମାଳ ଘେନି ଯେ । କୋଟିକଲେ ଏ କଥା ହୋଇଛୁ ନାହିଁ ଆନ । ଘନ ତେଜି ଗଙ୍ଗାଜଳେ ଗୃତକର ମନ ଯେ । ତୁମ୍ଭ ପୁରୁଷେ ସହଜେ ଚନ୍ଦ୍ରମା ପ୍ରକାର । ତାରି ପତି ହୋଇଲେ କୁମୁଦେ ଭୋଗ କର ଯେ ॥ ଚନ୍ଦ୍ରମୁଖୀ କି ରହିଛୁ ସଖୀ ଥିଲା ଲାଜ । ମନେ କରେ ଗଳାରେ ବେଢ଼ାଇ ଦେବି ଭୁଜ ଯେ । ଜାଣି ତାହା ସହଚରୀ ଅନ୍ତର ହେବାକୁ । କୁହୁକ କୁଶଳ ହରି ନେଲା ସେ ମାୟାକୁ ଯେ । କୁମାର କୁମାରୀ ରୀତି ଆନକୁ ନ ଦିଶି । ସମାସୂଣି ଚରିତେ ସମସ୍ତେ ହେଲେ ତୋଷୀ ଯେ ।୩୬। ପଟ୍ଟ ହାଟକ କଟକ

---

୩୨ । ସୁନ୍ଦର ସୃଷ୍ଟି-ପୁରନ୍ଦର—ସୃଷ୍ଟିର ମଧ୍ୟରେ ଶ୍ରେଷ୍ଠ ।
ଅଞ୍ଚଳ—କାନି ।

୩୩ । ଶର୍ବରୀ—ରାତି ।

୩୫ । ମଧୁ—ମହୁ ବା ଅମୃତ, ମଧୁପ—ଭ୍ରମର ।

୩୬ । ସତ୍ୟର ଜନନୀ—ସତକଥା କହିବାରେ ପ୍ରଧାନ ।

ଘୋଟକ ରଚନ । ହାଟ ବାଟ ଜୁର ଶାଢ଼ୀ ବାସ କଲେ ଦାନ ଯେ । ଯେତେ ଲୋକ ଦେଖିଥିଲେ ଦେଲେ ସଭି ଜୁର । ସବୁରୂପେ ପୂର୍ଣ୍ଣ ହେଲ ମନୋରଥ ତାର ଯେ । ବ୍ୟାକୁଳ ଅନଳେ ଦଗ୍ଧ କୁଟିଳକଟାକ୍ଷ । ଶଙ୍କ ମିଶ ହେଲ ପ୍ରାୟ ମୋହ କଲ ରକ୍ଷା ହେ । ୩୮ । କେତେବେଳ ଏମନ୍ତେ ରହିଲ ଭାବମୟୀ । ଜନନୀ ହକର କେତେ ଦଣ୍ଡକୁ ବଞ୍ଚାଇ ଯେ । ଏ ଜନ୍ମେ ଶଙ୍କା ଜପୁଜାଇ ଦେଲେ ଆଳୀ । ଗୁପତ କଥା ପ୍ରକଟ ହେଲ ନବବାଳ ଗୋ । ତୁ ରାଜକୁମାରୀ ତୋତେ ହେବ ବଡ଼ ଲାଜ । ସରବ ଅମ୍ଭ ମହତ୍ତ୍ୱ ନ ପାଇବୁ କାର୍ଯ୍ୟ ଗୋ । ୩୯ । ହଳାହଳ ପାନେ ପ୍ରାଣ ରକ୍ଷା ବାଞ୍ଛାକରୁ । ସନ୍ନିପାତକୁ ସେ ହିତ ହୁଏ ସିନା ଭାରୁ ଗୋ । ତେଜ ରୋଗ ଜନମିଲେ ଅଉ ରକ୍ଷା କାହିଁ । ଚତୁରୀର ଏତେକ ବିବେକ ହେଉ ନାହିଁ ଗୋ । ଏହି ବଡ଼ ଭୟ ତା ନଟୁଁ ହୋଇ କର । ପଳାଇଲ ପ୍ରାଣକୁ ରଖିଲ ବେଳେ ଧର ଯେ । ୪୦ । ନଟ ଯାଇ କେତେ ଦିନେ କର୍ଣ୍ଣାଟେ ପ୍ରବେଶ । କୁମାରକୁ କହିଲ ଦୁର୍ଲ୍ଲଭ କନ୍ୟା ବଶ ଯେ । ନାମ ଦେଶ ପଗ୍ଭରଲେ ତାହିଁ ପ୍ରକାଶିଲ । କୁମାର ବରୁରେ ମୋର ସୁକୃତ ଦଣିଲ ଯେ । ଅଘକଦ୍ଵିନ୍ଦ୍ର ପାରନ୍ଦ ଅଯୋଧ୍ୟା ନରେନ୍ଦ୍ର । ଭାବ ଛନ୍ଦ ଶେଷ କଲ ଭଞ୍ଜ ଉପଇନ୍ଦ୍ର ଯେ । ୪୨ ।

---

୩୮ । ପଟ—ଲୁଗା ହାଟକ—ସୁନା, କଟକ—ଖଡ଼ୁ, ଘୋଟକ—ଘୋଡ଼ା କୁଟିଳ କଟାକ୍ଷ—ଯେ ବଙ୍କେଇ କରି ଗୃହେଁ ଅର୍ଥାତ୍ ଲବଣ୍ୟବତୀ ।

୩୯ । ଜନନୀ ହକର—ମା' ଡାକ, ପ୍ରକଟ—ପ୍ରକାଶ ।

୪୦ । ହଳାହଳ—ବିଷ ।

୪୧ । ସୁକୃତ—ଯଶ, ଅଘ କରୀନ୍ଦ୍ର—ପାପ ରୂପକ ହାତୀ, ପାରନ୍ଦ୍ର—ସିଂହ । ଲବଣ୍ୟବତୀର ଶୋଭା ଦେଖିବାକୁ କର୍ଣ୍ଣାଟସୁତ ବାଜକକୁ ପଠାଇ ଥିଲ । ସେ ସିଂହଳରେ ରମାୟଣ ଓ ଲବଣ୍ୟବତୀଙ୍କ ଚନ୍ଦ୍ରଭାନୁଙ୍କୁ ଦେଖାଇ ତାର ଉତ୍କଣ୍ଠା ବଢ଼ାଇ ଫେରି ଆସି କୁମାରକୁ କହିବାରୁ ସେ ସନ୍ତୋଷ ହେଲ ।

## ଷୋଡ଼ଶ ଛାନ୍ଦ

( ଚନ୍ଦ୍ରଭାନୁ ମିତ୍ରଙ୍କୁ ଲବଣ୍ୟବତୀ ଶୋଭା କହିବା )

ରାଗ—ଗୁଜ୍ଜରୀ

| | | |
|---|---|---|
| ଇନ୍ଦ୍ରଜାଲକ ମୁଖୁଁ ଶୁଣି | । ବଶ ହେବାରୁ ପୃଥୁଶ୍ରୋଣୀ | ॥ |
| ଛାତ୍ରେଇ ଶୋଭା ଅନୁରାଗ | । କହୁଛୁ ପ୍ରକାଶେ ମିତ୍ର ଆଗ | ॥ |
| ହା ହା ସେ ନରେନ୍ଦ୍ର କୁମାରୀ | । ଅବନୀ ଶିରୀ ସୁକୁମାରୀ | ॥ |
| ଯାହାଙ୍କ ଅଙ୍କେ ଶୋଇ ଥିଲା | । ସୁକୃତ ମୂର୍ତ୍ତି ଭେଟାଇଲା | ॥ |
| ସଂସାରେ ଯେତେ ଦୃଷ୍ଟି ଅଛୁ | । ତାଠାରେ ପୃଷ୍ଠି ସେ ହୋଇଛୁ | ॥ |
| ଏଣୁ ଜଗତ ଜୟ ରୂପ | । ପ୍ରାଣି କନ୍ଦର୍ପ ରସକୂପ | ॥ |
| ତହିଁ ନୟନ ମୀନ ମଣ୍ଡି | । କି ଚନ୍ଦ ବନ୍ଧବାର ବ୍ରଣ୍ଡ | ॥ |
| ଅଗ ପଛକୁ ସମ ଶୋଭା | । ଶୋଭାବୃନ୍ଦରେ ନେମପ୍ରଭା | ।୪। |
| ପ୍ରଭାମାନଙ୍କ ନିଜ ଧାମ | । ଅନ୍ୟୋଽନ୍ୟେ ନାମରୂପ ସମ | ॥ |
| ସ୍ୱମ ନୋହିଲେ ଅଜ କାହିଁ | । ମୁକୁର ଦେଖାଦେବେଲେ ଦୁଇ | ।୫। |
| ଅଳଙ୍କାରକୁ ଅଳଙ୍କାର | । ନିଶ୍ଚୟ ସେହି ରାମାବର | ॥ |
| ଭାବାଦ ଯେତେ ଅଳଙ୍କାର | । ସେମାନେ ଅଳଙ୍କାର ସାର | ।୭। |
| ଅନୁରାଗର ବୀଜ ସେହି | । ଅନୁରାଗକୁ ଜନମାଇ | ॥ |
| ଯୌବନ ଶୋଭା ସେ କାମିନୀ | । ଯୌବନ ଶୋଭା ତାହା ଘେନି | ।୭। |
| ମୁଖ ପ୍ରଶଂସା କଳାକର | । ତାହା ପ୍ରଶଂସା ମୁଖ ତାର | ॥ |
| ତା ରୂପ ଅସ୍ତ୍ରକର ଘେନି | । ରୂପାସ୍ତ୍ର ବୋଲାଇ ମଦନ | ।୮। |

---

### ଷୋଡ଼ଶ ଛାନ୍ଦ

୧ । ପୃଥୁଶ୍ରୋଣୀ—ସୁନ୍ଦରୀ, ଛାତ୍ରେଇ—ସନେହର, ଅନୁରାଗ—ସ୍ନେହ ।

୨ । ନରେନ୍ଦ୍ର କୁମାରୀ—ରାଜାଝିଅ, ଅବନୀ ଶିରୀ—ପୃଥିବୀର ଭୂଷଣ, ସୁକୃତ ମୂର୍ତ୍ତି—ପୁଣ୍ୟରୂପକ ମୂର୍ତ୍ତି ।

୩ । କୂପ—କୂଅ, ମୁକୁର—ଅରସି ।

୪ । ବୀଜ—ପଦ୍ମନାଡ଼, ଶୋଭାବୃନ୍ଦ—ସୁନ୍ଦର ସମୂହ, ପ୍ରଭା—ତେଜ ।

୮ । କଳାକର—ଚନ୍ଦ୍ର, ରୂପାସ୍ତ୍ର—କନ୍ଦର୍ପ ।

ଯୁବାସଂସାର ସଂହାରଣୀ । ଯୋଷାରେ ସଂସାର ତାରେଣି ॥
କୁଙ୍କୁମ କାନ୍ତି ଅସମରେ । ସଂଚୋର ବହୁଛୁ ନାମରେ ।୯।
ସୁନ୍ଦରୀ ପୁରନ୍ଦର ମୋହ । ସୁନ୍ଦରୀ ପୁରନ୍ଦର ଏହ ॥
ଦେଖି ତା ସର୍ବାଙ୍ଗ ସୁନ୍ଦର । ଚିତ୍ତେ ଚିନ୍ତବ ପୁରନ୍ଦର ।୧୦।
କି ତପ କରି ପିନାଶାଢ଼ି । ସେ ବାଳା ପ୍ରତିଅଙ୍ଗେ ଜଢ଼ି ॥
ଜାଣିଲେ ସେ ତପ ସାଧନ୍ତି । ତେତିକବେଳୁଁ ହୁଏ ମତି ।୧୧।
ନିଦ୍ରାଭଙ୍ଗ ସଲଗ୍ନବେଳେ । ଭୃଙ୍ଗୀଏ ଅନୁକୂଳ କଲେ ॥
ଲୁଚି ଯେ କଲେ ଧୈର୍ଯ୍ୟଧନ । ପ୍ରଥମେ ଧରନେଲେ ମନ ।୧୨।
ଅଙ୍ଗଦେଶରେ ଲଜ ପ୍ରୀତି । ହୋଇଥିବେ ଯେ ବେନି ମନ୍ତ୍ରୀ ॥
କେ କେତେବେଳେ ବଳିଅରି । ହୋଇଲେ ଅନୁଗ୍ରହ ତାରି ।୧୩।
ଉରଜପୁର ଚକ୍ରବର୍ତ୍ତୀ । ଦେଖାଇ ବିଶେଷ ଉନ୍ନତି ॥
ଲେଖାଇ ନେଲା ହାତେ ପଣ । ହେଲିବୋଲି ମୁଁ ତୋର ଭୃତ୍ୟ ।୧୪।
କନକ ମହୀଧରଠାରୁ । ଉଦରେ ରଖିଛି ତା ଭୀରୁ ॥
କସ୍ତୁରୀପଙ୍କ ବର୍ତ୍ତିପନ୍ତି । ରୋମାଳି ବୋଲନ୍ତି ଅଛନ୍ତି ।୧୫।
ଯହିଁ ଏମନ୍ତ ଧୈର୍ଯ୍ୟବନ୍ତ । ଦେଖି ନ ପାରିଲା ଗୁରୁତ୍ୱ ॥
ଆଜ କାହାର ତାକୁ ଗୁହିଁ । ବାଞ୍ଛା ନୋହିବ ଦାସ ହୋଇ ।୧୬।
ବାଳୀ ତାଳିଲାବେଳେ ନେଣ । ଜୀବନ ହୋଇଲା ଅରତ ॥
ଖେଲ ଅସୁଛି କାଳ ଅହି । ଏ ମୋତେ ଦଂଶିବାର ପାଇଁ ।୧୭।
ପିଛଡ଼ା ପେଡ଼ାମଧ୍ୟେ ଥିଲା । କିରୂପେ ଫିଟି ଏ ଅଇଲା ॥
ନ ମାନିବାରୁ ଗଦ ପଦ । ନିଶସ୍ତ୍ର ହେଲା ବିଷବୈଦ୍ୟ ।୧୮।
ଏକାଳେ ନେଣବୋଧ ତାକୁ । ତାଳି ଏ ଦେବ ଅମୃତକୁ ॥
ଅହିଁ ତୁ ହୋଇଲୁ ଅମର । ଦେଖି ଏ ଶିଖିପ୍ରାପ୍ତ ମୋର ।୧୯।
ଅନୁରାଗ ଗୃହାଣି ସେହ । ଅପାଙ୍ଗ ଥିଲା ସାକ୍ଷୀ ହୋଇ ॥
ଶୋଭା ସେ ଦଶିଲା ଏମନ୍ତ । ଫୁଲ୍ଲାରବିନ୍ଦେ ଅଳିଯୁକ୍ତ ॥

---

୯ । ପୁରନ୍ଦରୀ—ଇନ୍ଦ୍ରାଣୀ ।
୧୪ । ଉରଜ—କୁଚ, ଚକ୍ରବର୍ତ୍ତୀ—ଶ୍ରେଷ୍ଠ ।
୧୫ । କନକ—ସୁବର୍ଣ୍ଣ, ମହୀଧର—ପର୍ବତ ।
୧୭ । ଅହି—ସାପ ।
୧୮ । ପିଛଡ଼ା—ଅଖିପତା, ବିଷବୈଦ୍ୟ—ବେଜା ।
୨୦ । ଅପାଙ୍ଗ—ଅଖିକୋଣ ଫୁଲ୍ଲାରବିନ୍ଦ—ଫୁଟିଲା ପଦ୍ମ, ଅଳି—ଭ୍ରମର

ଅନଙ୍ଗ ପବନ ଝଙ୍କାରେ । ଝିଟିଭି ଚାଲିବା ପ୍ରକାରେ ॥
ଘେନି ଶୁକ୍ଳ ରଙ୍ଗ କଳା । ପଲକ କରିବା ଛଳ କଲା ।୨୧।
ମୋହର କି ଇତର ପୁଣ୍ୟ । ତ୍ରିବେଣୀ ଘାଟେ କଲି ସ୍ନାନ ॥
କଟାକ୍ଷ ଅଙ୍କୁଶ ସଦୃଶୀ । ମନ ମାତଙ୍ଗକୁ ଅକର୍ଷି ।୨୨।
ଭ୍ରୂଛନ୍ଦ ମାହୁନ୍ତ ଅବେହି । ତାର ଅଯତ୍ତ କରି ନେଇ ॥
ଜାନୁ ଅର୍ଗଳର ନିକଟେ । ଥିଲି ଶିକୁଳା ନୀବିକୁଟେ ।୨୩।
ନିବଡ଼େ ପକାଇଲି ବାନ୍ଧି । ଭ୍ରମ ମନ୍ଦିର ପାନେ ବୋଧି ॥
ଖୋଲି ସ୍ୱର୍ଗଦ୍ୱାର ଏହି । ମୋକ୍ଷ ଏଥିରେ ଅଛି ରହି ।୨୪।
ସାନ୍ନିଧ୍ୟେ ମଧ୍ୟେ ସିଂହ ସ୍ଥିତ । ନୋହିଲେ ହୁଅନ୍ତା ଏମନ୍ତ ॥
ନିତମ୍ବ ଚନ୍ଦ୍ରବିମ୍ବ ସତ । ସେ ସ୍ଥାନେ ହୁଅଇ ଉଦିତ ।୨୫।
ଲଭିଲି ଯେତେ ପୁଣ୍ୟ ତେତେ । ଲଙ୍ଘି ତା ପାରନ୍ତି କେମନ୍ତେ ॥
ଜଘନ ଭଦ୍ରାସନ ଗୋପ୍ୟ । ବିଶ୍ୱାମେ ଇନ୍ଦ୍ରପଦ ସ୍ଥାପେ ।୨୬।
ଏହି ଅଭୀଷ୍ଟ କରୁଅଛି । ନ ଜାଣି ଧାତା କି ଲେଖିଛି ॥
ମନ ବୁଦ୍ଧି ନୟନ ପ୍ରାଣ । ତାହାର କିଣା ହେଲେ ଜାଣ ।୨୭।
ଏଣୁ ମୋ ଭଲ ମନ୍ଦ କର୍ତ୍ତା । ନୋହିଲି ନବୀନ ବନିତା ॥
ମୋର ଦେହରେ ମୋ ଅଯତ୍ତ । କେହି ବହିଲି ଘେନି ଚିତ୍ତ ।୨୮।
ଦାହ କନକ ବରଣୀକି । ସୁଭାଗ୍ୟ ଗଲି ମୋର ବିକି ॥
ଓଷ୍ଠ ପ୍ରବାଳପାଶେ ଥିଲି । ହାସ ମୁକୁତାରେ କିଣିଲି ।୨୯।
ସେ ତାହା କିଣିଗଲି ସିନା । ଏବେ ମୁଁ ପାଉଛି ବେଦନା ॥
ରତି ରତନ ବରତନ । ଦେଇ କରିବାକୁ ଯତନ ।୩୦।
କେ ଯାଇ ଜଣାନ୍ତା ମୋ ଠାଇଁ । କରୁଣା କଲ୍ପତରୁ ସେହି ॥
ଆହା କରନ୍ତା ଏହା ଶୁଣି । ଛାମୁକୁ ନିଅନ୍ତି ସେକ୍ଷଣି ।୩୧।
ଦିଅନ୍ତା ଅଶେଷ ସମ୍ପତ୍ତି । ତହିଁରୁ ପାଇବା ବିପତ୍ତି ॥
ମନକୁ ମନାଇ ସେବାରେ । ମନ୍ଦନ୍ତ ମୁଁ ନିଶି ଦିବାରେ ।୩୨।
ଯାହାର ନାସା ଫୁଲ୍ଲପଣ । ଫୁଲଇ ଦେଇ ଫୁଲବାଣ ॥
ବିଗ୍ରହରେ ଏ ତୂଣୀ ସମରେ । ଅସ୍ତ୍ରେ ତ କମ୍ପାଇବ ଦ୍ୱାରେ ।୩୩।

---

୨୨ । ମାତଙ୍ଗ—ହାତୀ ।
୨୬ । ଜଘନ—ଜଙ୍ଘ, ଭଦ୍ରାସନ—ସିଂହାସନ ।
୨୯ । ଦାହ କନକବରଣୀ—ପୋଡ଼ାସୁନା ସମାନ ବର୍ଣ୍ଣ ଯାହାର ।
୩୦ । ଶମ୍ବର—କନ୍ଦର୍ପ, ରମା—ସ୍ତ୍ରୀ ।
୩୩ । ଫୁଲବାଣ—କନ୍ଦର୍ପ, ତୂଣୀ—ଶରମୁଣା ।

ସବୁ ସୁଟବେଶ ମାନେ ତାକୁ । ସେ ପୁଣି ସୁବେଶ ବେଶକୁ ॥
ମଳିନ ହୋଇଥିଲେ ବେଶେ । ଜଗତ ମୋହି ପାରଇ ସେ ।୩୪।
ପଙ୍କ ମଧ୍ୟରେ ପଦ୍ମ ଥାଇ । ଯଥା ରସିକ ଭୃଙ୍ଗ ମୋହି ॥
ଘେନନ୍ତି ଦେବତାଏ ଶିରେ । ବହନ୍ତି ବଧୂ ସୁର୍ଣ୍ଣ କରେ ।୩୫।
ଟାର କରନ୍ତୁ ସମ୍ବର୍ଣ୍ଣ । ଶ୍ରମା ସୁଷମା ସେହିପର ॥
ସ୍ୱଭାବେ ମୋର ବେଜା ଅଙ୍ଗ । ଯହିଁ ପଡ଼ଇ ରହେ ଲଗି ।୩୬।
ସେ କୋଟି କୋଟି ହୋଇଥିଲେ । ସେ ଶୋଭା ଦେଖିଥାନ୍ତି ଭଲେ ॥
ଅଙ୍ଗେ ଶତ ଶତ ରଖି । ସୁଖୀ ହୁଅନ୍ତି ଦେଖି ଦେଖି ।୩୭।
ଯେ ବାଳ ଚରିତ ଅଶେଷ । ଏମନ୍ତ କହୁଁ କହୁଁ ପୁଂସ ॥
ଗୃହୁ ପୁରୁଷ କଲ ଅନ । ଏ ଛାନ୍ଦ ହୋଇଲା ସମ୍ପୂର୍ଣ୍ଣ ।୩୮।
ଯେ ବଂଶେ ଇଷ୍ଟ ଦୁର୍ଗାଦେବୀ । ବରହ୍ମ କୋଷରୁ ସମ୍ଭବି ॥
ମନୁଷ୍ୟ ଏହି ଅଦଭୂତ । ଭଞ୍ଜାନୁଭଞ୍ଜ ନାମ ସତ ।୩୯।
ଶିଷ୍ଟ ରଶିସ୍ଥ ପାଳକା । ଶ୍ରୀରାମେ ଦତ୍ତ ରାଜଟିକା ॥
ସେ କୁଳେ ରାଜା ଧନଞ୍ଜୟ । ସମସ୍ତ ଗୁଣର ନିଳୟ ।୪୦।
ଘୁମୁସର ଅଧିକ ପଣେ । ଲୋକ ବିଖ୍ୟାତ କବିଗୁଣେ ॥
ତଦ୍‌ଗତ ତାହାଙ୍କ ତନୁଜ । ନରେଶ ନୀଳକଣ୍ଠ ଭଞ୍ଜ ।୪୧।
ତାହାଙ୍କ ଜ୍ୟେଷ୍ଠସୁତ ମୁହିଁ । ଉପେନ୍ଦ୍ର ଭଞ୍ଜ ନାମ ବହି ॥
ତାରକ ମନ୍ତ୍ର ପଦେ ସୋଦେ । ମୋହର କବିପଣ ଉଦେ ।୪୨।
କଳଙ୍କ ରହିନ ମୋ ଗୀତ । ଖଳ ରାହୁରେ ଅଦୂଷିତ ॥
ବିଚିତ୍ର ସୁଧାକର ଏହୁ । ସୁମନାବୃନ୍ଦ ସୁଖଦାୟୀ ।୪୩।
ନାରିକେଳ ଯେ ରସପୁର । ଭକ୍ଷି ନ ପାରଇ ବାନର ॥
ତାର କି ସ୍ୱାଦୁ ଯଣ ନୋହି । ପ୍ରସଙ୍ଗ ଗଲ୍ପ ମଧ୍ୟ ଇହି ।୪୪।

---

୩୫ । ବଧୂ—ବସ୍ତ୍ର ।
୪୦ । ନିଳୟ—ଘର, ସ୍ଥାନ ।
୪୧ । ତନୁଜ—ପୁତ୍ର ।
୪୩ । ଅଦୂଷିତ—ପ୍ରଶଂସ୍ୟ, ସୁଧାକର—ଚନ୍ଦ୍ର, ସୁମନାବୃନ୍ଦ—ପଣ୍ଡିତମାନେ ଦେବତାମାନେ ।
୪୪ । ନାରିକେଳ—ନଡ଼ିଆ ।

ଏ ଛାନ୍ଦରେ ଚନ୍ଦ୍ରଭାନୁ ଲାବଣ୍ୟବତୀ ଶୋଭା ଦେଖି ମୋହ ମୁଗ୍ଧ ହୋଇ ତାର ପ୍ରଶଂସାମାନ ଅଗରେ ବର୍ଣ୍ଣନା କଲେ ।

## ସପ୍ତଦଶ ଛାନ୍ଦ

( ବ୍ରହ୍ମଗୃହ ଲାବଣ୍ୟବତୀର ବାର୍ତ୍ତା ନେଇ ଚନ୍ଦ୍ରଭାନୁ ପାଶେ ପ୍ରବେଶ )

ରାଗ—ଶଙ୍କରାଭରଣ

ବହନ ଲାଗିଲା ଯାଇ ସିଂହଳଦ୍ୱୀପରେ । ସାଧବ ଯୁବତୀମାନେ ଅତି ପ୍ରମୋଦରେ । ଗଲେ ବହନ ବନ୍ଦାଇ । ଅର୍ଘ୍ୟଥାଳୀମାନ କରେ ହୁଳହୁଳି ଦେଇ । ୧ । ରତ୍ନାକର ସାଧୁତ ଭଗିନୀ ମେଘମାଳା । ଦଇବେ ସେଦିନ ଭ୍ରାତୃପୁରେ ଯାଇଥିଲା । ତାକୁ ଜାୟା ସଙ୍ଗେ ଦେଖି । ହୋଇଲା ବୋଇତଅଳ ଅତିଶୟ ସୁଖୀ । ୨ । ପୁରେ ପ୍ରବେଶ ଏକାନ୍ତେ ବହିଣୀ ସଙ୍ଗତେ । ହାସ-କଉତୁକ ବେଳେ କହୁଛି ସୁରତେ । ଧନ ମୋହ ବାଣୀ ତୋତେ । ମୁଁ ଯାହା ବୋଲିବି ତାହା କରିବୁ ତ୍ୱରିତେ । ୩ । ବିପରୀତ ମାଗିବେ ପରା ଏମନ୍ତ ଧେନା । ଅତିରସିକା ଚତୁରୀ ଦଣ୍ଡେ ହେଲା ତୁନା । କହ ଶୁଣିବା ସେ କଥା । ବୋଇଲା ଲଜ୍ଜିତ ହୋଇ ପୋତିଲା ସେ ମଥା । ୪ । ନାୟକ କହିଲା ତୋ ନଣନ୍ଦ ମେଘମାଳା । ପରିହାସ ତାହା ଠାରେ ତୋର ପ୍ରବର୍ତ୍ତିଲା । ସେ କୁମାରୀ ପ୍ରାଣ ପର । ତୁ ତାହାକୁ କହିବୁ କହିବ ଯାଇକରି । ୫ । ବିଦ୍ୟାନଗ୍ର ନୃପତିନନ୍ଦନ ଚନ୍ଦ୍ରଭାନୁ । ଲାବଣ୍ୟ-ବତୀର ଶୋଭା ଶୁଣିଲାର ଦିନୁ । ହୋଇଅଛୁ ଚିତ୍ତ ବଶ । ନ ପାଇଲେ ଜୀବନରେ ଯଣେ ନାହିଁ ଆଶ । ୬ । ସୁନ୍ଦରପଣକୁ ଅଜ ଗାରେ କାହିଁ ନାହିଁ । କୁଳେ ଉଜ୍ଜ୍ୱଳ ସାମର୍ଥେ ଭୋଗ କରେ ମହୀ । ଅବଧୂତ ହେବ ବିଭା । ଭଜୁ ସେ ରସିକକୁଞ୍ଜରକୁ ମହୀଶୋଭା । ୭ । ସୁମନା ବୋଇଲା

---

### ସପ୍ତଦଶ ଛାନ୍ଦ

୧ । ବହନ—ବୋଇତ, ସାଧବ—ସାହୁକାର,
ଯୁବତୀ—ସ୍ତ୍ରୀ, ପ୍ରମୋଦ—ଆନନ୍ଦ ।

୨ । ରତ୍ନାକର—ଜଣକର ନାମ, ସାଧୁତ—ବଣିକ, ଭଗିନୀ—ଭଉଣୀ,
ଭ୍ରାତୃପୁରେ-ଭାଇଘରେ, ଜାୟା—ସ୍ତ୍ରୀ, ବୋଇତଅଳ-ବଣିକାର,ବଣିକ

୩ । ଏକାନ୍ତ—ଏକୁଟିଆ, ତ୍ୱରିତେ—ଶୀଘ୍ର ।

୪ । ବିପରୀତ—ଓଲଟା ।

୫ । ପରିହାସ—ଥଟ୍ଟା ।

୭ । ଗାରେ—ଲେଶମାତ୍ର, ମହୀ—ପୃଥିବୀ, ରସିକକୁଞ୍ଜର—ରସିକ ଶ୍ରେଷ୍ଠ,
ମହୀଶୋଭା—ପୃଥିବୀର ଭୂଷଣ ଶ୍ରେଷ୍ଠ ସୁନ୍ଦରୀ ଲାବଣ୍ୟବତୀ ।

ଦେଖ ଏ ପ୍ରାଣ ଯାହାର । ଏ କଥାକୁ କାହିଁପାଇଁ ନିଯୁମ ତାହାର । ଏତେ କହି ଗଲା ଉଠି । ମେଘମାଳା ପାଶରେ ପ୍ରବେଶ ବିମ୍ବଓଷ୍ଠୀ ।୮। ବସି ପାଶେ ଘଡ଼ିଏ ମାଡଲା ପରିହାସେ । କ୍ରମଶେ କ୍ରମଶେ କର ପକାଇଲା ବିକ୍ଷେ । କେମା ବିଭା ନୋହିବେ କି । କି ଉପାଯୁ ତାତ ମାତ କରନ୍ତି ଏଥିକି ।୯। ସେ ରମା ଉଦରକଥିଲା ବ୍ରହ୍ମବୃଷ୍ଟି ଶୁକ । ଜ୍ୟେଷ୍ଠଭ୍ରାତା ସଙ୍ଗତରେ କର ଅବଲୋକ । ଏବେ ମନରେ ବିଗ୍ଭରେ । ଭ୍ରାତା କହି ପଠିଅଇଅଚ୍ଛି ଏହା କରେ ।୧୦। ମାଳତୀ କହିବାର ଅସ୍ତୁଚ୍ଛି ସତ ହୋଇ । ମୁଁ କିପାଇଁ ଘୁଞ୍ଚିବିଟି ସଖୀର ବଡ଼ାଇ । ପାଞ୍ଚି ଏମନ୍ତ କହିଲା । ସମେ ବର ମିଳିଲେ ବିବାହ ହେବ ବାଳା ।୧୧। ମାନସର ହେଲେ ସିନା ମରାଳ ରସିବ । ମେଘମାର ହେଲେ ସିନା ଗୃତକ ତୋଷିବ । ମନେ ମନହିଁ ମିଶିବ । ଚନ୍ଦ୍ର ହେଲେ ସିନା ଚକୋରକୁ ଉଲ୍ଲାସିବ ।୧୨। ଚୂତ ମଞ୍ଜରୀରେ ଯେବେ କୋକିଳ ରସିବ । ତେବେ ସିନା ଅତିଅନ୍ତ ସୁନ୍ଦର ଦିଶିବ । ଶୁଣି ଏ କହେ ଏମନ୍ତ । ଏହି ବିଧିରେ ମିଳିଲେ ହେବ କି ସମ୍ମତ ।୧୩। ଦ୍ୱିତୀୟା ବୋଲେ ସମ୍ମତ ନୋହିବ କାହିଁକି । ବିଧାତା ଘଟାଇ ଦେଇ ଯେ ଯୋଗ୍ୟ ଯହିଁକି । ପ୍ରତିବନ୍ଧ ଅଚ୍ଛି ଏତେ । ସ୍ୱପ୍ନବଶେ ପ୍ରତ୍ୟକ୍ଷେ ଦେଖିଚ୍ଛି ଧନେ ଗ୍ଭନେ ।୧୪। ଦୀର୍ଘନେତ୍ରୀ ସତ୍ୟ-ଜନୟିତ୍ରୀ ବୋଲି ଧେନ । ଅଙ୍ଗୀକାର କଲା କଥା ନ କରିବ ଆନ । ସତେ ବିଷ ଉଷି ହର । ସତ୍ତ୍ୟେ ଲଙ୍ଘେ ନାହିଁଟି କୂଳକୁ ଅକୂପାର ।୧୫। ଅସୁର-ଯୁବତୀ ବୃନ୍ଦାବତୀ ପୂର୍ବେ ଥିଲା । ଶ୍ରୀପତି କେଡ଼େ ସୁନ୍ଦର ବର ନ ରସିଲା । ମାୟାଧର କଲେ ମାୟା । ସତ୍ୟ ଧେନ ଅନଳେ ଦହନ କଲା କାୟା ।୧୬। ତଥାପିହିଁ ଶୁଣିବା ସେ କେମନ୍ତ ସୁନ୍ଦର । ପ୍ରଥମା କହେ

---

୮ । ସୁମନା—ସ୍ତ୍ରୀ

୯ । ବିକ୍ଷେ—ବିଷୟରେ ।

୧୦ । ଅବଲୋକନ—ଦେଖିବା ।

୧୨ । ସାନସର—ମାନସରୋବର, ମରାଳ—ହଂସ ।

୧୩ । ମଞ୍ଜରୀ—କଢ଼ି, ବଉଳ, ସମ୍ମତ—ରାଜି ।

୧୪ । ପ୍ରତିବନ୍ଧ—ବାଧା ।

୧୫ । ଦୀର୍ଘନେତ୍ରୀ—ଲମ୍ବା ଅକ୍ଷି ଯାହାର ଲବଣ୍ୟବତୀ, ସତ୍ୟ ଜନୟିତ୍ରୀ-ଯେ ସତକଥା କହେ ସତୀ, ଅଙ୍ଗୀକାର—ସ୍ୱୀକାର, ଅକୂପାର-ସମୁଦ୍ର ।

୧୬ । ଅସୁର ଯୁବତୀ—ଜଳନ୍ଧର ଦୈତ୍ୟର ସ୍ତ୍ରୀ, ଶ୍ରୀପତି—ବିଷ୍ଣୁ, ମାୟାଧର— ବିଷ୍ଣୁ, ଦହନ—ପୋଡ଼ିବା, କାୟା—ଦେହ ।

ଜାଣିଛୁ କାମାବେଶ ତାର । କାହିଁପାଇଁ ପ୍ରିୟସୁତ । ଚନ୍ଦ୍ରଭାନୁ କେମାରେ ହୋଇଛୁ ଅନୁରକ୍ତ । ୧୭ । ଏତେ ବୋଲି ପ୍ରାଣପ୍ରିୟା ପାଶକୁ ଗମନ । ପୁନରପି କହିଲା ସେ ସକଳ ବିଧାନ । ଯେଜନ ବ୍ରହ୍ମଗୃହୀ କୀର । ପୋତ-ପାଳ ବସି କରେ ଏମନ୍ତ ବିଗ୍ରହ । ୧୮ । ତ୍ରିବିଧ ଦୂତ ଶାସ୍ତ୍ରରେ ଲକ୍ଷିତ ହୋଇଛୁ । ଦ୍ୱିବିଧ ଦୂତରୁ ଅନ୍ୟ କାର୍ଯ୍ୟ ନାହିଁ କରୁଛୁ । ପଡ଼େ ଯେଉଁ କାର୍ଯ୍ୟ ଯହିଁ । ସେ କାର୍ଯ୍ୟ ନିର୍ବାହ କଲେ ପ୍ରତ୍ୟୁତ୍ତର ଦେଇ । ୧୯ । ପ୍ରଭୁ ପଚାରିଲେ ଶଙ୍କା ନ ଥାଇ ଯାହାର । ତାହାକୁ ସଂସାରେ କହୁ ସୁଶ୍ଳିଷ୍ଟାର୍ଥ ଚାର । ଦୂତ ହେଲେ ମିଛ କହୁ । କାର୍ଯ୍ୟକାଳେ ମିଥ୍ୟା କହିବାର ଦୋଷ ନାହିଁ । ୨୧ । ନର ଅବା କୁଞ୍ଜର ବା ଅଶ୍ୱତ୍ଥାମା ହତ । କାର୍ଯ୍ୟେ କହିଲେଟି ଯୁଧିଷ୍ଠିର ସତ୍ୟବନ୍ତ । ଅମ୍ଭେ କହିବା ଏମନ୍ତ । ଚନ୍ଦ୍ରେ ସ୍ୱପ୍ନେ ଦେଖିଛୁ ବା ତାକୁ ନୃପସୁତ । ୨୯ । ବ୍ରହ୍ମଗୃହୀ କହିଲା ଗୃହକ ଯହିଁ ଥାଇ । ସେହିସ୍ଥାନେ ନିତ ନିତ ଘନ ବରଷଇ । ସ୍ୱପ୍ନେ ଦେଖିଅଛୁ ବୀର । ପରମ କରମବନ୍ତମାନଙ୍କେ ସେ ସାର । ୨୨ । ବନଦୁର୍ଗା ଉପାସନା ମୋର ସବୁଦିନେ । ସେ କହିଲେ ଅସୁ ଅସୁ ଦେଖିଲି ସ୍ୱପନେ । ଜାଣ ସାକ୍ଷାତ ପ୍ରକାର । ବେନି ଚିତ୍ତ ରସିବ କରିବୁ ପରସ୍ପର । ୨୩ । ଏତେ ବୋଲି ଶୁକ ଦେଲେ ମେଘମାଳା କରେ । ଅଧ୍ୟୁଂ ପ୍ରାନ୍ତଯାଏ କଥନ ସେ ଧୀରଚିରେ । ମୋଧାବତୀ ଯେଜନ ସଖୀ । ଅବରୋଧରେ ଯାଇଣ ଭେଟିଲା ସୁମୁଖୀ । ୨୪ । ସ୍ୱଂପ୍ରପ୍ରତରୂପ ଚନ୍ଦ୍ର ଲେଖା ଯେଉଁ ପୁରେ । ତହିଁ ଶୋଇଛୁ ନବୀନା ପଲ୍ଲବଶେଯରେ । ବାଡ଼ଚନ୍ଦ୍ର ଗୃହିଁ କୀର । ହେଲା କାର୍ଯ୍ୟ ବୋଲିଣ ଚିତ୍ତକୁ କଲା ସ୍ଥିର । ୨୫ । ଅନାଇଲା ସେ ଶୋଭା ହୋଇଛୁ ଅନ ଅନ । କୈଳାସ ପର୍ବତ ପ୍ରାୟ ମେରୁପର ସ୍ତନ । ନେନ୍ତ୍ରେ ପୂରିଅଛୁ ଜଳ । ଦୂର କରଦେଇଅଛୁ କଜ୍ଜ୍ୱଳ କଜ୍ଜ୍ୱଳ । ୨୬ । ଫାଟିଫୁଟି

---

୧୮ । କୀର—ଶୁଆ, ପୋତପାଳ—ବଣିକ ବା ବୋଇତଅଳ ।

୧୯ । ତ୍ରିବିଧ—ତିନି ପ୍ରକାର ।

୨୦ । ଶଙ୍କା—ଭୟ, ସୁଶ୍ଳିଷ୍ଟାର୍ଥ—ଅତି ଉତ୍ତମ, ଚାର—ଦୂତ ।

୨୧ । କୁଞ୍ଜର—ହାତୀ, ପରମ—ଶ୍ରେଷ୍ଠ, କରମବନ୍ତ—ଭାଗ୍ୟବନ୍ତ, କପାଳିଆ ।

୨୪ । ଅବରୋଧ—ଅନ୍ତଃପୁର, ସୁମୁଖୀ—ସୁନ୍ଦରୀ ।

୨୫ । ପ୍ରତରୂପ—ଛବି, ବାଡ଼ଚନ୍ଦ୍ର—କାନ୍ତଚନ୍ଦ୍ର ।

୨୬ । ତନୁ—ଦେହ, ନଭ—ଆକାଶ, ଶଶୀ—ଚନ୍ଦ୍ର ।

ପଡ଼ୁଅଛୁ ମୁକ୍ତାମାଳିକା । ଚନ୍ଦନ ପଙ୍କ ତନୁରେ ହେଉଛୁ ଫୋଟକା ।
ନଭେ ଦ୍ୱିତୀୟାର ଶଶୀ । ଉଦୟ ହେଲା ପରାୟେ ଶେଯେ ଶୋଭା ଦିଶି ॥
ପାକ କଲା ଶାକ ପ୍ରାୟେ କଳେବର ପୂର୍ଣ୍ଣ । ମୃଣାଳନାଳ ପଡ଼ିଲା ମାତ୍ରେ ଗାତ୍ରେ
ଚୂର୍ଣ୍ଣ । ଉଶୀରର ଲେପ ଯହିଁ । ତପତ ଲୌହେ କମ୍ୱାଳ ପରାୟେ ଶୁଖଇ ॥
ରତ୍ନ ଶାଣେ ବସିଲେ ନ ତୁଟେ ଶୋଭା ଯଥା । ତଥା କ୍ଷୀଣ ହେଲେ ଲଭେ
ମନମଥ ବ୍ୟଥା । ଶୋଭା ହୋଇନାହିଁ ହତ । ରତି ରତିଙ୍କ ସମାନ
ନୋହିବ ଏମନ୍ତ । ୨୯ । ଦନ୍ତି-ଦନ୍ତପିତୁଳା କି ରଜତପିତୁଳା । ତୁଳା-
କୋମଳାଙ୍ଗୀ ବହିଅଛୁ ଏହି ତୁଳା । ଗଣ୍ଡେ ବହେ ଲୁହଧାର । ପୋଛୁ-
ବାରୁ କେବଳ ଦିଶୁଛୁ ତେତେ ତୋର । ୩୦ । ଦେଖିବାରୁ ଲୋକେ
ନୋହିବାକୁ ଭ୍ରମଚିତ୍ତ । ଯମା ବହିଛୁ କି ଏତେ ହେମାଙ୍ଗୀ ସଙ୍କେତ ।
ବାସହାନେ ଦିଶେ ମୁଖ । ଦିନ ଥାଉଁ ଉଦୟ କି ବିଶଦମୟୂଖ । ୩୧ । ଶୁଣ
ଏ ଦଶାକୁ ତବ ଅନାଇଁ ବିଗୃହେ । ଧାତାର ଦାରୁଣ ହୋଇ ନାହିଁ ତ
ସଂସାରେ । ଏତେ ଦୁଃଖ ତ ଏହାର । ଏତେ ଏତେ ବିଧି କଲା କେବଣ
ବୁଦ୍ଧିର । ୩୨ । ଭୋଗୀଭୋଗକୁ ଯୋଗିଲା ମଳୟଅନିଳ । ଶିବ ଭାଗେ
କଲା ସିନ୍ଧୁ ମନ୍ଥନେ ଗରଳ । ଦେଲା ଦେବଙ୍କୁ ଅମୃତ । କଳାନିଧି ମଧ୍ୟ
ଦ୍ରବ୍ୟେ କଳଙ୍କ ଅଙ୍କିତ । ୩୩ । ତୀର୍ଥରାଜ ଜଳ କଲା ଲବଣ ସହିତ ।
ଧର୍ମେ ନୀଚ ପରାଭବ ବିଧିଲା ଯେମନ୍ତ । ତଥା କୋମଳ ପିଣ୍ଡକୁ । ବିଧିଲା
ଉଦ୍ଦଣ୍ଡ ଫୁଲ-କୋଦଣ୍ଡ ଦଣ୍ଡକୁ । ୩୪ । ଧୈର୍ଯ୍ୟ ଧରି ନ ପାରି ସେ ପୁଚ୍ଛିଲା
ଏସନ । ଥୋକାଏ ଧନ ହୋଇଲ ବୋଲି ଯାଗୁଁ ଜନ । କ୍ଳେଶ ସ୍ୱଭାବ
ହୃଦୟେ । ନ ବହିବ କଥା ଏହୁ କହ ତ ନିଷ୍ଠୟେ । ୩୫ । ଏ ବଚନେ

---

୨୮ । ଶାକ-ଶାଗ, ପାକ-ସିଝ, ମୃଣାଳନାଳ-ପଦ୍ମନାଡ଼, ଗାତ୍ର ଦେହ,
ଉଶୀର-ବେଣାଚେର, ତପତ-ତତଲ, ଲୌହ—ଲୁହା, କମ୍ୱାଳ—
କାଦୁଅ ।

୨୯ । ମନମଥ—କନ୍ଦର୍ପ ।

୩୦ । ଦନ୍ତିଦନ୍ତ—ହାତୀଦାନ୍ତ, ପିତୁଳା—ପ୍ରତିମା, ରଜତ—ରୂପା,
ତୁଳାକୋମଳାଙ୍ଗୀ—ତୁଳାଭଳି ନରମଦେହୀ, ତୁଳା—ଉପମା ।

୩୧ । ହେମାଙ୍ଗୀ—ସୁନାଦେହୀ, ବିଶଦମୟୂଖ—ଚନ୍ଦ୍ର ।

୩୩ । ଭୋଗୀ-ଭୋଗଲାଳସା, ଅନିଳ-ପବନ, ଗରଳ-ବିଷ, କଳାନିଧି-ଚନ୍ଦ୍ର ।

୩୪ । ତୀର୍ଥରାଜ—ସମୁଦ୍ର, ଧର୍ମେ—ଧର୍ମକଲରେ, ନୀଚ—ହୀନ, ପରାଭବ
—ଅପମାନ, ଉଦ୍ଦଣ୍ଡ—ଦୁଷ୍ଟ, ଫୁଲକୋଦଣ୍ଡ—କନ୍ଦର୍ପଧନୁ ।

ଚଞ୍ଚଳଲୋଚନେ ବାଳା ଗୃହିଁ । ଶଙ୍କିଲା ଅପଣାର ପୋଷିଲା ଶୁକ ତହିଁ ।
ବାଚୁଥିଲା ଶୁଭ ହେଲା । ଶିବଅଙ୍କ ଘଟିଲା ଚତୁର କହୁଥିଲା । ୩୬ । ତାଙ୍କ
ନଗରକୁ ସଖୀ ନେଇଥିଲା ମାଗି । ଜାଣିଲ୍ ସେ କୁମର ମୋହରେ ଅନୁ-
ରାଗୀ । କପାଁ ନୋହିଲେ ଅଇଲା । କହ ବୋଲ୍ ନେତ୍ରାନ୍ତରେ ସଖୀଙ୍କ
ଠାରିଲା । ୩୭। କହୁଛି ହେମ ମଞ୍ଜରୀ ଫଳାଶନ ଗୃହିଁ । ଯେଉଁଦିନ ସ୍ୱପନେ
ଏ ହେଲା ଭୂତସ୍ନେହୀ । ପ୍ରେତ ଅତନୁ ବାଗୁର । ପ୍ରେତପତିପାଶେ ନେବ
ଜୀବନ ଏହାର । ୩୮ । ଶୀତଭାନୁ ଏହି ନାମ ଅଦ୍ୟ ଦ୍ୱିଅକ୍ଷର । ଘୁଣ୍ଡ
ସନ୍ତାପିତ କରୁଅଛୁ ନିରନ୍ତର । ତେଜ ଅନଳ ପ୍ରକାର । ବହିବାରୁ ଦହି
ହେଉଅଛୁ କଳେବର । ୩୯ । ପିକ କଳ ପ୍ର୍ଥମରେ ଅକାର ବହୁଛି ।
ଯାମହିଁ ଅକାର ବିନା ବାଳାରେ ହୋଇଛି । ଜଣା ନ ଯାଉ କି ଦଶା ।
ଏଣୁ ନଦୀ ବିପରୀତ ହୋଇଲା ସୁଦୃଶା ।୪୦। ଶୁକ ଏ ଉତ୍ତର କଲା ଭିତ୍ତିରେ
ଯେ ଲେଖା । ଏ ପୁରୁଷ ବିନୁ ତ ଆନକୁ ନାହିଁ ଦେଖା । ଏହି ଦେଖିଛୁ
ବାଳାକୁ । ଶବସ୍ୱପ୍ନେ ଚିନ୍ତା କରେ ନିରତେ ଲୀଳାକୁ । ୪୧ । ଏହା
ବିରହକୁ ତା ବିରହ ଅଛି ବଳି । ଅନୁରାଗୀ ମଧ୍ୟେ ଏ ଦୁହିଁଙ୍କ ସାର କଲି ।
ଧାତା ସୁନ୍ଦର ସଂସାରେ । ଜନ୍ମ ରାଜା କରଅଛୁ ସ୍ତ୍ରୀ ପୁରୁଷରେ । ୪୨ ।
ତା ହୃଦବନରେ ଜଳୁଅଛି କାମାନଳ । ଘନ ହୋଇ ଘନରସବଶରୁ ଶୀତଳ ।
କରୁ ଡରକରଦନା । ତପତ ଲୋହ ଜମ୍ବାଳ ଏହାର ବେଦନା । ୪୩ । ନ
ହରିବ କିଛି ଚନ୍ଦ୍ରଭାନୁ ସେ ବୋଲାଇ । ଜଦଯୁ ଲଭିଛି ସିନା ଏହି ତାପ
ପାଇଁ । ଶୁଣି ଏ କଥା ତାହାର । ବୋଇଲେ ଲଳନାକୁ ପାଳନ ପୁନଃ
କର । ୪୪ । ଦେଇ ଲେଖ ଅତ୍ୟନ୍ତ କାତର କାମ୍ଭ ରଖ । ଶୁକର ଏ

---

୩୭ । ଅନୁରାଗୀ—ସ୍ନେହୀ ।

୩୮ । ଅତନୁ—କନ୍ଦର୍ପ, ପ୍ରେତପତି—ଯମ ।

୩୯ । ଶୀତଭାନୁ—ଚନ୍ଦ୍ରସୂର୍ଯ୍ୟ, ନିରନ୍ତର—ସର୍ବଦା, କଳେବର—ଦେହ ।

୪୦ । ପିକ—କୋଇଲି, କଳ—ରବ, ଯାମ—ଦଣ୍ଡ ବା କ୍ଷଣ ।
ଏଠାରେ ଯାମ ଯମ ତୁଲ୍ୟ, ଦୀନ—ଦୁଃଖୀ ।

୪୧ । ଭିତ୍ତି—କାନ୍ଥ, ନିରତେ—ସର୍ବଦା ।

୪୨ । ଘନ—ମେଘ, ଘନରସ—ଜଳ, ଡରକରଦନା—ତାଳମୂ ଚରଣ ମଞ୍ଜୀରର
ଦନ୍ତଯୁକ୍ତା ସ୍ତ୍ରୀ ।

ବାଣୀ ଶୁଣି ସର୍ବେ ଲଭି ସୁଖ । ସେ ବୋଇଲେ ଅମ୍ଭେ ନାରୀ । ପ୍ରଥମରେ ଲେଖିବୁଟି ପତ୍ରିକା କି କରି । ୪୫ । ରବିକର ପରଶେ ପଦ୍ମକୁ କରେ ଦୋଷ । ପଲ୍ଲବେ ଲତା ଉପସ୍ଥିତରେ ମଧୁମାସ । ଚୂତ ମୁକୁଳ ଅଶନ । ହୋଇଲେ ସିନା କହଇ କୋକିଳ ବଚନ । ୪୬ । ଘନ ଗରଜିଲେ ସିନା ମୟୂର ଅନାଇଁ । ଅନନ୍ଦରେ ନୃତ୍ୟ କରି ବାଣୀ ପ୍ରକାଶଇ । ଶାରି ବୋଇଲା ଏ ସତ । ତେବେ ପ୍ରେମପତ୍ର ଯାଇ ଅଣୁ ଅମ୍ଭ ଦୂତ । ୪୭ । ମେଘମାଳା ପଠିଅଇ ବୋଧି ବୃଦ୍ଧଗୃଧ୍ରୀ । ଯେତେ କହିଲେ ତା ଅଗେ କହିବା ବିସ୍ତାରି । ଗଲା ସେ କୁମାର ପାଶ । ନାରୀମାନସ ଉଲ୍ଲାସ ଛନ୍ଦ ହେଲା ଶେଷ । ୪୮ । ମହିଷ ବାଜସ୍ତ୍ରୀ ଅତି ସୁରଭି ସ୍ୱରୂପ । ସଦାଶିବ ସୁଖଦାନ କରଣେ ଲୋଲୁପ । ରାମ ଦୁର୍ଗା ଇଷ୍ଟଦେବୀ । ଉପଇନ୍ଦ୍ର ଶାରବର ଦୁଃଖନାଶେ ଭାବି । ୪୯ ।

## ଅଷ୍ଟାଦଶ ଛାନ୍ଦ

( ବୃଦ୍ଧଗୃଧ୍ରୀ ଚନ୍ଦ୍ରଭାନୁର ପତ୍ର ନେଇ ଲାବଣ୍ୟବତୀ ପାଶେ ପ୍ରବେଶ )

ରାଗ—ମାଳବ

ଶୁଣ ବିଶୁଦ୍ଧ ବୁଦ୍ଧ ଏଥୁ ଅନ୍ତେ । ଚଉରୁ ଚଉ ଚରଣ ସୁଚିତ୍ତେ । ୧ ।

---

୪୬ । ରବିକର—ସୂର୍ଯ୍ୟକିରଣ, ମଧୁମାସ—ବସନ୍ତଋତୁ, ଅଶନ—ଭକ୍ଷ ।

୪୭ । ନୃତ୍ୟ—ନାଚ ।

୪୯ । ମହିଷ ବାଜସ୍ତ୍ରୀ—ରାକ୍ଷସ ଜମ୍ଭୁକାରୀ,ମହିଷାସୁର ନାଶକାରି, ସୁରଭି—ସୁନ୍ଦର, ଦେବତାଙ୍କଗାଈ, ଲୋଲୁପ—ଲୋଭି ।

ବଣିକ ଶୁଆକୁ ନେଇଯାଇ ଥିଲା । ଶୁଆ ସେଠାରେ ଚନ୍ଦ୍ରଭାନୁକୁ ଦେଖି ଏ ସବୁ ବୃତ୍ତାନ୍ତ ଜାଣି ଫେରିକହି ଲାବଣ୍ୟବତୀକି କହନ୍ତେ ଲାବଣ୍ୟବତୀ ତାଙ୍କଠାରେ ପତ୍ର ଦେବାକୁ କହିବାରୁ ସଖିମାନେ କହିଲେ ସ୍ତ୍ରୀର ଅଗକରି ପତ୍ରଦେବା ଉଚିତ ନୁହେ । ଲାବଣ୍ୟବତୀ ବୃଦ୍ଧଗୃଧ୍ରୀକି ପଠାଇ ଚନ୍ଦ୍ରଭାନୁଙ୍କଠାରୁ ପତ୍ର ଅଣିବାର ସମସ୍ତ ବନ୍ଦୋବସ୍ତ କଲେ ।

---

## ଅଷ୍ଟାଦଶ ଛାନ୍ଦ

୧ । ବିଶୁଦ୍ଧ—ପବିତ୍ର, ଶ୍ରେଷ୍ଠ, ବୁଧ—ଜ୍ଞାନୀ, ପଣ୍ଡିତ, ଚଉ—ଅଷ୍ଟର୍ଯ୍ୟ, ଚରଣ—ବିଷୟ, ଅଚରଣ ।

କୁମର ଶ୍ଯୁଦମିନ୍ଦ୍ର ସଙ୍ଗେ ବସି । ବୀଣାଜୀଣା ବାଣୀ ପ୍ରସଙ୍ଗେ ଭାଷି । ୨ ।
ପ୍ରେମବୀଜ ତାର ରୋପିତ ହୃଦେ । ରୋମାଞ୍ଚିତ ବ୍ୟାଜେ ଅଙ୍କୁରଜଦେ ।୩।
ତାହାକୁ ବୃଦ୍ଧି କରିବାର ପାଇଁ । ସ୍ୱେଦ ସଲିଳ ପ୍ରକାଶିତ ହୋଇ । ୪ ।
ବୋଲଇ ଅଦ୍ଭୁତସ୍ଥଳୀ ସୁନ୍ଦରୀ । ଫୁଲରୁ ଫଳ ଯେଣୁ ଜାତ କରି । ୫ ।
ଏ ଘେନି କରଇ ବିବେକ ବଣା । ଫୁଲରୁ ଫଳ ଜାତ ଥିଲା ଶୁଣା । ୬ ।
ଶଙ୍ଖ ଉପରେ ପଦ୍ମ ବିକଶିତ । ଏହୁ ନୁହଇ କି ଅତି ଅଦ୍ଭୁତ । ୭ ।
ପଦ୍ମ ମଧ୍ୟରୁ ଶଙ୍ଖ ଜାତ ଶୁଣି । ବିସ୍ତୁ ବହିଛନ୍ତି ବିତନ ପୁଣି । ୮ ।
ନ ପୁଣି ଚିତ୍ତରୁ ହୋଏ ବିସୋର । ଭାବି ନିଧି ନାମ ଦେଲେ କୁବେର ।୯।
ସଂସାରେ ପ୍ରକଟ ହେବାକୁ ଧାତା । ସଂଖ୍ୟା ଗଣନାରେ ରଖିଲା କି ତା ।୧୦।
ପୁଣି ନୟନ ଯୁଗେ ଦେଖିଅଛୁ । କେମନ୍ତ ପ୍ରକାରେ ପାରିବ ମୁର୍ଚ୍ଛି । ୧୧ ।
ଏମନ୍ତ ପ୍ରକାଶ କଥନ ବେଳେ । ବ୍ରହ୍ମଗୃହୀ ଆସି ଛାମୁରେ ମିଳେ । ୧୨ ।
ନମସ୍କାର କରି ଦେଇ ଆସନ । ସାଧୁତ ଶୁକ ନ ଦେଖି ଉଚ୍ଛନ । ୧୩ ।
ଭାବେ ମୋର ଯେତେ ସୁକୃତ ଥିଲା । ସ୍ୱପ୍ନେ ଦର୍ଶନ ଦାନ ଭୋଗ ହେଲା ।୧୪।
ଏବେ ତ ସୁକୃତ ହୋଇଛୁ ଊଣା । କାହିଁକି କରିବ ବାଳା କରୁଣା । ୧୫ ।
ଦୁର୍ଲ୍ଲଭ ପଦାର୍ଥେ ଦେବାରୁ ମନ । ଆଜ ହୋଇଲା ମୋ ମରଣ ଦିନ । ୧୬ ।
ସେ ବାଣୀ ସଙ୍ଗେ ଜୀବନ ଯିବଟି । ରହୁ ବ୍ୟାକୁଳ ମୋତେ ନ ଦେବୁଟି ।୧୭।
ଦ୍ୱିଜ ରୀତି ଦେଖି ବିଗ୍ରହ କଲା । ନ ଭଜିଲା ଶଙ୍କା ଏହାର ହେଲା । ୧୮ ।

---

୩ । ପ୍ରେମବୀଜ—ପ୍ରେମମଞ୍ଜି, ରୋମାଞ୍ଚିତ—ରୋମଟାଙ୍କୁରିବା, ବ୍ୟାଜେ—ଛଳନାରେ, ଅଙ୍କୁର—ଗଜା ।

୪ । ସ୍ୱେଦ ସଲିଳ—ଝାଳ ।

୫ । ଅଦ୍ଭୁତସ୍ଥଳୀ—ଆଶ୍ଚର୍ଯ୍ୟ ସ୍ଥାନ ।

୬ । ବିବେକ—ବୁଦ୍ଧି ବିଗ୍ରହ, ବଣା—ଭୁଲ ।
ଫୁଲ ଦେହରୁ ଫଳ ହୁଏ ମାତ୍ର ଲାବଣ୍ୟବତୀର ଫଳ ସ୍ୱରୂପ କୁଚ ହେବାରୁ ସେ ପୁଷ୍ପବତୀ ହେଲା—

୭,୮ । ବିକଶିତ—ପ୍ରକାଶିତ, ବିତନ—ଆଶ୍ଚର୍ଯ୍ୟ ।

୯ । ବିସୋର—ଭୁଲିବା, ନିଧି—ସମୁଦ୍ର, ଏଠାରେ ଲାବଣ୍ୟନିଧି । ...

୧୧ । ନୟନଯୁଗ—ଚକ୍ଷୁଦୁଇ, ମୁର୍ଚ୍ଛି—ଛାଡ଼ି ।

୧୩ । ଆସନ—ବସିବାଜାଗା ।

୧୪-୧୫ । ସୁକୃତ—ପୁଣ୍ୟ, କରୁଣା—ଦୟା ।

୧୭ । ଦ୍ୱିଜ—ବ୍ରହ୍ମଗୃହୀ, ରୀତି—ଢଙ୍ଗ, ଶଙ୍କା—ଭୟ ।

ଅଣଙ୍କା କାହିଁକି ନ ଥିବ ପୁଣି । ସ୍ୱର୍ଗକୁ ପକାଉଅଛୁ ନିଃଶ୍ରେଣୀ । ୧୯ ।
ପୁଣି ଚନ୍ଦ୍ରକୁ ବଢ଼ାଉଛୁ ପାଣି । ତମ ରଜନୀରେ ଦେଖିବ ପୁଣି । ୨୦ ।
କହିଲ ଏମନ୍ତ ବଚନ ଭଲ । କରୁଣା-ବୃକ୍ଷ କି ନିଷ୍ଫଳ ଫଳ । ୨୧ ।
ମାନସ ଦେଇ ସେବିଲେ ମହେଶ । ପ୍ରାଣୀର ବ୍ୟାଧି କି ନୁହଇ ନାଶ ।୨୨।
ଯାଚକ ଜନ ଦାନ ମାଗି କର୍ଣ୍ଣେ । ଶୂନ୍ୟେ ଅସିଛୁ କି ଶୁଣିଛ କର୍ଣ୍ଣେ । ୨୩ ।
ମେଘ କି କରେ ଅଳପ ବରଷା । ନିଷ୍ଫଳ କାହିଁ ହୋଇଛୁ ତପସ୍ୟା । ୨୪ ।
ଏ ବାଣୀ ରାଜାଙ୍କୁ ଧରି ରଖିଲା । ଯମ ପାଶେ ପ୍ରାଣ ପଳାଇ ଥିଲା । ୨୫ ।
ଦୁଷ୍ଟ ସଂଶୟକୁ ପକାଇ ହାଣି । ଯାବତ ବାଧିକି ପକାଇ ପୁଣି । ୨୬ ।
କନ୍ୟା ସ୍ୱପ୍ନରେ ଯେମନ୍ତ ଦେଖିଲା । ବାଡ଼ରେ ଦେବା ଚିତ୍ରରେ ଲେଖିଲା ।୨୭।
ଦଣ୍ଡ ଦଣ୍ଡକରେ ଫୁଲକୋଦଣ୍ଡ । ସେ ଦନୁ ଯେଉଁ ରୂପେ ଦେଲା ଦଣ୍ଡ ।୨୮।
କାହିଁକି ବୋଇଲା ପୁରୁଷ ସାର । ବାଳାଠାରେ ନାହିଁ ବିନୟ ଛାର । ୨୯ ।
ଏମନ୍ତରେ ଯେଉଁ ବାଳା ସୌନ୍ଦର୍ଯ୍ୟ । ଗୃହିଁ ରହିବ ନାହିଁ ପଶୁ ଧୈର୍ଯ୍ୟ ।୩୦।
ପାଷାଣ ନେବ ତରଳ ପଦବୀ । ଏଥି ଉତ୍ତରେ ଆଉ କି କହିବି । ୩୧ ।
ଧାତା ଦାରୁଣ ହେବା ନୁହେ ବଡ଼ । ନ ଜାଣେ ରସଜନ୍ତୁ ବେଦଜଡ଼ ।୩୨।
ଏଥି ଉତ୍ତରୁ ଅମ୍ବର ପ୍ରବେଶ । ସଖି ସଙ୍ଗେ ଦୂତ ପେଷିଲେ ପାଶ । ୩୩ ।
ତୁମ୍ଭର ଭାଗ୍ୟ ଅଛୁ ବଳଅର । ଶୁଣିଲା ସଖୀ ହେଲା ସୀତ୍କାର । ୩୪ ।
ଚତୁରଗୁଣେ ନ ଦେଲା ଚିତ୍ର । ବହୁତ କହି କି ହୋଇବ ଆଉ । ୩୫ ।
ଯିବାକୁ ଜୀବ କଣ୍ଠେ ଅଛୁ ରହି । ଲେଜହାଅ ତାକୁ ପଟିକା ଦେଇ । ୩୬।
ଏ ବାଣୀ ଶ୍ରବଣେ ମିତ୍ରକୁ ଗୃହିଁ । କୁମାର କହିଲା ଗଦ୍‌ଗଦ ହୋଇ ।୩୭।
ଶୁଭଛୁ ଯେତେ ତା ସୁନ୍ଦରପଣ । ତେତେକି ଅଛୁ ଅନୁରାଗ ପୂଣ । ୩୮ ।
ତାକୁ ଲେଖିବାକୁ ବିନୟ ଭାବେ । ବଚନେ ଆଉ କି ଜଗତେ ଥିବେ ।୩୯।
ଭଅଉଁ ଭଅଉଁ ବିନୟ ଭାଷା । ଶେଷ ହୋଇଯିବ ଜୀବନ ଆଶା । ୪୦ ।
ଗଲେ ଏ କଥାକୁ ନାହିଁ ଶୋଚନା । ଦୁଃଖ ପାଇବ ମଞ୍ଜୁଳ ଲୋଚନା ॥

---

୧୯ । ନିଃଶ୍ରେଣୀ—ନିଶୁଣି, ସିଡ଼ି ।
୨୦-୨୧ । ପାଣି—ହାତ, ତମ ରଜନୀ—ଅନ୍ଧାରରାତି, ବିମନା—ବିଫଳ ।
୨୨ । ମାନସ—ମନ, ବ୍ୟାଧି—ରୋଗ ।
୨୩ । ଯାଚକ—ମାଗିବାଲୋକ, କର୍ଣ୍ଣେ—କର୍ଣ୍ଣରାଜାକୁ ।
୨୫ । ଦୁଷ୍ଟସଂଶୟ—ମନ୍ଦବିଗ୍ଭର ।
୩୧ । ପାଷାଣ—ପଥର, ତରଳପଦବୀ—ତରଳିଯିବା ।
୩୨ । ଦାରୁଣ—ନିଷ୍ଠୁର, ଜନ୍ତୁ—ଅରସିକ ।
୪୧ । ମଞ୍ଜୁଳଲୋଚନା—ସୁନ୍ଦର ଚକ୍ଷୁଯୁକ୍ତା ।

ଯଥାକଥା କର ତାକୁ ଜଣାଣ । ଲେଖିବା ତୁଳିକା କାଗଜ ଆଣ । ୪୨ ।
ଆଣି ଲେଖିଲେ ବିସ୍ତର ବିସ୍ତର । ପତ୍ରିକା ଘେନି ଗଲେ ବ୍ରହ୍ମସୂତ୍ର । ୪୩ ।
କହିବାକୁ ଯେତେ କହିବା ବାଣୀ । ଶେଷ ହିଁ ଶେଷ ନ କରିବେ ପୁଣି ।୪୪
ଦୂତ ସିଂହଳ ଦ୍ୱୀପରେ ପ୍ରବେଶ । ସୁମୁଖୀ ଦେଖି ହେଲା ଅତି ତୋଷ ।୪୫।
ଅବରୋଧକୁ ସଙ୍ଗେ ଘେନିଗଲା । ପୁର ପ୍ରାଙ୍ଗଣେ ନେଇ ବସାଇଲା । ୪୬ ।
କୁମାରୀ ବସିଛି ସଖୀଙ୍କ ସଙ୍ଗ । ଶୁକ କହୁଛି କୁମାର ପ୍ରସଙ୍ଗ । ୪୭ ।
ଏକାଳେ ମିଳ କହେ ଏ ଭୂପକୁ । ଯେଉଁ ଗୋସାଇଁ ତୋ ପ୍ରାଣ ପାଶକୁ ।୪୮।
ଯାଇଥିଲେ ଆଣିଛନ୍ତି ପ୍ରମୋଦେ । ମୋହନ ମନ୍ତ୍ରର ପତ୍ରର ମୁଦେ । ୪୯ ।
ଚଇଁକନେ ବାଳା ପଚାରିଲା କାହିଁ । ବୋଇଲା ଅସିଛି ଦ୍ୱାରେ ବସାଇ ।୫୦।
କି କୃତ୍ୟ କଲୁ ମନ୍ତ୍ରୀସୁତା ବୋଲେ । ଦେଖିଥିବ ତାକୁ ଦୁଆର ପାଳେ ।୫୧।
ସେ ବୋଲେ ସେ ଜାଣେ ଚନ୍ଦ୍ରବଦନ । ସ୍ତିରୀ ବୋଲି ଚହି ଛାଡ଼ନ୍ତି ଜନ ।୫୨।
ଏଥିରେ ହରଷ ଅଧିକ ହେଲା । ଦ୍ୱାରାନ୍ତର ହୋଇ ଜେମା ରହିଲା । ୫୩ ।
ଦ୍ୱିଜକୁ କହିଦେଲା ମେଘମାଳା । ନମସ୍କାର କରୁଅଛନ୍ତି ବାଳା । ୫୪ ।
ମନୋରଥ ଅସ୍ତୁ ହେଉ ଏ ବାଣୀ । କଲ୍ୟାଣ କଲା ଯୋଡ଼ି ବେନି ପାଣି ।୫୫
କଣ୍ଠାରୁ ଚିଠାଉ ବାହାର କଲା । ଏଠାରୁ ଏ ଛାନ୍ଦ ଶେଷ ହୋଇଲା । ୫୬ ।
ରାମକେଳି ରମ ରାମବିନୋଦୀ । ଉପେନ୍ଦ୍ର ବୀର ସନ୍ତାପ ଛେଦି । ୫୭ ।

---

୪୪ । ଶେଷ—ଶେଷଦେବ, ଅନନ୍ତ, ଏହାଙ୍କର ସହସ୍ର ମୁଖ, ଏ ସହସ୍ରେ ମୁଖରେ ଶେଷକରି ପାରିବେ ନାହିଁ ।

୪୯ । ପ୍ରମୋଦେ-ଆନନ୍ଦରେ, ପତ୍ରମୁଦେ-ବନ୍ଧଗଣ୍ଠିରେ ।

୫୧ । ଦୁଆରପାଳେ—ଦ୍ୱାରୀମାନେ ।

୫୭ । ରାମକେଳି-ପର୍ଶୁରାମ ଜୟକାରୀ, ରମ୍ୟ—ସୁନ୍ଦର, ବିନୋଦୀ-କୌତୁକୀ ।

ବ୍ରହ୍ମସୂତ୍ର ଲବଣ୍ୟବତୀ ପାଶରୁ ଯାଇ ଚନ୍ଦ୍ରଭାନୁକୁ ଦେଖିଲା ସେ ଲବଣ୍ୟବତୀ ସକାଶେ ଉତ୍କଣ୍ଠିତ ଅଛି । ତହୁଁ ତାହାକୁ ଲବଣ୍ୟବତୀ ପଠାଇଛି କହି ପତ୍ର ମାଗନ୍ତେ ଚନ୍ଦ୍ରଭାନୁ ଲବଣ୍ୟବତୀ ପାଖକୁ ପତ୍ର ଯାହା କି ବ୍ରହ୍ମସୂତ୍ର ସଙ୍ଗରେ ନେଇ ଲବଣ୍ୟବତୀକି ଦେଲା ॥

## ଊନବିଂଶ ଛାନ୍ଦ

( ଲାବଣ୍ୟବତୀର ପତ୍ର ପ୍ରାପ୍ତି ଏବଂ ପଢ଼ିବା )

ରାଗ—କାନଡ଼ା

ଗୃହି ମହୀଦେବ ହସ୍ତରେ ପତ୍ରିକା ବହୁ ପୁଲକିତ ଗାତ୍ରକୁ । କର ଜାତଲ୍ଲକ ବେନି ନେତ୍ରକୁ । ଚଞ୍ଚଳେକ୍ଷଣୀ ଅଞ୍ଚଳେ କର କରି ପାଏଡ଼ା କଲା ପତ୍ରକୁ ସେ । ସୁନ୍ଦରୀ । ଘେନି ଶିରେ ଲଗାଇଲା ସତ୍ୱରେ । ଶଶୀ କରଗତ ଚନ୍ଦ୍ର ଶତ୍ରୁରେ । ମୁଦରେ କୁମୁଦ ହାସକୁ ପ୍ରକାଶି ମୁଦ ଭାଙ୍ଗିଲା କି ତରେ ସେ । ସୁନ୍ଦରୀ । ୧ ।

ଯୋଖିଲା ଏମନ୍ତ ଦେଖିଲା ଅଲକ୍ତେ ଲେଖିଲା ଅକ୍ଷର ପନ୍ତିକ । କେଉଁ ପୃଷ୍ଠେ ରଙ୍ଗ କଲା ମୋହକ । ବଢ଼ିଲା ଆନନ୍ଦସାଗର ପଢ଼ିଲା ରସଗର୍ଭ ଭାରତୀକି ସେ । ସୁନ୍ଦରୀ । ପଦ ପଦକେ ପଦବୀ ପ୍ରଦାନ । ମୋହ ହେଲେ ଶ୍ରୁତିମନ ନୟନ । ମାରଦର ଦୂର ହେବାକୁ ପ୍ରଥମେ ଉରଜଶମ୍ଭୁ ବନ୍ଦନ ରେ । ସୁନ୍ଦରୀ । ୨ ।

ଅତି ସନ୍ଦର୍ଭବତୀ ମୁନି ଧୈର୍ଯ୍ୟ କମ୍ପାକାରୀ ଶମ୍ପା ଗଜରୀ । ମହୀ-ମହିଳାର ଚମ୍ପାଚଉରୀ । ଯାହା ସୁଷମା ସମାନ ନୋହି ହରଅଙ୍ଗେ ଲଭିଲା ଗଜରୀ ରେ । ସୁନ୍ଦରୀ । ଯେଣୁ ପରମାନନ୍ଦ ସମୁଦାୟ । ଦୀପ୍ତି ମଣ୍ଡିତ ସ୍ନେହ ସୁଧାମୟ । ଶୋଭାସିନ୍ଧୁ ଜାତ ରମା କି ଚନ୍ଦ୍ରମା ଛୁଇଁ ନାହିଁ ଏ ସଂଶୟ ରେ । ସୁନ୍ଦରୀ । ୩ ।

---

## ଊନବିଂଶ ଛାନ୍ଦ

୧ । ମହୀଦେବ—ବ୍ରାହ୍ମଣ, ପତ୍ରିକା—ଚିଠି, ପୁଲକିତ—ଆନନ୍ଦିତ, ଗାତ୍ର—ଦେହ, ଚଞ୍ଚଳେକ୍ଷଣୀ—ଶୀଘ୍ରଦୃଷ୍ଟିନୀ, ଶିରେ—ମୁଣ୍ଡରେ, ଶଶୀ—ଚନ୍ଦ୍ର, କରଗତ—ଅମୃତ, ମୁଦରେ—ଆନନ୍ଦରେ, ମୁଦ—ବନ୍ଧ ।

୨ । ଅଲକ୍ତେ—ଅଲତାରେ—[ଲାଲସିଆହି] । ଅକ୍ଷର ପନ୍ତି—ଅକ୍ଷରସବୁ, ରସଗର୍ଭ—ରସପୂର୍ଣ୍ଣ, ଭାରତୀ—କଥା, ପଦବୀ—ପୁରସ୍କାର, ସ୍ୱର୍ଣ୍ଣପଦାଦି, ଶ୍ରୁତି—କାନ, ମାରଦର—କନ୍ଦର୍ପ ବାଧା, ଉରଜଶମ୍ଭୁ—ସ୍ତନ ।

୩ । ଧୈର୍ଯ୍ୟକମ୍ପାକାରୀ—ବିବେକ ଅସ୍ଥିରକାରୀ, ଶମ୍ପାଗଜରୀ—ବିଜୁଳି ପରି ଉଜ୍ଜ୍ୱଳଦେହା, ମହୀ - ପୃଥିବୀ, ମହିଳା—ସୁନ୍ଦରୀ ସ୍ତ୍ରୀ, ପରମାନନ୍ଦ—ଶ୍ରେଷ୍ଠସୁଖ, ରମା—ଲକ୍ଷ୍ମୀ ।

ଶୋଭା ପ୍ରଶଂସାରେ ସଂସାରେ ଜଣେ ତ୍ରି ନାହିଁ ତୋ ରୂପ ସମସର । ଉପମା ଏ ରହିଲେ ଅପସର । ବରବର୍ଣ୍ଣନା ବର୍ଣ୍ଣନା ମୁଁ ନ କଲି ଏହି କଥାକୁ ବିଗୁର ରେ । ସୁନ୍ଦର । କବିଗଣେଶ ଗଣେଶ ହୋଇବ । ଶେଷ-ବଦନକୁ ପୁଣି ବହିବ । ବିଧାତା ଅୟୁଷ ପାଇଲେ ତୋ ଶୋଭା-ଲେଶ ଶେଷ ବା କହିବ ରେ । ସୁନ୍ଦର । ୪ ।

ସୁରନଗରନାଗରୀ ଶିରଭୂଷା ଯୋଷାରତନ ରସାଳସି । କେତେ ବାର ଗଙ୍ଗାରେ ଥିଲି ଝାସି । ଶିର ଦେଇଣ ଶିଶିରକରଶିର ମନାଇବା ପୁଣ୍ୟ ଦଶି ରେ । ସୁନ୍ଦର । ହେଲି ଜଣାଣ ଦେବା ଯୋଗ୍ୟ ମୁହିଁ । ଏ ପୁଣ୍ୟରୁ କି ଏଡ଼େ ଭାଗ୍ୟ ହୋଇ । ପ୍ରଭୁ ସେବକଙ୍କୁ ବଡ଼ କଲେ ତୋର ଅନୁଗ୍ରହ ଫଳ ଏହି ରେ । ସୁନ୍ଦର ।୫।

ରଙ୍ଗରାଜୀବଚରଣରେ ଶରଣ ପଶିଲି ଏ ଯେଣୁ ଭରସା । ଗଜ ନୋହିଲେ ତୋ ଗତିସଦୃଶା । ଶରଣେ କାରଣ କଲୁ ଅଙ୍ଗୀକାର ବାରଣ ଗତି ପ୍ରଶଂସା ରେ । ସୁନ୍ଦର । ଆଶା କେବେହେଁ ନୋହିବ ଛେଦିତ । ଶ୍ରବଣରେ ହୋଇଲଣି ମୋହିତ । ରସଉଦୟା ସୁହୃଦୟା ଦୟାଳୁ ନାମ ଜଗତେ ବିଦିତ ରେ । ସୁନ୍ଦର ।୬।

ମନମୀନ ହୃଦସରୋବରରେ ଥିଲା କଟାକ୍ଷ ବନଶୀ ପକାଇ । ତାର ବଦନେ ପ୍ରେମସ୍ୱାଦୁ ଦେଇ । ଆକର୍ଷି ନେଇ ଉରଜ କଳସିରେ ମଦାଳସୀ ଅଛୁ ଥୋଇ ରେ । ସୁନ୍ଦର । ତୋର ମୁଖ ମନୋରମ ମନ୍ଦିରେ । ମୋର ନୟନେ ରହିଲେ ବନ୍ଦିରେ । ବନ୍ଦୀ ହୋଇଲେ ତ ଏ ଦୁହିଙ୍କ ସୁଖ କଥନ ନୁହେ ବନ୍ଦିରେ ରେ । ସୁନ୍ଦର ।୭।

---

୪ । ଅପସର—ଦୂର, କବିଗଣେଶ—କବିଶ୍ରେଷ୍ଠ ।

୫ । ସୁରନଗରୀ—ଦେବପୁର, ନାଗରୀ—ସ୍ତ୍ରୀ, ଶିର—ମୁଣ୍ଡ, ଭୂଷା—ଅଳଙ୍କାର, ଦେବପୁର ନାରୀଙ୍କର ମୁଣ୍ଡଉପରେ ତୁହି । ଶିର—ଶିବଙ୍କ ପାଖରେ ଏକାଗ୍ର ଧ୍ୟାନକରି ଶୂଳରେ ମୁଣ୍ଡ ହାଣିଲେ ତାକୁ ଶିର କହନ୍ତି, ଶିଶିର କର ଶିର—ଚନ୍ଦ୍ର, ଯାହାଙ୍କ ମସ୍ତକରେ ଅର୍ଥାତ୍ ମହାଦେବ ।

୬ । ରଙ୍ଗରାଜୀବ—ରକ୍ତପଦ୍ମ, ଗଜ—ହାତୀ, ବାରଣଗତି—ଗଜଗତି ବା ହାତୀପରି ଗ୍ଳଲି ।

୭ । ସରୋବର—ପୋଖରୀ, ବନ୍ଦୀ—ଭାଟ ।

ବିରହ ଅନଳ ପ୍ରଜ୍ୱଳିତ ଅତି ମୋତେ କରିବ ବୋଲି ଦାହ । କିପାଁ ନ ଦହେ ଘେନେ ମୁଁ ସନ୍ଦେହ । ତୋ ପ୍ରେମନୀର ହୃଦୟରେ ପଡ଼ିଣି ଯେଣୁ ଜରଜର ଦେହ ରେ । ସୁନ୍ଦରି । ଜୀବ ନେବ କାମ ଅଛି କଠାଳି । ଯନ୍ତ୍ରକର ରଖିଛି ଏହା ଭଲି । ଟଳିଗଲେ ଘଟ ଟାଳିଯିବ ସିନା ପରିପୂର୍ଣ୍ଣ ସ୍ନେହ ବାରି ରେ । ସୁନ୍ଦରି ।୮।

ଅବଧାନେ ଅଛି ଦେବାରେ ଦେବତା ଭୋଗ ସେ ଦାନ୍ତରେ ବିହୀନ । କରେ ନିମିଷ ହତ ଦରଶନ । କୁଚ-କାଞ୍ଚନ ଶିଖରରେ ବିହାରି ଅଧରେ ଅମୃତ ପାନ ରେ । ସୁନ୍ଦରି । ହୋଇବାରୁ ଊରୁରମ୍ଭାରେ ସ୍ନେହୀ । ମୋକ୍ଷପଦ ନାବିରେ ଅଛି ରହି । ଅତି ଦୁର୍ଲ୍ଲଭ ହୋଇ ତୋତେ କେ ଅଛି କେବଳ ଦୁର୍ଲ୍ଲଭ ତୁହି ରେ । ସୁନ୍ଦରି । ୯ ।

ଗୁଣସରିତ ସଙ୍ଗ୍ରହକୁ ସାଗର ବିଗ୍ରହ ନିଶ୍ଚୟ ତୋହର । ସତେ ରସ ରତନର ଆକର । ତହିଁ ମହତୀ ଯୋଗ ଏବେ ପଡ଼ିଛି ମଜ୍ଜନେ କୃତାର୍ଥ କରରେ । ସୁନ୍ଦରି । ଏକେ କାମଧେନୁ ପରି ରମ୍ଭୋରୁ । ଦୁକେ ତୁ ଯେ ସୁରତ ସୁରତରୁ । କାହାକୁ କହିବି ଦୁର୍ଦ୍ଦଶା ମୋହର ନ ତୁଟିଲେ ଏ ଉତ୍ତାରୁ ରେ । ୧୦ ।

ଘନେ କୁଳିଶ ଚନ୍ଦନେ ଅହି ଥିଲେ ଭୟରୁ ଗୃତକ ପବନ । ତହିଁ ସେନେହ ଯ୍ୱନ୍ତ୍ର କି ଘେନ । କର୍ମକୁ ଗୁହିଁ ନିର୍ଦ୍ଦୟ ହେଲେ ମୋତେ ଛାଡ଼ି ନ ପାରିବ ଧନ ରେ । ସୁନ୍ଦରି । କାମ କରୁ ପଛ କଲେ ଅଶୁଭ । ଗନ୍ତୁ ପ୍ରାୟ ମୋର ଅଣା ଆରମ୍ଭ । ହରଆଦି ଦେବେ ବିରୋଧୀ ହୋଇଲେ ଛାଡ଼ଇ କି ସୁଧାଲୋଭ ରେ । ସୁନ୍ଦରି । ୧୧ ।

---

୮ । ଦାହ—ପୋଡ଼ିବା, ଭଲି—ଚନ୍ଦ୍ରାକର, ଘଟ—ଦେହ, ପରିପୂର୍ଣ୍ଣ—ପୁରିଥିବା ।

୯ । କାଞ୍ଚନ ଶିଖରି—ସୁନା ପର୍ବତ, ମେରୁ, ଊରୁରମ୍ଭା—ଯାହାର ଜଙ୍ଘ କଦଳିଗଛ ପରି ଗୋଲ ଓ ଗଡ଼ାଣିଆ ।

୧୦ । ଗୁଣ ସରିତ—ଗୁଣ ନଦୀ, ବିଗ୍ରହ—ପ୍ରତିମା, ଆକର—ଖଣି, ସୁରତରୁ—କଳ୍ପଦ୍ରୁମ ।

୧୧ । ଘନ—ମେଘ, କୁଳିଶ—ବଜ୍ର, ଅହି—ସର୍ପ, ହର—ମହାଦେବ, ବିରୋଧି—ବିପକ୍ଷ ।

ହୃଦକେଦାରରେ ଅନୁରାଗବୀଜ ଅତି ଯତ୍ନ କରି ବୁଣିଛୁ । ଭଲ କାଳ ହେଲ ଯହୁଁ ଜାଣିଛୁ । କମେ ସେ ଅଙ୍କୁର ଘନରସ ବୃଷ୍ଟି ବିହୀନେ ଦୁଃଖୀ ହୋଇଛୁ ରେ । ସୁନ୍ଦର । ନ କରିବ କି କରିବ ବରଷା । ପଛେ ତୁ ଯେ ମହାଜ୍ୟୋତିଷ ଯୋଷା । ନାସିକା ମୋତି ବୃହସ୍ପତି ଚଳନ ଯୋଗକୁ ଟେକିଛୁ ଆଶାରେ । ସୁନ୍ଦର । ୧୨ ।

ଅଛୁ ଯେଉଁ ଜୀବ ବୀଣା କଣା ବାଣୀ କଣା ଅଙ୍ଗଦେଶେ ତୋହର । କେଡ଼େ ଭରସା ସନ୍ତାପ ବ୍ୟାଧର । ଶମନପାଶେ ଭଳିକି ପାଶେ ଧରି ନେବାପାଇଁ ତତପର ରେ । ସୁନ୍ଦର । କଲ୍ ଗୋଚର ମୋର ଦୋଷ ନାହିଁ । ହେବ କାହାକୁ ଏ ଅଯଶ ସହି । ତୋତେ ଏମନ୍ତ ବୋଲିବା ଅଧିକାର ମୁଁ ଏବେ ପାଇଲି କାହିଁରେ । ସୁନ୍ଦର । ୧୩ ।

ନବବନିତା ଅପୂର୍ବ ପୁଷ୍ପଲତା ପ୍ରକାଶ ଷୋଳଜାତି ଫୁଲ । ତିଳପୁଷ୍ପ କୁନ୍ଦ ଶୁଭ୍ର କମଳ । କୁମୁଦ ବନ୍ଧୁଳି ପାଟଳୀ, କୀଅଳୀ, ଚମ୍ପା ଶିରୀଷ ଉତ୍ପଳ ରେ । ସୁନ୍ଦର ! ଷଣକୁସୁମ, ଅଶୋକ, ମନ୍ଦାର । କ୍ଷେଣି ଭୃଙ୍ଗ ମୁଁ ତୁମ୍ଭେମାନେ ଅତୁର । କେତକୀ ବରନା ନାମ ଅଙ୍ଗୀକାର କଲେ ସରିଲାଟି ମୋର ରେ । ସୁନ୍ଦର । ୧୪ ।

ଅନଙ୍ଗ ବଧିବା ଇଚ୍ଛା କରି ତୋରେ ବାନ୍ଧି ନ ପାରୁଥିବ ବାଣ । ଶୋଭା ଅନାଇଁ କ୍ଷୀଣ ହେବ ଗୁଣ । ମୁଁ କି ଉପାୟେ ତୋ ଦରଶନ ଯାଏ ଜୀଇବି କହିବ ପୁଣରେ । ସୁନ୍ଦର । ବ ଞ୍ଚିଥିଲେ ଅଛୁ ଏତେ କାରଣ । ଲକ୍ଷା ଲେଖିବି ଧରି ତୋ ଚରଣ । ଚନ୍ଦ୍ର ଗୃହିଁ ତୁ ଯେ ପ୍ରଶଂସା କରିବୁ ସେବାଣୀ ହେବ ଶ୍ରବଣ ରେ । ସୁନ୍ଦର । ୧୫ ।

---

୧୨ । ହୃଦ—ମନ, କେଦାର—କିଆରି, ଅନୁରାଗ—ସ୍ନେହ, ବୀଜ—ମଞ୍ଜି, ଅଙ୍କୁର—ଗଜା, ଘନରସ—ମେଘ, ବୃହସ୍ପତି ଚଳିଲେ ବର୍ଷାହୁଏ ।

୧୩ । ବ୍ୟାଧ—ବାଣୁଆ, ଶମନ—ଯମ ।

୧୪ । ନାକ—ତିଳଫୁଲ, ଦାନ୍ତ—କୁନ୍ଦ, ମୁଖ—ଧଳା ପଦ୍ମ, ଓଷ୍ଠ—ଲାଲପଦ୍ମ, ବାଳ—ନୀଳପଦ୍ମ, ଦେହଗନ୍ଧ—ଗୋଲାପିପଦ୍ମ, ହାସ—କୁମୁଦ, ଅଧର—କିବା ଶ୍ରବଣ—ପାଟଳି, ନଖ—କିଅଳି, ଅଙ୍ଗୁଠି—ଚମ୍ପା, ଦେହ—ଶିରୀଷ, ଆଖି—ଉତ୍ପଳ, ଦେହରଙ୍ଗ—ଷଣ, କପାଳ—ଅଶୋକ, ହାତ ପାପୁଲି ଗୋଇଠି—ମନ୍ଦାର ।

୧୫ । ଅନଙ୍ଗ—କନ୍ଦର୍ପ, ଲକ୍ଷା—ଅଳତା ।

ଗନ୍ଧକୁ ଶୋଭା ହେବା ଭଲ କୁସୁମ ଗୁଚ୍ଛି ଦେଉଥିବ ସୁଗାର୍ନି । ଶିବର୍ଗ କରିବ ସବୁ ଯାନି । ଅଗ କ ମାଗିବ ସେବା ଜାଣି କୃପା କରୁ ସିନା କୃପାପାନି ରେ । ସୁନ୍ଦର । ଇଚ୍ଛା ମନ ଭିତରେ ଦେହ ରହୁ । ଏ ନୋହିଲେ ବିଧାତା ପକ୍ଷ ହେଉ । ଯାଇଁ ତୋ ପାଶେ ମୋ ସେବା ଦେଖାଇବା ଯୋଗ ବେଗ ହୋଇ ହେଉ ରେ । ସୁନ୍ଦରୀ । ୧୬ ।

କ୍ଷିତି ଥିଲେ ନରପତି ଶୋଭା ପାଇ ରାତି ଥିଲେ ଚନ୍ଦ୍ର ଉଜ୍ଜ୍ୱଳ । ପଦ୍ମ ଥିଲେ ସରୋବର ମଞ୍ଜୁଳ । ଯେଣୁ ସେହିମତି ଯୁବତିକତିରେ ଥିବା ଯୁବାର ମଙ୍ଗଳ ରେ । ସୁନ୍ଦର । ଲଭି ନାହିଁ ଯେ ବକ୍ଷୋଜସ୍ପରସ । ମହାସମ୍ପତ୍ତି ଥାଇ ହେବ କସ । ନଯ୍ୟୁନ ନ ଥାଇ ଦେବ ଦରଶନେ ଗଲା ପ୍ରାୟ ଉପହାସ ରେ । ସୁନ୍ଦର । ୧୭ ।

ଯେଣୁ ରେ ଯୁବତି ପରଶ ପରଶୁ ପୁରୁଷ ଲୌହ କରେ ହେମ । ଭଙ୍ଗୀବଚନ ହିମଧାମ ସମ । ହୃଦୟସ୍ଥଳ ଚନ୍ଦ୍ରକାନ୍ତ ମଣିର ଦ୍ରବୀଭୂତକୁ ସେ କ୍ଷମ ରେ । ସୁନ୍ଦର । ଏହା ଶୁଣିଛୁ ରସିକ ବଦନ । ଅନୁଭବ ନାହିଁ ମୋର ଏମାନ । କ କର ଜାଣିବ କରିଜାତଗତି କରିବୁ ଏ ଅବଧାନ ରେ । ସୁନ୍ଦର । ୧୮ ।

ଶିରିଫୁଲ ଗନ୍ଧ କେତେକାଳ ଶୋଭା କ ଶୀତଳକାରୀ ଚନ୍ଦନ । ଏ ବଚନ କି ତୋଠାରେ ବନ୍ଦନ । କ ବୋଲି ବୋଲିବ ମଶାଗ୍ରମଣକ ପରାୟେ ଭ୍ରମୁଛି ମନରେ । ସୁନ୍ଦର । ବନ୍ଧୁ ଧନ ତୋତେ ରେ ପ୍ରେମଶୀଳା । ବୋଲିବ କ ନାହିଁ ଶତ୍ରୁ ରସିଲା । ଗଲେ ପ୍ରାଣ ରହି ବନ୍ଧୁ ଧନ ଦୁଇ ଥିଲେ ଅଛୁ ଏ ଶୁଣିଲା ରେ । ସୁନ୍ଦର । ୧୯ ।

ଅତି ଦରିଦ୍ର ମୁଁ ବହିନ ବଣିଜ କରିଛୁ ଉପାୟ ବଳରେ । ଭଲ ମନ୍ଦ ଅଛୁ କ କପାଳରେ । ଦାଇବ ସେ ତୁହି ସେ ତୋତେ ଗୋଚର ଦୟାରେ ଲଗା କୂଳକୁ ରେ । ସୁନ୍ଦର । ମାର-ତସ୍କର ଯେଣୁ ଦର ଅଛୁ । ପ୍ରାଣଧନ ଲୁଟିବାକୁ ଜଗିଛୁ । ଅଷ୍ଟସାତ୍ତ୍ୱିକ ଅଣଗୁଣ ପବନ ଛଳ ଭ୍ରମେ ପକାଉଛୁ ରେ । ସୁନ୍ଦର । ୨୦ ।

---

୧୬ । ସୁଗାନ୍ଧୀ—ସୁନ୍ଦରଦେହୀ, କୃପାପାନ୍ଧୀ—ଦୟାବତୀ ।

୧୭ । ନରପତି—ରାଜା, କ୍ଷିତି—ପୃଥିବୀ, ଏଠାରେ ରାଜ୍ୟ ।

୧୮ । ଯୁବତୀପରଶ—ସ୍ତ୍ରୀ ଦେହ ପରଶୁପଥର, କରୀ—ହାତୀ ।

୨୦ । ବହିନ—ବୋଇତ, ମାର—କନ୍ଦର୍ପ, ତସ୍କର—ଚୋର ଅଷ୍ଟସାତ୍ତ୍ୱିକ —ସ୍ତମ୍ଭ, ଦାହ, କମ୍ପ, ସ୍ୱେଦ, ଲୋମୋଦ୍‌ଗମ, ହାଇ ଅଳସ, ମୂର୍ଚ୍ଛା ଆଠପ୍ରକାର; କାମବିକାରରେ ଏସବୁ ହୁଏ ।

ନେନେ କର୍ଣ୍ଣକୁ ଆକ୍ଷେପ କରି ଦାନ ବିବାଧେ କରୁଛୁ ବନ୍ଧନ । ହାସେ ହରିଚନ୍ଦ୍ର ଦର୍ପ ଦଳନ । ଜୀମୂତବାହନପଦ ଦରଶନ ଜନେ କରୁଅଛୁ ଦାନ ରେ । ସୁନ୍ଦରି । ବଚନରେ ଅନୁସରି ଥିବି ଯେ । ଦାନୀମାନଙ୍କୁ ଜିଣିଛୁ ଭାବି ଯେ । ତନୁଦାନକୁ ମୁଁ ଅର୍ଥୀ ହୋଇଅଛୁ ବୋଲିବୁ ନାସ୍ତି ନ ଦେବି ରେ । ସୁନ୍ଦରି । ୨୧ ।

ଦେଖି ଦେଖାଇଲି ନିଶାର୍ଦ୍ଧେ ପଲ୍ୟଙ୍କେ କରିଥିଲି ବାଳା ଶୟନ । ହା ହା କି ଶୋଭା ଦେଖିଲି ନୟନ । ସେହି କୁଟିକେ କୋଟି କୋଟି ମଘବାସମ୍ପଦ କରୁଛୁ ଦାନ ରେ । ସୁନ୍ଦରି । ଯେବେ ଶରୀର ହୁଅନ୍ତା, ସେ ମୂହୂର୍ତ୍ତି । ଯୁବାବୃନ୍ଦେ ହୋଇ ଥାନ୍ତି ସାମନ୍ତ । ଭୀରୁ ଊରୁ ଛୁଇଁ ଫୁଲଇ ଦେବାର ନୋହେ ଇତର ସୁକୃତ ରେ । ସୁନ୍ଦରି । ୨୨ ।

ନିଦ୍ରା ବିନାଶ ଅଳସଭରି ଘେନି କଷାଇତ ନେତ୍ର ଚତୁରୀ । ମୋତେ ବନ୍ଧେ ଅନାଇଁଲି କି କରି । ଅନୁରାଗଜଳେ ବୁଡ଼ାଇ କମଳ ବେଗେ ଢାଳିଦେଲି ପରି ରେ । ସୁନ୍ଦରି । ଲଜ୍ଜ ବଶରୁ ରସିକାସିହାଣୀ । ଚୁହିଁ ନ ଚୁହିଁଲି କଲି ଚୁହାଣୀ । ଉଡ଼ୁ ପୂର୍ଣ୍ଣଚନ୍ଦ୍ର ମଣ୍ଡଳୁଁ ମନ୍ଦରେ ବସିଲି ପରାୟେ ପୁଣି ରେ । ସୁନ୍ଦରି । ୨୩ ।

ବିନୟରେ ମୋ ଲୟ ଦେଇ ଉଦୟ କଲି ଯେ କରୁଣାକର୍ଷିତ । ପ୍ରାଣ ରଖିଲି ସେ ସୁଧା ସର୍ଜିତ । ମାଣିକ୍ୟ କୁହରେ ହୀରା ଫୁଟିକଲି ପରି ସ୍ମିତହାସ ଜାତରେ । ସୁନ୍ଦରି । ମୋର ଜନ୍ମାନ୍ତେ ଖଣ୍ଡିତପ ଥିଲି । ସେହି ସମୟେ ନୀଶି ନାଶ ହେଲି । ବଢ଼ିବାରୁ ମହାସନ୍ତାପ ନୟନ ମନେ ଅନ ନ ରୁଚିଲି ରେ । ସୁନ୍ଦରି । ୨୪ ।

ଚତୁରୀ ଗୃହିଁକୁ ଚୁତୁରୀ କରି ଯେ ଯେତେ ବାଣୀ କହି ଯୁକତେ । ସେ କି ସମ ହେବ କାହିଁ ଜଗତେ । କର ଯୋଡ଼ି ମୁଁ ଜଣାଉଛୁ ସନ୍ଦେଶ ଦୋଷ ନ ଧରିବୁ ଶତ୍ତେ ରେ । ସୁନ୍ଦରି । ସବୁ ସଖୀଙ୍କି ସଙ୍ଗୋଳା ମୋହରି । ତୁମ୍ଭ ସଙ୍ଗତେ ଜଣେ ମୋତେ କରି । ମନ ମନାଇଁ ଅବକାଶ ଅନାଇଁ ଘେନାଇଁ କହି ଛାମୁରେ ରେ । ସୁନ୍ଦରି । ୨୫ ।

---

୨୧ । ହରି—ଚନ୍ଦ୍ର, କର୍ପୂର, ଜୀମୂତବାହନ—ଇନ୍ଦ୍ର ।

୨୨ । ନିଶାର୍ଦ୍ଧେ-ରାତ୍ରଅଧରେ, ମଘବା—ଇନ୍ଦ୍ର, ଭୀରୁ—ସ୍ତ୍ରୀ, ଊରୁ—ଜଙ୍ଘ ।

୨୩ । କଷାଇତ—ଲାଲ, କମଳ—ପଦ୍ମ ।

୨୪ । ଉଦୟ—ଜାତ, ସୁଧା—ଅମୃତ, କୁହର—ଗାତ ବା ଗୁହା, ସ୍ମିତହାସ—ଦରହାସ ।

୨୫ । ଗୃହିଁ-ବିନୟ, ସନ୍ଦେଶ—ଖବର, ଅବକାଶ—ଫୁରୁସତ ।

ବେଗେ ଦୂତକୁ ମେଲାଣିଦେଇ ଦେବ ଶ୍ରୀହସ୍ତ ସନ୍ତକ ଲେଖକୁ । ପାଇ ପାଇ ମୁଁ ଅଲେଖ ସୁଖକୁ । କୃଶ ହେଲେ ଅଶାଦଣ୍ଡ ଅଲମ୍ବନ କର ଘଉଡ଼ି ଦୁଃଖକୁ ରେ । ସୁନ୍ଦର । ପିବ ଜୀବତେ ପ୍ରଭୁର ଙ୍ଗୁମୁକୁ । ବ୍ୟଥା କହି ଦଣ୍ଡାଇବ କାମକୁ । ଏତକ କାମନା ଏ ବନା ନବୀନା ମିଳୁଛୁ ଯାହା କର୍ମକୁ ରେ । ସୁନ୍ଦର । ୨୬ ।

ବଳିଆର ଯେ ନିବଳୀଶୋଭନୀଙ୍କ କହିବାକୁ ଅଛୁ ଅତୁର । ପ୍ରୀତି ବିରୋଧୀ ଯେତେ ସହଚରୀ । ଦଇବେ ହୋଇବେ ପ୍ରବୋଧ କରିବୁ ତାହାଙ୍କର କର ଧରି ରେ । ସୁନ୍ଦର । ପର ଉପକାର ଯଶ ଥୋଇଲେ । ଦେବ ମହାଦେବ ବିଷ ଖାଇଲେ । ଦେଖ ଭୃତ୍ୟପଦ ହୃଦେ ଧରି ହରି ଭାବଗ୍ରାହୀ ବୋଲାଇଲେ ରେ । ସୁନ୍ଦର । ୨୭ ।

ପଢ଼ି ଏ ପତ୍ର ରୋମାଞ୍ଚିତ ଗାତ୍ର କି ହେଲା ଅନୁରାଗ ଅଙ୍କୁର । କିବା ମାଗିବ ଯୁବା ସଙ୍ଗ ବର । ଅନନ୍ଦ ଅଶ୍ରୁଜଳରେ ଅଭିଷେକ କରାଇଲା କୁଚହର ସେ । ସୁନ୍ଦର । ଦେଖି ଦ୍ୱିଜକୁ ସେ ମୋତିକଳାପ । ମନେ ଏ କଥା କରି ସଙ୍କଳପ । ଏହାଉଠାରେ ଏ ହାର ଥିଲେ ଦେଖି କାଣିନ୍ତ ସିନା ସନ୍ତାପ ସେ । ସୁନ୍ଦର । ୨୮ ।

ପ୍ରତିଉତ୍ତର ପତର ଦେଇ ତାଙ୍କୁ କାତର ସାଗରୁ ଉଦ୍ଧର । କହେ ଏକାଳେ ବ୍ରହ୍ମଗୃହୀ କୀର । ଅନୁନୟ ଲେଖ ଛନ୍ଦ ପୂର୍ଣ୍ଣ ହେଲା ରସିକ ଉଲ୍ଲାସକର ହେ । ସୁଜନେ । ରାମଲକ୍ଷ୍ମଣ ଅମ୍ବୁଜବଦନ । ବୃଷାସନଙ୍କର ପେନ୍ଥ ବନ୍ଦନ । ଭଣେ ଉପେନ୍ଦ୍ର ଭଞ୍ଜ ବୀରବର ତାଙ୍କ ପାଦେ ଦେଇ ମନ ହେ । ସୁଜନେ । ୨୯ ।

---

୨୬ । ଅଲେଖ—ଅତ୍ୟନ୍ତ, କୃଶ—ସରୁ, ଅଶାଦଣ୍ଡ—ଅଶାବାଡ଼ି ।
୨୭ । ନିବଳୀଶୋଭନୀ—ପେଟରେ ତିନୋଟିରେଖାଥିବା ସ୍ତ୍ରୀ ଲବଣ୍ୟବତୀ, ଭୃତଂ—ଗୃଙ୍କର ।
୨୮ । ରୋମାଞ୍ଚିତ—ରୋମଟାଙ୍କୁରିବା, କୁଚହର—ସ୍ତନଲଗ୍ନ, ସଙ୍କଳ୍ପ—ଭାବନା ।
୨୯ । ଅମ୍ବୁଜ ବଦନ—ପଦ୍ମମୁଖ, ବୃଷାସନ—ମହାଦେବ ।
ଲବଣ୍ୟବତୀକୁ ଚନ୍ଦ୍ରଭାନୁର ପତ୍ର ଦିଅନ୍ତେ ସେ ସେହି ପତ୍ର ପଢ଼ି ଅତ୍ୟନ୍ତ ଅନନ୍ଦ ହୋଇ ପୁନରାୟ ପ୍ରତ୍ୟୁତ୍ତର ପତ୍ର ଦେଇ ଶୁକକୁ ବ୍ରହ୍ମଗୃହୀଙ୍କୁ ପଠାଇବାକୁ ସ୍ଥିର କଲା ।

# ବିଂଶ ଛାନ୍ଦ

(ଲାବଣ୍ୟବତୀର ପତ୍ର ଘେନି ଶୁକ ଓ ବୃଦ୍ଧଗୃଧ୍ର ଚନ୍ଦ୍ରଭାନୁ ନିକଟକୁ ଗମନ)

ରାଗ—ଚିନ୍ତାଭୈରବ

ଅଣି କାଗଜକୁ ନବବାଳୀ । ଅନୁରାଗୁ ନ ଲେଖିଲା କାଳୀ । କୁଙ୍କୁମେ ଲିଖିତ ବର୍ଣ୍ଣ ନିଜବର୍ଣ୍ଣ ଭଳି ଅଳୀଙ୍କ ନାମରେ ଛଳ ସେ । ସୁନ୍ଦରୀ ॥ ବିଭେ ବୀରବର ଭୂପସୁତ । ଗଣେଶ୍ୱର ସମାନେ ପଣ୍ଡିତ । ଗୁଣରେ ନାହିଁ ତ ଅବନୀ ମଣ୍ଡଳେ ଏଣୁ କରି ଗୁରୁ ପ୍ରଶଂସିତ ହେ । ସୁନ୍ଦର । ୨ । ମହା ମହା ମନୋହର ଧାମ । ଅମ୍ଭେ ବୋଲୁଅଛୁ ଅନୁପମ । ହେମ ତୁଲେ ଗୁଞ୍ଜ ତୁଳନା ପରାୟେ ଯାହା ଇଚ୍ଛା ବୋଲନ୍ତୁ ସେ କାମ ହେ । ସୁନ୍ଦର । ୩ । ଦାତାପଣ କର୍ଣ୍ଣେ ଅଛୁ ଶୁଣି । ତାହାଙ୍କ ଲକ୍ଷ୍ୟ ଦେବାକୁ ପୁଣି । ଯାଚକ ମାନସ ଏ ରୂପେ ସନ୍ତୋଷ ଏକା ଏହାର ହେଉ ଧରଣୀ ହେ । ସୁନ୍ଦର । ୪ । ପୁଣି ବଧ କରିବାରେ ଅରି । କର ଯଶକୁ ଅଛି ବିସ୍ତାରି । ଦୟାଳୁ ଗୁଣ ତ ନୁହଇ ଜାଣିବା ତୁମ୍ଭେ କେଡ଼େ ପରଉପକାରୀ ହେ । ସୁନ୍ଦର । ୫ । ଯାହା ରତନ କୋଷ ସହିତ । ସଦା ଅଛନ୍ତି ସମୁଦ୍ରବତ । ଏହି କଥାମାନ ବିଚାର ମଣିଲୁଁ ସେହି ଗୈବାଇ ନେଇ କି ଚିତ୍ତ ହେ । ସୁନ୍ଦର । ୬ । ସ୍ୱପ୍ନ ଦେଖାଦେଲ ଯେଉଁ ନିଶା । ହୋଇଥିଲା ସେଦିନ ସୁଦଶା । ଜଳକଳଶ ଚନ୍ଦ୍ରବିମ୍ବ ଧରିବା ପରି ଯେହ୍ନେ କରୁଥିଲା ଆଶା ହେ । ସୁନ୍ଦର । ୭ । ଏବେ

---

## ବିଂଶ ଛାନ୍ଦ

୧ । ନବବାଳୀ—ନୂଆ ନାଗରୀ, କାଳୀ—କଳା ସିଆହି, ବର୍ଣ୍ଣ—ଅକ୍ଷର, ଅଳୀ—ସଖୀ ।

୨ । ବିଭେ—ପ୍ରଭୋ, ଭୂପସୁତ—ରଜାପୁଅ, ଅବନୀ—ପୃଥିବୀ, ମଣ୍ଡଳ—ସମୁଦାୟ, ଗୁରୁ—ଅତ୍ୟନ୍ତ, ବୃହସ୍ପତି—ଦେବଗୁରୁ ।

୩ । ମନୋହର—ସୁନ୍ଦର, ହେମ—ସୁନା, ଗୁଞ୍ଜ—କାଇଁଚ ।

୪ । ଧରଣୀ—ପୃଥିବୀ, ଯାଚକ—ଭିକାରୀ ।

୫ । ଅରି—ଶତ୍ରୁ, କର—ହାତ ।

୬ । ରତନ—ସୁନା, କୋଷ—ଭଣ୍ଡାର ।

୭ । ନିଶା—ରାତି, ଚନ୍ଦ୍ରବିମ୍ବ—ଚନ୍ଦ୍ରଛାଇ, ପାଣିମାଠିଆକୁ ଅନାଇଲେ ତା ଭିତରେ ଚନ୍ଦ୍ରଛାଇ ପଡ଼ି ଚନ୍ଦ୍ର ଦେଖାଯାଏ ।

ଦାଇବେ ହେଲ ସେ ସତ । କେହ୍ନ ନୋହିବ ପୁଣି ଲୋଭିତ । ଜୀବନ ଯିବ ପାଖରେ ନ ପାଇଲେ ଏହି ବାଣୀ ହୋଇବ ଅଦ୍‌ଭୂତ ହେ । ସୁନ୍ଦର ।୮। ଯାର ପହଣ୍ଡକ ଶତେ କୋଶ । ତାର ମେରୁ ଲଙ୍ଘିବାକୁ ଅଶ । ଜଳେ ସାଗରସୁତ ପ୍ରାୟ ସଜୀବେ ତାପାନଳେ ନୋହେ କ୍ଳେଶ ନାଶ ହେ । ସୁନ୍ଦର । ୯ । ହରହର ସୁପ୍ରସନ୍ନ ଥିବ । ମାର ପୁରନ୍ଦର କରୀ ହେବ । ଭାଗ୍ୟ ଭଗୀରଥ ହୋଇ ଯେବେ ତବ ସ୍ନେହ ଗଙ୍ଗାଜଳ ମଜ୍ଜାଇବ ହେ । ସୁନ୍ଦର । ୧୦ । ଭାବେ ମହୀ ଅନାଇ ଯାହାକୁ । ଏକା ବର ବରବି ଏହାକୁ । ତାକୁ ସେ ଏକାନ୍ତେ ରସିବ ବୋଇଲେ ବାଳା ନ ଛାଡ଼ିବ ଉତ୍ସାହକୁ ହେ । ସୁନ୍ଦର । ୧୧ । ଛଳେ ସେ ଦାସୀ ସଲିଳବର୍ଷୀ । ନ କରବେ ମୋତେ ନିଜ ଦାସୀ । ଘେନାଇ କହିବା କଥା ଏ ନୁହଇ ଘେନ ତୁମ୍ଭଙ୍କୁ କେମନ୍ତେ ଦର୍ଶୀ ହେ । ସୁନ୍ଦର । ୧୨ । ଦୂତ ସଙ୍ଗେ ଅଇଲେ ଦେଖିବ । କଥା ଯଥାର୍ଥ କେବା ଲେଖିବ । କୃଶକଟୀ ଅଗେ ପାଞ୍ଚୋଟି ଯିବାର ବାଧି ସ୍ତ୍ରିୟୀ କରନ୍ତୁ ଦାଇବ ହେ । ସୁନ୍ଦର । ୧୩ । ଫୁଲ ଭୃଙ୍ଗର ଭୃଙ୍ଗ ଫୁଲର । ଫୁଲ କରଇ କି ଅଭିସାର । ପ୍ରତି ପ୍ରତିନିଧି ମନକୁ ପେଷିଛୁ ତାହା ସଙ୍ଗେ ଏବେ ବାଜେକର ହେ । ସୁନ୍ଦର । ୧୪ । ଯେବେ ନାହିଁ ଏତେ ଅନୁଗ୍ରହ । କେମା ନେହେ କପାଁ କଲ ଗୃହ । ତୁମ୍ଭ ପୁର ତ ଅଳକାରୁ ଅଧିକ ତହୁଁ ରମ୍ୟ ହେଲା କାଏ କହ ହେ । ସୁନ୍ଦର । ୧୫ । ହୃଦବନେ ଥିଲ ମନମୃଗ । ତହିଁ ବିରହ ଅନଳ ବେଗ । ପଳାଇ ତୁମ୍ଭ ଶୋଭାବନେ ପଶିଲା ତହିଁ ନାହିଁ ପରା ଏ ଉଦ୍‌ବେଗ ହେ । ସୁନ୍ଦର । ୧୬ ।

---

୯ । ଲଙ୍ଘିବାକୁ—ଟପିବାକୁ, ଅଶା—ଇଚ୍ଛା, ସଗରସୁତ—ସଗର ରଜାଙ୍କ ପୁଅ, ସଜୀବେ—ଜୀବନରେ, କ୍ଳେଶ—କଷ୍ଟ, କପିଳ ମୁନିଙ୍କ କୋପାନଳରେ ସଗର ସୁତମାନେ ମରୁ ନ ଥିଲେ, ସ୍ଥିତରେ କଅଁଳ ଦାନରେ ଜଳୁଥିଲେ ।

୧୦ । ହର—ବିଷ୍ଣୁ, ହର—ମହାଦେବ ମାର—କନ୍ଦର୍ପ, ପୁରନ୍ଦର—ଇନ୍ଦ୍ର, କରୀ—ହାତୀ, ପୁରନ୍ଦର କରୀ—ଇନ୍ଦ୍ରହାତୀ ଐରାବତ ।

୧୧ ମହୀ—ପୃଥିବୀ, ବାଳା—ସ୍ତ୍ରୀ, ଏଠାରେ ଲାବଣ୍ୟବତୀ ।

୧୨ ସଲିଳ—ପାଣି, କୃଶକଟି—ସରୁ ଅଣ୍ଟା ।

୧୩ । ଯଥାର୍ଥ—ପ୍ରକୃତ ।

୧୪ । ଭୃଙ୍ଗ—ଭଅଁର, ଅଭିସାର—ସଙ୍କେତ ସ୍ଥାନକୁ ବେଶ ହୋଇଯିବା

୧୫ । ପୁର—ନଅର, ଅଳକା—କୁବେର ପୁର ।

ପ୍ରଭେ ବଶୀକର କରିବ ମନ । ସ୍ମରଶରହିଁ ଏହି ବିଧାନ । ପ୍ରକଟି କୁଜ୍‌ଝଟି ତପନକୁ କୋଟି ନାଶକରିଦେଇ ପଦ୍ମବନ ହେ । ସୁନ୍ଦର । ୧୭ । ପରମ୍ପରା ସେ ଜନକୁ ମାରେ । ଈଶ୍ୱରଙ୍କୁ ମାଣ ଜ୍ୱାଳା କରେ । ତୁମ୍ଭେ ବଳବନ୍ତ ଅବଳା କୋମଳା ଅମ୍ଭ ପ୍ରାଣସଜନୀ କେଉଁରେ ହେ । ସୁନ୍ଦର । ୧୮ । ସମା ତୁମ୍ଭ ସ୍ନେହୀ ହେଲାଠାରେ । ବିରହ ଯେ ଅଙ୍ଗ ଭୋଗ କରେ । ଏ ଗୁଣୀ କାହାକୁ ହେବ ମନେ ମନେ ବସି ଭାବନା କରିବ ଥରେ ହେ । ସୁନ୍ଦର । ୧୯ । ଜାତ ପଦ୍ମ ମାହାସକୁ ଗୃହି । ନିତ ମହାତ୍ରାସ କରୁଥାଇ । ଚନ୍ଦ୍ର ସେ ହିଂସାରେ ସାନ୍ଦ୍ର ହୋଇ ଏବେ ଚନ୍ଦ୍ର ତନୁକୁ ଦେଉଛୁ ଦାହ ହେ । ସୁନ୍ଦର । ୨୦ । ଜାଣ ପର ଇନ୍ଦ୍ରଜାଲ ମାୟା । ସବୁ ଦାଗେ ଦେଖା-ଇଛ କାୟା । ମାୟା କରି ମୋହିବାକୁ ତୁମ୍ଭଠାରେ ବାଳା ହୋଇନାହିଁ କି ବିନୟା ହେ । ସୁନ୍ଦର । ୨୧ । କେତେ କୁସୁମ ଜଗତେ ନାହିଁ । ରବିକର ନ ପାରଇ ସହି । ତଳେ ଶେଫାଳିକା ଏ ନବମାଳିକା ତଥା ବେଦନା ସହି ନୁହଇ ହେ ସୁନ୍ଦର ।୨୨। ତୁମ୍ଭ କୀର୍ତ୍ତିଚନ୍ଦ୍ରମା ଉଦିତ । କୁଳ କୁମୁଦକୁଳ ମୋଦିତ । ତାତ ସିନ୍ଧୁ ମାତ ଚକୋର ଉଲ୍ଲାସମାରେ ମଣ୍ଡିତ କଲ ଜଗତ ହେ । ସୁନ୍ଦର । ୨୩ । ନୃପସୁତ ତାରାମଧ୍ୟେ ଶୋହି । ପର ତସ୍କରକୁ ଭୟ ଦେଇ । ଅମ୍ଭ ସଜନୀ ରଜନୀଠାରୁ କାମତମ ନ ଖଣ୍ଡିଲ କାହିଁପାଇଁ ହେ । ସୁନ୍ଦର । ୨୪ । ଭାନୁ ଉଜ୍ଜଳେ ମିହିରମଣି । ଯଥା

---

୧୭ । ସ୍ମରଶର—କନ୍ଦର୍ପ ବାଣ, କୁଜ୍‌ଝଟି—କୁହୁଡ଼ି, ତପନ—ସୂର୍ଯ୍ୟ ।

୧୮ । ପରମ୍ପରା—ପୂର୍ବରୁ, କ୍ରମାନ୍ୱୟେ । ଈଶ୍ୱର—ମହାଦେବ, ଅବଳା—ବଳହୀନା ସ୍ତ୍ରୀ ।

୨୦ । ମହାତ୍ରାସ—ଅତ୍ୟନ୍ତ ଭୟ, ସାନ୍ଦ୍ର—ଅଗ୍ନି ।

୨୧ । କାୟା—ଦେହ, ବିନୟ—ନମ୍ରତା ।

୨୨ । କୁସୁମ—ଫୁଲ, ଜଗତ—ସଂସାର, ରବିକର—ସୂର୍ଯ୍ୟକିରଣ, ଶେଫାଳିକା—ଗଙ୍ଗଶିଉଳି, ନବମାଳିକା—ନିଆଳି ଫୁଲ ।

୨୩ । କୁଳ—ବଂଶ, କୁମୁଦ—କଇଁ, କୁଳ—ସମୂହ, ତାତ ସିନ୍ଧୁ—ପିତା ହେଲେ ସମୁଦ୍ର, ମାତା ଚକୋର—ମା ହେଲେ ଚକୁଆ ।

୨୪ । ନୃପସୁତ—ରାଜପୁତ୍ର, ତାରା ମଧ୍ୟେ ଶୋହି—ଅନ୍ୟ ରାଜପୁତ୍ର ତାରା ହେଲେ ସେମାନଙ୍କ ମଧ୍ୟରେ ତୁମ୍ଭେ ଶୋଭିତ, ପର—ଶତ୍ରୁ, ତସ୍କର-ଚୋର, ଶତ୍ରୁ, ଚୋରଙ୍କୁ ଭୟ ଦିଅ ।

ଅଗ୍ନି ଜାତ କରେ ପୁଣି । ତୁମ୍ଭ ପୀରତିବଶରେ ମହାବ୍ୟଥା ତଥା ପାଉଛୁ ରମଣୀମଣି ହେ । ସୁନ୍ଦର । ୧୫ । ଅମ୍ଭ ସଖୀ ଅତି ସ୍ନେହାଧୀନ । ଗୁଣିବ କି ହେଲେ ଧ୍ୟାନମାନ । ଅନେକ ଦହିଲେ ସୁବାସକୁ ନିକି କେବେ ଛାଡ଼ଇ ଚନ୍ଦ୍ର ଚନ୍ଦନ ହେ ସୁନ୍ଦର । ୨୬ । ମନେ କରଅଛୁ ପଙ୍କଜାକ୍ଷୀ । ମଳ ପ୍ରୀତିରେ କପୋତପକ୍ଷୀ । ଧନ୍ୟ ଶବଦ ତ ସେ ରୂପେ ବହିବ ଅଗ ସ୍ନେହାରେ ତାହାକୁ ଲେଖି ହେ । ସୁନ୍ଦର । ୨୭ । ମହାଶଙ୍କା ହୋଏ ଏହା ଭାବି । ଯାଉପଣେ ବର୍ତ୍ତିଛନ୍ତି କବି । ଅତି କଠିନ ଉରସ୍ଥଳ ବାଜିଲେ ସବୁରୂପେ ହତ ହୁଏ ପବି ହେ । ସୁନ୍ଦର । ୨୮ । ନାହି ବୋଧ ଏହା ଶୁଣିକର । ହୋଇଥିବ ନାରିକେଳ ପର । ଦୟାଶୀଳ ନାମ ନୋହିଲେ ତାହିଁକି ହୃଦେ ଅଛୁ ଘନରସ ପୁର ହେ । ସୁନ୍ଦର । ଚନ୍ଦ୍ର ମାର ଅଶ୍ୱିନୀ-କୁମାର । ଏମାନେ ଯେ ପରମ ସୁନ୍ଦର । ଏ ମୂର୍ତ୍ତି ହୋଇ କ୍ଷିତିରେ ଉତ-ପତ୍ତି ବୋଲି ପ୍ରଶଂସା ଖ୍ୟାତି ତୁମ୍ଭର ହେ । ସୁନ୍ଦର । ୩୦ । ଶୋଭା ଗୁହିଁ ଶିଳା ଦ୍ରବୀଭୂତ । କର ଉଚ୍ଛନ୍ନ ଯିବାର ଚିତ୍ତ । ନୃପନନ୍ଦନୀର ବ୍ୟାଧି ନାଶ କଲେ ଅମ୍ଭେ ଜାଣିବୁ ଏ କଥା ସତ ହେ । ସୁନ୍ଦର । ୩୧ । ଯେହୁ ଗୁଣ ବିଶ୍ରାମ ମଣ୍ଡପ । କାହିଁ ସୁତ ତାଙ୍କ ଅନୁରୂପ । ଅମ୍ଭ ସଖୀ ଯେ ତୁମ୍ଭର ବୋଲାଇବ କେଉଁ ସ୍ଥାନେ କରଥିଲା ତପ ହେ । ସୁନ୍ଦର । ୩୨ । ଅତି

---

୨୫ । ମିହିରମଣି—ସୂର୍ଯ୍ୟକାନ୍ତମଣି, ଭାନୁ—ସୂର୍ଯ୍ୟ, ସୂର୍ଯ୍ୟକାନ୍ତ ମଣିରେ ସୂର୍ଯ୍ୟତେଜ ପଡ଼ିଲେ ସେଥିରୁ ନିଆଁ ବାହାରେ ।

୨୬ । ଚନ୍ଦ୍ର—କର୍ପୂର, ଅନଳ—ନିଆଁ ।

୨୭ । ପଙ୍କଜାକ୍ଷୀ—ପଦ୍ମନେତ୍ରୀ, କପୋତୀ ଶବରର ଜାଲରେ ପଡ଼ିବା ଦେଖି କପୋତ ନେତ ନ ଛାଡ଼ିପାରି ସେହି ଜାଲରେ ଯାଇ ପଡ଼ିବାରୁ ବନ୍ଧନ ହେଲା ।

୨୮ । ପବି—ବଜ୍ର, ଉରସ୍ଥଳ—ଛାତି

୨୯ । ନାରିକେଳ—ନଡ଼ିଆ, ନଡ଼ିଆର ବାହାରଟା ଟାଣ ମାତ୍ର ଭିତର ତାର କୋମଳ ।

୩୦ । ମାର—କନ୍ଦର୍ପ, ମୂର୍ତ୍ତି—ରୂପ, ଉତପତ୍ତି—ଜାତ ।

୩୧ । ଶିଳା—ପଥର । ଦ୍ରବୀଭୂତ—ତରଳହେବା ।

୩୨ । ଗୁଣ ବିଶ୍ରାମ ମଣ୍ଡପ—ଗୁଣମାନଙ୍କର ଅଟ୍ଟୟେ ନେବା ସ୍ଥଳ, ଅତ୍ୟନ୍ତ ଗୁଣବାନ, ଅନୁରୂପ—ସମାନ ।

ଅଧିକ ଜଣାଏ କିସ । କ୍ଷମା କରିବା ଜଣାଣ ଦୋଷ । କମ୍ପ ମୋହ ଭ୍ରମ ପ୍ରତିବନ୍ଧ ଯେଣି ଲେଖି ନ ପାରିଲି ରାମାଈଶ ହେ । ସୁନ୍ଦର । ୩୩ । ଶିବରାତ୍ରି ରାମରେ ଉତ୍ସବ । ବିମେଶ୍ବର ଦେବଠାରେ ହେବ । ଯେବେ କରୁଣା ଅରୁଣାଧରାଠାରେ ଥିବ ସେଠାକୁ ବିଜେ କରିବ ହେ । ସୁନ୍ଦର ।୩୪। ପଢ଼େ ପତଙ୍ଗ ସେନେହ ଧାଇ । ଯଥା ଅନଳ ତାହାକୁ କାଇ । ବିଜେ ନ କଲେ ଏ ପୀରତି କାରତି ଖ୍ୟାତି ହୋଇବଟି ସେହିପରି ହେ । ସୁନ୍ଦର ।୩୫। ଲେଖି ଏ ରୂପେ ପତ୍ରିକା ବାଳା । ମନ୍ତ୍ରୀନନ୍ଦନା ହସ୍ତକୁ ଦେଲା । ପାଠକରି ଯେଣି ରସଗର୍ଭ ଭାଷା ଅତି ତୃପତି ହୋଇ ମୁଦିଲା ସେ । ସୁନ୍ଦରୀ ।୩୬। କରି ବନ୍ଧନ ରୁଚିର ଚୀରେ । ଜତୁ ଦେଲା ଯତନେ ଉପରେ । ଦୁର୍ଗା ମାଧବ ସୁମରି ବ୍ରହ୍ମଗୃହୀକରେ ଦେଲା ଅତି ହରଷରେ ସେ । ସୁନ୍ଦରୀ ।୩୭। ନେଇ କୀର ଦ୍ବିଜବର ଅଗେ । ସଖୀମାନେ କହିଲେ ସରାଗେ । ବେଗେ ଅଗମନ ନ କଲେ କୁମାରୀ ରାମା ନେଲାଣି ଶମନ ଭୋଗେ ହେ । ସୁନ୍ଦର ।୩୮। ଯତ୍ନେ ଘେନିଣ ଅମୂଲ୍ୟ ମୁଦ । ଦୁଇ ଦ୍ବିଜ ହୋଇଲେ ପ୍ରମୋଦ । ମେଲଣି ହୋଇ ସାଧୁତକୁ କହିଣ ହରିଙ୍କି ମଙ୍ଗଳପଦ ହେ । ସୁଜନେ । ୩୯ । ଘେନି କାଞ୍ଚିଶୋଭନୀ ଉଦନ୍ତ । କାଞ୍ଚିପୁରେ ଗମନ ତୁରିତ । କପଇନ୍ଦ୍ରଭଞ୍ଜ ବୀରବର ଚିତ୍ତ-ଭୃଙ୍ଗ ରାମ ପାଦପଦ୍ମେ ରତ ହେ । ସୁଜନେ । ୪୦ ।

---

୩୩ । ପ୍ରତିବନ୍ଧ—ବାଧା, ରାମା ଈଶ—ସ୍ତ୍ରୀ ଶ୍ରେଷ୍ଠ, ବାମ ବିକାରରେ ଅଷ୍ଟସାତ୍ତ୍ୱିକ ହୁଏ ଯଥା—କମ୍ପ ପ୍ରଭୃତି ।

୩୪ । ଅରୁଣାଧରା (ଅରୁଣ+ଅଧରା), ଅରୁଣ—ଲାଲ ସୂର୍ଯ୍ୟ, ଅଧରା-ଓଷ୍ଠୀ

୩୫ । କୀରତି—ଯଶ, ବିଜେ—ଆସିବା ।

୩୬ । ମନ୍ତ୍ରୀନନ୍ଦନା—ମନ୍ତ୍ରୀଝିଅ, ରସଗର୍ଭ—ରସପୂର୍ଣ୍ଣ, ତୃପତି-ସନ୍ତୋଷ ।

୩୭ । ରୁଚିର ଚୀର—ସୁନ୍ଦର ପାଟକନା, ଜତୁ—ଜଉ ।

୩୮ । ସରାଗେ—ସ୍ନେହରେ, ଶମନ ଭୋଗ—ଯମପୁର ଯିବା, ମୃତ୍ୟୁ ।

୩୯ । କାଞ୍ଚି ଶୋଭନୀ—ଚନ୍ଦ୍ରହାର ଶୋଭନୀ. ଉଦନ୍ତ—ବାର୍ତ୍ତା ।

ଲାବଣ୍ୟବତୀ, ନିଜର ମନର ଭାବନାକୁ ବିନୟରେ କୁଙ୍କୁମରେ ଲେଖି ସେ ପତ୍ରକୁ ଜଉମୁଦ କରି ଶୁକ ଓ ବ୍ରହ୍ମଗୃହୀ ହାତରେ ଦେଇ ପଠାଇଲା ।

## ଏକବିଂଶ ଛାନ୍ଦ

( ଚନ୍ଦ୍ରଭାନୁର ବିରହ ଓ ବର୍ଷା ବର୍ଣ୍ଣନ, ପତ୍ର ପଢ଼ିବା ପରେ

ରାମେଶ୍ୱର ଗମନ ବିସ୍ତର )

ରାଗ—ଭୈରବ

ଏଥୁଅନ୍ତେ ଦେଖେ ଶାର ହୋଇଲା ବରଷା । ବିଗୁର କରଇ ଥିଲା ଏମନ୍ତ ଭରସା ଯେ ।୧। ରସାଳସା ସଙ୍ଗେ ହେଲା ଉତ୍ତରୁ ହୋଇବ । କେତେ ବେଗେ ଏ ଋତୁକୁ କଲା ଦୁର୍ଦ୍ଦିବ ଯେ । ୨ । ବୃଦ୍ଧି ହେଲା ନଦୀମାନ ଲୋକନ କରିବେ । କୋଳ ଅବଲମ୍ବ କରି ପଥିକେ ତରିବେ ଯେ ।୩। କୋଳାବଲମ୍ବନ ନାହିଁ କାମ ନଦୀ କେହୁ । ତରିବି କୋଳସ୍ୱରୂପୀ କି ଅଛନ୍ତି କହୁ ଯେ ।୪। ସୁମନା ଚୁମ୍ବନେ ଭୃଙ୍ଗ ହୋଇ ତୋଷମନ । ଆଜ ସୁମନା ଚୁମ୍ବନ ନାହିଁ ଦରଶନ ଯେ ।୫। ଘନରସ ଯୋଗେ ବନ ଦାବାନଳ ଲିଭେ । ଘନରସ ଯୋଗ ନାହିଁ କି କରିବି ଏବେ ଯେ ।୬। ହୃଦବନ ଦାବାନଳ କେବେ ହେବ ଶାନ୍ତ । ମୋର କର୍ମ ଘେନି ହେଲା ଅପୂରୁବ ରୀତ ଯେ ।୭। ନ ଲିଭଇ ଅଧିକେ ଏବେ ଜଳଇ ଘେନ । ଶିଖୀ ନାମ ଯେ ଦେଇଛି କେକୀକି ସେ ଧନ୍ୟ ଯେ ।୮। କାମୀ ହୃଦ ଖାଣ୍ଡବ ଦହନେ ଏ ପାଣ୍ଡବ । କଲଣି ଶିଖା ପ୍ରକାଶ ଆରମ୍ଭ ତାଣ୍ଡବ ଯେ । ୯ । ଅରେ ଶ୍ୟାମା କି କରିବି ତୁହୁ ପରିତ୍ରାଣ । ବୋଲି ମୋହକୁ ଭଜିଲା କୁମର ସେକ୍ଷଣି ଯେ । ୧୦ ।

---

## ଏକବିଂଶ ଛାନ୍ଦ

୧ । **ଭରସା—ଆଶା ।**

୨ । **ରସାଳସା—ସୁନ୍ଦରୀ ଲାବଣ୍ୟ ବତୀ, ସଙ୍ଗ—ଏକତ୍ର, ମିଳନ, ଦୁର୍ଦ୍ଦିବ—ମନ୍ଦ ବିଧାତା ।**

୩ । ଲୋକନ—ଦେଖିବା, କୋଳ—ଡଙ୍ଗା, ଅବଲମ୍ବନ—ଆଶ୍ରୟ ।

୬ । ଦାବାନଳ—ବନଅଗ୍ନି, ଘନରସ—ଶ୍ରେଷ୍ଠ ରସ, ରତିରସ ।

୮ । ଶିଖି—ମୟୂର, ଅଗ୍ନି । କେକୀ—ମୟୂରୀ ।

୯ । ପାଣ୍ଡବ ଅର୍ଜୁନ ଇନ୍ଦ୍ରଙ୍କ ଅନିଚ୍ଛାରେ ଖାଣ୍ଡବବନ, ଅଗ୍ନିଙ୍କି ଦେଇଥିଲେ ସେହିପରି କାମୁକ ଲୋକର ହୃଦୟ ରୂପ ଖାଣ୍ଡବ ବନକୁ ଭୋଗ କରିବାରେ ତୁମ୍ଭେ ପାଣ୍ଡବ ସ୍ୱରୂପୀ ।

୧୦ । ଶ୍ୟାମା—ସୁନ୍ଦରୀ ସ୍ତ୍ରୀ, ପରିତ୍ରାଣ—ଉଦ୍ଧାର ।

ସଖୀ ମୁଖେ ଜଳ ସିଞ୍ଚି ଅଞ୍ଚଳେ ବିଞ୍ଚିଲେ । ଚେତନ ବଶେ ପଲ୍ଲବ ଶେଯେ ଶୁଆଇଲେ ଯେ । ୧୧ । ଏ ସମୟେ ପରବେଶ ବ୍ରହ୍ମଗୃହୀ ଜୀବ । ଏ ସ୍ଥିତ ଦେଖି ଭାଷିଲେ ଧୀର ହେବା ଭାବ ଯେ ।୧୨। ଉଠ ହେ ରସିକ ଯିବା ସୁନ୍ଦରୀ ସନ୍ନିଧି । ଅଙ୍ଗେ ସାଧୁଛୁ ସେ କାମନାଶ ଅଜ୍ଞ୍ୟଷଧି ଯେ ।୧୩। ବାଳ ଶଇବାଳ ନବପ୍ରବାଳ ଅଧର । କୋମଳ ବାହୁ କମଳ ନାଳ ମନୋହର ଯେ ॥ ପ୍ରେମଜଳେ ପୂର୍ଣ୍ଣ ନାଭି ରସକୂପ ଲେଖ । ହାସ ଘନସାର ଅଜ୍ଞ୍ୟଷଧି ଈଶ ମୁଖ ହେ । ୧୪ । ଅଧୁର ଚେତକ ଦ୍ରବ୍ୟମାନ ଅଛୁ ସଖି । ପାରଦ୍ଧର ଛାର କେତେ ଯାଇ ସିନା ଘୁଞ୍ଚି ଯେ । ୧୬ । ଦଶନ ଡାଳିମ୍ବ ବୀଜ ମାତୁଲଙ୍ଗ ସ୍ତନ । ବଚନ ସୀତାରେ ଅଗ ହର ନେଇ ମନ ଯେ ।୧୭। ମୃତ ପ୍ରାୟ ହୋଇଥିଲା ମହୀପତିସୁତ । ଏ ବାଣୀ ଶ୍ରବଣ ହେଲା ସଞ୍ଜୀବନୀ ମନ୍ତ୍ର ଯେ । ୧୮ । ଉଠି ବସି ଅନାଇଲା ଦୂତଙ୍କ ବଦନ । ନୂତନ ଅନ୍ଧ ପ୍ରାପତ ହେଲା କି ନୟନ ଯେ । ୧୯ । ଅତି ଦରିଦ୍ର ରତନ ପାଇଲାର ପରି । ଶୁକ ଶିର ଚୁମ୍ବି ଦ୍ୱିଜେ ନମସ୍କାର କରି ଯେ ।୨୦। କୃତକୃତ୍ୟ ଦୂତ ହେଲା ଘେନିଲା ଗଡ଼ାଉ । ଶୁଣି କେତେ ରସ ଜାତ ପିଠାଉ ପିଠାଉ ଯେ । ୨୧ । ମୁଦ ଦେଖି ମୁଦ ହେଲା ଲଭି ଲେଖା ନେକ । ପ୍ରେମ ଅଙ୍କୁର ରୋମାଞ୍ଚ ପୂର୍ଣ୍ଣ ହେଲା ଗାତ୍ର ଯେ । ୨୨ । ସଙ୍କେତ ଜାଣିବା ପାଇଁ ମନ ଉଦବେଗ । କରକୁ ସ୍ତୁତ କରୁଛୁ ବେଗ ଭାଙ୍ଗ ଭାଙ୍ଗ ଯେ ।୨୩। ଶ୍ରବଣକୁ ଶ୍ରବଣ ଉଚ୍ଛନ୍ନ ହେଉଅଛୁ । ରସ ଅସ୍ୱାଦନକୁ ରସନା ଏକା ଇଚ୍ଛି ଯେ । ୨୩ । ଜୀବ କଣ୍ଠେ ଅନୁକୂଳ କଲା ଏହା ଭାବି । ସୀକାରରେ ଯିବ ଅସୀକାରରେ ଥିବ ଯେ । ୨୫ । କବା ବାଳା ମୁଦେ ତାକୁ ଶଙ୍ଖେ ସୁଗ୍ରବିଲା । ତାଟଙ୍କ ତକ ଅହ୍ଲାଦ ଭଣିବ ବୋଇଲା ଯେ । ୨୬ । ସବେ ନେନେ ସୁତ କଲେ ହୋଇବ ତୁ ମୋହ । ମୁଦ ପିଠୁ ଦୁଃଖ ଲୁଟୁ ବର୍ଣ୍ଣ ଦେଖ ତୁହ ଯେ ।୨୭।

---

୧୩ । ସନ୍ନିଧି—ପାଖକୁ, ଶଇବାଳ—ଶିଉଳି, ଘନସାର—କର୍ପୂର, ଅଜ୍ଞ୍ୟଷଧିଈଶ – ଚନ୍ଦ୍ର ।

୧୬ । ଚେତକ—ରୁଚିବା, ଦଶନ-ଦାନ୍ତ, ମାତୁଲଙ୍ଗ—ଟଭା, ସିତା-ଚିନ୍ଦ ।

୨୨ । ମୁଦ—ବନ୍ଧପତ୍ର, ଆନନ୍ଦ,ଗାତ୍ର-ଦେହ, ରୋମାଞ୍ଚ-ରୋମ ଟାଙ୍କୁରିବା

୨୪ । ଶ୍ରବଣ କାନ, ଶ୍ରବଣ—ଶୁଣିବା, ରସନା—ଜିଭ ।

୨୬ । ତାଟଙ୍କ—କର୍ଣ୍ଣର ଅଳଙ୍କାର ବିଶେଷ ।

ପ୍ରଥମେ ତୋହ୍ର ପରତେ ଯେହ୍ନ ସିନା ରସ୍ତୁଁ । ଅମ୍ଭଙ୍କ ଛାଡ଼ଣ ସୁଖ ଭୁଞ୍ଜୁ-
ଥେଉଁ ଯଶୁଁ ଯେ । ୨୮ । ମୂର୍ଖକୁ ବୁଝାଇବାର ଅତି କଷ୍ଟ ଜାଣି ।
କେତେବେଳେ ବିଳମ୍ବ ତାହାର ଯେହ୍ନ ପୁଣ ଯେ । ୨୯ । ନାବଡ଼ ନାତକ
ଏହୁରୂପେ ଏହୁ କର । ଯେହ୍ନ ଫେଡ଼ିବ କଳ୍ପିବ ଏମନ୍ତ ବିଚାର ଯେ ।୩୦।
ରଖି ସେ ନ ଦେଲା ଅତ ଇନ୍ଦ୍ରସୁଙ୍କ ଦ୍ୱନ୍ଦ । ଫେଇ ପଢିବାକୁ ଗୃହି
ହୋଇଲା ଅନନ୍ଦ ଯେ । ୩୧ । ବିରଳ ସମବର୍ତ୍ତୁଳ ତା ଅକ୍ଷର ଧାଡ଼ି ।
ନାଗେଶ୍ୱର ପୁଷ୍ପ କେଶରରେ ତନ୍ତୁ ଜଡ଼ି ଯେ । ୩୨ । ଶ୍ରେଣୀ ଶ୍ରେଣୀ
ହୋଇ ଶିଶୁ ମଧୁକର କି ସେ । ଫୁଲ୍ଲ ପୁଣ୍ଡରୀକେ ବସିଛନ୍ତି ରସବଶେ ଯେ ॥
ରଜତପତ୍ରେ କି ଉଲ୍ଲୁଟିଛି ହେମମଲ୍ଲୀ । ଫୁଲ ପତ୍ର ପଦ ବିଶ୍ରାମିତ ସ୍ଥାନ
ଫୁଲ ଯେ ।୩୪। ଗୃହି ଉନ୍ମାଦ ଶୁଷନ ଦହନ ଶୋଷନ । ସମ୍ମୋହନ ଯେହ୍ନ
ପଞ୍ଚ ବାଣ ପଞ୍ଚବାଣ ଯେ ।୩୫। ଚୂତ ନବମାଳିକା ଅଶୋକ ନୀଳୋତ୍ପଳ ।
ପଦ୍ମ ଯେହ୍ନ ପାଞ୍ଚ ଜାତି ଫୁଲରେ ମଞ୍ଜୁଳ ଯେ ।୩୬। ମନ୍ଦବଳେ ସେକାଳେ
ଅଲକ୍ଷ ଲକ୍ଷ୍ୟକଲା । ଏକଶର ଯାର ମହେଶ୍ୱର ନ ସହିଲା ଯେ । ୩୭ ।
ସହିଲା କେମନ୍ତେ ଏତେ ମନୁଷ୍ୟ ଶରୀରେ । ଯେହ୍ନେ ପଡ଼ି ଭସ୍ମ ସେ
ବିରହ କୃଶାନୁରେ ଯେ ।୩୮। ମନୁ ଜାତ ମାର ମନ୍ତ୍ରେ ମନ ମାରୁ ଜାତ ।
ସାତ୍ତ୍ୱିକ ତୁଳ ସିଦ୍ଧିକି ରଖିଲା ନିଯୁତ ଯେ । ୩୯ । କୁମାର ପଢ଼ିଲା ପତ୍ର
ପୁନଃ ପୁନଃ କରି । ପଦ ପଦକେ ଅଶେଷ ରସ ଅଛି ପୁରି ଯେ । ୪୦ ।
ଏଥୁ ଯେହ୍ନାଲ ତାହାର ରସବନ୍ତ ଗୁଣ । ଦୃଷ୍ଟାନ୍ତରୁ ଜାଣିଲ ପଣ୍ଡିତା ଗୁଣ
ପୁଣ ଯେ । ୪୧ । ସଖୀମାନେ ଲେଖିବାରୁ ଜାଣିଲା ଚତୁରୀ । ସଙ୍କେତରୁ
ଜାଣିଲ ସେ ବିରହେ ଅସ୍ଥିରୀ ଯେ । ୪୨ । ଶିରେ ଉରେ ଲଗାଇଲା ପୁନଃ
ପୁନଃ ପତ୍ର । କିଛି କିଛି ସାନ୍ତ୍ୱନା ହୋଇଲା ଚେତଶୋଗାତ୍ର ଯେ । ୪୩ ।

---

୩୨ । ବିରଳ—ପରିଷ୍କାର, ସମବର୍ତ୍ତୁଳ—ସମାନ ଗୋଲ ।
୩୩ । ଶିଶୁ ମଧୁକର—ଭଅଁରଛୁଆ, ଫୁଲ୍ଲ—ଫୁଟିଲା, ପୁଣ୍ଡରୀକ—ଧଳାପଦ୍ମ ।
୩୪ । ରଜତ ପତ୍ରେ - ରୂପା ପତ୍ରରେ, ହେମମଲ୍ଲୀ—ସୁନାମଲ୍ଲୀ ।
୩୬ । ନବମାଳିକା—ନଅଳୀ, ନୀଳୋତ୍ପଳ—ନୀଳକଇଁ ।
୩୭ । ମହେଶ୍ୱର—ମହାଦେବ ।
୩୮ । କୃଶାନୁ—ଅଗ୍ନି ।
୩୯ । ସାତ୍ତ୍ୱିକ—ଉଦ୍ଭବ, କାମଭାବ ଜାତହେବା ।
୪୦ । ଦୃଷ୍ଟାନ୍ତରୁ—ଉପମାରୁ, ପଣ୍ଡିତା—ବିଦ୍ୟାମତୀ ।
୪୨ । ଅସ୍ଥିରୀ—ଅସ୍ଥିର ।

ସମ୍ଭାବନା କଲା ଗାଳକୁହିଁ ଶାନ୍ତ କଲା । ଅଙ୍ଗେ ଅଙ୍ଗେ ଭାଗ ନେଲେ ଯେଉଁ
ଭାଗ ଦେଲା ଯେ । ୪୪ । ନେତ୍ର ଦେଖି କର୍ଣ୍ଣ ଶୁଣି ମନ ଯେଣୁ ତୋଷ ।
କର ଫେଇ ମୁଖପିଇ ଯିବ ଭୟ ନାଶ ଯେ । ୪୫ । କହେ ମନ୍ତ୍ରୀ ପୁରୋହିତ
ସୁତ ମୁଖ ଚୁହିଁ । ଶିବରାଣି କି ଯିବାକୁ ପ୍ରିୟା ଅଛୁ ଲହି ଯେ ॥ କି
ଉପାୟ କରି ଯିବା ପୁଣି ଦେଶ ଦୂର । ଶୁଣି ସେ କହିଲେ ଅଛୁ ତହିଁକି
ବିଗୃର ଯେ । ୪୭ । ଅମ୍ଭେ ସମ୍ମତ କରାଉ ସିନା ଦଣ୍ଡଧାରୀ । ଏ କେଉଁ
କଥା ସମ୍ମତ କଲା ଯେବେ ନାରୀ ଯେ ।୪୮। ପୁଚ୍ଛେ ବୀର ଦୂରେ ଅଜ କି କହୁଛୁ
ଯୋଷା । ବୀର କହେ କି କହିବି ଶୁଣ ତାର ଦଶା ହେ । ୪୯ । ତର ତର
ତୁମ୍ଭ ଦେଶେ କି କାତରତର । ପର ପରତରୁ ଦୁଃଖ ସବୁ ଶର ଶର ଯେ ॥
ଜର ଜର ତନୁ ବାଜି ଫୁଲଶର ଶର । ଥର ଥର ହୋଇ ବୋଲେ କଷ୍ଟ
ହର ହର ଯେ । ୫୧ । କର ବରନାକୁ ଦହେ ସୁଧାକର କର । ସାର-
ସାରସପତର ଗନ୍ଧସାର ସାର ଯେ । ୫୨ । ମାର ମାରଣରୁ ପୂରାଇଛି ଗାର
ଗର । ବାର ବାର ପ୍ରଳାପ ଅନାଇଁ ତାର ତାର ଯେ ।୫୩। ଶରବରହ
ନାଶ ରସନାଧର ଧୀର । ନ ଜୀଇଁବ ଅଜ ହେଲେ ବିଳମ୍ବ ଯିବାର ଯେ ॥
ଏ ବଚନେ ଛଇଲ ହୋଇଲା ଛନଛନ । ଅଶ୍ରୁ ପୂରାଇ ନୟନ କଲା ଥନ
ଥନ ଯେ । ୫୫ । ପୁଣି ଶୁଭାଇ ପଢ଼ିଲା ସୁନ୍ଦରୀ ସନ୍ଦେଶ । ପଦେ ପଦେ
ଅର୍ଥକରି ଘେନିଲା ସୁରସ ଯେ । ୫୬ । ସେ ପତ୍ର ହୋଇଲା ଜାଣ ବିକଶିତ
ପଦ୍ମ । ରୋଲମ୍ବ ହୋଇ କୁମାର ମନେ କଲା ସଦ୍ମ ଯେ । ୫୭ ।
ପ୍ରତକ୍ଷଣେ ଶୁକ ବ୍ରହ୍ମଚାରୀ ବାମ କଥା । କହିବାରେ ଆତୁର ଅଧିକାଧିକ
ବ୍ୟଥା ଯେ । ୫୮ । ଫାଲ୍‌ଗୁନ ଫାଲ୍‌ଗୁନ ପୁନଃପୁନଃ ଜପ କରେ ।
ଦୁଃଖ-ଭୀଷ୍ମ ନାଶ ହୋଇବାରେ ସେ ବିଗୃରେ ଯେ । ୫୯ । ସୁତ କରେ

---

୪୮ । ସମ୍ମତ—ସ୍ୱୀକାର ।
୪୯ । ଯୋଷା—ସ୍ତ୍ରୀ, ଦଶା—ଅବସ୍ଥା ।
୫୦ । କାତରତର—ଅତ୍ୟନ୍ତ ଅସ୍ଥିର, ଶର—ଅତ୍ୟନ୍ତ, ଶର—ବିନାଶ ।
୫୧ । ହରହର—ନାଶକର ।
୫୨ । ସୁଧାକର—ଚନ୍ଦ୍ର, କର—କିରଣ, ସାର ସାର ସପତର—ଭଲ ପଦ୍ମପତ୍ର, ଗନ୍ଧସାର—ଚନ୍ଦନ ।
୫୩ । ପ୍ରଳାପ—ଆକ୍ଷେପ, ବାକ୍ୟେ ରକମ ଗପିବା ଓ ମୋହିଯିବା ପ୍ରଭୃତି ।
୫୭ । ବିକଶିତ—ଫୁଟିଲା, ରୋଲମ୍ବ—ଭ୍ରମର, ସଦ୍ମ—ଘର ।
୫୯ । ଦୁଃଖଭୀଷ୍ମନାଶ—ଭୀଷ୍ମ ନାଶ କରିବାକୁ ଶରଶଯ୍ୟା କରିଥିଲେ । ସେହିପରି ଲାବଣ୍ୟବତୀ ମଦନ ଶରରେ ବ୍ୟଥିତ ।

ଶିବରାଜି ପଦ କର ସିଦ୍ଧି । ସେହୁଠାରେ ଦର୍ଶନ କରାଇ ଭାବନାଧି ଯେ ।୬୦।
କେଉଁ ମାସେ କେଉଁ ଦିନ କ୍ଷୟ ସେ ଲେଖାଇ । ବୃଦ୍ଧି ନୋହିବାକୁ
ଚଣ୍ଡୀକବଚ ଗୁଣାଇ ଯେ ।୬୧। ବାଳୀପ୍ରିୟ ହୋଇ କର ବାଳିବିନାଶନ ।
ହରପ୍ରିୟ ହୋଇ କର ନୁହେ ବିଚ୍ଛେଦନ ଯେ ।୬୨। ସ୍ୱୟଂ ଚକ୍ରଧର
ଚକ୍ର ସୁତହତକାରୀ । ସେ ରାମଚନ୍ଦ୍ର ଚରଣ ଶରଣରେ ସୁମର ଯେ ।୬୩।
କହେ ଉପେନ୍ଦ୍ର ଭଞ୍ଜ ବୀରବର ରସ । ନୃପସୁତ ଉଚ୍ଛନ୍ନକାରକ ଛାନ୍ଦ ଶେଷ
ଯେ ।୬୪।

---

## ଦ୍ୱାବିଂଶ ଛାନ୍ଦ

(ଲାବଣ୍ୟବତୀର ବିରହ)

ରାଗ—କାମୋଦୀ

ଦେଖି ନବକାଳିକା ବକାଳିକାମାଳିକା ଅଳୀ କାଳିକା କାନ୍ତ
ସ୍ମର । ରକ୍ଷା କେମନ୍ତେ କର କରିବା ମତ୍ତକରୀ-ଗତିକି ଏମନ୍ତ ବିଚାର ସେ ।
ସହଚର । ଭାବେ ବଞ୍ଚିଲେ ଏ କାଳକୁ । କଥା ଥିବ କାଳ କାଳକୁ ।
ଏବେ ତ କ୍ଷୀଣଦିନ ହେଲା ଦୁର୍ଦ୍ଦିନ ଦିନ ନ ଲଭୁ ବଲ୍ଲଭ ମେଳକୁ ରେ ॥

---

୬୨ । ବାଳୀପ୍ରିୟ—ସ୍ତ୍ରୀପ୍ରତି ଅସକ୍ତ, ବାଳି ବିନାଶନ—ବାଳିବାନର ନାଶକ, ହରପ୍ରିୟ—ମାର୍କଣ୍ଡ ପ୍ରିୟ, ହର—ହରଣ କର, ଅସୁର ।

୬୩ । ଚକ୍ରସୁତ ହତକାରୀ—ଚକ୍ରବର୍ତ୍ତୀ ରାବଣ ପୁତ୍ରକୁ ମାରିଥିଲେ ।

---

## ଦ୍ୱାବିଂଶ ଛାନ୍ଦ

୧ । ନବକାଳିକା—କଳାମେଘ, ବକାଳିକାମାଳିକା——ବଗସମୂହ, ଅଳୀ—ସଖି, କାଳିକାକାନ୍ତ—କାଳୀଙ୍କ ସ୍ୱାମୀ, ମହାଦେବ, କେମନ୍ତ କର—କେଉଁ ଉପାୟରେ, ମତ୍ତକରୀଗତି—ହାତୀଗମନା, ଲାବଣ୍ୟବତୀ କ୍ଷୀଣ—ଅଳ୍ପ, ବଲ୍ଲଭମେଳ—ସ୍ୱାମୀସଙ୍ଗ। ସଖିମାନେ କଳାମେଘରେ ଧଳାବଗ ମାଳପରି ଉଡ଼ୁଥିବାର ଦେଖି ବିଚାର କଲେ, ଏହା ଦେଖିଲେ କାମ ଜାତ ହେବ, ଗଜଗମନା ଲାବଣ୍ୟବତୀ ବିରହରେ ଅମ୍ଭେମାନେ ଅସ୍ଥିର, ତାଙ୍କୁ କପରି ରକ୍ଷା କରିବା । ସେ ସ୍ୱାମୀସଙ୍ଗ ନ ପାଇବାରୁ ବଡ଼ ଅସ୍ଥିର । ଏ ସମୟରେ କିଛି ଉପାୟ କଲେ, ଏ କଥା ସବୁଦିନକୁ ଥିବ । ଏବେ ଦିନ ଛୋଟ ପୁଣି ବର୍ଷା ।

ହୃତ ଅନମାନଙ୍କ ସତ କାମିଜନଙ୍କ ଅହି ପରି ଅହିତ ଏହି । ହତ କୃଶାନୁ ସାନୁମାନରୁ ଭାନୁଭାନୁ-ତାପରୁ ନିସ୍ତରଇ ମହୀରେ । ସହଚରି । ବିରହାନଳ ହୃଦସ୍ଥଳେ । ଜଳେ ସେ ହତ ନୁହେ ଜଳେ । କରୁଛି ଜାତ ଜାତବେଦକୁ ସତ ଶତହ୍ରଦା-ଛଳରେ ଘନକୋଳେ ରେ ।୨।

ଯେଉଁ ସୁନ୍ଦରୀ ଦରିଭୂତରୁ ଗଣ୍ଡ ଧରି ଧରଣୀଶୟନ କରନ୍ତି । କଣ୍ଠେ ଜୀବନ ବନପୂର୍ଣ୍ଣ ନୟନ ଘନ ଘନ ନିଃଶ୍ୱାସକୁ ଲଭୁଛି ରେ । ସହଚରି । ପକାଇ ଆପଣା ଅଙ୍କରେ । ଲୋଡ଼ିଲେ ନ ଲଗାଇ କରି । ଯେହ୍ନେ ଏଡ଼େ ଦୁର୍ବଳ ଝଞ୍ଜାନିଳ ପ୍ରବଳ ଜଡ଼ଯାଇଛି ଯତ୍ନ କର ରେ ।୩।

---

୨ । କାମିଜନ—କାମୁକ ଲୋକ, ଅହି—ସାପ, ଅହିତ—ଅମଙ୍ଗଳ, ହତ—ନାଶ, କୃଶାନୁ—ଅଗ୍ନି, ସାନୁମାନ—ପର୍ବତ, ଭାନୁ—ସୂର୍ଯ୍ୟ, ଭାନୁ—ଖର, ତାପ—ତାତି, ବିରହାନଳ—ବିରହ ଅଗ୍ନି, ଶତହ୍ରଦା—ବିଜୁଳି, ଜାତବେଦ—ଅଗ୍ନି ।

ବର୍ଷା ସମୟ ଅନ୍ୟମାନଙ୍କୁ ସୁଖକର, ମାତ୍ର କାମୁକଲୋକଙ୍କୁ ସର୍ପପରି ଅମଙ୍ଗଳ । ପର୍ବତରେ ଯେଉଁ ନିଆଁ ଲାଗିଥାଏ ଓ ସୂର୍ଯ୍ୟଙ୍କ ପ୍ରଖର କିରଣରେ ପୃଥିବୀ ବ୍ୟସ୍ତ ହୋଇଥାଏ, ଏ ବର୍ଷାଯୋଗୁଁ ସେ ସବୁ ନିବାରଣ ହୁଏ, ମାତ୍ର ହୃଦୟକୁ ଯେଉଁ ବିରହଅଗ୍ନି ପୋଡ଼େ ସେ ତ ପାଣିରେ ଯିବ ନାହିଁ, ପୁଣି ମେଘରେ ଯେ ବିଜୁଳି ଜାତ ହୁଏ, ସେପରି ଲାବଣ୍ୟବତୀ ହୃଦୟରେ ବିଜୁଳିରୂପ କାମ ଝିକ୍‌ଝିକ୍ କରି ବିରହଅଗ୍ନି ଉତ୍ପାଦନ କରୁଅଛି ।

୩ । ଦରିଭୂତରୁ—ଭୟରୁ, ଗଣ୍ଡ ଧରି—ଗାଲରେ ହାତଦେଇ, ଧରଣୀ ଶୟନ—ମାଟିରେ ଶୋଇବା, ଜୀବନ—ପ୍ରାଣ, ଜୀବନ—ପାଣି, ଲୋତକ, ଝଞ୍ଜାନିଳ—ପ୍ରଖର ପବନ ।

ଲାବଣ୍ୟବତୀ କାମାତୁରରେ ଗାଲରେ ହାତଦେଇ ମାଟିରେ ଶୋଇଛି, ତାର ପ୍ରାଣ ମଧ୍ୟ କଣ୍ଠାଗତ, ଆଖି ଲୁହରେ ପୂର୍ଣ୍ଣ, ଘନଘନ ନିଃଶ୍ୱାସ ବାହାରୁଛି, ତା ଦେହରେ ହାତ ବୁଲାଇଲେ, ଜୀବ ଅଛି କି ନାହିଁ ଜଣାଯାଉ ନାହିଁ, ସେ ଏଡ଼େ କ୍ଷୀଣ ହୋଇଛି, ଝଞ୍ଜାପବନ ବହିଲେ, କାଳେ ଅନିଷ୍ଟ ହେବ, ତେଣୁ ଯତ୍ନ କରିବା ଆବଶ୍ୟକ ।

ଘୋଟୁଁ ଘଟକୁ ମାର ଚନ୍ଦ୍ରେ ଘଟ କୁମାର ପିକଡାକକୁ ଶୁଣି ଯେହୁ ।
ଏ ନାଦ ସହୁ ସହୁ ହେବ ମହ ବିରହ ବହିବଟି ଜୀବନେ କେହୁ ରେ ।
ସହଚର । ସ୍ତନିତବେଳେ କର୍ଣ୍ଣେ କର । ଦେବା ତା ଏ ଉପାୟ କର ।
ପୟୋଧରକୁ ଧର ବିଚାର ପୟୋଧର ଗ୍ରାସେଟି ପ୍ରବେଶରେ ଭର ରେ ।୪।

କର ପିକକୁ ମୂକ ମକମକ ଶାମୁକ କାମୁକ ଚମକକୁ ନିତ୍ୟେ ।
ରାମା ହେବାକୁ ଶିବା ଶିବାଗଣ ପୋଷିବା ଶିବାଙ୍କୁ ମନାଇବା ବ୍ରତେ
ରେ । ସହଚର । ତୋଷି ଖଣ୍ଡପରଶୁଧର । ନିତ ଲିପାଅ ସୁଧା ପୁର ।
ଧନକୁ ଉପଚାର ଧନକୁ କି ବିଚାର ପେଷ ତା ନ ପଚାର ଚାର ରେ ।୫।

ଦେଖ କେକୀକଳାପ ନାଚେ ଟେକୀ କଳାପ ବିପ୍ରଳାପ କରୁଛନ୍ତି
କେତେ । ଏହାର କି ଲବଧ କର ଅବଧ ବଧ ବ୍ୟାଧଙ୍କୁ କହିବା କି
ହେତେ ରେ । ସହଚର । ପର୍ଣ୍ଣବାଡ଼ ଲଗୁଡ଼ ପାଣ । ଘେନି କଟନ୍ତୁ ବେଗେ
ନାଶ । କର ଯୁ ପତ୍ର ଗୋତ୍ର ବ୍ୟଜନ ଅତପତ୍ର ଦେବଙ୍କୁ ଦେବାକୁ
ମନାସ ରେ ।୬।

---

୪ । ଘୋଟୁ—ଘୋଟିବାରୁ, ଘଟକୁ-ଦେହକୁ, ମାର-କନ୍ଦର୍ପ, ଘଟକୁମାର—ଅଗସ୍ତି, ପିକଡାକ—କୋଇଲି ରଡ଼ି, ସ୍ତନିତ—ମେଘ ଗର୍ଜ୍ଜନ, ପୟୋଧର—ମେଘ, କୁଚ, ଧର—ପର୍ବତ, ପ୍ରବେଶରେ—ଘର ଭିତରେ । କନ୍ଦର୍ପ ଦେହକୁ ଭେଦିବାରୁ ପିକ ଡାକକୁ ବଜ୍ର ପରି ମଣୁଅଛୁ, ତେଣୁ ବଜ୍ରପଡ଼ିଲେ ଅଗସ୍ତିକୁ ଡାକିଲେ ନିବାରଣ ହୁଏ । ଏପରି ଶବ୍ଦ ଶୁଣି ଅତ୍ୟନ୍ତ ବିରହୀ ହେତୁ ପ୍ରାଣରେ ରହିବ କିପରି, ମେଘ ଶବ୍ଦ ବେଳେ କାନରେ ହାତ ଦିଅ, କୁଚ ପର୍ବତକୁ କାଳେ ଗ୍ରାସିବ ପୁର ଭିତରକୁ ନେଇ ଚାଲ ।

୫ । ବର୍ଷା ଦିନରେ କୋଇଲି ଶବ୍ଦ କରେ ନାହିଁ ଏବଂ ଶାମୁକ କି ଶାମୁକାର ମକ୍ ମକ୍ ଶବ୍ଦରେ କାମଜାତ ହୁଏ । ରାମା-ସୁନ୍ଦରୀ, ଶିବା-ମଙ୍ଗଳଯୁକ୍ତା, ଶିବାଗଣ—ବିଲୁଆସବୁ, ଶିବା-ପାର୍ବତୀ, ଖଣ୍ଡପରଶୁଧର-ମହାଦେବ, ସୁଧା—ଚୂନ, ଧନ—ସଖୀ ।

୬ । କେକୀକଳାପ—ମୟୂରମାନେ, କଳାପ-ପୁଚ୍ଛ, ବିପ୍ରଳାପ-ବିରୋଧ ଉକ୍ତି, ପର୍ଣ୍ଣବାଡ଼-ପତ୍ରର ବାଡ଼, ବାଣୁଆମାନେ ତାଳପତ୍ର ବାଡ଼ ଭଳି କରି ତା ପଛରେ ଲୁଚିଲୁଚି ଯାନ୍ତି, ଲଗୁଡ଼-ଠେଙ୍ଗା, ପତ୍ର ଗୋତ୍ର —ପକ୍ଷୀ ଓ ଚନ୍ଦ୍ରିକା ସବୁ, ବ୍ୟଜନ-ବିଞ୍ଚଣା, ଅତପତ୍ର-ଛତା, ମନାସ-ମାନସିକ କର ।

ତୁହିଁ ଏଥେଁ ଉଦାସ ଦାସ କରିବା ଦାସ ଅଣୁ ସେ ପାଶେ ପାଶେ
ଧର । ତାକେ କାଳକଣ୍ଟକ ବିରହିଣୀକଣ୍ଟକ ଯାଉ ତା ଉତପାତ ସବୁ
ରେ । ସହଚରି । ଉପାଡ଼ିବା ପୁଷ୍ପଲତାକୁ । ଶମନା ନ କରନ୍ତୁ ତାକୁ ।
ସୁମନାରେ ସୁମନାଲୋଭୀ ଭୃଙ୍ଗ ସୁମନା ହୋଇ ତାପିବେ ସୁମନାକୁ ରେ ।୭।

ମରାଳ ମାନସକୁ ଯାଉଛି ମାନସକୁ ଏ କଥା କେବେ ନ ଅଣିବ ।
ଯାର ନାହିଁ ଜୀବେଶ ତାର ଜୀବ ଜୀବେଶ ଦେଶରେ ପ୍ରବେଶ କରିବ ରେ ।
ସହଚରି । ପକ୍ଷୀ ପକ୍ଷରୁ ଉଡ଼ିଯାଇ । ଛାଡ଼ିଦେବା ଉପାୟ ନାହିଁ । ଅମ୍ଭ
ନେତ୍ରସମ୍ପତ୍ତି ପତି ସଙ୍ଗତ ଗତି ପାଇବାଯାଏ ଥାଉ ରହି ରେ ।୮।

ଜାତ ହୋଏ ସ୍ଫୋଟକ ଯେ ଫୁଟକ ହାଟକ ତନୁରେ ଲାଗିଲେ
ଚନ୍ଦନ । ଏ ମହୋଜ୍ଜ୍ୱଳ ଜଳ ଜ୍ୱଳନ ଜନ୍ମସ୍ଥଳ ଛୁଇଁଲେ କରିବ ଦାହନ
ରେ । ସହଚରି । ଏହାକୁ ଯତ୍ନ କରିଥିବା । ଭ୍ରମରେ ଚତ୍ୱରେ ନ ନେବା ।
ହତ ଜଣୀର ବାଟି ଭଳି ପରିସ୍ଥ ବାଟି ଜଳାଇବା ଟିକି ନାଶିବା ରେ ।୯।

ଏ ଦୁରନ୍ତ ଦର୍ଦ୍ଦୁର ଚେତନା କରେ ଦୂର ଭିଦୁର କାହିଁ ଅଛେ
ପଡ଼ି । କରମକୁ ଏହାର ହରହାର ଆହାର ଗରୁଡ଼ ଭଳି ହବା ଲୋଡ଼ି ରେ ।
ସହଚରି । ଅରଜିଅଛି ଏ ଉତ୍ସବ । ଗରଜି ଗରଜ ମାରିବ । କେ ହେବ ଏ
ବରଦ ହୋଇ ସିଂହ ଶରଦ-ନୀରଦ ଦ୍ୱିରଦ ଭାଞ୍ଜିବ ରେ ।।୧୦।

---

୭ । ଉଦାସ—ଅମନ ଯୋଗୀ, ଦାସ—ଚଣ୍ଡେଇଟଗ୍ରୁ, ଦାସ କରିବା—ବଶ କରିବା, କାଳକଣ୍ଟକ—ଡାହୁକ, ସୁମନା—ସ୍ତ୍ରୀ, ସଖି, ସୁମନଲୋଭୀ—ଫୁଲରେ ଲୋଭ ଯାହାର, ଭୃଙ୍ଗ—ଭଅଁର, ସୁମନା—ଖୁସି, ତାପିବେ—କଷ୍ଟଦେବେ, ସୁମନା—ଲାବଣ୍ୟବତୀ, ଭ୍ରମର ଶବ୍ଦରେ ମଧ୍ୟ କାମ ଜାତ ହୁଏ ।

୮ । ମରାଳ—ହଂସ, ମାନସ—ମନ (ମାନସରୋବର) ଜୀବେଶ—ଯମ, ସ୍ୱାମୀ । ହଂସ ମାନସରୋବରକୁ ଯାଏ ମାତ୍ର ଏଠାରେ ହଂସ ବିରହିଣୀଙ୍କ ମନକୁ ନେଇ ଯମପୁରକୁ ଯାଉଛି ।

୯ । ସ୍ଫୋଟକ—ଫୋଟକା, ହାଟକତନୁ—ସୁନାଦେହୀ, ଜ୍ୱଳନ—ଅଗ୍ନି, ମହୋଜ୍ଜ୍ୱଳ—ଅତ୍ୟନ୍ତ ଉଜ୍ଜ୍ୱଳ, ଜାଆଁ ସମୁଦ୍ରରୁ ଜନ୍ମ, ତେଣୁ ଏ ପାଣି ସମୁଦ୍ରରୁ ଆସୁଥିବାରୁ ଏଥିରେ ଦାହକା ଗୁଣ ଅଛି, ଚତ୍ୱର—ଅଗଣା, ଜଣୀର—କେଶଚେଚ, ବାଟି—ଘୋର ଓ ବାଟିବା ।

୧୦ । ଦୁରନ୍ତ—ଦୁଷ୍ଟ, ଦର୍ଦ୍ଦୁର—ବେଙ୍ଗ, ହରହାର—ସର୍ପ, ଭିଦୁର—ବଜ୍ର, ବରଦ—ବରଦାତା, ସିଂହଶରଦ—ଶରଦକାଳ ସିଂହପରି ହେଲ, ମେଘରୂପ ହାତୀଙ୍କ ନାଶ କରିବ ।

ଏ କାଳ ଏକା ଏକାକୀରେ ପକାଇ ତକା ବକ୍ରୁଲଫଳକା ଅଛୁ ବହି । କା କଲେ ଗିରଙ୍କେକା ଶତ୍ରୁ ଚମକ ଟେକା କରକା ମାରୁଛୁ ଡୁହାଇ ରେ । ସହଚରି । ଏହି କାମନା ପଞ୍ଚଶେଷେ । ଏହା ଭିଆଇଅଛୁ ବିଶେଷ । ଯଥା ନୀପଜାଲକ ତଥା ପରପୁଲକ ପୂରୁ ସୁତନୁ ତନୁଦେଶେ ରେ । ୧୧ ।

ଯେମନ୍ତେ ନୀରଧାର ତେମନ୍ତେ ନିରନ୍ତର ନୀର ନୀରଜନେତ୍ର ବହୁ । ଯଥା ପଙ୍କିଳା ମହୀ ମହିଳାଗଣ୍ଡ ସେହି ପ୍ରତି ପ୍ରତିଦିନରେ ହେଉ ରେ । ସହଚରି । ପିକ ପ୍ରାୟ ବାଣୀ ନ ଫିଟୁ । ଅନ୍ଧାର ପ୍ରାୟ ଚିନ୍ତା ଘୋଟୁ । ମାର ମାର୍ଗଣ ଗଣ ପ୍ରହାରେ ପୁଣ ପୁଣ ମାଲତୀ ସଙ୍ଗେ ହୃଦ ଫୁଟୁ ରେ । ୧୨ ।

ହେଉ କାନ୍ତି ଗୁପତ ସପତହରି ବତ ପବଂତବତ ହେଉ କ୍ଷୀଣ । ରହିଛୁ ସବୁଠାରେ ଏହି ପ୍ରକାରେ ଠାର ଧୈର୍ଯ୍ୟ କୁଠକୁଠାର ଘନ ରେ । ସହଚରୀ । ଯେତେ ଉପାୟ ଭାଳବଇଁ । ସେ ଚରିତ କାହୁଁ ନୁହଇ । ବୁଡ଼ି ସରିତ ତୁରିତକୁ ଯେନ ବାରିନ ନୃପତି ଅନ କି କରଇ ରେ । ୧୩ ।

କେ ପୁଣି ବେଗେ ଯିବ ଜୀବଥବେ କାହିଁକି ଜୀବଧବେ ନେଉଛୁ ଜୀବ । କେଉଁ କାର୍ଯ୍ୟ ଭଜିବ ପଛେ ଯେମନ୍ତେ ଯିବ ନ ଦେଖିବ ମୁଖ-ରାଜୀବ ରେ । ସହଚରି । ତୁମ୍ଭେ ଚନ୍ଦ୍ର ସେ ଜୀବଞ୍ଜୀବ । ଶୁଣିବା ଉପାୟ ସଜ୍ଜିବ । କଉରେ ଥିଲେ ଜୀବ ଏ ଶୁଭ ଅବଳୀବ ଅସିବା ବିଳମ୍ବ ତେଜିବ ରେ । ୧୪ ।

---

୧୧ । ବକ୍ରୁଲଫଳକା—ବଜ୍ରଲଗ୍ନିକ, ଗିରଙ୍କେକା—ଶ୍ରୀକୃଷ୍ଣ, କରକା—କୁଆପଥର, ତୁହାଇ—ଘନଘନ, ନୀପଜାଲକ—କଦମ୍ବଫୁଲ ସବୁ, ପରପୁଲକ—ପ୍ରେମ ଠାକୁରିବା, ସୁତନୁ—ସୁନ୍ଦର ।

୧୨ । ନୀର—ପାଣି, ନୀରଜ—ପଦ୍ମ, ପଙ୍କିଳା—କାଦୁଅ, ମହିଳା—ଶ୍ରେଷ୍ଠ ସ୍ତ୍ରୀ, ମାର—କନ୍ଦର୍ପ, ମାର୍ଗଣ—ଶର, ଗଣ—ସମୂହ ।

୧୩ । କାନ୍ତି—ବର୍ଣ୍ଣ, ରଙ୍ଗ, ସପତହରି—ସୂର୍ଯ୍ୟ, ପର୍ବତକୁ ମେଘ ଘୋଡ଼ାଏ ଏଠାରେ ସେହିପରି ମନେକର, କୁଠ—ଗଛ, ଘନ—ମେଘ, କୁଠାର କୁରାଢ଼ୀ, ସରିତ—ନଈ, ନୃପତି—ରାଜା ସମୁଦ୍ର ( ଚନ୍ଦ୍ରଭାନୁ ) ।

୧୪ । ଜୀବଧବ—କାମ, ଜୀବଥବ—ସ୍ୱାମୀ, ମୁଖରାଜୀବ—ମୁଖପଦ୍ମ, ଜୀବଞ୍ଜୀବ ଚକୋର, ଜୀବ—ବୃହସ୍ପତି ।

ପୁସ୍ତ ପୁଦଲ ଏହାକାଳେ ହା ସ୍ମରବେ ତହିଁ ନ ସହ ସଖୀ ଗଲେ ଧାଇଁ । ଅଛୁ କି ନାହିଁ ତୂଳାକରଣେ ପ୍ରାଣ ତୁଳା ଜାନୁବର୍ତ୍ତିଳା ନାସେ ଦେଇ ସେ । ସହଚର । ଶବପିତୁଲା ପ୍ରାୟ ଗୃହିଁ । ଟେକି ଫୁଙ୍କିଲେ କର୍ଣ୍ଣ ଦୁଇ । ଅର୍ଣ୍ଣ ପର୍ଣ୍ଣରେ ସିଞ୍ଚି ଶିର୍ଣ୍ଣକଟିକି ବାନ୍ଧି ଲଲାଟେ ଚନ୍ଦ୍ର ଚୂର୍ଣ୍ଣ ଦେଇ ସେ । ୧୫ ।

ଚଣ୍ଡୀରଷ୍ଟଖଣ୍ଡନେ ଚଣ୍ଡୀ ମନାସି ମନେ ଗ୍ରହଶାନ୍ତିକ ବାଗୁରଲେ । ପୀତବସନ କାର୍ତ୍ତସ୍ୱରବହୁତ ଅର୍ତ୍ତିସ୍ୱରେ ଭୂସୁରେ ଉତ୍ସର୍ଗିଲେ ସେ । ପ୍ରାଣସହ । ଭାଳନ୍ତ ପାଇ ଅଜ ଜୀବ । ଅମ୍ବ ଜରକୁ ଅଜଜବ । ଚେତେଚେବେଳେ ଚେତନ ପାଇ ସ୍ମାରତନ ଧୀରେ ବୋଇଲା ଶିବ ଶିବ ସେ । ୧୬ ।

ସଖୀ ଏମନ୍ତ ମତ୍ତକାଶିନୀଚତ୍ତହିତ ନମିତ୍ତ ବଚନ ରଚତ । ପ୍ରସ୍ଥାନ କାନ୍ତ କାନ୍ତ କଲେ ଜଦନ୍ତ ଦନ୍ତଶୋଭନୀ କହିଲେ ସାଧୁତ ରେ ସହଚର । ରହିଛନ୍ତି କେରଳଦେଶେ । ନର୍ମଦାନଦୀ ବୃଦ୍ଧି ବଶେ । ଗୁଣମଣି କି ଗୁଣେ ସନ୍ତାପିତ ଦ୍ୱିଗୁଣେ ଫଗୁଣେ ହେବେ ପରବେଶରେ । ୧୭ ।

ଏହୁ ପ୍ରମାଣ ମାଣବକମୃଗାକ୍ଷୀ ପ୍ରାଣ ପ୍ରାଣକୁ ଚେତେଦନ ରଖି । ସଂପ ଅନୁରାଗରେ ନାହିଁ କେଉଁ ନଗରେ ସେହି ନାଗରେ ସାର ଲେଖି ରେ । ସହଚର । ମହତ ଯେ ଅଟନ୍ତି ସେହି । ତୋ ହତ ଶୁଣିବାରୁ ସହି । ମରଣକୁ ବରଣ-କରବେ ରଣରଣ-ବାଣଗଣତାପକୁ ବ ହି ରେ । ୧୮ ।

---

୧୫ । ତୁଳା—କଳନା, ତୂଳା—କପାତୁଳା, ଜାନୁବର୍ତ୍ତିଳା-ଚୋଲ୍‌ଜଙ୍ଘ-ବିଶିଷ୍ଟା, ଅର୍ଣ୍ଣ—ଜଳ, ପର୍ଣ୍ଣ—ପତ୍ର, ଶିର୍ଣ୍ଣକଟି—ସରୁଅଣ୍ଟା, ଚନ୍ଦ୍ର-ଚୂର୍ଣ୍ଣ—କର୍ପୂରଗୁଣ୍ଡ ।

୧୬ । ଚଣ୍ଡୀରଷ୍ଟ-ଅତ୍ୟନ୍ତକଷ୍ଟ, ପୀତବସନ-ହଳଦିଆ ଲୁଗା, କାର୍ତ୍ତସ୍ୱର—ସୁନା, ଅର୍ତ୍ତିସ୍ୱର-ଦୁଃଖଶବ୍ଦ, ଭୂସୁରେ-ବ୍ରାହ୍ମଣମାନେ, ଉର-ଛାତି, ଶିବ—ଶୁଭ ଓ ମହାଦେବ ।

୧୭ । ମତ୍ତକାଶିନୀ-ସୁନ୍ଦରୀ ସ୍ତ୍ରୀ, ହିତ-ମଙ୍ଗଳ, କାନ୍ତ-ସୁନ୍ଦର, କାନ୍ତ-ପତି, ଜଦନ୍ତ-ବାର୍ତ୍ତା, ଦନ୍ତଶୋଭନୀ-ସୁଦନ୍ତୀ, ବୃଦ୍ଧି-ବଢ଼ି, ସନ୍ତାପିତ-ଦୁଃଖିତ ।

୧୮ । ପ୍ରମାଣ-ଠିକ, ମାଣବକ-ଛୋଟଶିଶୁ, ମୃଗାକ୍ଷୀ-ମୃଗପରି ଚକ୍ଷୁ, ପ୍ରାଣ—ଶ୍ରେଷ୍ଠ, ପ୍ରାଣ—ଜୀବନ, ରଣରଣ—କନ୍ଦର୍ପ ।

ଏ ବାଣୀ ତତକ୍ଷଣ ପର୍ଣ୍ଣକୁ ରକ୍ଷଣ କ୍ଷଣକାନ୍ତି କାନ୍ତିର ହେଲା ।
କ୍ଷୀଣାଙ୍ଗିଣୀବଚନା ସୁଲୋଚନା ଶୋଚନା ରଚନା କରୁଁ ଶାନ୍ତ କଲା ସେ ।
ସହଚରି । ଜାଗ୍ରତ କ୍ଷଣଦା ବାସରେ । ହୋଇଣଛନ୍ତି ତା ପାଶରେ ।
ଫୁଲନାରାଚନାରାଚକୁ ହେଲା କବଚ ଦରଶନ ଲୋଭ ଯହିଁରେ ରେ ।୧୯।

ଘନଘୋଷ ଘୋଷଣ ଷଣପୁଷ୍ପଦୂଷଣ କାନ୍ତି ଶୁଣି ସେ ଦନ୍ତୁ ମଣେ ।
ତେଜି ମହୀଶୟନ ପ୍ରକାଶି ବାତାୟନ ନୟନ ନିବେଶେ ତକ୍ଷଣେ ସେ ।
ସହଚରି । ମାନଙ୍କ ଭାଷଇ ଏ ଭାଷ । ବାହାରେ ସୁଦୁସ୍ଥଳୀ ପେଷ । ହେଲେ
କି ମାନବେଶସୁତ ଅଙ୍ଗ ପ୍ରବେଶ ଏ ଦେଶ ବୁଝାଏ ସନ୍ଦେଶ ରେ । ୨୦ ।

ହଂସ ଦୃଶ ସଦୃଶ ଦେଖିନ ସାରସ ରସକଳା ଚୁମ୍ବନ ଦଏ ରସି ।
କରି ମୃଣାଳନାଳ ମାଳ ତମାଳମାଳମଞ୍ଜୁଳା ବସି ନାମ ଘୋଷି ସେ ।
ସୁକୁମାରି । କାନ୍ତିଛଳେ ପିନ୍ଧେ ଅମ୍ବର । ହାସ ଛଳେ ଘେନେ କର୍ପୂର ।
ହୋଇ ତଦ୍ଭାବମୟ ନେଲା ଘନସମୟ ରକ୍ଷା ହେଲେ ସଜନୀବାର ସେ ।୨୧।

ଶରଦକାଳେ ସୁଧାକରକର ବସୁଧାଭୂଷାକୁ ଦେଖାଇ ନ ଦେଲେ ।
ଛତ୍ରୁହୀନ ତୁହିନ ନ ପୁଣି ହେତ୍ରୁହୀନ ଜରବ ବୋଲି ବିଚାରିଲେ ସେ ।
ସହଚରି । ପଦ୍ମିନୀ ପଦ୍ମବାସୀ ସଖୀ । ପଦ୍ମନୟନୀ ପଦ୍ମମୁଖୀ । ପଦ୍ମକର
ପୟୂଷ ପଦ୍ମପଙ୍କଉଦର ପଦ୍ମକୋଷ ଉରଜେ ଶୋଷି ସେ । ୨୨ ।

---

୧୯ । କ୍ଷଣକାନ୍ତି-ବିଜୁଳିବର୍ଣ୍ଣ, ଶୋଚନା-ଦୁଃଖ, କ୍ଷଣଦା-ରାତ୍ର, ବାସର—ଦିନ, ଫୁଲନାରାଚ-କନ୍ଦର୍ପଶର, ସାଞ୍ଜୁ-କବଚ ।

୨୦ । ଘନଘୋଷ-ମେଘଶବ୍ଦ, ଷଣପୁଷ୍ପ-ଛଣପଟଫୁଲ, ଦୂଷଣ-ନିନ୍ଦନୀୟ, କାନ୍ତି-ବର୍ଣ୍ଣ, ମହୀ-ପୃଥିବୀ ଏଠାରେ ତଳ, ପ୍ରକାଶି-ଫିଟାଇ, ବାତାୟନ-ଝିଡ଼କି, ମାନବେଶ-ରାଜା, ସୁତ-ପୁଅ, ଏଠାରେ ରାଜସୁତ-ଚନ୍ଦ୍ରଭାନୁ ।

୨୧ । ଦୃଶ—ଆଖି, ସାରସ—ପଦ୍ମ, ତମାଳମାଳମଞ୍ଜୁଳ—ସୁନ୍ଦରୀ ସ୍ତ୍ରୀ, ଘନ ସମୟ—ବର୍ଷାଦିନ, ସଜନୀବାର—ସଖୀସବୁ ।

୨୨ । ସୁଧାକର କର—ଚନ୍ଦ୍ରକିରଣ, ବସୁଧାଭୂଷା—ପୃଥିବୀର ଅଳଙ୍କାର ( ଲବଣ୍ୟବତୀ ) ତୁହିନ—କାକର, ଉଦର-ପେଟ, ଉରଜ-କୁଚ ।

ଶୁକପୋତ କପୋତ ରତ ଶୀତମରୁତ କମ୍ପିତ କରୁଥାଇ ପୁନ ।
ଏ ଚିନ୍ତା ଅଦଭୁତ ଚିତା ହୃଦେ ସଂଭୂତ ସଜୀବେ ସଜନୀ ଦହନ ହେ ।
ସାଧୁଜନେ । ଏ ଗ୍ରନ୍ଥ ଏବେ ହେଲା ଶେଷ । ବୁଧବୋଧକ ଏ ରହସ୍ୟ ।
ସୁମର ଉପଇନ୍ଦ୍ର କହଇ ଉପଇନ୍ଦ୍ର ଭଞ୍ଜ ବୀରବର ଏ ରସ ଯେ । ୨୩ ।

---

## ତ୍ରୟୋବିଂଶ ଛାନ୍ଦ

( ଚନ୍ଦ୍ରଭାନୁର ରାମେଶ୍ୱର ଗମନ )

ରାଗ—କଲ୍ୟାଣଆହାରୀ

ଦିନେକ ଦିନେଶ ଦଶଦଣ୍ଡେ ଭୋଗ ମଣ୍ଡପେ ବସିଛନ୍ତି କୁମାର ।
ସଚିବନନ୍ଦନ ପ୍ରବେଶ ହୋଇଲା ପଦ୍ମିନୀଶାଢ଼ୀ ଅଛି ଶିର । କହିଲା ।
ପୁରୋଧାସୁତ ଜଣାଇଲା । ଶିବଉତ୍ସବ ଦେଖିବାକୁ ତୁମ୍ଭଙ୍କ ତାତ ସନମତ
ହୋଇଲା । ୧ ।

ଜରତକାମିନୀ ବାଳକ ଜାଳକ କେବଳ ରହିବେ ନଗରେ ।
ସର୍ବ ଅର୍ବ ଦନ୍ତୀ ପଦାତ ସ୍ୟନ୍ଦନ ପତ୍ତି ଯିବେ ତୁମ୍ଭ ସଙ୍ଗରେ । ଏଥକୁ ।
ଅଧୀକାରୀଶାଢ଼ୀ ମୋହର । ଏ ବାଣୀ ଚନ୍ଦ୍ର ଉଦତେ ଉଛୁଳିଲା ନାଗର
ଆନନ୍ଦସାଗର । ୨ ।

---

୨୩ । ଶୁକ—ଶୁଆ, ପୋତ—ଛୁଆ, ରତ—ଶବ୍ଦ, ଶୀତମରୁତ—ଥଣ୍ଡାପବନ,
ବୁଧ—ପଣ୍ଡିତ, ଉପଇନ୍ଦ୍ର—ବିଷ୍ଣୁ ।

---

## ତ୍ରୟୋବିଂଶ ଛାନ୍ଦ

୧ । ଦିନେଶ—ସୂର୍ଯ୍ୟ, କୁମାର—ରାଜପୁତ୍ର, ସଚିବନନ୍ଦନ—ମନ୍ତ୍ରୀପୁଅ, ପୁରୋଧାସୁତ—ପୁରୋହିତ ପୁଅ, ଶିବଉତ୍ସବ—ମହାଦେବଙ୍କ ଉତ୍ସବ, ସନମତ—ସ୍ୱୀକାର, ଆଜ୍ଞା ।

୨ । ଜରତକାମିନୀ—ବୁଢ଼ୀମାନେ, ବାଳକ ଜାଳକ-ପିଲାମାନେ, ଅର୍ବ—ଘୋଡ଼ା, ଦନ୍ତୀ—ହାତୀ, ସ୍ୟନ୍ଦନ—ରଥ, ପତ୍ତି—ଘୋଡ଼ାସବାର, ଆନନ୍ଦସାଗର—ସୁଖ ସମୁଦ୍ର ।

ଏକାଳେ ଉଗର ଧାଇଁ ନାଗର ଶୁଣି ନଗ୍ରଜନେ ଭଞ୍ଜନ୍ତି । ନେଇ ନେଲେ ଅସି ମନ୍ତି ସନ୍ନିଧିରୁ ଥିଲା ଯା ବାକୀ ବରତନ । ନୂତନେ । ଘଷିଲ କର ଶସ୍ତ୍ରମାନଙ୍କୁ । କେ ଯନ୍ତ୍ରା ଧାଇଁ କେତେ ହୁଙ୍ଗୁଳାଇ କେ ବାନ୍ଧାଇ ଆନ କୋଷକୁ । ୩ ।

କେ ଘୃତ ଲଗାଇ କ୍ଷଣକେ ଶୁଖାଇ କେ ସିଅଇଁ ତହିଁ ତୂଣୀର । କବଚ କରାଇ ଧାଗଜର ଟୋପି ବକ୍ତର ଏହି ପ୍ରକାର । ଶକଟ । ଭାର-ବାହ ବଳୀବର୍ଦ୍ଦଙ୍କୁ । ଥିଲ ଯାହାର ସଜ କଲ ନ ଥିଲ ମୂଲ୍ୟ କର ଅଣି ତାହାକୁ । ୪ ।

ସୁବର୍ଣ୍ଣ ରୌପ୍ୟ ବରାଟକ ସମ୍ବଳ କନ୍ଦଳ ଆଦ ଜଗ୍ରେଲ । ସଂସାଦ ପାନ ମଞ୍ଜୁଷ ପେଡ଼ା ପେଡ଼ୀ ଗଣ୍ଠିମାନ କର ଟୁଲ । କର ଯେ । ଦ୍ୱିଜରୁ ମାତଙ୍ଗ ପର୍ଯ୍ୟନ୍ତେ । ଯେ ଯାହା ବୃତ୍ତିରେ ଆଗମନ ମନ କରୁଛନ୍ତି ହୋଇଲେ ସମସ୍ତେ । ୫ ।

କୋଷ ଅଧିକାରୀ ଅତି ତୋଷ ଭର ଅମାର ମଶାର ସଜାଡ଼ି । ତୂର୍ଣ୍ଣ କର ପୂର୍ଣ୍ଣ କଲ ସେ ସ୍ୱଭାବେ ସମ୍ଭାରରେ ଗାଢ଼ ଶଗଡ଼ି । ଏମନ୍ତେ । ରଜନୀ ହୋଇଲ ପ୍ରବେଶ । କ୍ରମଶ କ୍ରମଶ ତାମସ ବଶରେ ଦୃଶାଦୃଶ୍ୟ ହେଲ ବିନାଶ । ୬ ।

କେତେ କାମୀ ଭୂମଣ୍ଡଳେ କେତେ ମୁହିଁ ଭ୍ରମିବ କାମ କ ପାଖିଲ । ଉଜ୍ଜ୍ୱଳ ମହୋଜ୍ଜ୍ୱଳ ଜନେ ପ୍ରଳୟ କ୍ଷୟ କରିବାକୁ ବାଞ୍ଛିଲ । ସ୍ୱର୍ଭାନୁ । ଭରେ କି ପଳାଇଲ ଭାନୁ । ତମ ତନୁରେ ଜଗତ ଚଳିଛି କ ଭାବ ଆନ ନାହିଁ ଏ ତନୁ । ୭ ।

---

୩ । ବରତନ—ପାଉଣା, ହୁଙ୍ଗୁଳାଇ—ରଙ୍ଗକର, କୋଷ—ଅସ୍ତ୍ର ରହିବା ଜାଗା ।

୪ । ତୂଣୀର—ଶରମୁଣା, କବଚ—ସାଞ୍ଜୁ, ଭାରବାହ—ଯେ ଭାରବୁହେ

୫ । ସୁବର୍ଣ୍ଣ—ସୁନା, ରୌପ୍ୟ—ରୁପା, ବରାଟକ—କଉଡ଼ି, ସମ୍ବଳ—ଧନ୍ତୁ, ତେଲ—ଲୁଗା, ଦ୍ୱିଜ—ବ୍ରାହ୍ମଣ, ମାତଙ୍ଗ—ହାତୀ, ବୃତ୍ତିରେ—ବ୍ୟବସାୟରେ ।

୬ । କୋଷ—ଭଣ୍ଡାର, ତୋଷ—ଆନନ୍ଦ, ତୂର୍ଣ୍ଣ—ଶୀଘ୍ର, ତମସ—ଅନ୍ଧାର, ଦୃଶ—ଦେଖାପିବା ।

୭ । ଭୂମଣ୍ଡଳେ—ପୃଥିବୀରେ, ସ୍ୱର୍ଭାନୁ—ରାହୁ, ଭାନୁ—ସୂର୍ଯ୍ୟ, ତମ—ଅନ୍ଧକାର, ତନୁ—ଦେହ ।

ପାଶେ ଥାଇ ଦେଖା ଦେଖି ନୋହି ଦୁଃଖୀ ଭୃଙ୍ଗ ଭୃଙ୍ଗୀ ଧ୍ୱନି ଘୋଷିଲେ । ସଙ୍କେତ ସ୍ଥାନେ ଯାଇଥିବା କାମିନୀ ଚମକି ହୃଦ ଅଉଁଷିଲେ । ଅସିତେ-ତରଗଣ ଏହି ଅଟିରେ । ଧ୍ୱନି କରିବାର ଶୁଣି ବରନାରୀ ଅଣାୟୀ ଅନାଇଁ ଦୁଆରେ । ୮ ।

ଅଞ୍ଜନଦିଗ-ଗଜ ସଜ ଅଜ କି ଯୁଦ୍ଧ ଇଚ୍ଛି ଅମ୍ବ ସଙ୍ଗରେ । ଏହା ବଗୃର ଯେ ରଡ଼ି କି ପ୍ରଚୁର ମତ୍ତ ମାତଙ୍ଗ ଅତଙ୍ଗରେ । ବକୁଳ । ମୂଳେ ଥିବାର ବିରହିଣୀ । ଶ୍ରବଣେ ବୋଇଲା କାନ୍ତ ସତ୍ୟବାଦୀ କି ସେନି ବୋଲନ୍ତି ମିତଣୀ । ୯ ।

କର୍ଣ୍ଣୋଟପୁରଜନେ ପିବା ଜଳନ୍ଦେ ଉର୍ଦ୍ଧ୍ୱେ ଏମନ୍ତ ରାତ୍ରିରେ । କେ ଛାଡ଼ି ପୀରତି ଯୁବତୀ କତକି ପିବାକୁ କହୁଛି ଦୂତୀରେ । ଭେଟାଇ । ଅଣି ପାରିବୁ କି ଧନକୁ । ଫୁଲଧନୁସୁନୁବଲ୍ଲଭୀ-କାଳରୁ ମୁଁ ଯେ କରିବି ପ୍ରସ୍ଥାନକୁ । ୧୦ ।

କେ ଜାର ଦେଖିଲା କୁଳଟାପାଶକୁ ଅଣାକର ଧନ ଯାଉଛି । ଯୁଗଳ ନୋହିବାରୁ ରାମକୁମାର ଯୁଗ ସର ମୋତେ ହେଉଛି । ଧନରେ । କରଥାଅ ଏହି କୃତାର୍ଥ । ଯାଉଛି ବିଦେଶ ଯୋଗ ଦେବଗୁରୁ ଗଲେ ହୋଇବଟି ବ୍ୟର୍ଥ । ୧୧ ।

କେ ଜାର ଭାଷି ସ୍ନେହେ ଭାବ ରାଶିକି ରାଶି କଳ୍ପନା ତୋତେ କର । କନ୍ୟା ତୁଳାଅଙ୍ଗୀ ସିଂହକଟୀ ମୀନନୟନା କୁମ୍ଭସ୍ତନା ସାର । ଭ୍ରୂଲତା । ଧନୁରେ ପୂର୍ଣ୍ଣ ମନୋହର । ମକରକେତୁ ତାପେ ତୋ ପ୍ରେମଜଳେ ମନ-କକଡ଼ା ମଗ୍ନ ମୋର । ୧୨ ।

---

୮ । ଅସିତ—ଅନ୍ଧାର, ବରନାରୀ—ଶ୍ରେଷ୍ଠାସ୍ତ୍ରୀ ।

୯ । ଅଞ୍ଜନଦିଗ—ପଶ୍ଚିମ, ଯୁଦ୍ଧ—ସମର, ରଡ଼ି—ଶବଦ ।

୧୦ । ଜନ୍ଦ୍ରେ—ଅନିରୁଦ୍ଧ, ସୁନୁ—ପୁତ୍ର, ବଲ୍ଲଭୀ—ସ୍ତ୍ରୀ ଫୁଲଧନୁ ସୁନୁବଲ୍ଲଭ—କନ୍ଦର୍ପ ଯେ ଶାମ୍ବ ତା ପୁତ୍ର ଅନିରୁଦ୍ଧ ତାର ସ୍ତ୍ରୀ ଉଷା, ଅର୍ଥାତ୍ ସକାଳ ।

୧୧ । ଜାର—ବୀଟପୁରୁଷ, କୁଳଟା—ବିଟପୀ, ଯୁଗଳ-ଯୋଡ଼ା, ରାମକୁମର-ଲବ, ( ଅଲ୍ପସମୟ ) ଦେବଗୁରୁ—ଜୀବ ( ବୃହସ୍ପତି ) ।

୧୨ । ରାଶି-ବାରରାଶି, କୁମ୍ଭ-ହାତରକଳସ, ମକରକେତୁ-କନ୍ଦର୍ପ ।

ଶରତ ବସ୍ତ ସମାନ ଘାତ କରୁ ମେଷ ବୃଷ କରୁ ଦର୍ଶନେ । ଏକା ମିଥୁନ ହୋଇଲେ ରେ ନାୟିକା ସବୁ ହେଲ ତୋ ଅବଧାନେ । ଏ ବାଣୀ । ସେ ହରଷ ଶୁଣି ହୋଇଲା । ଅଲିଙ୍ଗନ କରି ଇଚ୍ଛାବତୀ ନାୟୀ ବିଷାଦୁଁ ବଢ଼େ ତୋଷିଲା । ୧୩ ।

ପୁଷ୍ପ ସମୟ ନିକଟ ପରକଟ ରମଣୀ ଭୂଲେ ବିଟ ରମି । ସଖୀଙ୍କୁ କହେ ବଚନ ସ୍ନେହାଧୀନ କୋଳେ କମଳା ପରଣାମି । ରତିରୁ । ବାଞ୍ଛା କରେ ସ୍ତନ କଠିନ । ବୋଲି ଜାଣିଲି ନ ଜାଣିଲି ସୁବର୍ଣ୍ଣ ସ୍ୱବର୍ଣ୍ଣକି ଅବା ଅଞ୍ଜନ । ୧୪ ।

କାହା ବଲ୍ଲଭ ବଲ୍ଲଭୀଙ୍କ କହୁଛୁ କି କଲ ଦାରୁଣ ଦଇବ । ମନେ ତ ନ ଥିଲ ତରୁଣକାଳରେ ତରୁଣୀ ବିଚ୍ଛେଦ ହୋଇବ । ଜୀବନ । ତେଜି ଯେ କାତର ବଶରେ । ଧେନା ଧେନା ଅରେ ପରାଏ ଦ୍ୱିତୀୟ ଏକ ଅଧିକ ଦିବସରେ । ୧୫ ।

ସୁଦତୀଙ୍କ କେ ଲେ ବସାଇ ଭାଷେ କେ ରସାଇ ପ୍ରକାଶିଣ ପ୍ରେମ । ଦଣ୍ଡଧର ଅନୁଗତ ଭଲ ନୋହେ ସେହୁ ନୋହୁବାର ଉତ୍ତମ । ଗୁଣି ତୁ । ମାଗୁଣି ଏତକ ମୋହର । ମନେ ପଡ଼ୁଥିବି ରଜନୀ ଦିବସେ ଜାଣୁ ତା ଯେମନ୍ତେ ମୁଁ ତୋର । ୧୬ ।

କେ ପ୍ରିୟ ଚିବୁକ ଧରିଣ ଉଚିତ ଲୁଢ଼ି ଭାଷିଲା ଏ ବନିତ । ଶୀତକ-ରଜା ଶୀତେ କାମ ଖେପିତ ନାରାଚେ ହୋଇଅଛୁ ଭୀତ । କରିବି । କବରୀ ପାଞ୍ଚ ମୋ ଏସନ । ବରବର୍ଣ୍ଣିନୀ ସଖୀ ଥିଲ କରଣ ଦିଅ ମୋତେ ପିନ୍ଧା ବସନ । ୧୭ ।

କେ ପ୍ରଦୀପ ପ୍ରଦୀପକ କରି ପୁରେ ପୁରତେ ପ୍ରିୟାଙ୍କୁ ବସାଇ । ଚନ୍ଦେ ବଚନେ ଲେଖିଲା ସ୍ୱରୂପକୁ ପ୍ରଭାତ ଦରଶନ ପାଇଁ । ସେ ଦେଖି । ଧୀର କରି ଏହା ବୋଇଲା । ବିଦେହଜା-ପ୍ରିୟ ସଙ୍ଗ ନେଲେ କିବା ମୋତେ ସଙ୍ଗେ ନେଲେ କି ହେଲା । ୧୮ ।

---

୧୩ । ମେଷ-ମେଣ୍ଢା, ରୁଷ୍ଟ-ଜୀବି, ବୃଷ-ଷଣ୍ଢ ( ବଳଦ ), ମିଥୁନ-ଯୁଗଳ

୧୪ । କମଳା-ଲକ୍ଷ୍ମୀ, ସୁବର୍ଣ୍ଣ—ଉତ୍ତମ ରଙ୍ଗ-ସୁନା ।

୧୫ । ଦଣ୍ଡଧର-ଯମ, ରାଜା ।

୧୭ । ପ୍ରିୟାଚିବୁକକୁ-ସ୍ତ୍ରୀ ଥୋଡ଼ିକୁ, ବନିତ-ବିନୟ, ଶୀତକରଜା ସୁଦତୀ, ନାରାଚ-ଶର, ଭୀତ—ଭୟ, ବରବର୍ଣ୍ଣିନୀ-ଚମ୍ପାବରଣୀ ।

୧୮ । ପ୍ରଦୀପକ—ଦୀପ, ବିଦେହଜା-ସୀତା, ପ୍ରିୟ, ରାମ ।

କାହାର ବାଳୀ ନବୀନା ବିଚିତ୍ର ବିଜେ ସକଳ ଭୋଗିଥିଲା । ମଣି ଦୀପିତକ ଦର୍ପଣବିତାନ ଥିଲା ପୂରେ ରତି ବିହ୍ବଲା । ସେ ଭୋଗ । ପାଇଲା ଦାଇବ ବଶକୁ । ଭବେ ଅଧିକ ଦେବାକୁ ରଖିଥିଲା ଯିବାବେଳକୁ ବିଦେଶକୁ ।୧୯।

କେଉଁ ଦମ୍ପତି ରତିସୁଖ ସମ୍ପତ୍ତି ବସୁମତିରେ ଏହା ଧ୍ୟାୟି । ସ୍ମର ଅରତି ହେବ ରାତି ନ ପାହୁଁ ତାହା ରଜନୀ କଳ୍ପ ବହ୍ମି । ଯେ ପୁଣି । ବାହୁଲା ବିଚ୍ଛେଦ ବିପତ୍ତି । ପୁଂଲିଙ୍ଗେ ସ୍ତ୍ରୀଲିଙ୍ଗେ ତାହା ଯେରୂପ କେବେ ନୋହୁଥିବ ସମ୍ପ୍ରତି ।୨୦।

କେ ପୁଂସ ସତ୍ତ୍ୱରେ ଚତ୍ତ୍ୱରେ ରୋପିତ କଲା ଅଣି ଜାତିଲତାକୁ । ପରିବାରିକାକୁ ଡାକଣ କହିଲା କୋଳେ ବସାଇ ବନିତାକୁ । ଏହା ତୁ । ଯତ୍ନ କରିଥିବୁ ସନ୍ତତେ । ପ୍ରବାସ ପ୍ରୟାଣ ଦୋଷ ନ ଦେଖିବ ଯାଉଅଛୁ ଅଣିଆୟୁତ୍ତେ ।୨୧।

କେ ଜାୟାପତି ଯୋଗ ହୋଇ ନ ଥିଲେ ସେ ଉତ୍ସବ କଲେ ସେ ରାତି । ନାନାଗତି ରତି ପ୍ରକାଶିଲା ରତିପତି-ଖେଳରେ ରସବନ୍ତୀ । ରତ୍ୟାନ୍ତେ । ରମଣ ମୁଖକୁ ଗୃହିଲା । ମୟୂର କଣ୍ଟକ ବୃଷପଟେ ଲେଖି କାମବିମନକୁ ହରିଲା ।୨୨।

କେ ଦମ୍ଭ ହାରି ମନୋହାରୀକି କହେ ଏ କଥା ଶବ ଲଗେ ମୋତେ । ଜୀବନ ତେଜି ପିଣ୍ଡକୁ ସଙ୍ଗେ ନେଇ ପୁରୁଷେ ଜୀଇଁବେ କେମନ୍ତେ । ଏ ତନୁ । ପୁଲକ ପୁଣି ନ ବହିବ । ସେ ପୁଣି ଗଦ୍‌ଗଦେ ବୋଇଲା କେ ଜାଣି କି କି ଭିଆଇଲା ଦାଇବ ।୨୩।

---

୧୯ । ବାଳୀ—ସ୍ତ୍ରୀ, ମଣିଦୀପିତକ—ମଣିମାଣିକ୍ୟରେ ଉଜ୍ଜ୍ୱଳ, ଦର୍ପଣ-ବିତାନ—ଆରସିଲଗା ଚାନ୍ଦୁଆ, ଦର୍ପଣରେ ଓଲଟା ଦେଖାଯାଏ ।

୨୦ । ଦମ୍ପତି—ସ୍ତ୍ରୀ ପୁରୁଷ, ସ୍ମର—କନ୍ଦର୍ପ, ରଜନୀ—ରାତି, ବହ୍ମି—(ବ୍ରହ୍ମାଙ୍କ ରାତ୍ରି କୋଟି ବର୍ଷ) ।

୨୧ । ଜାତିଲତା—ଜାଈଫୁଲ ଲଟା, ପରିବାରିକା—ଦାସୀ, ବନିତା—ସ୍ତ୍ରୀ, ସନ୍ତତେ—ସର୍ବଦା ।

୨୨ । ରତିପତି—ମଦନ, ରତ୍ୟାନ୍ତେ—ରତି ଶେଷରେ, ରମଣ—ପୁରୁଷ, କାମବିମନ—କାମଦୁଃଖ ।

୨୩ । ବିଚନ—ଅଶ୍ଚର୍ଯ୍ୟ, ତନୁ—ଦେହ, ପୁଲକ—ଆନନ୍ଦ ।

କେଉଁ ସୁନ୍ଦରୀ କେତକୀଦଳୋଦରେ ଦୟିତ ଙ୍କୁ ଲେଖିଲା । ମୁଁ ଯେ ଜୀବଧନ ତୁମ୍ଭଙ୍କୁ ବୋଲିବା ଏଥିଠାରେ ସାର୍ଥ ହୋଇଲା । ତୁମ୍ଭର । ଅଛୁ କେହ୍ନମସ୍ତ କବଚ । ତୁମ୍ଭେ ବିନା ମୋର ଦୂର ହେବ କେହ୍ନି ସହିବ ବିଷମ ନାରାଚ ।୨୪।

କେଉଁ ନାରୀ ଶଙ୍ଖପତ୍ରମା ପରରେ କାର ନୟନରେ ଭରିଲା । କେହ୍ନି କି କରିବ ବୋଲି କାନ୍ତଗଳା ଧରି ପ୍ରେମଭରେ ଥରିଲା । ସେ କହେ । ଯିବା ପଛେ ଆନ ଦେଶକୁ । ନ ଗଲେ ଯେବେ ନରପତି ସରୋଷ ହୋଇବେ କରମବଶକୁ ।୨୫।

ସେ କହେ ସଖୀକି ଚନ୍ଦ୍ରଶେଖରଙ୍କୁ ପୂଜନ କର ଏଥିପାଇଁ । ପ୍ରିୟ ନ ଯାଉ ଜୀବନ ଯାଉ ମୋର ଦୁଃଖୀ ନୋହିବଟିକି ମୁହିଁ । ସେ ଭାଳେ । ବିଲଗ୍ନ ହେଲେ ଜରୁଁ ଜର । ନିଦ୍ରା ନ ମାଡ଼ଇ ଏ ନିଶିକି କେହ୍ନି ବଞ୍ଚିବ କି କର୍ମ ମୋହର ।୨୬।

କେହୁ ବକ୍ଷରେ ନୟମ କରାଇଲା ଆନ ଯୁବତୀ ନ ଛୁଇଁବ । ସେ ବୋଇଲା କାନ୍ତ ଶତ୍ରେ ମୁଁ ଥିବଟି ମୋପାଇଁ ଦର୍ଶନ କରିବ । ସେ ହାର । ବାହାର କରି କଣ୍ଠେ ଦେଲା । ଦେଖୁଥିଲେ ମୁହିଁ ମନେ ପଡ଼ୁଥିବ ଏମନ୍ତ ଭାବନା ହୋଇଲା ।୨୭।

ସେ ଜାଣି ବିରହଜ୍ୱର ଜାତଭରେ ଥୋଇ ପଙ୍କେରୁହ-ଦଳକୁ । କିଛି ନ କହି ନାୟକ କରେ ଦେଲା ମେଲାଣି ମାଗିଲା ବେଳକୁ । ସେ ଭାବେ । ଅଳପ ହେଲା ମୋ ସଙ୍ଗତ । ଦରିଦ୍ର ରତନ ପାଇ ହଜାଇଲା ପରାୟ ହୋଇଲା ବିମତ । ୨୮ ।

ସେ ଲେଖିଲା ପଟେ ପତିଙ୍କ ବସାଇ ଆପେ ପାଦସେବା କରଇ । ଯେତେ ଦୂରେ ଥିଲେ ଏରୂପେ ଅଗ୍ରତେ ଅଛୁ ମୁଁ ଏ ଅକ୍ଷର ଲିହି । ବାନ୍ଧି ତା । ଦିନବସନେ ପେଡ଼ିପରେ । ଥୋଇଲା ଚତୁରୀ କି ସ୍ନେହ ଅତୁରୀ ମାନସ ମୋହିବା ବିଗ୍ରହେ । ୨୯ ।

---

୨୪ । କେତକୀ ଦଳୋଦରେ—କେତକୀ ପାଖୁଡ଼ା, ପେଟରେ ବା ପେଟ ଉପରେ, ଦୟିତ—ପୁରୁଷ, ଜୀବଧନ—ସ୍ୱାମୀ ନାମ ।

୨୫ । ନରପତି—ରାଜା, ରୋଷ—ରାଗ ।

୨୬ । ଚନ୍ଦ୍ରଶେଖର—ଶିବ, ବିଲଗ୍ନ—ଲଙ୍ଗଳା ।

୨୭ । ପଙ୍କେରୁହ—ପଦ୍ମ, ଦଳ—ପାଖୁଡ଼ା ।

କେ ବୋଇଲା ମୋହପାଇଁ ନ ଭାଳିବ ସାରିବ ବେଳକାଳେ ମାତ । ତୁମ୍ଭେ ସର୍ବଶୁଭେ ଥିଲେ ସବୁ ଅଛୁ ନ ମିଳିବେ କେତେ ଯୁବତୀ । କେ ସଖୀ । ଦ୍ୱାରରେ ଏମନ୍ତ କୁହାଇ । ବାହୁଡ଼ ଅସି ଯାହାକୁ ବଶ୍ୟ ହେବ ଏରୂପେ ନୋହିବ ଅସ୍ନେହୀ ।୩୦।

କେ ପତି ଯିବାକୁ ତୁପତିମତିରେ କାରେ ବୋଲିବ ଦନେ ଥାଅ । ଅନେକ କାଳୁଁ ବାଞ୍ଛୁ ତ କଲି ସୁଖ ମୋତେହେଁ ଦଅ ତୁମ୍ଭେ ପାଅ । କେ ଶାଶୂ । ନଣନ୍ଦ ଭସୁରେ ପିଯୂକୁ । କାହୁ ନ କହି ତପଣେ କାତକର ଇପଣେ ଲାବାର ପଯୂକୁ ।୩୧।

ତାହା ସହଚରୀ ପୁରୁଷେ ପରିବ । ଯାଇଛୁ କେଉଁ ଶିବ ଦେଖି । ବକ୍ଷରେ ସ୍ୱଚ୍ଛରେ ଶମ୍ଭୁ ଯୁଗଳକୁ କନମ କରିଛୁ ମୋ ସଖି । ଏ ବିଧି । ତରୁଣ ତରୁଣୀ ଜଣ୍ଣନ୍ତି । ବହୁତ ଛନ୍ଦେ କଲେ ତାହା ବର୍ଣ୍ଣନା ତେବେହେଁ ନୋହିବ ସମ୍ପୂର୍ଣ୍ଣ ।୩୨।

ଏମନ୍ତ ଲାଗି ଶେଷରେ ଦରଘୋଷ ଦର ଲଭିଲେ କାର ବ୍ୟୂହ । କୁକ୍‌କୁଟବାଣୀ କୁଠାରେ ହାଣିଦେଲା ଦମ୍ପତି ସୁଖ ମହୀରୁହ । ପ୍ରତୀଚୀ । ବହିଲା ଅରୁଣ ବର୍ଣ୍ଣକୁ । ଡଗର୍ ନାଗର୍ କରାଇଲା ଭୂବ ସାଜ ସାଜ ବୋଲି ସୈନ୍ୟକୁ ।୩୩।

ବାଜିଲେ ତୂରୀ ସାଜିଲେ ଚତୁରଙ୍ଗ ପ୍ରବେଶ ହେଲେ ସିଂହଦ୍ୱାର । କହେ ଜ୍ୟୋତିଷ ମଙ୍ଗଳବେଳ ହେଲା ଅନୁକୂଳ କର କୁମାର । ସାଜିଲେ । ରମ୍ଭାବୃକ୍ଷ କୁମ୍ଭ ପୁରତେ । ଭୂଷଣେ ଅରମ୍ଭ ରମ୍ଭାପରି ବେଶ୍ୟା ମୋହିଲେ ସୁମଙ୍ଗଳ ଗୀତେ ।୩୪।

ରାମାଭିଷେକ (ବୃଷ) ପଟ୍ଟ ଭୃତ୍ୟେ ଦେଖାଇ ଧଅନ୍ତି ରାମା ହୁଳହୁଳି । ବିଧାତା ବିଧାନେ ପୁରୋଧା ନନ୍ଦନେ ମଙ୍ଗଳାରୋପଣେ କୁଶଳି । କୀରତି । ବନ୍ଦନା ବନ୍ଦିବୃନ୍ଦ କରେ । ବାହାର ହୋଇଲେ ନୃପତି ନନ୍ଦନ ବାଳାରୂପ ଚିନ୍ତି ଚିତ୍ତରେ ।୩୫।

---

୩୧ । କୁପତି—ଅନନ୍ଦତ, ପଯୂ—ଲହ ।

୩୨ । ଶମ୍ଭୁ ଯୁଗଳ—ଦୁଇଟି ମହାଦେବ, ତରୁଣ ତରୁଣୀ—ସ୍ତ୍ରୀ ପୁରୁଷ ।

୩୩ । ଦର—ଶଙ୍ଖ, ଘୋଷ—ଶବ୍ଦ, ଦର—ଭୟ, ମହୀରୁହ—ଗଛ, ପ୍ରତୀଚୀ—ପୂର୍ବଦିଗ ।

୩୪ । ରମ୍ଭାବୃକ୍ଷ—କଦଳୀଗଛ, କୁମ୍ଭ—ମାଟିଆ, ପୁରତେ—ଆଗରେ, ରମ୍ଭା—ବେଶ୍ୟା, ବୃକ୍ଷ, ବେଶହେବାକୁ ଯାଉଥିବା … … ।

୩୫ । ବନ୍ଦିବନ୍ଦ—ଭାଟସବୁ, ବିଧାନେ—ନିୟମରେ ।

ପଲ୍ଲବକୋଣ ଅଧର ପୟୋଧର ପୂର୍ଣ୍ଣକୁମ୍ଭ ମୀନ ନୟନ । ଗତି ହଂସ ବତ ପାରାବତ ଗଳ ମଙ୍ଗଳ ଅଷ୍ଟକ ବଚନ । ଜଘନ । ଭଦ୍ରାସନ ଉରୁ କଦଳୀ । ଶଙ୍ଖ ମୃଦୁହାସ ଚୂଚୁକ କ୍ରମୁକ ସର୍ବ ମଙ୍ଗଳ ପ୍ରଦଶୀଳ । ୩୬ ।

ସୁକୁମାରୀ ରାଜକୁମାରୀଙ୍କ ଭାବ କର ଅମାର ପରେ ବଜେ । ଷଣ୍ଢି ଠାରୁ ଶୂଦ୍ର ଯାଏ ପ୍ରଣମିତ କଲ୍ୟାଣ ବାଞ୍ଛା କଲେ ଦ୍ୱିଜେ । କଲେ ଯେ । ସମ୍ଭାରରେ ସୈନ୍ୟ ଗମନ । ମହୀ କମ୍ପନ ପନ୍ନଗ ପତି ଶଙ୍କି ଧୂଳିରେ ଲୁଚିଲେ ତପନ । ୩୭ ।

ସର ପଦ୍ମ ଚକ୍ରବାକ କଲେ ପଦ ଅବଲୋକ ମଣି ଶର୍ବରୀ । ରଥାଙ୍ଗ ନାଦ କଲାପୀ ନାଚେ ମୋଦେ କୁଳଟା ହେଲେ ଅଭିସାରୀ । କାକରେ । ନିଳୟ ଗତି ଲୀଳା କରେ । କୁଳପାଳିକା ବାଳିକା ଦୀପାଳିକା ପୁରମାନ କରେ ଜାଳିଲେ । ୩୮ ।

ବାଦ୍ୟଦମକ ଖଡ଼୍ଗ ଫର ଟମକ ଧନୁର୍ଘୋଷ ଗଜ ହୁଙ୍କାର । ତୁରଙ୍ଗ ହ୍ରେଷା ଅଶାରେ ପୂର୍ଣ୍ଣ ହେଲା ହେଲେ ଦିଗଦନ୍ତୀ କାତର । ମଣିଲେ । ଗର୍ଜ୍ଜିକି ସେ ମହାକେଶରୀ । ମଇନାକ ଲୁଚେ ଇନ୍ଦ୍ର ଶତ କୋଟି କୋଟି କୋଟି ମାରେ ବଜ୍ର । ୩୯ ।

---

୩୬ । ପଲ୍ଲବକୋଣ—ପନରଫାଳକ, ଏଠାରେ ଅଧର, ପୟୋଧର—କୁଚ, ପୂର୍ଣ୍ଣକୁମ୍ଭ, ପାରାବତ—କପୋତ, ଭଦ୍ରାସନ—ସିଂହାସନ, ଚୂଚୁକ—କୁଚରଅଗ, କ୍ରମୁକ—ଗୁଆ ।

୩୭ । ଅମାର—ହାତୀର ହାଉଦା, ପନ୍ନଗପତି—ବାସୁକି, ତପନ—ସୂର୍ଯ୍ୟ ।

୩୮ । ସରସଦ୍ମ—ପୋଖରୀଘର, ଶର୍ବରୀ—ରାତି, ରଥାଙ୍ଗ—ଚକ୍ର, କଲାପୀ—ମୟୂର, କାକରେ—କାକ ସବୁ, ନିଳୟଗତି—ଘରକୁଯିବା, ଏଠାରେ ବସାକୁ ଯିବା, ଦୀପାଳିକା—ଦୀପସବୁ ।

୩୯ । ହ୍ରେଷା—ଘୋଡ଼ାର ଶବ୍ଦ, ବାଦ୍ୟଦମକ—ବାଦ୍ୟଶବ୍ଦ, ଦିଗଦନ୍ତୀ—ଦିଗ୍ ବଳୟ ବା ଦିଗ୍‌ଗଜ, କେଶରୀ-ସିଂହ, ଶତକୋଟି-ବଜ୍ର, ପୂର୍ବରେ ପର୍ବତ ଉଡ଼ି ଗ୍ରାମାଦି ନଷ୍ଟ କରନ୍ତେ ଇନ୍ଦ୍ରବଜ୍ରରେ ତାଙ୍କ ପକ୍ଷ ଛେଦିଲେ, ତହୁଁ ମୈନାକ ଲୁଚିକରି ସମୁଦ୍ରରେ ବୁଡ଼ି ରହିଲା ।

ପଥ ରାଜନ ପ୍ରଜାଳନ ସମାନ ପୂଜକ ହେଲେ ସ୍ଥାନେ ସ୍ଥାନେ । ଜଳ ହୀନ ହେଲେ ସରିତ କାସାର ଆନନ୍ଦେ ଶିରା ଗୃଧ୍ରମାନେ । ଯାବତ । ଯାଦମେଦ ସ୍ୱାଦ ଲଭିଲେ । ବହୁତ ଦାଗରେ ଯାଇ ସେ କିଷ୍କିନ୍ଧ୍ୟାପୁର ପ୍ରଦେଶକୁ ଲଭିଲେ । ୪୦ ।

ବାସବସଦନ ପ୍ରକାରେ ସେ ବନ କଣ୍ଟକ ସମାନ ଶୋଭନ । ନିଶାର୍ଦ୍ଧେ ନିଷାଦେ ଭ୍ରମିଲେ ବିଷାଦେ ହୀନ ହୋଇ ଜନ ଶୟନ । ମନୁଜ । ରୂପ ମନୋଜ ମନୋହର । ଦନୁଜତନୁଦାରଣ ରାମ ଚନ୍ଦ୍ର ହେବଇ ଭଞ୍ଜ ବୀରବର । ୪୧ ।

---

## ଚତୁର୍ବିଂଶ ଛାନ୍ଦ

(ଲାବଣ୍ୟବତୀ ପାଶକୁ ଦୂତ ଦିବା ଓ ଚନ୍ଦ୍ରଭାନୁର ଶିକାର)

ରାଗ—ପାହାଡ଼ିଆକେଦାର

ଶୁଣ ସୁମତି ବିନାଶ ରାତି ପୂର୍ବହରିତ କୁଙ୍କୁମକାନ୍ତି ହେତ ମାଗଧ ଆରମ୍ଭେ ସ୍ତୁତି କୀର୍ତ୍ତନକର ଯେ । ଟେକି ମୁକୁଟ ଡାକେ କୁକ୍କୁଟ ସେ ବାଣୀ ଭର୍ଣ୍ଣାପତିଙ୍କି କୂଟ ସରମାନଙ୍କେ ସାରସ ଫୁଟ ଗର୍ଭେ ଭ୍ରମର ଯେ । ଉଠି କୁମର କାଠି ଲାଗି ହୁଅଇ ଯେ । କରଯୋଡ଼ି ସଚିବସୁତ ଜଣାଇ ଯେ । କହୁଅଛନ୍ତି ଶିକାରାଜନ ବହୁ ଜୀବରେ ଏ ବନ ଘନ ହେବ କି ବିବାଦେ ଶିକାରମାନ ଆଜକ ରହି ଯେ । ୧ ।

---

୪୦ । ପୂଜକ—ପୂଜା, ସରିତ—ନଦୀ, କାସାର—ପୋଖରୀ, ଶିରା—ଛଲୁଅ, ଗୃଧ୍—ଶାଗୁଣା, ଯାଦମେଦ—ମାଛ ପ୍ରଭୃତି ଜଳଚର ।

୪୧ । ବାସବ ସଦନ—ଇନ୍ଦ୍ରପୁର, ନିଶାର୍ଦ୍ଧେ—ରାତି ଅଧରେ, ନିଷାଦେ—ଶବରମାନେ, ବିଷାଦେ—ଦୁଃଖରେ, ମନୁଜ—ମନୁଷ୍ୟ, ମନୋଜ—କନ୍ଦର୍ପପର ସୁନ୍ଦର, ଦନୁଜ—ରାକ୍ଷସ, ତନୁ—ଦେହ, ଦାରଣ—ନାଶ ଚନ୍ଦ୍ରଭାନୁ ପିତାଙ୍କ ଅଜ୍ଞା ପାଇ ବଳ ସହ ରାମେଶ୍ୱର ଯାଇ ସେଠାରେ ପାରିଧି କରିବା ଇଚ୍ଛା କଲେ ।

---

### ଚତୁର୍ବିଂଶ ଛାନ୍ଦ

୧ । ସୁମତି—ସନ୍ଥ, ପୂର୍ବହରିତ—ପୂର୍ବଦିଗ, କୁଙ୍କୁମକାନ୍ତି—ରକ୍ତବର୍ଣ୍ଣ ମାଗଧ—ଭାଟ, କୀର୍ତ୍ତନକର-ଯଶସବୁ, ସରମାନଙ୍କେ-ପୋଖରୀସବୁରେ ସାରସ—ପଦ୍ମ, କାଠିଲାଗି-ଦାନ୍ତଘଷିବା, ଶିକାରାଜନ-ବାଣୁଆମାନେ

ଶୁଣି ଏମନ୍ତ ଶବ୍ଦେ ବରୀର ଅଗ ପେଷିଲେ ସେ ବ୍ରହ୍ମଗୃହୀ ଗଜ ପୁତ୍ରିକା ପାଶେ ବାନସ୍ଥ ପତ୍ରିକା ଦେଇ ଯେ । ତଦନନ୍ତର ଶୀକାର ସଜ ଆଣି ବୋଲନ୍ତି ନୃପ ଅସ୍ମଜ ଶୁଭଲ୍ ତାଙ୍କ ସଇନ ସାଜ ତୁରତେ ତହିଁ ଯେ । ପ୍ରଥମରେ ଏ ବଲ ହେଲେ ବାହାର ଯେ । ଲେଧାଗୋଧାରେ କର ମଣ୍ଡନ କର ଯେ । ଭ୍ରମଙ୍କ ପଶୁସ୍ତୋମରେ ସେହି ସୁଚର୍ମ ବର୍ମ ତୋମର ଶୋହି ବାଜ ବଇସ୍ତି ହସ୍ତେ ବସାଇ ଭସ୍ମଜର୍ଜ୍ଜର ଯେ । ୨ ।

ଶବରପନ୍ତି କ ଭୟଙ୍କର ଯଥା ପରେତରାଟକଙ୍କର ଭୂଷା ବରାଟ ଗୁଞ୍ଜି ନାକର ମଧୁରେ ମତ୍ତ ଯେ । ମନ୍ତ୍ରର ପଢ଼ି ଧୂଳି ଉଡ଼ାଇ ଗଲେ ସେ ପଶୁପଦ ଗୋଡ଼ାଇ ଧମନ ଗୃପେ କାଣ୍ଡ ଚଢ଼ାଇ ଟାଙ୍ଗି ଗୃହୀତ ଯେ । ବ୍ୟାଧେ ବହଣ ନଲ ତାଲଡାଟୀକ ଯେ । ନଲଅଲରେ ଘେନି ଅଠା- କାଠିକ ଯେ । ବହୁ ବାଗୁରା କେ ତହିଁ ଥିବା ବହୁତ ମୃଗଦାଂଶଙ୍କ ଧରା ଶାଖାବେଷ୍ଟନେ ବଲ୍ଲରୀ ପରା ଲଭ ଦୃଷ୍ଟିଙ୍କ ଯେ । ୩ ।

କୁମର ବଜେ ହୟ ପିଠିରେ ତାକୁ ସମାନ ନାହିଁ ସୃଷ୍ଟିରେ ଏମନ୍ତ ହୋଏ କବ ଦୃଷ୍ଟିରେ ସାମ୍ଭବ୍ୟ ତହିଁ ଯେ । ସୁବର୍ଣ୍ଣ ଜଗ୍ରୀକଣ ବାଖର ପଲ ଡେଣାଙ୍କ ବସ୍ତ୍ରାରେ ତାର ଡେଇଁ ଯିବାକୁ ସପ୍ତସାଗର ଇଚ୍ଛା କରଇ ଯେ । ବୀର ବଲକୁ ଲଙ୍ଘି ନ ପାର ରହୁ ଯେ । ଯେଣୁ ସୁଜାଣ ଅଚ୍ଛୁ କରକୁ ଗୃହିଁ ଯେ । ମେରୁ ମହୀରେ ମିଶିବ ଯେବେ ଖୁରକ ସ୍ଥାନ ନୋହିବ ତେବେ ତା ଚୂର୍ଣ୍ଣ ଭାବ ରହୁବାଠାବେ ଖୁର ମାରଇ ଯେ । ୪ ।

ସଙ୍ଗେ ଥିବାର ତୁରଙ୍ଗବଂଶ ପ୍ରଶଂସା ଅଜ କରବା କସ ଜବକୁ ପବମାନ ସଦୃଶ ପୂର୍ଣ୍ଣ ଲକ୍ଷଣ ଯେ । ହୋଇଲେ ବେଗବନ୍ତ ମାତଙ୍ଗ ନ ଦଶେ ସାଦ ସୁଜନ୍ତମାଙ୍ଗ କୁସୁମହଁରୀ ଏଡ଼େ ଉତ୍ତୁଙ୍ଗ ଅଟନ୍ତି ଜାଣ ଯେ । ଅଭଣୀଦ୍ରେ ଗଜତ ମାହୁନ୍ତରସ୍ଥ ଯେ । ବେଢ଼ି ବୀରଙ୍କୁ କଲେ ଶୋଭା

---

୨ । ରାଜପୁତ୍ରିକା—ରଜାଝିଅ, (ଲବଣ୍ୟବତୀ) ତଦନନ୍ତର—ତାହାପରେ, ଅସ୍ମଜ—ପୁତ୍ର, ଲେଧା ଗୋଧା—ଗୋଧିଚମର ଚାଙ୍ଗୁଣି ଯାହାଙ୍କ ଶରମୁନ ନ ବାଜିବ ବୋଲି ହାତରେ ପିନ୍ଧନ୍ତି, ସ୍ତୋକ—ସମୂହ ।

୩ । ପରେତରାଟ—ଯମ, ବରାଟ—କଉଡ଼ି, ଗୁଞ୍ଜା—କାଇଁଚ, ମଧୁ—ମଦ, ଧମନ—ନଲ, ଗୈଙ୍ଗା, ନଲଅଲୀ—ନଲସବୁ, ବଲ୍ଲରୀ—ଲଟା, ବାଗୁରା—ଜାଲଫାଶ ।

ଉଦୟ ଯେ । ପଦାତପନ୍ତି ସଙ୍ଗେ ଧାଇଁଲେ ରମ୍ୟବିପିନ ଯାଇ ପାଇଲେ
ଅଦ୍ଭୁତ ଶୋଭମାନ ଗୃହିଁଲେ ତୋଷ ଉଦୟ ଯେ । ୫ ।

ନ ଥିଲା ହୋଇ ପାଦପ ତହିଁ ଅଛି ଚଉଦ ଭୁବନେ ନାହିଁ ଚମର
ଅଳାଇଚ କଙ୍କୋଳ ସଘନେ ଯହିଁ ଯେ । ବୈଦ୍ୟ ଜୀବନ୍ତି ଔଷଧପନ୍ତି-
ପ୍ରଭାବରେ ଅଛି ଥିବେ ଯେ ପ୍ରତିରଜନୀ ଏଣି ଗୃନ୍ଦନୀରତ କାନ୍ତିକି ବହି
ଯେ । ଫଳେ ହେଠ କମାଳୀ କୁମ୍ଭୀ ଜମ୍ଭୀର ଯେ । ଧଶୁଛନ୍ତି ପ୍ରଣାମ କଲା
ପ୍ରକାର ଯେ । ବାରମାସରେ ବିକାଶ ଜାତି ନୀପ କୁଟଜ କୁସୁମବନ୍ତି ହୃଦ
ହରଷ ଦେଖାଉଛନ୍ତି କି ନିରନ୍ତର ଯେ । ୬ ।

ସଫଳ ତହିଁ ଗୁଆ ନାରଙ୍ଗ ଶ୍ରୀଫଳ ତୁଙ୍ଗ ସମାତୁଲଙ୍ଗ ଲଙ୍ଗଳୀ
କରମଙ୍ଗାହିଁ ସଙ୍ଗ ଶପୁଳ ଭାବ ଯେ । ଶିଶୁଠାବରୁ ଜରତ ପର ସ୍ତନ
ଶୋଭନ ଥିବାରୁ ଧର ଉତ୍ଫୁଲ୍ଲ ସ୍ତମ୍ଭ ଅଛି ଅଦର ପୁନ୍ନାଗ ଧବ ଯେ ।
ଅଙ୍ଗବାସ ମାଧବୀ ସୁପରିମଳ ଯେ । ହୋଇ ପ୍ରସରୁ ଅଛି ମନ୍ଦ ଅନିଳ ଯେ ।
ବରାହଦାଢ଼ ନବମାଳିକା ନୂତନ କରବୀରକଳିକା ଯଥା ବାଳିକା ନଖ-
ମାଳିକା ମହାଉଜ୍ଜ୍ୱଳ ଯେ । ୭ ।

କୁଞ୍ଜକୁଟିରମାନ ରୁଚିର ଯୂଥିକା ମୋତିବିତାନ ଚୀର ପତନପୁଷ୍ପ
ଶଯ୍ୟା ପ୍ରକାର ଶେଫାଳିକାର ଯେ । ଭ୍ରମନ୍ତି ଭ୍ରମ ସାରି କପୋତ ସୁମନ
ରତିରସରେ ମତ୍ତ ପାନ ଖଦିର ଲବଙ୍ଗଛିତ କି ମନୋହର ଯେ । ଦୀକ୍ଷା
ବିପ୍ରେନେ ଶିକ୍ଷା କନ୍ଦର୍ପ କେଳି ଯେ । ପରି ବସନ୍ତ ପାରିବ ତହିଁ ଖେଳ ଯେ ।

---

୫ । ତୁରଙ୍ଗବଂଶ—ଘୋଡ଼ାମାନେ, ଜବକୁ—ଚଞ୍ଚଳରେ, ପବମାନ—ପବନ, ସାଦି—ଯୋଦ୍ଧା, ସୁଉତ୍ତମାଙ୍ଗ—ମୁଣ୍ଡ, ଉତୁଙ୍ଗ—ଅତିଉଚ୍ଚ, ସାଦିନ—ଘୋଡ଼ାସବାର, ଉଦନ୍ତପନ୍ତି—ପାଇକ ସେନାମାନେ, ବିଜନ—ବଣ ।

୬ । ପାଦପ—ବୃକ୍ଷ, ଔଷଧପନ୍ତିପ୍ରଭାବରେ—ଔଷଧ ଗଛମାନଙ୍କତେଜରେ, ହେଠ—ନଇଁପଡ଼ିବା, ଜାତି—ଜାଇଫୁଲ ନୀପ—କଦମ୍ବ, କୁଟଜ—ପିତାକୋରୁଆ ।

୭ । ଶ୍ରୀଫଳ—ବେଲ, ନଡ଼ିଆ, ତୁଙ୍ଗ-ଉଚ୍ଚ, ସମାତୁଲଙ୍ଗ—ଟଭା; ଲଙ୍ଗଳୀ—ନଡ଼ିଆ ବରାହଦାଢ଼—ଫୁଲବନାମ, ନବମାଳିକା—ନିଅଳୀ, କରବୀର—କଣିଅର, କଳିକା—କଢ଼ୀ ।

୮ । ଯୂଥିକା—ଯୁଈ, ବିତାନ—ଚାନ୍ଦୁଆ, ଶେଫାଳିକା—ଗଙ୍ଗଶିଉଳି

ଚକ୍ଷୁଣବାସ ଅଶୋକଙ୍କ'ଲ ସ୍ତବକ ରବତଦ୍ୟୋତରେ ହୁଲ ଭ୍ରମ କରଣ
ଶଗା ହରଣ ସମ୍ବର ମିଳ ଯେ । ୮ ।

ଚନ୍ଦ୍ରକୁ ଠେକ ନାଚନ୍ତି କେକୀ ଇନ୍ଦ୍ରୁ ଖସୁଛୁ କ ଗୃତକା ଯହିଁ
ତମାଳ ତରୁକୁ ତର୍ଜି ଜଳଦ କର ଯେ । ଅମ୍ଳାନ ଗୁଳ୍ମ ବଲ୍ଲୀକମନ
କୁସୁମ ପୀତ ରଙ୍ଗ ଅସିତ ଶ୍ରେଣୀଭୂତରେ ସେ ପୁରୁହୂତ କୋଦଣ୍ଡ ପର
ଯେ । ମତ୍ତଦ୍ୱିରଦ ନାଦ ଇରତେ ଶୁଭେ ଯେ । ଚମ୍ପା ସମ୍ପାତ ଶମ୍ପାକୁ
ସମ ଲଭେ ଯେ । ବକୁଳ ମକରନ୍ଦ ବରଷେ ଡାହୁକ କେକୀ ବାଣୀକି
ଘୋଷେ ବଳାଳୀ ଗତ ଅଗତବଶେ ସ୍ୱଭାବ ଶୋଭେ ଯେ । ୯ ।

ପ୍ରଫୁଲ୍ଲ ମଲ୍ଲୀବଲ୍ଲିକମାନ ତାଷ୍ଟ ସନ୍ଧ୍ୟରେ ନୀଳ ଗଗନ ଛୁଇପଡ଼ିଲା
ଧରା ଶୋଭନ ପରାପ୍ତେ ତର୍କ ଯେ । ଅନାଇଁ ଛାହା ଅସିତ ନୀଳ ଦାସୀ
ପ୍ରକାଶ ରଥାଙ୍ଗକୁଳ ପ୍ରବେଶ ହୋଇ ମହା ବ୍ୟାକୁଳ ପକ୍ଷ ହବେକ ଯେ ।
ଗୃହିଁ ଚକୋରପକ୍ଷୀ ଚଞ୍ଚୁ ସ୍ତମ୍ଭକୁ ଯେ । ରଖେ ଚନ୍ଦ୍ରୁରପଣେ କାନ୍ତା
ଯୋଗକୁ ଯେ । ବାରୁଣୀ ପୁଷ୍ପବନ୍ତ ମଡାର ଦେଖି ଅନନ୍ଦ ଦ୍ୱାବାନ୍ଧକାର
ତରୁ ଦୋଳକା ଅଧ ବଗୃର କରେ ରଙ୍ଗକୁ ଯେ । ୧୦ ।

କିଂଶୁକ ଶୁକ ଯେ ବୃକ୍ଷେ ଥାଇ ଭ୍ରମରେ ସେହୁ ଭ୍ରମ କରାଇ ଚୁତ-
ପରାଗେ ସେ ଅନ୍ଧ ହୋଇ ହେଉଁ ପତନ ଯେ । ଜମ୍ବୁ ବାଗୁରେ ଭଜଣେ ସେ
ଯେ ବମ୍ବ ପାଶକୁ ଚାହୁଁଡ଼ ଲଜେ ଗଲ ରେ ବୋଲ ଜମ୍ବୁକ ଗର୍ଜେ କର
ଲେଜନ ଯେ । ଗୃହିଁ କସ୍ତୁରୀ ପଙ୍କେ ପଙ୍କିଳା ମହୀ ଯେ । ସଡ଼ ପଡ଼ ଏମନ୍ତ
ଟୋକାଳ ଧାଇଁ ଯେ । ଅଷାଢ଼େ କର ଏ ରସ ପାନ କରଇ ମୁଁ ଯେ
ପଞ୍ଚମଗାନ ଏହା ଯା ଜାଣୁ ନାହାନ୍ତି ଅନ ମୋ ଭାଗ୍ୟ ଏହୁ ଯେ ।୧୧।

---

ଖଦିର—ଖଇର, ଦୀକ୍ଷା—ଉପଦେଶ, ପକ୍କଣ—ଶବରଘର,
ପଜକୁଡ଼ିଆ, ସ୍ତବକ – ଫୁଲପେଣ୍ଡା, ରବତ୍କେ୍ୟାତରେ—ଖରାରେ ।

୯ । କେକୀ—ମୟୂର, ଜଳଦ—ମେଘ, ଗୁଳ୍ମ—ଗ୍ଲେଟବୁଦା, ବଲ୍ଲୀକ—
ଭଇତୁଙ୍କା, ଅସିତ—ଧଳା, ପୁରୁହୂତ—ଇନ୍ଦ୍ର, କୋଦଣ୍ଡ—ଧନୁ,
ଦ୍ୱିରଦ—ହାତୀ, ଶ୍ରେଣୀଭୂତ—ଧାଡ଼ି ଧାଡ଼ି, ଶମ୍ପା—ବିଜୁଳି ।

୧୦ । ପ୍ରଫୁଲ୍ଲ—ଫୁଟିଲ୍ୟ, ମଲ୍ଲୀ ବଲ୍ଲିକା—ମଲ୍ଲୀଲତା, ଧରା—ପୃଥିବୀ,
ଅଶୀତ—କଳା ଦାସୀ—କେରଣ୍ଡା ଫୁଲ, ରଥାଙ୍ଗକୁଳ—
ଚକ୍ରବାକମାନେ, ବାରୁଣୀ—ଅଗସ୍ତିଗଛ, ତରୁ—ବୃକ୍ଷ ।

୧୧ । କିଂଶୁକ—ପଲଶଗଛ, ଚୁତପରାଗେ—ଅମ୍ବ ବଉଳରେ; ଜମ୍ବୁ—
ଜାମୁକୋଳି, ବମ୍ବ—କଇଁଚକାକୁଡ଼ି, ଜମ୍ବୁକ—ବିଲୁଆ, ଲେକନ-
ଗୃହିବା ।

ତାଳମୂ ବାଟେ ତଳେ ଅବନୀ ବୁଣିଲା ପ୍ରାୟ ପାଥିକତୁମୀ ଖଣ୍ଡନେ ମିଳୁଛନ୍ତି ଏ ଘେନି କରବେଣେ ସ୍ଥାନ ଯେ । ପଡ଼ି ଗୁଚ୍ଛଗୁଲ ଶାଲନିର୍ଯାସେ ବଂଶଅନଳେ ଧୂପ ପ୍ରକାଶେ ପୁଲିନ୍ଦ ଅଗ୍ନି ଦେବାର ଗ୍ରାସେ ସରଘାମାନ ଯେ । ଉଡ଼ୁଅଛନ୍ତି ଛାଡ଼ି ମଧୁକୋଷକୁ ଯେ । କରମଣ୍ଡଳୀ କରୁଛନ୍ତି ଘୋଷକୁ ଯେ । ଯେପଣେ ଗୁହିଁଲେ ନବ ପାଟଳୀ ଜୟନ୍ତୀ କୁରୁବକ ଶାଳ୍ମଳୀ ପୁଷ୍ପିତ ବେଢ଼ୁ ପଲ୍ଲବେ ଝଳ ସେହ୍ନ ବାସକୁ ଯେ । ୧୨ ।

କୁସୁମଞ୍ଜରୀଗଣ ଚରମେ ହଂସ ସଗ୍ଲୀ କାଳନ୍ଦୀ ଭ୍ରମେ ବିହାର କରୁଛନ୍ତି ଅଗମ୍ୟେ ସୁମନୋରମେ ଯେ । ବ୍ୟାଳେ ମୃଣାଳ ବୁଦ୍ଧି କରନ୍ତି କଙ୍କ ନକୁଳ ଯେ ନ ଧରନ୍ତି ପକ୍ଷୀ ଘ୍ନସ୍ପାକୁ ଜାଲେ ଧାମନ୍ତି ବିଡ଼ାଳେ ଶମେ ଯେ । ଅର୍କପାଷାଣମାନେ ସେ ବନକ୍ଷିତ ଯେ । ବଡ଼ ବଡ଼ ହୋଇଣ ପଡ଼ିଅଛନ୍ତି ଯେ । ମତ୍ତଗର୍ବିତ ସିଂହସନ୍ଦୋହ ତହିଁ ଅନାଇଁ ଜାତ ସନ୍ଦେହ ଥରମ୍ଭି ଅସୁଛନ୍ତି କଳହ ସ୍ୱନାଦେ ଅତ ଯେ । ୧୩ ।

ପତନ ଜାତଫଳ ଅମୃତା ପକ୍ୱବଦଗ୍ରୀ ଗଜମ୍ଭକୁଡ଼ା ବବେଙ୍କ ନ କରଣ ମାଡ଼ି ତା ଗମିଲେ ସୈନ୍ୟ ଯେ । ଏଳାଦ ଭରଦ୍ୱାଜପନ୍ନରେ ଚବିତ ପଥ କ ଶ୍ରଚଳରେ ସବେ ପ୍ରଶଂସା କଲେ ଉତ୍ତରେ ଏ ବନ ଧନ୍ୟ ଯେ । ଅତ ମୁଖଚନ୍ଦ୍ରଳ ନିଶାଣଘାତେ ଯେ । ହେଲେ ଚଳିତ ପଶୁ ପତଙ୍ଗ ଯେତେ ଯେ । ଘ୍ରାଣ୍ଡୁଁ ସେ ବନ ସେ ବନଧର ମାଡ଼ି ଅସିଲ୍ଲ ମଣି ସାଗର ଅତ୍ୟନ୍ତ ଜ୍ୱେଳ ପତାକା ଚୀର କଲ୍ଲୋଳ ପ୍ରତେ ଯେ । ୧୪ ।

---

୧୨ । ଶାଲନିର୍ଯାସ-ଝୁଣା, ବଂଶଅନଳ-ବାଉଁଶନିଆଁ, ପୁଲିନ୍ଦ-ଶବର, ସରଘା ମହୁମାଛି, କୁରୁବକ-କୁରୁମ, ଶାଳ୍ମଳୀ-ଶିମିଳି, ବାସ-ଭସ୍ମ ।

୧୩ । କୁସୁମଞ୍ଜରୀ-ଫୁଲବିଶେଷ, ଚରମେ-ପିଠିରେ, ସଗ୍ଲି-ଚଢ଼େଇବିଶେଷ, ବ୍ୟାଳ-ସାପସବୁ, କଙ୍କ-ଚଢ଼େଇ ବିଶେଷ, ନକୁଳ-ନେଉଳ, ବିଡ଼ାଳ ବିଲେଇ, ଅର୍କପାଷାଣ-ସୂର୍ଯ୍ୟକାନ୍ତମଣି, ବନକ୍ଷିତ-ବଣଭୂଇଁ, ସନ୍ଦୋହ ସମସ୍ତେ ।

୧୪ । ଅମୃତା-ହରଡ଼ା, ପକ୍ୱ-ପାଚିଲା, ବଦଗ୍ରୀ-ବରକୋଳି, ଏଳା-ଅଳାଇଚ ଭରଦ୍ୱାଜପନ୍ନ-ଭଦଭଦଳିଆ ପର, ପତଙ୍ଗ ଚଢ଼େଇ ବନଧର-ସୈନ୍ୟ, ଜ୍ୱେଳ-ଶୀଘ୍ର, ଚୀର-କନା, କଲ୍ଲୋଳ-ଲହରୀ ।

କରୀ ମଣିଲେ ମକରୀ କର ତୁରଙ୍ଗ ତହିଁ ଶଫର ପର କୂର୍ମ ସୁଚର୍ମ ସୁଷମ ଫଣୀ ଉଷ୍ଣୀଷ ଫେନ ଯେ । କୃପାଣ ଝଟ ଝଟ ଝଟକ ବହଇ ଯନ୍ତ୍ର ଉକ୍ତ ଝଟକ ଭ୍ରମପଦାତ ଭଉଁର ଠିକ ବାଦ୍ୟ ଗର୍ଜ୍ଜନ ଯେ । ପୁର ଏସନ ସୈନ୍ୟ ସେ ମହାରଣ୍ୟ ଯେ । ପଞ୍ଚକୋଶ ମଧ୍ୟରେ ରକ୍ଷଣ ସ୍ଥାନ ଯେ । ଘଞ୍ଚରେ ଯାଇଁ ବାଡ଼ ବେଢ଼ାଇ ଉଚ୍ଚରେ ବୃକ୍ଷେ ମଞ୍ଚା ବନ୍ଧାଇ ଯନ୍ତ୍ରା ବସାଇ ଚୋପ ଖୋଲାଇ ଜଗିଲେ ଜନ ଯେ । ୧୫ ।

ପଳାଇ ଜୀବେ ଯହିଁରେ ସ୍ଥିତ ବହୁ ସେ ଦନ୍ତଦନ୍ତ ଅକୃତ ତହିଁ ମର୍କତଶିଳାର ଜ୍ୟୋତ ଯାଇଛୁ ନଭେ ଯେ । ଟେକୁ ଅଛୁକ ଏଥିକି କର ପିଇବ ଅଣି ସ୍ୱର୍ନଦୀ ନୀର କରଟଦନ୍ତ ଛଟକେ ତାର ଯେତକ ଶୋଭେ ଯେ । ଧାତୁ ଧର ଶବଳା ମାଳା ସଦୃଶୀ ଯେ । ଜଳପ୍ରବାହ ଦାନଜଳ ବରଷି ଯେ । ପିପ୍ପଳ ଅଶନକୁ ଗୃହୀତ କର ସିନ୍ଦୂରେ ତଳଙ୍କେ ଯୁତ ଦେବସବନ୍ଧୁ ଯହିଁ ମାହୃନ୍ତ ପରାୟେ ଦିଶି ଯେ । ୧୬ ।

ସେ ଗ୍ରାବୁଁ ଜୀବ ସତ୍ତ୍ୱରେ କାଳୀ ଦେଇ କୁହାଟ ଟମକ ଡାଳ ଫିଙ୍ଗିଲେ ସାଦ କୁନ୍ତ ଶାବଳୀ ବାନ୍ଧଲେ ତୀର ଯେ । ପ୍ରତ ନଳିରୁ ଗୁଳି ବାହା'ର ଧାଡ଼ଦେବାର ବାଜ ବଇରୀ ମାଡ଼ିବସିଲେ ପକ୍ଷୀଙ୍କ ଧର କି ମନୋହର ଯେ । ଜାଲେ ପଡ଼ଲେ ଅଟେ ପଶୁନିକର ଯେ । ଗଡ଼େ ପଡ଼ିଲେ କେତେ କେତେ କୁଞ୍ଜର ଯେ । ମାରରେ ମାର ଏ ବୀର ଗିର ପୂରିତ ହେଲ ଅମରପୁର ସାଜିଲ ଅବା କେଉଁ ଅସୁର ଭାବିଲେ ସୁର ଯେ । ୧୭ ।

ଭଲ୍ଲରେ ଭଲ ଭଲ୍ଲ ଭୁଷିଲେ ମଲ୍ଲ ଯୁଝିଲେ ଶାର୍ଦ୍ଦୂଳ ତୁଲେ ଖଡ୍ଗ ଶ୍ରେଷ୍ଠ ପରୀକ୍ଷା କଲେ ଖଡ଼ଗ ପରେ ଯେ । ଶରଭ ଶରଭରେ ବିନାଶି

---

୧୫ । କରୀ-ହାତୀ, ମକରୀ-ମଗର, ତୁରଙ୍ଗ-ଘୋଡ଼ା, ସଫରୀ-ଦଣ୍ଡିକରୀ ମାଛ, କୂର୍ମ-କଇଞ୍ଛ, ସୁଚର୍ମ—ଉତ୍ତମଚମଡ଼ା, ଉଷ୍ଣୀଷ-ପଗଡ଼, କୃପାଣ-ଖଣ୍ଡା, ଭ୍ରମପଦାତ—ବୁଲୁଥିବା ପାଇକ, ଚୋପ—ଗାତ ।

୧୬ । ଦନ୍ତଦନ୍ତ—ହାତୀଦାନ୍ତ, ନଭେ-ଅକାଶରେ, ସ୍ୱର୍ନଦୀ-ଗଙ୍ଗା, କରଟ—କୁଅ, ଦାନଜଳ-ମଦଜଳ, ପିପ୍ପଳ-ଅଶ୍ୱତ୍ଥ, ଦେବସବନ୍ଧୁ-ସୂର୍ଯ୍ୟ ।

୧୭ । ଗ୍ରାବୁଁ-ଶବ୍ଦରୁ-ଘେରବାରୁ, କୁଞ୍ଜର-ହାତୀ, ଅମରପୁର—ସ୍ୱର୍ଗପୁର ସୁର—ଦେବତା ।

୧୮ । ଭଲ୍ଲ—ଭାଲୁ ଓ ବର୍ଚ୍ଛା, ଶାର୍ଦ୍ଦୂଳ—ବାଘ, ଖଡ଼ଗ—ଖଣ୍ଡା ଓ ଗଣ୍ଡା, ଶରଭ—ଅଠଗୋଡ଼ ଯୁକ୍ତ ମୃଗ, ଶରଭ—ଶର, ଭୂଦାର—ବରାହ

ବାରଣ କଲେ ଭୂଦାର କାଟି ସୃଗାଳ୍ପ ଯମଦାଢ଼ ପ୍ରକାଶି ଅତି କୋପରେ ଯେ । ଛାଣ୍ଡ଼ ଶଲକପଲ ଶ୍ୱାନହିଁ ଧ୍ୱଂସେ ଯେ । ମତ୍ତ କ ଲାଲ ଧଶେ କଲାଲ ବଶେ ଯେ । ସର୍ବାଙ୍ଗ ରଙ୍ଗ କଲେ ଜନାଳି ଗଜ ବରଗ୍ଧ କୁରଙ୍ଗ ନଳ ଯୋଗରେ ଫଗୁପିଚକା ଚଳା ଅତି ହରଷେ ଯେ । ୧୮ ।

କୁମର କରୁଁ ମୃଗୟା ରସ ଲଭଣ କାସ ପୁଚ୍ଛେ ମହୃଷ ଅଛୁ କ ନାହିଁ ମୋର ଅପୂଷ ବୃଝ ଜୀବେଶ ହେ । ଶଙ୍କର ଶଶାଙ୍କର ଜରର ବାଘ ଅଶନ ଦୁର୍ଗାପଯ୍ନୂର ବହୂଲ ସେହ୍ନ ଦାଣ୍ଡକ ଥର ବର୍ଣ୍ଣିବା କସ ଯେ । ସ୍ୱାମୀ କରଇ ତାର ସର୍ଗୀକ ସ୍ଥିର ଯେ । ଖଣ୍ଡ ଶବଦ ଅଛୁ ତୋର ନ ଡର ଯେ ସବଙ୍କ ପଣେ ବାଧି ଶିଖାଇ କର କୁମର ଉଦନ୍ତ ଭୁହ୍ନ ଲବଣ୍ୟବତୀ ଛାମୁକୁ ଯାଇ ମରାଳବର ଯେ । ୧୯ ।

ମୃଗୟା ଶେଷେ ଯୁବନରେଶ ବାହୁଡ଼ି ହେଲେ ବସା ପ୍ରବେଶ ମେଦ ବଣ୍ଟାଇ ମୋଦ ଅଶେଷ ସଚବସ୍ଥତ ଯେ । କୋଷେ ରହିଲା ଗଜମାର୍ଜ୍ଜାର ବସ୍ତଙ୍ଗ ଚଳ ମୋତ ଗୃମର ଖଡ଼ଗପକ ଦତ୍ତ ଭୁସୁରଗଣେ ସଞ୍ଚର ଯେ । ତୋଷି ବୈଷ୍ଣବ ଦ୍ୱିପିଅଜନ ଦେଇ ଯେ । ଶିଶୁଲଳସୀ ଲୋକେ କରଜ ନେଇ ଯେ । ବଜ୍ରକବର ଗଣ୍ଡକ କାତ ଲଭେ ବହୁତ ଗ୍ରାଜତପନ୍ତ ପଦଗ ପଷଦାନେ ଭୂପତ ବିଶେଷେ ହୋଇ ଯେ । ୨୦ ।

କର୍ବ-ଦଶନ ଲଭ ତଷକେ ଶୃଙ୍ଗ ପ୍ରଦାନ ଶୃଙ୍ଗକାରକେ ଚର୍ମ-କାରକୁ ଚର୍ମ ଜସ୍ତୁକେ ନାଅ ବୋଇଲେ ଯେ । ବସ୍ତ୍ରହଲୋମ ପାଟବ୍ୟଲୋକେ ମୃଗନାଭିକ ପାଇ ବଣିକେ ମନ୍ଦୀନନ୍ଦନଗୁଣ ଅଧିକେ ପ୍ରଶଂସା କଲେ ଯେ ।

---

ଶଲକୀ—ଝିଙ୍କ, ଶ୍ୱାନ—କୁକୁର, କୀଲାଲ—ରକ୍ତ, ଜନାଳି—ଲୋକମାନେ, ଗଜ—ହାତୀ ।

୧୯ । କାସ-ଭୟ, ଜୀବେଶ-ଯମ, ପୁଚ୍ଛେ-ଲଜ୍ଜାରେ, ମହୃଷ-ଯମ ବାହନ, ଶଙ୍କର-ମହାଦେବ, ଶଶାଙ୍କ-ଚନ୍ଦ୍ର, କର-କିରଣ, ବାଘଅଶନ—ମୃଗ ଅହାରସିଂହ ଦୁର୍ଗାଙ୍କ ପୟର କ ପଦାତଳେ ରହିଲା, ଉଦନ୍ତ—ସମ୍ବାଦ, ମରାଳବର—ହଂସଶ୍ରେଷ୍ଠ ।

୨୦ । ମେଦ—ମାଂସ, ମୋଦ—ଆନନ୍ଦ, ବସ୍ତଙ୍ଗ—ମୁଣ୍ଡ, ଭୂସୁରଗଣେ—ବ୍ରାହ୍ମଣମାନଙ୍କୁ, ଖଡ଼ଗ ପକ—ଗଣ୍ଡାପାଣି, ଦ୍ୱିପିଅଜନ—ବାଘଛାଲ ଶିଶୁ ଲଳସୀ—ପିଲ ସୁଆଗୀ, କରଜ—ବାଘନଖ, ଗଣ୍ଡକ—ଗଣ୍ଡା ପାଦଗ—ପାଇକ, ପଦାତିକ, ପଷ—ପର ।

୨୧ । କରୀଦଶନ—ହାତୀର ଦାନ୍ତ, ତଷକ—ଚଢ଼େଇ, ଶୃଙ୍ଗ—ଶିଙ୍ଗ,

ପାଦ ଏକ ନାକର ଚରଣ ପିନ୍ଧି ଯେ । ତୋଷି ଉଦର ଭଲେ ଶୟନ ବିଧି ଯେ । ପ୍ରଭାତେ ସୈନ୍ୟ ସାଜ ଗମନ ଶୁଭଙ୍କ ଉଚ୍ଛେ ନାଗରାସ୍ତନ ଶ୍ରୀରାମନାମ ଉପେନ୍ଦ୍ର ଭଞ୍ଜ ବ୍ୟାଧି ଔଷଧି ଯେ । ୨୧ ।

---

## ପଞ୍ଚବିଂଶ ଛାନ୍ଦ

( ଲବଣ୍ୟବତୀ ଚିଠାଉ ପାଠ ଓ ଉତ୍ତର ଦାନ )

ରାଗ—ଘଣ୍ଟାରବ

ଫାଲ୍‌ଗୁନ ଶୋଭା ପ୍ରକାଶି । ଶିଶିରେ ବସନ୍ତ ମିଶି । ବାଳବାମାତନୁ ସୀମାକୁ ଅଶ୍ଳେଷ ଯୌବନ କଳଙ୍କ ଅସି । ୧ । କୁଜ୍‌ଝଟି ରେଣୁ ବିହାର । କ୍ରମେ କ୍ରମେ ହେଲା ଦୂର । ନୂତନ ସ୍ତବକ ସ୍ତନ ଅଙ୍କୁରିଲା ପିକବାଣୀ କି ମଧୁର । ୨ ।

କାନ୍ତି କେତକୀ ମାଧୁରୀ । ନଅଳୀ କରଜ ପରି । ତୋଳା ଚଞ୍ଚରୀକେ ଚଞ୍ଚଳ ଚତୁରୀ ଅଣିଲା ବିଶେଷ କରି । ୩ । କାମେ ଉଷ୍ମ ଉପୁଜାଇ । ପୁନ୍ନାଗେ ଉତ୍‌ଫୁଲ୍ଲେ ଦେଇ । ଦର ବିକଶିତ ମଲ୍ଲି ମୃଦୁହାସ ପଲ୍ଲବ ଓଷ୍ଠ

---

ଚନ୍ଦ୍ରଭାନୁ ରାମେଶ୍ୱରକୁ ଯାଇ ସେଠାରେ ଥିବା ବଣକୁ ପାରିଧି କରିବାକୁ ଗଲା । ଗଣ୍ଡା,ବାଘ,ମୃଗ ସମ୍ବର ଇତ୍ୟାଦି ବହୁଜୀବ ମାରି ସମସ୍ତଙ୍କ ମାଂସ ବାଣ୍ଟିଦେଲା, ବ୍ୟାଘ୍ରଚର୍ମ ବୈଷ୍ଣବଙ୍କୁ, ଗଣ୍ଡାଚର୍ମ ବ୍ରାହ୍ମଣଙ୍କୁ, ପକ୍ଷୀ ପର ପାଇକଙ୍କୁ, ବାଘନଖ ପିଲାବାଲାଙ୍କୁ, ମୃଗନାଭି ବଣିଆଙ୍କୁ ଇତ୍ୟାଦି ଇତ୍ୟାଦି ପ୍ରକାରେ ବାଣ୍ଟିଦେଇ ଶୋଇଲା । ଲବଣ୍ୟବତୀ ପାଖକୁ ମଧ୍ୟ ଅଗରୁ ପଙ୍କ ଦେଇଥିଲା ।

---

## ପଞ୍ଚବିଂଶ ଛାନ୍ଦ

୧ । ବାଳବାମା ତନୁ—ସ୍ତ୍ରୀ ପିଲାଙ୍କ ଦେହ, ଅଶ୍ଳେଷ—ଆକ୍ରମଣ ।

୨ । କୁଜ୍‌ଝଟି—କୁହୁଡ଼ି, ରେଣୁ-ଧୂଳି, ବିନ୍ଦୁ, ସ୍ତବକ-ଫୁଲ, ବଉଳପେଣ୍ଡା ଅଙ୍କୁରିଲା—ଜାତହେଲା ।

୩ । କାନ୍ତି—ବର୍ଣ୍ଣ, ମାଧୁରୀ—ମନୋହର, କରଜ—ନଖ, ଚଞ୍ଚରୀକ—ଭଅଁର ।

୪ । ଦର—ଅଳ୍ପ, ବିକଶିତ—ଫୁଟିଲା ।

ଦେଖାଇ । ୪ । ଏକାଳେ ସିଂହଳଈଶ । ମତ୍ତ କରି ଅତି ତୋଷ ।
ବହୁନେ ଗୃହଦେଲେ ଅନ୍ତଃପୁରସ୍ଥ ସୋମେଶ୍ୱରଦେବ ପାଶ । ୫ । ସେ
ମହୀପତିକୁମାରୀ । ପାରାବାର ହେଉଁ ପାର । କି କରିବି ମୁହିଁ ନ ଗଲାତ ଏହୁ
ଚିନ୍ତା ସଙ୍ଗସଖୀଙ୍କି ପଚାରି । ୬ । ଏକେତ ନଗର ଦୂର । ଦୂତେ ସେ
ନାଗରବର । ଯୁବାମଣି ଅବା ବତେ ନ କରିବେ ସରିଲା ସଂସାର ମୋର
। ୭ । ମୁଁ ଯେ ରାଜସୁତା ହୋଇ । ଦୁର୍ଲ୍ଲଭେ ମନ ବଳାଇ । ଆକାଶ ପ୍ରକାଶ
ଚନ୍ଦ୍ର ଧରିବାକୁ ନିଃଶ୍ରେଣୀ କାହିଁ ଖୋଜଇ । ୮ । ଏମନ୍ତ ବିଚାରି ବେଳେ ।
କାମକଳା ଅସି ମିଳେ । ବୋଲେ ଦୀର୍ଘନେତ୍ରା ଏ ଯାତ୍ରା ଭଅଣି ତୋର
ସିଦ୍ଧି ହେବା ଛଳେ । ୯ । ପୂରିଲା କାମନା ତୋର । ବରିବୁ ମନକୁ ବର ।
ଚନ୍ଦ୍ର ଅନନ୍ତ ଜନନୀ ତାଙ୍କ ମୋତେ କହୁଥିଲେ ଏ ବିଚାର । ୧୦ । ଗଲା
ପ୍ରତିବନ୍ଧ ସବୁ । ଆଜ କି ଚିନ୍ତାର୍ଥୀହେବୁ । ବାଳା ଗୁପ୍ତେ ମାଳାଦେବେପୁଂସ
ବାହୁ ଗଳାକୁ ମାଳା କରିବୁ । ୧୧ । ଏକାଳେ ବହୁଳ ବେଳା । ଲଭିଲ
ଅରୋହି ଦୋଳା । ଯିବା କାଳେ ବୃଦ୍ଧଚରୀ ସହଚରୀ ହସ୍ତରେ ପତ୍ରିକା
ଦେଲା । ଦିବ୍ୟମନ୍ଦିରେ ଉତ୍ତରି । ପଲ୍ୟଙ୍କେ ବସୁ ଚତୁରୀ । ଦ୍ୱିଦନ୍ତଗମନା
କରିର ସେ ଉଦନ୍ତ ଦେଲା ଯେ ହେମମଞ୍ଜରୀ ।୧୩। ଦେଖିଲା ପଦ୍ମମଧ୍ୟରେ ।
ଲେଖିଲା କାଳିଅକ୍ଷରେ । ପାରିନ୍ଦ୍ରମଧ୍ୟା ପଚାରି ନ ପାରିଲା ନ ଅସିବା
ଅସିବାରେ । ୧୪ । ଏ ପାଞ୍ଚ ଦେଲା ପକାଇ । କାତର ଅନ୍ତର ହୋଇ ।
ବହୁତ ଦିନ ନଳିନ ହୋଇଥିଲେ ମଳିନତା ଥାନ୍ତା ପାଇ । ୧୫ ।
ଅବନୀ ଶିରୀ ସୁନ୍ଦରୀ । ଈଶ୍ୱରୀ ନବକିଶୋରୀ । ଲୀଳାବିଳାସୀଭୃତ୍ୟ ଚିତ୍ତ-
ଉଲ୍ଲାସୀନାଗରୀସଂସାରଶିରୀ । ୧୬ । ଆନନ୍ଦଦାୟିନୀ କାମେ । ଜ୍ଞାନହାରିଣୀ

---

୫ । ସିଂହଳେଶ-ସିଂହଳ ଦେଶ ରାଜା, ଅନ୍ତପୁରସ୍ଥ-ଅନ୍ତଃପୁର ପିଲାମାନଙ୍କୁ ।
୬ । ମହୀପତି କୁମାରୀ—ରାଜାଝିଅ, ପାରାବାର—ସମୁଦ୍ର ।
୭ । ଯୁବାମଣି—ପୁରୁଷମଣି ।
୮ । ନିଃଶ୍ରେଣୀ—ନିଶୁଣୀ, ସିଢ଼ୀ ।
୯ । ଦୀର୍ଘନେତ୍ରୀ—ସୁନ୍ଦରୀ ।
୧୧ । ପ୍ରତିବନ୍ଧ—ବାଧା ।
୧୨ । ଅରୋହି—ଚଢ଼ି, ଦୋଳା—ଯାନ ।
୧୩ । ଦ୍ୱିଦନ୍ତ—ହାତୀ, ଉଦନ୍ତ—ବାର୍ତ୍ତା ।
୧୪ । ପାରିନ୍ଦ୍ରମଧ୍ୟା—ସିଂହକଟି ବା ଅଣ୍ଟା, ନଳିନ—ପଦ୍ମ ।
୧୫ । ଅବନୀ ଶିରୀ ସୁନ୍ଦରୀ—ପୃଥିବୀ ଶୋଭା ସୁନ୍ଦରୀମାନଙ୍କ ରାଣୀ ।

ତା ବାମେ । କୁନ୍ଦସୁନ୍ଦରରଦନାକୁ ଚଉଦ ବ୍ରହ୍ମାଣ୍ଡରେ ନାହିଁ ସମେ । ୧୭ ।
ତୋଷ ରାଜହଂସ ଚୟ । ରହିଥିଲେ ଯହିଁ ସତ । ଜାଣୁ ଜାଣୁ ମଣି
ମାନସରୋବରରେ ବରଷାରେ ମାପଗତ । ୧୮ । ହାଟକକଣ୍ଟକ ଦେହା ।
ଇନ୍ଦୁହାସୀ ଗୁରୁସ୍ନେହା । ଛାଡ଼ିବ ଗୁମାନ ମାନସୁଁ ମଦନ ତୁ ହୋଇଲକ୍ଷଣି
ସାହା । ୧୯ । ତାରକାଶୋଭି ବାଲାକୁ । ହାର କରିବ ଗଳାକୁ । କରନ୍ତୁ
ମନେ ଗୁଣବନ୍ତମାଳିକା ରତନ ରସକଳାକୁ । ୨୦ । ରଘୁନାଥଙ୍କୁ ଜଣାଇ ।
ଏତେ ପଢ଼ି ଦେଲ ଚାହିଁ । ଅନ୍ତରଲିପିରେ କି ମନ୍ତ୍ରର ଏଥି ରସିକ ଅଛୁ
କି ଲହୁ । ୨୧ । "ଅଇଲ ଅଙ୍କାକୁ ତୋର । ଯାହା ଇଚ୍ଛା ତାହା କର ।"
ପାଦୁ ପାଦୁଁ ବର୍ଣ୍ଣେ ବର୍ଣ୍ଣେ ଘେନି ହେଲ କନକଘନା କର୍ଣ୍ଣର ।୨୨। ସଖୀଙ୍କି
ଜଣାଇ ଦେଲ । ଚିଟାଉ ରଚନା କଲ । ଚତୁରୀ ଗୁରୁଚେଟିନୀ ଜଣେ
ଘେନି ଶିବଦେଉଳକୁ ଗଲ । ୨୩ । ଏକାଳେ କୁମର ବର । ପ୍ରବେଶ
ପ୍ରାସାଦଦ୍ୱାର । ଚାହିଁ ବିଚାରଇ ମେରୁ ଏ ଉରଜ ପରି ଧରାବନିତାର ।୨୪।
ମନ୍ଦାକିନୀଧାର ହାର । ଶୋଭାକରନ୍ତୁ ଅମ୍ବର । ବିଚିତ୍ର ଚିତ୍ରଚନ୍ଦ୍ରଲେପ ଉଜ୍ଜ୍ୱଳ
ଦରଶନେ ମନୋହର ।୨୫। ତହୁଁ ଭିତରକୁ ଗଲ । ହରଦରଶନକଲ । ଚମ୍ପା
ଗୋରୀ ଅନୁକମ୍ପା କରିବାକୁ କେତେ ଚମ୍ପା ଚଢ଼ାଇଲ । ୨୬ । କୁମର ତହୁଁ
ବାହାର । ଆଗେ ଅଛୁ ବ୍ରହ୍ମଚାରୀ । ଉମାଦରଶନେ ବାଳାବାମା ଦେଲ
କେତକୀପ୍ରସାଦ କରି ।୨୭। ଘେନିଲ ହୃଦେ ଲଗାଇ । ମୂଦେ ଅକ୍ଷରକୁ ଚାହିଁ ।
ଉଲ୍ଲସି ହୋଇ ଉଠିଲ ଲୋମ ତାର ଏତକ ହୋଇଲ କହୁ । ୨୯ । ଶ୍ରୀକଣ୍ଠ

---

୧୮ । ବର୍ଷାଦିନେ ହଂସମାନେ ମାନସରୋବରକୁ ଉଡ଼ିଯାନ୍ତି ।
୧୯ । ହାଟକ କଣ୍ଟକ—ସୁନାପରି ଚକଚକ, ଇନ୍ଦୁହାସୀ—ଚନ୍ଦ୍ରହାସୀ ।
୨୦ । ପାଦୁ ପାଦୁଁ—ପ୍ରତିପଦରୁ; ବର୍ଣ୍ଣେ ବର୍ଣ୍ଣେ-ଅକ୍ଷରେ ଅକ୍ଷରେ, ୧୫, ୧୬, ୧୭, ୧୮, ୧୯, ୨୦, ୨୧ "ଅଇଲ ଅଙ୍କାକୁ ତୋର, ଯାହା ଇଚ୍ଛା ତାହାକର, ଏହା ପ୍ରଥମ ଅକ୍ଷରରେ ବାହାରିବ ।
୨୩ । ଚେଟିନୀ—ଦାସୀ-ଚାକରାଣୀ, ଚିଟାଉ—ପତ୍ର ।
୨୪ । ପ୍ରାସାଦ—ମନ୍ଦିର, ଧରାବନିତା—ପୃଥିବୀ ସ୍ତ୍ରୀ ।
୨୫ । ମନ୍ଦାକିନୀ—ଗଙ୍ଗା, ଅମ୍ବର—ଆକାଶ, ଚନ୍ଦ୍ର—ଚୂନ ।
୨୬ । ଅନୁକମ୍ପା—ଦୟା ।
୨୭ । ଉମା—ପାର୍ବତୀ, ବାଳାବାମା—ଦାସୀ ।

ଅନ୍ଧକଘାତୀ । ଗଙ୍ଗାଧର ମୁକ୍ତାକାନ୍ତ । ଶଙ୍କର ଶେତ୍ୱାଙ୍ଗ ଲବ୍ଧ ଜମାରସେ ଛୁଟେନ୍ତ୍ରେ ଶମ୍ଭୁଭୂଷାପ୍ରୀତ । ୨୯ । ଅଛୁ ପତ୍ର କରେ ଧରି । ମଣ୍ଡିଲୁ କରିଅମାତ୍ରୀ । ଶିଶୁ ଅଙ୍ଗନା ସେହିଠାରୁ ବାହୁଡ଼ି ପରବେଶ ଅନ୍ତଃପୁରୀ ।୩୦। ଲେଖ ବାଧି ଦେବା ତହିଁ । ସମସ୍ତସଖୀଙ୍କି କହି । ପତ୍ର ପାଇବାରୁ ଯେମନ୍ତ ବୋଇଲା ପୁଲକାଙ୍କଦେଇ ଦେହି । ୩୧ । କେ ବୋଲେ ସୁବର୍ଣ୍ଣ ଶ୍ଳୁହିଁ । ମାର ଥିବ ତନୁ ଦହି । ସେ ତାପ ହରଣେ ହରନାମମାନ ବିଶେଷରେ ହେଲା କହି । ୩୨ । କେ ବୋଇଲା ଏଥେ ଅଛୁ । ଶ୍ରୀଅଙ୍ଗ ମୁଁ ସଂଶୋଳୁଛୁ । ସମସ୍ତେ ଦେଖିଲେ ଏହି ଭାଷା ତାର ରସାନୁଭବୀ ହୋଇଛୁ । ୩୩ । ଭାଗ୍ୟେ ଅମ୍ଭ କୋମଳାଙ୍ଗୀ । ହୋଇଛୁ ତା ପ୍ରାଣ ସଙ୍ଗୀ । କୋପ କଲା ବେଳେ କୋପନା ନାମରେ ଡକୁଥିବ ଦେଇ ଭଙ୍ଗୀ । ୩୪ । ଏମନ୍ତେ ନୃପନନ୍ଦନ । ପ୍ରବେଶ କେଶର ବନ । ମଣ୍ଡନ କରି ମଣ୍ଡପ ଦେଖନେ ବାଳା ପତ୍ର ପଢ଼ି ପୁନଃ ପୁନଃ । ୩୫ । ହେ ପ୍ରଭୋ ଅମ୍ଭ ସଜନୀ । ସୁନ୍ଦର ରାକା- ରଜନୀ । ଏ ପୁର ଅକାଶ ପ୍ରକାଶ ଲଭିଲା ତୁମ୍ଭେ ଚନ୍ଦ୍ର ହେବା ଦେଖି ।୩୬। ହୃଦକୁମୁଦ ଏହାର । ଅଗୁଁତ ଉତ୍ଫୁଲ୍ଲକର । ଏ ନିଶା ଲୋଚନ ଚକୋର ତୃଷାକୁ ବିଳମ୍ବ ନ କର ହର । ୩୭ । ବିଧାତା ବିଧାନ ଏହି । ଶ୍ୟାମା ଭାବନା କରଇ । ସଙ୍ଗେ ରଙ୍ଗେ ତୁମ୍ଭେ ନଗରଚରମ ନଗ୍ରକୁ ମଣ୍ଡିବ ଯାଇ ॥ ପଢ଼ି ଜର ଜର ହୋଇ । ବୋଇଲା ମିତ୍ରଙ୍କୁ ଚାହିଁ । କେମନ୍ତ ସନ୍ଦର୍ଭ ରସ- ଗର୍ଭଭାଷ ବାଳାମଣିଠାରେ ଥାଇ । ୩୯ । ଚତୁରୀଗୁଣରେ ଦେଖ । ସଖୀଏ ସୁନ୍ଦରୀ ଯୋଖ । ଏଥି ଭୃଙ୍ଗ ସଙ୍ଗ ଦୁର୍ଲ୍ଲଭ ବୋଲି ଟି ଲେଖିଲେ କେତକୀ ଲେଖ । ୪୦ । ସଖା କହେ ଶଙ୍କା ଏତେ । କରନ୍ତୁ ତାତ ସମ୍ମତେ । ଶୁଭ ପଣ୍ଡୁରୁ ସାକ୍ଷାତ ହୋଇବାକୁ କେଉଁ ସ୍ଥାନରେ କେମନ୍ତେ । ୪୧ । ବାମେ

---

୨୯ । ଶ୍ରୀକଣ୍ଠ—ମହାଦେବ, ଅନ୍ଧକଘାତୀ—ମହାଦେବ, ଗଙ୍ଗାଧର—ମହାଦେବ, ମୁକ୍ତାକାନ୍ତ—ମହାଦେବ, ଶଙ୍କର—ମହାଦେବ, ଲବ୍ଧ-ଲୋଭୀ ।

୩୦ । ଅମାତ୍ରୀ—ହାତୀ ହାଉଦା, ଶିଶୁ ଅଙ୍ଗନା—ଦାସୀ ।

୩୧ । ରସାନୁଭବୀ—ରସଭୋଗୀ ।

୩୨ । କୋପନା—ସ୍ତ୍ରୀ, କୋପ—ରାଗ ।

୩୩ । ରାକା—ପୂର୍ଣ୍ଣମୀ, ରଜନୀ—ରାତି ।

୩୪ । ଉତ୍ଫୁଲ୍ଲକର-ଆନନ୍ଦକର ।

ବାମାବର ସ୍ଥିତ । ଦକ୍ଷିଣେ ଲକ୍ଷ୍ମଣ ଯତ । ମଧ୍ୟେ ବାକେ ଯେଉଁ ଶ୍ୟାମଳ ସୁନ୍ଦର ତାଙ୍କୁ ଉପରନ୍ଦ୍ର ଚନ୍ଦ୍ର । ୪୨ ।

---

## ଷଡ଼୍‌ବିଂଶ ଛାନ୍ଦ

( ଚନ୍ଦ୍ରଭାନୁଙ୍କର ସ୍ତ୍ରୀ ବେଶ ସାକ୍ଷାତ ଓ ସିଂହଳ
ମନ୍ତ୍ରୀ ସହ ଉତ୍ସବ ସ୍ଥାନକୁ ଯିବା )

ରାଗ— ଚିନ୍ତାଦେଶାକ୍ଷ

ମେଧାବତୀ ଶୁଣି ଗତ ଅନ୍ତଃପୁରିକ । ଭେଟିଲା ରାଜକୁମାରୀ ସୁକୁ-ମାରୀକ । ୧ । ପଚାରିଲା ପ୍ରିୟ ସହଚରୀକ ତହିଁ । ସାକ୍ଷାତ ଦର୍ଶନ ହେବ କେମନ୍ତ ହୋଇ । ୨ । ଚତୁର ମନ୍ତ୍ରୀନନ୍ଦନା କଲା ଉତ୍ତର । ନାରୀ ବେଶ ଧରିବେ ମଦନ ସୁନ୍ଦର । ୩ । ନାରୀବେଶ ବୋଲି ଏତେ ମାତ୍ର କରିବେ । ତଳକୁ ସେ କୋମଳ ବାଳକୁ ବାନ୍ଧିବେ । ୪ । ନୀଳନଚୋଳ ଓଢ଼ିଥିବେ ସର୍ବାଙ୍ଗେ । ଗୃଳିବେ ବାମଚରଣ ଗୃଳିଲେ ଅଗେ । ୫ । ମଞ୍ଜୁ ମଞ୍ଜିରେ ଖଞ୍ଜିବେ ସୁରଙ୍ଗ ପାଦେ । ଦ୍ୱାଃସ୍ଥେ ହେବ ନାରୀଭ୍ରମ ଏତେକ ଭେଦେ । ୬ । ଚତୁରବନ୍ଧୁ କାମିନୀବୃନ୍ଦରେ ମିଶି । ହେଉଥିବେ ଦ୍ୱାରେ ଯିବାବେଳକୁ ପଶି । ୭ । କେମା ଦରଶନବେଳେ ରାମା ମାତର । ପୂରିଥିବେ ସିନା ସେ

---

୩୮ । ଶ୍ୟାମା—ସୁନ୍ଦରୀ, ଭୁବନା—ଚନ୍ଦ୍ରା, ନଗର ଚରମ—ନଗର ଶେଷ ନାଗପର୍ବତ ବା ହାତ ।

ଚନ୍ଦ୍ରଭାନୁର ପତ୍ର ପାଇ ଲାବଣ୍ୟବତୀ ପିତାଙ୍କୁ କହି ବୋଇତରେ ରାମେଶ୍ୱର ଅସି ପତ୍ରଦେଲେ । ଚନ୍ଦ୍ରଭାନୁ ସେ ପତ୍ର ନେଇ ପଢ଼ି ସଙ୍ଗୀମାନଙ୍କୁ କହିଲା ।

---

## ଷଡ଼୍‌ବିଂଶଛାନ୍ଦ

୧ । ମେଧାବତୀ—ବୁଦ୍ଧିମତୀ ।

୨ । ନାରୀବେଶ—ସ୍ତ୍ରୀ ବେଶ ।

୩ । ନୀଳନଚୋଳ—ନେଳଅ ଲୁଗା, ସର୍ବାଙ୍ଗେ—ଦେହଯାକ, ଗୃଳିବେ—ବଢ଼ାଇବେ ।

୪ । ଦ୍ୱାଃସ୍ଥେ—ଦ୍ୱାରୀମାନେ ।

ପ୍ରାସାଦ ଭିତର । ୮ । ସ୍ୱରୂପେ ଅନ୍ୟଙ୍କୁ ଦେଖାଉଥିଲ ତାହାରେ । ଅସିବା
ବେଳକୁ ଏହି ବିଧି କରିବେ । ୯ । କୀର ଭାଷେ ଯାହା ବୋଲେ ଜୀବନ
ଦେବ । ନାରୀବେଶେ କାହିଁ ଅଙ୍ଗୀକାର ନୋହିବ । ୧୦ । ତରୁଣୀମଣି
ତରୁଣୀ ନୋହିବ ତେବେ । ପୁରୁଷ ହୋଇ ଶୁଣିବ ଭାବେ ସ୍ୱଭାବେ । ୧୧ ।
ବୀଣାଭାଷୀ କଣା ସିନା ତରୁଣବର । ତାହା ଗୁଣାଅଧିକେ କରୁଣା ଏହାର ॥
ରାମ ନାମ କବଚରେ କବଚ ଦେହି । ଫୁଲବାଣ ବାଣଗଣ ସେ ପୁଣ
ସହି । ୧୩ । ବାତ୍ସ୍ୟାୟନ ଋଷି ଅନୁଷ୍ଟୁପ ଛନ୍ଦରେ । ରତି ବୀଜ ମହାଦେବ
ଦେବତା କରେ । ୧୪ । ବୋଲେ ମୁଖ ରଖ ଚନ୍ଦ୍ରଜିତବଦନା । ତରଙ୍ଗ-
ନେତ୍ରୀ ମୋ ନେତ୍ର ସମ୍ପତ୍ତି ସିନା । ୧୫ । କୋକିଳବଚନ୍ତୁ ପଦେ ଶ୍ରବଣ
ଛୁଇଁ । ଅଧର ଧର ଅରୁଣାଧରୀ ବୋଲଇ । ୧୬ । କମ୍ବୁକଣ୍ଠୀ ମୋର
କଣ୍ଠମାଳାର ଚିହ୍ନ । ବୋଲି କଣ୍ଠ ଛୁଇଁଦେଇ ଭାବ କେମନ୍ତ । ୧୭ ।
ନସିକାକୁ ବୋଲେ ଅତି ତୋଷିବା ଚୋର । ବନ୍ଧୁବାଳା ପ୍ରୀତବାସୀ
ରସିକାବର । ୧୮ । ହୃଦପୂରେ କର ଭୂଷା ହୃଦୟୁ କର । ନୀରଜକଳିକି
ଉରଜ ରସ ତୋହର । ୧୯ । ମଧ୍ୟେ ସିଂହମଧ୍ୟମା ରମ୍ଭୋରୁ ଉରୁରେ ।
ଭୁଜେ ବିଷଭୁଜ ଧନ୍ୱଭ୍ରୂରୁ ଭ୍ରୂରୁରେ । ୨୦ । ଉଦରେ କୃଶଉଦରୀ ପତ
କହଇ । ପକ୍ଷୀଜନ୍ତୁ ସିନା କେତେ କହନ୍ତି ମୁହିଁ । ୨୧ । ମନ୍ଦାକିନୀ ବୋଇଲା
ସେ ପୁରୁଷ ଭ୍ରମର । ଅଧିକ ହୋଇଲା ଏମନ୍ତ ହେବା ତାଙ୍କର । ୨୨ । ମାଲତୀ
ବିକାଶ ଏହା ଭ୍ରମର ପାଇଁ । ଆମ୍ଭ ସଖୀ ବେଦନା କି ହୋଇବ କହି ॥
ପଲ୍ଲବ ଶେଯରେ ଶୁଅଇବା ବେଳରେ । ସନାଳ କମଳ ଦେଇଁ ହୃଦ-
ସ୍ଥଳରେ । ୨୪ । ବୋଲଇ ନୁହଇ ଆନ ବିହିତ୍ତି ବିଧି । ମଙ୍ଗଳବନ୍ଧ ସର୍ବଦା
ଶୁଭଦ ନୋହି । ୨୫ । ତପସ୍ୟା କି କେବେ ହୋଇଅଛି ବିଫଳ । ଉପ-
ଗୂର ସୁବାହୁ ସନାଳ କମଳ । ୨୬ । ସବୁ ଉପଗୂର ଏହି ପ୍ରକାରେ ବ୍ୟର୍ଥ ।
ଏ ତାପନାଶନେ ଏକା ବୀର ସମର୍ଥ । ୨୭ । ଆଜ ରଜନୀରେ କରାଇବୁ
ସାକ୍ଷାତ । ଏତେବେଳ ଯାଏ ଥିଲା ଅମ୍ଭ ଅପ୍ରୀତ । ୨୮ । ଏଣିକି ଏଣୀ-

---

୧୦ । କୀର—ଶୁଆ, ଅଙ୍ଗୀକାର—ସ୍ୱୀକାର ।

୧୧ । ତରୁଣ ବର—ପୁରୁଷ ଶ୍ରେଷ୍ଠ ।

୧୨ । ରାମା—ସ୍ତ୍ରୀ, ଫୁଲବାଣ—କନ୍ଦର୍ପ ।

୧୪ । ବାତ୍ସ୍ୟାୟନ ଋଷି—କାମଶାସ୍ତ୍ର ପ୍ରଣେତା ମୁନି ।

୧୯ । ନୀରଜକଳି—ପଦ୍ମକଳି ।

୨୦ । ବିଷଭୁଜ—ପଦ୍ମନାଡ଼; ଧନ୍ୱ—ଭ୍ରୂଲତା ପରି ବଙ୍କା ପତା ଉପର ।

ନସୂନା କରମେ ଯାହା । ଧାତା ଲେଖିଥିବ ଭୋଗ କରବ ତାହା । ୨୯ । ଶୁଣ ବୋଇଲ ସୁକର୍ମବନ୍ତ ଏ ବେଳ । ଦେଖ ଛାତ ସନମତ ହେବ ଏ ଘେନ । ୩୦ । ଏତେ କହ ଫଳାଶନ ମେଲାଣି ହେଲ । କୁମାର ଗ୍ରାମୁରେ ଯାଇ ସବୁ କହିଲ । ୩୧ । ସିଂହଳେଶ୍ବର ମନ୍ତ୍ରୀକୁ ପ୍ରେଷିତ କଲେ । ସେ ଆସି ଯୁବା ନରେଶ ଘେନିଣ ଗଲେ । ୩୨ । ରାଜା ସଙ୍ଗେ ସଙ୍ଗ ହୋଇ ସୁନ୍ଦରଇଣ । ପ୍ରାସାଦେ ଉତ୍ସବ ସ୍ଥାନେ ହେଲେ ପ୍ରବେଶ । ୩୩ । ନୃପତି ସମୂହ ଭୂଣ୍ଡିଭୂତ ସେଠାର । ଗ୍ରୈଳ କୁନ୍ତଳ କେରଳ ମଘ ମହ୍ଲାର । ୩୪ । ପଶ୍ଚ କଚ୍ଛ ତାହାଲ କୁଶଳ ଗୈଡ଼ଙ୍ଗ । ବିଦେହ ବିଦର୍ଭ ଅଙ୍ଗ ବଙ୍ଗ କଳିଙ୍ଗ । ୩୫ । ମଗଧ ନିଷେଧ ମହାରାଷ୍ଟ୍ର ଶ୍ରୀହଟ୍ଟ । ଗୁଜୁରାଟ ନିବୃତ ମାଳବ ସୌରାଷ୍ଟ୍ର । ୩୬ । କାମ୍ବୋଜ ଲାହୁର ଚେଦ ଭୋଟ ଦ୍ରାବିଡ଼ । ମରୁ ନେପାଳ ଉତ୍କଳ ଲେମଣ ଗୌଡ଼ । ୩୭ । ରାଜାଏ ବୀରକୁ ଦେଖି କଲେ ପ୍ରଶଂସା । ଛାଡ଼ିଲେ ଲାବଣ୍ୟବତୀ ଲଭିବା ଆଶା । ୩୮ । ଯେମନ୍ତ ଉତ୍ସବ ହୋଇଅଛି ସେ ସ୍ଥାନ । ନାହିଁ ନ ଥିବ ନୋହିବ ଏ ଅନୁମାନ । ୩୯ । ତମୋନୁଦ ପ୍ରଦୀପର ଗଣନା ନାହିଁ । ଚନ୍ଦ୍ରଉଦଅ ପ୍ରକାଶ ନିଷେଧ ତହିଁ । ୪୦ । ସେହି ଅଲେକରେ ଅବା ତାମସୀ ନାଶି । ଗୃହମାଗ୍ରତକ ସବୁ ପ୍ରକାରେ ତୁଷି । ୪୧ । ବାଣଗଣ କରଣରେ ଶୋଭିତ ତାର । ବିଧୁଙ୍କୁ ଖୋଜନ୍ତି ପୂଛ କରିବେ ପର । ୪୨ । ମୁଖର ମୁଖରବରେ ଭାସେ ସାଗର । କେଉଁ ସିନ୍ଧୁ ଚଳ କ ପ୍ରଳୟ ସଂସାର । ୪୩ । ତୂରନାଦେ ଲଙ୍କାପୁରବାସୀ ଆତୁର । ଚତ୍ରେ କର ହନୁମନ୍ତ ରଢ଼ି ପ୍ରକାର । ୪୪ । ରାଜସୂୟ ଯାଗ ସଭାପରି ସେଠାର । ଜନ ଗହଳରେ ହୋଇଅଛି ସୁନ୍ଦର । ୪୫ । ନଟକାରେ ନାଟ ନଟ ହଟ କରଇ । ରାଟଠାରୁ ପାଟଶାଟୀ ବରାଟ ପାଇ । ୪୬ । ଭାଟ କବିତ୍ୱ ପଢଲେ କହନ୍ତି କୀର୍ତ୍ତି । ସାଧୁ ବିଧୁଶେଖରଙ୍କ କରନ୍ତି ସ୍ତୁତି । ୪୭ ।

---

୩୧ । ଫଳାଶନ—ଶୁକ ।
୩୨ । ଭୂଣ୍ଡୀଭୂତ—ଏକତ୍ରିତ ।
୪୦ । ତମୋନୁଦ—ଅନ୍ଧାରନାଶକ ।
୪୧ । ତାମସୀ—ଅନ୍ଧାର, ଗୃହମାଗ୍ରତ—ଜହ୍ନରାତି ।
୪୨ । ବିଧୁ—ଚନ୍ଦ୍ର ।
୪୩ । ମୁଖର ମୁଖରବରେ—ପାଟି ଗୋଳମାଳରେ ।
୪୬ । ରାଟ—ରାଜା, ବରାଟ—କଉଡ଼ି ।
୪୭ । ବିଧୁଶେଖର—ମହାଦେବ ।

ଥୋଣ୍ଟେ ଖଣ୍ଟେ ପରକଟ ନିଟ ହୋଇ । କଳକଣ୍ଠି କଣ୍ଠି କରେ ନିଏ ଛଣ୍ଡାଇ । ୪୮ । ନଟ ବିଟପିଙ୍କି ନେତ୍ରାନ୍ତରେ ଠାରନ୍ତି । ଗଣିକାଙ୍କୁ ଧନିଏ ସୁବର୍ଣ୍ଣ ଦେଖାନ୍ତି ।୪୯। ଦୁଷ୍ଟନଷ୍ଟବ୍ୟୂହ କଳହରେ ଉନ୍ମତ୍ତ । କୁଳଟା ହଟ ବିଷାଦ କରେ ଉଦ୍ଧତ । ୫୦ । ପାଠଗ୍ରପଟଳ ନାନାବାଟେ ଭ୍ରମନ୍ତି । ପାଠ କୁହାଟରେ ଜଯୁ ବିବେ କରନ୍ତି ।୫୧। କାନ୍ତକଟିବାସଧଟି ଦୃଢ଼ରେ ଧରି । ଖର୍ବଟକ ନାରୀଚୟ ବିହାର କରି ।୫୨। କଟକ ନାରୀ ଛଟକ କହି ନୁହଇ । ହାସ ଝଟକେ ନିଅନ୍ତି ମନକୁ ମୋହି । ୫୩ । ଯଜମାନ ଦ୍ୱିଜମାନେ ଘେନି ଗମନ୍ତି । ହର ଦରଶନରେ ଉଚ୍ଛନ୍ନ ହୁଅନ୍ତି ।୫୪। ଯୁବାପୁରୁଷ ସୁନ୍ଦରୀଯୁବତୀ ଗୃହିଁ । ପଛେ ଗୋଡ଼ାଇ ମଦନେ ହୁଅନ୍ତି ମୋହି । ୫୫ । କେ କାହାକୁ ନିଷେଧ ସେ ନୁହେଁ ବିହିତ । ହର ଦରଶନେ ଆସି କର ଦୂରିତ । ୫୬ । ଯେ ଯାହାକୁ କାଳାନ୍ତରେ ଦେଖି ନ ଥିଲେ । ସେହି ସମୟରେ ଚକ୍ଷୁ-ରାକ୍ଷ ହୋଇଲେ । ୫୭ । ବସନ ଭୂଷଣ ଯେ ଯାହାର ସମ୍ଭୃତ । ସେ ଧନ ହୋଇ ଅଛନ୍ତି ସର୍ବ ଭୂଷିତ । ୫୮ । ହାଟରେ ଝଟକ କହିବାର ନୁହଇ । ଜନନୀ ଜନକ ଛାଡ଼ି ସବୁ ମିଳଇ । ୫୯ । ଉରଜ କୁମ୍ଭକାର ତରୁଣୀ ସ୍ୱିବେକୀ । ଲୁଚାଇ ଉରଜ କୁମ୍ଭ ସଂପୁଟ ବିକ । ୬୦ । ଚନ୍ଦ୍ର ଗୃମସୀ ସିନ୍ଦୁର ବିକନ୍ତି ଯହିଁ । ନାଗର ପୁରୁଷେ ତାଙ୍କ ଭଙ୍ଗିରେ କହି । ୬୧ । ହାସ କେଶ ଅଧରେ ଦେଖାଇ ଅଞ୍ଚଳ । ଏହା ଛାଡ଼ି ଏହା ବିକ କିପାଇଁ ବାଳ । ୬୨ ।

---

୪୮ । ଅଣ୍ଟେ—ଗୁପ୍ତରେ, ଖଣ୍ଟେ—ଡକାଏତ, ପରକଟ—ପ୍ରକାଶ ।

୪୯ । ନଟ—ନାଚବାଲା, ବିଟପୀ—ଅସତୀ, ଗଣିକା—ବେଶ୍ୟା ।

୫୦ । ଦୁଷ୍ଟନଷ୍ଟବ୍ୟୂହ—ଦୁଷ୍ଟଲୋକମାନେ, କୁଳଟା-ଅସତୀ, ବିଷାଦ-ଦୁଃଖ

୫୧ । ପାଠଗ୍ର ପଟଳ—ପାଠଗ୍ର ସବୁ ।

୫୨ । କାନ୍ତକଟି ବାସଧଟି—ପୁରୁଷର କଟିଲୁଗା ଧଡ଼ିକୁ, ଖର୍ବଟ—ଗ୍ରାମ୍ୟ, ନାରୀଚୟ—ସ୍ତ୍ରୀସବୁ ।

୫୩ । କଟକ ନାରୀ—ସହର ସ୍ତ୍ରୀ, ଛଟକ—ଛଟା ।

୫୪ । ହର ଦରଶନେ—ଶିବ ଦେଖିବାରେ ।

୫୭ । କାଳାନ୍ତରେ—ଅନ୍ୟ ସମୟରେ, ଚକ୍ଷୁରାକ୍ଷ—ଦେଖା ।

୫୯ । ଜନନୀ ଜନକ—ବାପ ମା ।

୬୦ । ଉରଜ—କୁଚ, ସଂପୁଟ—ଫରୁଆ ।

୬୧ । ଚନ୍ଦ୍ର—କର୍ପୂର, ଗୃମସୀ—ଚଉଁରୀ ।

୬୨ । ହାସ—ହସ, କେଶ—ବାଳ, ଅଧର—ଓଷ୍ଠ ।

ଗୁଡ଼ାକାର ବାଳୀଙ୍କ ପସରା ସନ୍ନିଧେ । ଶିତାରୁ ସ୍ୱାଦୁ ଅଛି କି ପୁଚ୍ଛନ୍ତି ବୁଧେ ।୬୩। ସେ ବୋଲନ୍ତି ଅଛି ହେ ପ୍ରବାଳ ମଧ୍ୟରେ । ତେମନ୍ତ ସ୍ୱାଦୁ ପଦାର୍ଥ ନାହିଁ ବିଧୁରେ ।୬୪। ବର୍ଣ୍ଣିଲେ ତ ସରବାର ପ୍ରସଙ୍ଗ ନୋହି । ଚରଣମାନଙ୍କ କଷ୍ଟ ଦେବାକଇଁ କହି ।୬୫। କୁମାରୀ ଦର୍ଶନକୁ ଉଚ୍ଛନ୍ନ କୁମର । ମନକୁ ମନ୍ମଥ ଧାର କରଇ ମାର ।୬୬। କେଶରବନକୁ ସେ ଗମନ କରିତ । ସିଂହଳେଶ ପାଶେ ମନ୍ତ୍ରୀସୁତ ପ୍ରେଷିତ ।୬୭। ସେ ଯାଇ କହିଲା ରାଜ୍ୟ କର୍ଣ୍ଣାଟ ପୁରେ । ଅନ୍ତଃପୁର ନାରୀ ଛନ୍ତି ବୀର ସଙ୍ଗରେ ।୬୮। ସେ ଦରଶନ କରିବେ ଶୁଣି ନୃପତି । ପରୀକ୍ଷା ହକାର ଆଜ୍ଞା ଦେଲେ ତତ୍ପତି ॥ ଯେତେବେଳେ ଅବରୋଧ ଦର୍ଶନ ହେବ । ଏହାଙ୍କ ଅନ୍ତଃପୁରସ୍ଥାଗଣ ଯିବ ।୭୦। ବୀର ପାଶେ ଆଗମନ ହେବ ସୁଖ । କହିଲା ନୃପତି ସ୍ୱୀକାର ଉଦନ୍ତ ।୭୧। ମାଳିକ କାମିନୀଗଣ ସଙ୍ଗ ବିଗ୍ରହ । ରତ୍ନମୟ ହାନ୍ଦୋଳା ଆରୋହଣ କରି ।୭୨। ପ୍ରବେଶ ହେଲେ ଦେଖିଲ ପଶ୍ଚିମଦ୍ୱାରେ । ବେଶକ ନିଷେଧ କରିଦେଲେ ସତ୍ୱରେ ।୭୩। ସେ ସ୍ଥିର ମିତ୍ର ପ୍ରାକାର ଅନ୍ତରେ ରହି । ରାଜକେମା ବିଜୟ ପଥକୁ ଅନାଇ ।୭୪। ଏକାଳେ ନୃପ ଆଜ୍ଞାରେ କୁମାରୀ ବିଜେ । ପୁରଦ୍ୱାରେ ନାନାବିଧ ବାଦ୍ୟହିଁ ବାଜେ ।୭୫। ସୁଖାସନ ବେଢ଼ି ପରିଚାରୀ ନିକର । ଚଳାନ୍ତି ମୟୂରପୁଚ୍ଛ ଖିଦାଗ୍ରୂମର ।୭୬। ଚନ୍ଦ୍ର ସୂର୍ଯ୍ୟ ତାରାସୁତ ଉହାଡ଼ କଲା । ନୀଳ ଗିରିଦରୀରୁ କି ବିଜେ କମଳା ।୭୭। ଯେତେ ନିକଟେ ବାଜଇ ବାଦ୍ୟ ନିସ୍ୱନ । ତେତେ ସଜାଡ଼ି ବିନ୍ଧୁଛି ଶର ମଦନ ।୭୮। ତେତକ ମନ ଆନନ୍ଦ ବୃଦ୍ଧି ହେଉଛି । ଉଚ୍ଛନ୍ନ ସରଷ ଉତ୍କଣ୍ଠକୁ ପାଉଛି ।୭୯। ପଯ୍ୟେକାର ମୃଦୁଲ୍ଲୀ କଞ୍ଚୁକୀ ନିକର । ଅଡ଼

---

୬୩ । ଗୁଡ଼ାକାରବାଳୀ—ଗୁଡ଼ଅଣୀ, ଶିତା—କନ୍ଦ, ବୁଧେ—ପଣ୍ଡିତମାନେ
୬୪ । ପ୍ରବାଳ—ପୋହଳା, (ଅଧର) ବିଧୁ—ଚନ୍ଦ୍ର ।
୬୭ । କେଶର ବନ—ନାଗେଶ୍ୱର ବନ, ପ୍ରେଷିତ—ପଠାଇବା ।
୬୮ । ଦରଶନ—ଦେଖା, ପରୀକ୍ଷା—ପରଖିଷ୍ଟ ।
୭୦ । ଅବରୋଧ—ଅନ୍ତଃପୁର, ଅନ୍ତଃପୁରସ୍ଥଗଣ—ଅନ୍ତପୁରବାସୀ ସ୍ତ୍ରୀମାନେ
୭୨ । ହାନ୍ଦୋଳା—ସବାରି, ଆରୋହଣ—ଚଢ଼ିବା ।
୭୩ । ନିଷେଧ—ମନା ।
୭୪ । ପ୍ରାକାର—ପାଚେରି, ଅନ୍ତରେ—ବାହାରେ ।
୭୬ । ନୀଳଗିରିରୁ—ନୀଳ ସୁନ୍ଦର ପର୍ବତ ଭିତରୁ, କମଳା—ଲକ୍ଷ୍ମୀ ।

ହୋ ଅଡ଼ ହୋ ଡାକେ କର କାତର । ୮୦ । ମଣିମା ଡାକ ଅଣିମା ସୁଖ-ଦାୟିନ । ପ୍ରବେଶ ପଶ୍ଚିମ ଦ୍ୱାରେ ହାନ୍ଦୋଳାମାନ । ୮୧ । ଘଣ୍ଟି ନାଦେ କର୍ଣ୍ଣ ଟେକେ ଯେମନ୍ତ ମୃଗ । ଉପୁରି ବୃଦ୍ଧି ନୃପତସୁତ ଉଦ୍‌ବେଗ । ୮୨ । ମନରେ ଭାବନା କର ଧନ୍ୟ ଏ ନାରୀ । ଯେଣୁ ଏ କାଳପ୍ରବୀଣା ମୋ ମନ ତୋଷି । ୮୩ । ଚତୁରଦଶୀର ନାରୀ ହୋଇ ତରୁଣୀ । ଦୂତୀ ହୋଇ ଭେଟାଉଛୁ ନବ ତରୁଣୀ । ୮୪ । ବିରହୀ ବତ୍ସଳା ସବୁକାଳେ ଦାରଣ । ତାଙ୍କୁ ଚନ୍ଦ୍ର ତାପେ ବୋଲି କରେ ହନନ । ୮୫ । ପୂର୍ଣ୍ଣ ପକ୍ଷଦନ ବୋଲି ଏ ପୂର୍ଣ୍ଣପକ୍ଷ । ମୋତେ କଲ ଦେଖି ଅତି ଦୀନ ଅଲକ୍ଷ । ୮୬ । ରାମ ଜାଣେ ଯେତେ ସୁଖ ଜାତ ଏ କାଳେ । ସୀତା ମାଳ ଘେନି କର ଅସିବାବେଳେ । ୮୭ । ଉପଇନ୍ଦ୍ର ବୀରବର ତାଙ୍କ କୋସୁର । ଏଣୁ ହେଲ ବର୍ଣ୍ଣିବାକୁ କଷ୍ଟ ଗୋଚର । ୮୮ ।

---

୮୦ । ପଦ୍ମେକାର—ପାଇକ, ନାକର—ସମୁଦ୍ର ।

୮୧ । ଅଣିମାସୁଖ—ସ୍ୱର୍ଗସୁଖ ।

୮୫ । ବିରହୀ ବତ୍ସଳ—ବିରହରେ ଜଳୁଛନ୍ତି ।

୮୬ । ପୂର୍ଣ୍ଣପକ୍ଷ ଦନେ—ପନ୍ଦର ଦନରେ, ଦୀନ—ଦୁଃଖୀ ।

୮୮ । କୋସୁର—ଗୃକର ।

ଲବଣ୍ୟବତୀ ସଖିମାନଙ୍କ ସଙ୍ଗେ ପରାମର୍ଶ କଲ, କପରି ଭେଟ ହେବ । ଜଣେ ସଖୀ କହିଲ, ତାଙ୍କୁ ସଂବାଦ ଦେବା ସେ ସ୍ତ୍ରୀ ବେଶରେ ଭେଟିବ । ଦେଉଳକୁ ଅସନ୍ତୁ ଦର୍ଶନ ବେଳେ ସାକ୍ଷାତ ହେବ । ଏହା ବିଚାର କର ଚନ୍ଦ୍ରଭାନୁ ପାଖକୁ ପତ୍ର ଦେଲେ । ଚନ୍ଦ୍ରଭାନୁ ଉତ୍ସବରେ ରାଜାଙ୍କ ମଧ୍ୟରେ ଯୋଗ ଦେଇ ସିଂହଳ ରାଜାଙ୍କୁ ପରଚୟ ଦେଲେ । ଅନ୍ତଃପୁର ନାରୀ ଦର୍ଶନକୁ ଯିବେ କହନ୍ତେ ସିଂହଳ ପତ ଶୁଣି ଅନୁମତ ଦଅନ୍ତେ ରାଜପୁତ୍ର ହାନ୍ଦୋଳାରେ ଚଢ଼ି ଦେବଦ୍ୱାରକୁ ଗଲେ । ଲବଣ୍ୟବତୀ ମଧ୍ୟ ସଖି ଗଣରେ ଅସିଲେ ।

# ସପ୍ତବିଂଶ ଛାନ୍ଦ

( ଲାବଣ୍ୟବତୀ ଓ ଚନ୍ଦ୍ରଭାନୁର ଦେବମନ୍ଦିର ମଧ୍ୟରେ ସାକ୍ଷାତ )

ରାଗ—ବସନ୍ତବରାଡ଼ି

ବିରଞ୍ଚି ରଚିଛି ଏ ସଂସାର ସାର ସୁନ୍ଦରୀଙ୍କ ଏକତ୍ର । ଶ୍ରୀଧାମ ମୁଖ ସ୍ୱରୂପେ ରାଗଲତା ସୁକାନ୍ତିରେ କର ଗଉରୀ । ସର୍ବଦା । ସୁଭଦ୍ରା ସେ ଯେ ମନ୍ଦୋଦରୀ । ରମ୍ଭୋରୁ ସୀତାମଧୁରବଚନା ତାରା ତନୁ କରେ ମାଧୁରୀ । ୧ । ପଦ୍ମିନୀଙ୍କ ଅଙ୍କରୁ ଚତୁରୀ ହୋଇଲେ ଏମନ୍ତ ଚତୁରୀ ରତନ । ଋଷି ବସିବେ ସଂସାର କରିବାକୁ ଯୋଗେ ହେଲେ ନୋହେ ପତନ । ଭାଳିବେ । ଏ ଚତୁରୀ କାମଚତୁରୀ । ନାଗରୀ ନାଗରିପୁମଧ୍ୟା ମଞ୍ଜୁଳନଗରୀ ସୁରସ ସାଗରୀ । ୨ । ଅବନୀବନିତା ମଘବାପଦକୁ ପଦକୁ ତୁଳିବାରେ ଦେଇ । କିଙ୍କିଣୀ କଣିକଣି କି ଅଣିମାଦି ସୁଖ ଶ୍ରୁତିକି ଦେବାପାଇଁ । ଡାକିଲେ । ହଂସକେ ହଂସ କି ସମାନ । କରି ଏ ଗତିକି ସମର ଦ୍ୱିରଦ ମଦ କରଇ ଯେ ମର୍ଦ୍ଦନ । ୩ । ଅତନୁସ୍ୟନ୍ଦନ ଚନ୍ଦନ ଚନ୍ଦନ ଶୀତଳ ତନୁକୁ ରଞ୍ଜାଇ । ପହଣ୍ଡ ମଣାଇ ସଙ୍ଗୀତ ପ୍ରବୀଣା ସଙ୍ଗିନୀଏ ବୀଣା ବଜାଇ । କୁମାର । ଥିବା ସ୍ଥାନକୁ ଅନୁସରି । ଶୋଭାଙ୍ଗୀଙ୍କି ପାନ ଭାଙ୍ଗି ଦେଇ ମନ ତୋଷୁଅଛି ମନ୍ତ୍ରୀକୁମାରୀ । ୪ । ଅମରମୋହିନୀ ଭ୍ରମର କେଶିନୀ ମେଘମାଳା

---

## ସପ୍ତବିଂଶ ଛାନ୍ଦ

୧ । ବିରଞ୍ଚି—ବ୍ରହ୍ମା, ସାର—ଶ୍ରେଷ୍ଠ, ଶ୍ରୀଧାମ—ଲକ୍ଷ୍ମୀ ନାରାୟଣଙ୍କ ରହିବା ସ୍ଥାନ, ରାଗ—ସ୍ନେହ, ଗଉରୀ—ଗୌରବର୍ଣ୍ଣା ସ୍ତ୍ରୀ, ଦୁର୍ଗା । ସୁଭଦ୍ରା—ଶାନ୍ତା, ମନ୍ଦୋଦରୀ—ପାତଳା, ରମ୍ଭୋରୁ—କଦଳୀ ଗଛ ପରି ଜଙ୍ଘ ଯାହାର କ୍ରମେ ସରୁ ଓ ଗୋଲାକାର, ( ରମ୍ଭା—ଉର୍ବଶୀ, ଅପ୍ସରା ) ସୀତା—ଚିନି, ମଧୁର—ମିଠା, ତାରା—( ଇନ୍ଦ୍ରଙ୍କ ସ୍ତ୍ରୀ ଓ ବାଳି ସ୍ତ୍ରୀ )

୨ । ନାଗରିପୁ ମଧ୍ୟା ( ନାଗ—ହାତୀ, ରିପୁ—ଶତ୍ରୁ ) ହାତୀଶତ୍ରୁ ସିଂହ—ସିଂହକଟୀ, ମଞ୍ଜୁଳ—ସୁନ୍ଦର ।

୩ । ଅବନୀ ବନିତା—ପୃଥିବୀ ରୂପକ ସ୍ତ୍ରୀ, ମଘବା ପଦ—ଇନ୍ଦ୍ରପଦ, ହଂସକ—ନୂପୁର, ଦ୍ୱିରଦ—ହାତୀ ।

୪ । ଅତନୁ ସ୍ୟନ୍ଦନ—କନ୍ଦର୍ପ ରଥ ।

ଗୃଳେ ଗୃମର । ବିମ୍ବବିଡ଼ମ୍ବ ତାଳମ୍ବପୁଷ୍ପାଧରୀ ଧରିଛନ୍ତି ଧାତ୍ରୀପୁତ୍ରୀଙ୍କର । ଅଗରେ । ପରିବାରିକା ଏ ମଞ୍ଜୁଳ । ଦାନ୍ତୁଡ଼ି ଜ୍ୟୋତିରେ ଘଉଡ଼ି ନେଇ ସେ ଅଛନ୍ତି ଅନ୍ଧାରପଟଳ ।୫। ସୁରସିକ ରସନାଧିର ସନ୍ନିଧି ଏ ଦ୍ୱାଧିରେ ହେଉଁ ପ୍ରବେଶ । ମହାଅନୁଭୂତ ଶୋଭା ସେ ଦେଖିଲ ସ୍ତମ୍ଭୂତ ଉପମା ଅଶେଷ । ମଧୁର । ହାସ ବିରାଜିତ ଅଧରେ । କି ରତଜାତ କୀରତି ଉଦେ ବାଳା କରୁଛନ୍ତି ଅରୁଣ ମଧ୍ୟରେ ।୬। ତାଟଙ୍କ ହୀରା ଟଂଟଙ୍କ ଦୀପ ପରି ଲପନ ଶୋଭାକୁ ଦେଖାଇ । ଦର୍ପକଦର୍ପଣି ଦର୍ପହର ବୋଲି ଅଳକା ଅକ୍ଷରେ ଲେଖାଇ । ବହିଲ । ସେହି କବି କି ମୋତି ହୋଇ । ଅନନ ବିନାରେ ଅନ ନବୀନାରେ ଦୃଷ୍ଟି ପାତ ନୋହୁ ଧିଥାଇ ।୭। ରସିକା-ମଣିର ସେ ନାସିକାଫୁଲେ ତିଳଫୁଲେ କରେ ଧିକ୍କାର । ବିରହ ଅନଳ ପ୍ରଜ୍ୱଳ ହେବାକୁ ଯନ୍ତ୍ର ତାଇଦେଲା ପ୍ରକାର । କୁଟିଳ । କୁନ୍ତଳ କି ଶୋଭା ଦିଶୁଛି । ବାଳିକା ମଲ୍ଲିକା ମାଳିକା କବରୀ ଘନ ଶର୍ବରୀକି ହସୁଛି ।୮। ଦରକଣ୍ଠୀନୀର ଦରକମ୍ପା ଶିର ଟଳକା ଟଳକ ଥରଇ । ଜାନୁବର୍ତ୍ତୁଳା ତୁଳା ହୋଇ ଅବଳା କାହିଁ ନାହିଁ ନାହିଁ କରଇ । ସୁନ୍ଦରୀ,-ସୃଷ୍ଟିରେ ବାଳା ଚକ୍ରବର୍ତ୍ତୀ । ହୋଇଛନ୍ତି ବୋଲି କି କର୍ଣ୍ଣ ଧରିଅଛନ୍ତି ସୁଜ୍ୟୋତି ମୋତି ଫୁଲ-ଛତି ।୯। ତାମରସବାସୀ ପ୍ରେମରସବାସୀ ପୁସ୍ତକ ପରାୟେ ଏ ଯେନ୍ତି । ଅମୂଲ୍ୟ ଗୁଣରେ ସଂଯୁକ୍ତ ହୋଇଣ ସୁମନା ସୁମନ ମୋହିନୀ । ଲଲାଟେ । ବିନ୍ଦୁକ କର୍ପୂରରେ କସ୍ତୁରୀ । ମାଣିକ୍ୟ ମଣ୍ଡିତ ସିନା ଫୁଟିଛି ସୁନାପଟାରେ କି ସୁନାରୀ ।୧୦। କମଳଦଳେ ଚଳଚଳ କାଳିନ୍ଦୀଜଳ ପରି ଦୋଳା ଚଳୁଛି । କଜ୍ଜ୍ୱଳ ସୂତ୍ରରେ ଲାଗି ନୀଳମଣିସାରଣି କି ଅବା ଚଳୁଛି । ଭ୍ରୂଲତା, ଗୃପେ କରି ଶର ସନ୍ଧାନ । ଧୈର୍ଯ୍ୟ-କୁରଙ୍ଗକୁ ମୃଗୟା ରଙ୍ଗରେ ବିନ୍ଧ ଅଛନ୍ତି କି ମଦନ ।୧୧। ସେକାଳେ ବଦନ ମଦନରଞ୍ଜନ ନାଟସଦନ

---

୫ । ଅମର—ଦେବତା, ମେଘମାଳା—ସଖୀ, ବିମ୍ବ—କଇଁଚ କାକୁଡ଼ି ପଟଳ—ସମୂହ ।

୭ । ଲପନ—ମୁଖ, ଦର୍ପକ—କନ୍ଦର୍ପ ।

୮ । କୁଟିଳ—କୁଞ୍ଚିକୁଞ୍ଚିଆ, କୁନ୍ତଳ-ବାଳ, କବରୀ-ଜୁଡ଼ା, ଶର୍ବରୀ-ରାତ,

୯ । ଦର—ଶଙ୍ଖ, ନୀରଦ—ମେଘ—, ଚକ୍ରବର୍ତ୍ତି—ରାଜାଧିରାଜ ।

୧୦ । ତାମରସ—ପଦ୍ମ, ସୁମନା—ଉତ୍ତମ ମନା, ସୁମନ—ଦେବତା ।

୧୧ । ସଦନ-ଘର, ସୁରଞ୍ଜନ-ଅତ୍ୟନ୍ତ ସୁନ୍ଦର, ଯୋଷା-ନାରୀ, ଉତ୍ତଂସ—କୁଣ୍ଡଳ, ଅନଳ—ଅଗ୍ନି ।

ସୁରଞ୍ଜନ । ନୂପୁର ବାଦ୍ୟନାଦେ ବାଦେ ନାଚନ୍ତି ଯୋଷାଯୋଷା ବେନି
ଖଞ୍ଜନ । କାହିଁକି । ନିରତେ କୋଣକୁ ଯାଉଛୁ । ଗୃହି କି ଉତଂସ
ଅନଳ ସରାଗେ ସେହିପରାଗେ ମୀନ ଧରୁଅଛୁ । ୧୨ । ଏ କେଉଁ ଚତୁର
ତ୍ରିବଳ ତ୍ରିବଳ ଦୁଲ୍ଲଭଙ୍କୁ ସେ ଯାଉଛୁ । କିଅବା ଅମୃତ କୁଣ୍ଡରେ ମଜ୍ଜାଇ
ପୁରୁଷ ମନକୁ ମୋହୁଛୁ । ନଜାଣି । ଧୈର୍ଯ୍ୟ ବନ୍ଧକୁ ଭାଙ୍ଗଇ ।
କଳାବତୀ କଳାକମଳ ବୃଷ୍ଟି କି ବୃଷ୍ଟି ଯୋଗରେ କରିଯାଇ । ୧୩ । ଅତହିଁ
ବିସ୍ତାରିତ ଲୋଳ ଲୋଚନବତୀ ମୁଖଶୋଭା ଗ୍ରାସିବ । ବିରୁହଲ୍ଲ ଗୁରୁମୁଖ
ମାର ମାର ସଂସାର ରଚନା ନାଶିବ । ଏଣୁ କି । ସୀମା ଚାରଣି କରି ଗାର ।
ଅଞ୍ଜନେ ଦେଇଛୁ ଆଜ ନ ବଢ଼ିବୁ ତେବେ କର୍ଣ୍ଣଗତ ସଂଗର । ୧୪ । ବିଧି
ବଚନ ନ ମାନିଲ ଲୋଚନ ସହଜେ ମନଇଚ୍ଛାବିହାରୀ । ରଖୁ ନରଖୁ
ତରୁଣ ସୃଷ୍ଟି ଯାକ ଜାଣନ୍ତୁ ଅଧୂତ ତାହାର । ଏଥିକି । ହୋଇଛୁ କି ନୀଳ
ଲୋହିତ । ନୀଳ ଲୋହିତ ଅଗରେ ପଡ଼ିଗଲେ ସମାଧିବ କାମ ମହତ ।୧୫।
ହିନବଦନ ଫୁଟି ଉଦେଶ ପ୍ରସନ୍ନ ରୋମାଳୀ ପୟୋଧର ଦୁଇ । ଶୃଙ୍ଗାର
ରସଲତା ଉର୍ଦ୍ଧ୍ୱେ ବିଧାତା ପ୍ରେମାମୃତଫଳ ଫଳାଇ । ପଦ୍ମିନୀ । ଯେଣୁ
କୋରକେ ବେନି ବହୁ । ସେ ଯେବେ ଫୁଟିବେ ଏ ତେବେ ଚୁମ୍ବିବେ ଭୃଙ୍ଗ
ମନ୍ତ୍ର ଏହୁ ଅଶାସ୍ତି । ୧୬ । ସ୍ୱୟମ୍ଭୁ ଶମ୍ଭୁ କମ୍ବୁ ଧରସୁତକୁ ଦହୁଛୁ ସଞ୍ଜୀ-
ବନୀମନ୍ତ୍ର । ସେହିସ୍ଥାନେ ଦେଇ ମନୋଭବ କଲେ ଏମନ୍ତ ଯେନୁଅଛୁ
ଚିତ୍ର । ନିକଟେ । ରହିଛୁ ଅହି ହୋଇ ସ୍ୱଚ୍ଛ । ଯୁବାବଇକୁଣ୍ଠ ବଢ଼ଉକି
କିବା ଇନ୍ଦ୍ରନୀଳମଣି ପାବଚ୍ଛୁ । ୧୭ । ଲାବଣ୍ୟନୀରେ ଯୌବନ କରି ଧୀରେ
ମଜ୍ଜନ ହୋଇ କି ରହିଛୁ । ଜନ ଅଦମ୍ଭକର କୁମ୍ଭ କରକୁ କେବଳମାତ୍ର
ଦେଖାଇଛୁ । ଏଣୁଟି । ଗଇରିକରେ ସେ ଚର୍ଚ୍ଚିତ । ଯେ ହେବ ମାହୁନ୍ତ
ନଖାଙ୍କୁଶ ଘାତ କରିବ କେତେ ତା ସୁକୃତ । ୧୮ । ସୁକଣ୍ଠୀ କଣ୍ଠୀରବମଧ୍ୟା

---

୧୪ । ବିସ୍ତାରିତ—ପ୍ରସାରିତ—(ଦୀର୍ଘ), ଲୋଳ—ଚଳଚଳ,ଗୁରୁମୁଖ-ବ୍ରହ୍ମା

୧୫ । ତରୁଣ—ଯୁବା ପୁରୁଷ,ଲୋହିତ—ଲାଲବର୍ଣ୍ଣ,ନୀଳଲୋହିତ—ନେଳି ଓ ନାଲି ଏଠାରେ ମହାଦେବ,ସମାଧିବ—ରଖିବ,ମହତ—ଇଚ୍ଛିତ,

୧୬ । ପୟୋଧର—କୁଚ, ରୋମାଳି—ଲୋମସବୁ, ଶୃଙ୍ଗାର—କାମରସ, କୋରକ—କଢ଼, ଭୃଙ୍ଗମନ୍ତ୍ର—ଭଅଁରସବୁ ।

୧୭ । ଶମ୍ଭୁ—ମହାଦେବ, କମ୍ବୁଧରସୁତ—ବିଷ୍ଣୁଙ୍କ ପୁଅ କନ୍ଦର୍ପ, ଅହି-ସାପ ବଢ଼ଉ—କୋଠା, ପାବଚ୍ଛୁ—ପାହାଚ ।

୧୮ । ଲାବଣ୍ୟ—ସୌନ୍ଦର୍ଯ୍ୟ,ଗଇରିକ—ଗେରୁ, ନଖାଙ୍କୁଶ—ନଖରୂପଅଙ୍କୁଶ

ହ୍ରଦରେ ରସ ରତନ ଗଣି ଥୋଇ । ଜଗିଛନ୍ତି କି ଅବା ଦାମ ଅଧିକାରୀ
ମର୍କତ ଦଣ୍ଡ ଡେରିଦେଇ । ଚଉର । ମନ ପକ୍ଷୀ ଏଣୁ ନ ପାରଇ । ନିଶି
ଦିବସରେ ବସିଅଛି କେଉଁ ପ୍ରକାରେ କରିବଟି ଚାମର । ୧୯ । ଏକେ
ମନକୁ ଅଗମ୍ୟ ହେଲା ଦୁଜେ କଠିନ ସଙ୍ଗେ କରି ପ୍ରୀତି । କଷ୍ଟପଣହିଁ
ଅତ୍ୟନ୍ତ ଠାଣି ହେଲା ଏଣୁ ବର୍ତ୍ତିବାରୁ ନିବର୍ତ୍ତ । କୁମର । ଗୁହିଁ ବେଳୁଁ
ବେଳ ଲୋଲୁପ । ନୟନ ଅସ୍ତନେ ପଥିକ କଲା ଯେ ଏକା ରସିକଙ୍କରରୂପ
। ୨୦ । ଯାବତ ବ୍ରତଫଳ ହେଲା ସଫଳ ତୀର୍ଥଫଳହିଁ ଯେ ମିଶିଲା । ଦେବ
ଦର୍ଶନ ଦାନ ପୁଣ୍ୟମାନ ସେହି ଦେହାଙ୍କୁ ଅସିଲା । କଣୀ ଯେ ।
ହୋଇଥିଲେ ପୁଂସବନରେ । କୋଟିଗୁଣ କରି ଲେଖିଦେଇ ଗଲେ ଅର୍ଘ-
ଠାରେ ଅତି ଯତନରେ । ୨୧ । ସର୍ବାଙ୍ଗ ଉଲ୍ଲସି ଜଡ଼ି ସ୍ୱେଦଜଳେ ଦ୍ରବିଗଲା
କାଷ୍ଠେ ତାହାର । ନିହାରକର ବିହାର ଗୃହିଁ କଇରବ ଚନ୍ଦ୍ରମଣି
ପ୍ରକାର । ହୋଇଲେ । ଲଖି ବିଷମ ବିଶିଖକୁ । ଦୁଃଖକୁ ପଛକୁ ପକାଇ
ଦେଇ ସେ ଲଭିଲେ ଅଲେଖସୁଖକୁ । ୨୨ । ପ୍ରିୟସହଚରୀ ବିଜ୍ଞା ଅନୁସର
ତରୁଣକେଶରୀ ଥିବାକୁ । ଧର ପାନ ବୋଲି ତାହାଣେ ଯାଚିଲା ପାଞ୍ଚିଲା
ଦେଖ ପଢ଼ିବାରୁ । ସେ ଲଗେ । ଶୁକ ପଢ଼ି ଦେଲା ଏ ଭାଷା । ସୁମନା
ରସ ତୁର ହୋଇ ଭ୍ରମର ଏ ଦଶେ କରିଅଛି ଅଶା । ୨୩ । ବକ୍ର କରି
ଗ୍ରୀବା ଗୃହିଁ ଦେଲା ଯୁବା ରମଣୀ ରମା ସୁଲକ୍ଷଣୀ । ଅକ୍ଷୀଣାଙ୍କହୀନ
ଚନ୍ଦ୍ରମା ଦକ୍ଷିଣାବର୍ତ୍ତିକ ହେଲା କି ସେକ୍ଷଣି । କି ଶୋଭା । ଦଶିଲା ସିହାଣୀ
ଗୁହାଁଣୀ । ନେତ୍ରପାତରେ ହରଷରସ ଅନୁରାଗକୁ ଢାଳିଦେଲା ଆଣି । ୨୪ ।
ଅତୁଲ୍ୟ ଚତୁରୀ ଜାଣିବା ପାଇଁକି ସୁରସିକ ଏଡ଼େ ଗୁଣିକ । ଏକା
ବେଳକେ କି ମୂଲ୍ୟ ବୋଲି ଦେଖାଇଲା ହୀରା ନୀଳ ମାଣିକ୍ୟ । ଅଞ୍ଜନ ।
ସୂତ୍ରେ ଗୁନ୍ଥି ଭିନ୍ନ କମଳ । ବରଣମାଳା କରିଦେଲା ବାରଣଗମନା

---

୧୯ । କଣ୍ଠିରବମଧ୍ୟା—ସିଂହକଟୀ, ଚଉର—ଚାମର,
୨୦ । ଦୁଜେ—ଦ୍ୱିତୀୟରେ, ଲୋଲୁପ—ଲୋଭୀ, ଅସ୍ତନ—ଗୁଠ ନିବର୍ତ୍ତ—ବନ୍ଦହୋଇ ।
୨୨ । ସ୍ୱେଦଜଳେ—ଝାଳ ରୂପରେ, ଦ୍ରବିଗଲା—ତରଳିଗଲା, ନିହାରକର—ଚନ୍ଦ୍ର, କଇରବ—କଇଁ, ବିଷମ ବିଶିଖ—କନ୍ଦର୍ପ ।
୨୩ । ବିଜ୍ଞା—ପଣ୍ଡିତା, ତରୁଣ କେଶରୀ—ପୁରୁଷସିଂହ, ସୁମନା—ସୁନ୍ଦରୀ ।
୨୪ । ବକ୍ର—ବଙ୍କା, ଗ୍ରୀବା—ବେକ, ରମା—ଲକ୍ଷ୍ମୀ, ଅକ୍ଷୀଣାଙ୍କ—କଳଙ୍କ ।
୨୫ । ଅଞ୍ଜନସୂତ୍ରେ-କଳାସୂତାରେ, ବରଣମାଳା-ବରମାଲ୍ୟ, ବାରଣଗମନା-ଗଜଗମନା ।

ହୋଇ କି ଚଞ୍ଚଳ ।୨୫। ଗୃହିଲା ନ ଗୃହିଲା ହୋଇ ଲାଜରୁ ମୁଖକୁ
ଥୋଇଲା ଉରଜେ । ସେ ପତି ପ୍ରାପତି ଇଚ୍ଛା କରି ନାରୀ ଶମ୍ଭୁ ପୂଜିଲା କି
ନୀରଜେ । ଲବଣୀ । ପିତୁଳା ପ୍ରେମଶୀଳା ସତ । ବୀର ଏହି ନାମ ବିପ-
ରୀତ ହୋଇ ତରଳିତ କଲା ତୁରିତ ।୨୬। ବଧୂୟଂଠଙ୍କ ମ୍ଲାନ ହେବା
ପରିଯ୍ୟେ ମଞ୍ଜୁ ଗୃହିଣୀ ସହାରିଲା । ଝଂଠକେ ଛଂଠକେ ସଙ୍ଗରେ ମନାଇ
ମନନେହକୁ ଢେଳାଗଲା । ପୋଷିଲା । କ୍ଷୁଧାରୁ ସୁସ୍ୱାଦୁ ଅଶନେ । ପ୍ରେମ-
ମଞ୍ଜୁଷା ସ୍ତନ ବେନି ପଞ୍ଜୁରୀମଧ୍ୟେ ରଖି ପକ୍ଷୀ ବିଧାନେ ।୨୭। ବାଳା ମନ
ନେହକୁରଙ୍ଗ ସୁରଙ୍ଗ କରୁଥିଲେ ତନୁବନରେ । ମାରନନ୍ଦତ କୁମାର
ଶୋଭିଜାଲେ ପଡ଼ିଲେ ଝତ ଉଚ୍ଛନ୍ନରେ । ଯିବାକୁ । ଫିଟି ନ ଦଶିଲା
ଉପାୟ । ଯେ ଯାହା ଅର୍ଜ୍ଜଇ ସେ ତାହା ଭୁଞ୍ଜଇ ଏଥି ଅଛି କେଉଁ
ସଂଶୟ ।୨୮। ସେ ରମଣୀ ହେଲା ଚକ୍ରବାଡ଼ଗିରି ଚରଣ ଅରୁଣ ଅମ୍ବୁଜେ ।
ଲଭି ନ ପାରଇ ମନ୍ଥରଗମନା ଗୃହି ନଗୃହି ଭାବ ଲାଜେ । ଦୁହିଙ୍କ ।
ମୃଦୁହାସ ହେଲା ଜାହ୍ନବୀ । ଚତୁରନୟନେ ମଜ୍ଜନ ଅନାଶେ ମହାବାରୁଣୀ
ଯୋଗ ଲଭି ।୨୯। ହୋଇଲେ ସେ ବେନି ଶୋଭି ରତ୍ନାକର ଦରଶନ
ଲୋଭୀ ନୟନେ । ପ୍ରେମରତନ ପତନ କରି ଖୋଜୁ ଅଛନ୍ତି ସେ ଅନ-
ବଚ୍ଛିନେ । ମଦନ । ମହାକୃପଣ ଜନ ପରି । ସେ ବେନି କାମଧେନୁ
କଳ୍ପପାଦପ ଯେଣୁ ବାଞ୍ଛାକୁ ସିଦ୍ଧି କରି ।୩୦। ପ୍ରବେଶ ମୋଠାର
ହୋଇଲା କୁଠାର ପ୍ରାୟ ଜରତା ମୃଦୁସ୍ଥଳୀ । ଅଲେଖ ସୁଖ ମହୀରୁହ
ଛେଦନେ ବଦନେ ଏମନ୍ତ ଉଚ୍ଚାରି । ଶୁଣ ଗୋ । ମନ୍ତ୍ରୀନନ୍ଦନା ଗୁରୁଭୀରୁ ।
ଜନନୀ ଅଙ୍କ ପରସନ୍ନ ଅନମା ସତ୍ୱର ଦରଶନ ସାରୁ ।୩୨। ପିତା ପୂବ

---

୨୬ । ଉରଜେ-କୁଚରେ, ନୀରଜେ-ପଦ୍ମରେ, ବୀର ବିପରୀତ—ରବି, ସୂର୍ଯ୍ୟ
ଉତ୍ତାପରେ ଲାବଣ୍ୟବତୀ ତରଳିଲା ପରି ପୁରୁଷକୁ ଦେଖି ଦ୍ରବିଗଲା ।

୨୭ । ସହାରିଲା—ବନ୍ଦକଲା, ସୁଧା—ଅମୃତ, ଅଶନେ—ଭକ୍ଷିବାକୁ ।

୨୮ । ଚକ୍ରବାଡ଼ଗିରି—ଅସ୍ତ ପର୍ବତ, ଚରଣ—ଗୋଡ଼, ଅରୁଣ—ଲାଲ,
ଅମ୍ବୁଜେ—ପଦ୍ମ, ଜାହ୍ନବୀ—ଗଙ୍ଗା ।

୩୦ । ରତ୍ନାକର-ସମୁଦ୍ର, ଅନବଚ୍ଛିନେ-ସର୍ବଦା, କଳ୍ପପାଦପ-କଳ୍ପବୃକ୍ଷ ।

୩୧ । କୁଠାର—କୁରାଢ଼ୀ, ଅଲେଖ—ଅସୀମ, ମହୀରୁହ—ଗଛ,
ପରମନ୍ନଅନନା—ହର୍ଷମୁଖୀ ।

ପର ମାତା ତୁହିତାର ଏକ ସଙ୍ଗେ ଶିବଦର୍ଶନ । ଦୋଷ ହୋଇଅଛି ଅଶେଷ ପ୍ରସ୍ତରେ ଏ ବଚନ ରାହୁ ଯେସନ । ଗିଳିଲା । ହରମସ୍ତକ-ଭୂଷଣଙ୍କୁ । ବାହୁଡ଼ିଲା ବେଗେ ଶିବ ଦେଖି ରାମ ଜଣାଇ ହୃଦକଷଣଙ୍କୁ । ୩୨ । ମଦନେ ଆବେଶ କୁମାର ପ୍ରବେଶ ହୋଇଲା କେଶର କାନନ । ଯେଣେ ଅନାଇଲେ ତେଣେ ଦିଶୁଅଛି କେବଳ ସୁନ୍ଦରୀ ଆନନ । କହଇ । ଉପେନ୍ଦ୍ର ଭଞ୍ଜ ଏ ରସ । ଶ୍ରୀରାମେମାନ। ଜାନକୀ ଦେବୀବାଳ-ଉତ୍ସବକୁ ଯେମନ୍ତ ମାନସ । ୩୩ ।

---

## ଅଷ୍ଟାବିଂଶ ଛାନ୍ଦ

( ସିଂହଳଦେଶର ପୁରୋହିତ ସହିତ ଚନ୍ଦ୍ରଭାନୁର କଥୋପକଥନ )

ରାଗ—ମଙ୍ଗଳ

ଏଥୁଅନନ୍ତରେ ଯେ ଯାମିନୀ ହେଲା ଶେଷ । ବିଚ୍ଛେଦୀ ଚକ୍ର ଭାମିନୀ ପାଶେ ପରବେଶ ଯେ । ଶଶୀ ମନୋହାରୀ ଜାଣି ସଙ୍ଗ କଲା ପାପ । ବଣେ ଦିବସେ ମଳିନ ହେଲା ଜ୍ୟୋତିଦୀପ ଯେ । ୧ । ଅରୁଣମଣ୍ଡଳେ ଉଦେ ତୁଟିନାହିଁ କଛି । କାଳି ବାରୁଣୀ ସେବକ। ରଙ୍ଗ ଅଜ ଅଛି ଯେ । କକୁଭ ପ୍ରାଙ୍ଗଣେ ନୀଳପଟ-ବିକେ ଗୁହି । ପଦ୍ମିନୀ ହସିଲା ଦରମୁକୁଳିତ ହୋଇ ଯେ । ୨ । ଗର୍ଜି ଭୃଙ୍ଗରାଜ କୁମୁଦିନୀ ପାଶୁଁ ଗଲେ । କୁଳଟା

---

୩୨ । ହରମସ୍ତକଭୂଷଣ-ଶିବଙ୍କ ମୁଣ୍ଡଭୂଷା ଚନ୍ଦ୍ର, ହୃଦକଷଣ-ମନଦୁଃଖ ।
୩୩ । ଆନନ-ମୁହଁ ।

ଚନ୍ଦ୍ରଭାନୁ ଲବଣ୍ୟବତୀର ମନ୍ଦିରରେ ଦୁହିଙ୍କ ଭେଟ ହୋଇ ନେତ୍ର ଓ ଅଙ୍ଗୁଳିରେ ସଙ୍କେତ ଦେଇ ମାଳା ଦେଲେ, ଏହାପରେ ମାଙ୍କ ଡକରା ହେବାରୁ ଫେରିଗଲେ ।

---

## ଅଷ୍ଟାବିଂଶ ଛାନ୍ଦ

୧ । ଯାମିନୀ—ରାତ୍ରୀ, ଚକ୍ର—ଚକ୍ରବାକ, ( ରାତରେ ଚକୁଆ ଚକୋଇର ବିଚ୍ଛେଦ ହୁଏ ) ଶଶୀ-ଚନ୍ଦ୍ର, ମନୋହାରୀ—ସ୍ତ୍ରୀ ।
୨ । ଅରୁଣମଣ୍ଡଳ—ସୂର୍ଯ୍ୟମଣ୍ଡଳ, ବାରୁଣୀ-ପଶ୍ଚିମଦିଗ, କକୁଭ-ଦିଗ, ପ୍ରାଙ୍ଗଣ-ଅଗଣା, ଦରମୁକୁଳିତ-ଅଧାଫୁଟିଲା ।

ହାଟକୁ ତାର ପରକାଶ କଲେ ଯେ । ବିଟପ କି ଲୁଚିଅଛି ନିର୍ଲ୍ଲଜ ସ୍ୱଭାବ ।
ପଟରେ ପ୍ରକଟ କଲେ ଆପଣା କଲ୍ୟ ଭାବ ଯେ । ୩ । ଏ ସମୟେ ସିଂହଳ
ଭୂପାଳ ନିଦ୍ରାହତ । ନିତ୍ୟକର୍ମ ତାଙ୍କ ସାରି ନିଜ ପୁରୋହିତ ଯେ । କହିଲେ
କର୍ଣ୍ଣାଟ ଯୁବରାଜ ପାଶେ ଯିବ । ପାଠ ଶୁଣାଇ ତା ମନ ସନ୍ତୋଷ କରିବ
ହେ । ୪ । ଆମ୍ଭ କନ୍ୟା ଯାଚିବା ନୋହିବ ସନମତ । କରିବ ଯେମନ୍ତ
କର ଉପାୟେ ତେମନ୍ତ ଯେ । ଶୁଣି ସେ କାର୍ଯ୍ୟକୁଶଳାଗ୍ରଣୀ ଆଗମନ ।
ତେଣେ ନୃପସୁତ କରି ପଲ୍ଲବେ ଶୟନ ଯେ । ୫ । ବାଳା ଶୋଭା ଦରଶନେ
ତନୁ ଧାନକରି । ଏସନ ପ୍ରସଙ୍ଗମାନ ମାନସେ ବିଚାରି ଯେ । ଦେବଙ୍କ
ଦୁର୍ଲ୍ଲଭ ଯେଉଁ ରମଣୀ ରତନ । କେହି ହେବ ମୁହିଁ ତାହା ସଙ୍ଗକୁ ଭାଜନ
ଯେ । ୬ । ଦର୍ଶନ ପାଇଲି ସୀଜଙ୍କର କରିଇଲି । ଯୁବାସୃଷ୍ଟିରେ ମୁଁ ରାଜ-
ଛନ୍ଦ ଧରିଇଲି ଯେ । ରସିକ ସଂସାରେ ତ ଥୋଇଲି ପ୍ରଶଂସାକୁ । ବଶ
କଲି ବୋଲି ଅତି ଉତ୍ତମ ଯୋଷାକୁ ଯେ । ୭ । ଜନ୍ମାନ୍ତେ ତ୍ରିଶୂଳୀ କରି
ଶୂଳିଙ୍କୁ ମନାଇ । ଗଙ୍ଗାସାଗର ସଙ୍ଗମେ ଅଙ୍ଗ ଥିଲି ଦାହି ଯେ । ସେ
ସୁକୃତ ବାଳାରୂପେ ଚନ୍ଦ୍ରେ ଲେଖାଇଲି । ବିଧାତା କି ଋଣୀ ହୋଇଥିଲା
ଦେଖାଇଲା ଯେ । ୮ । ଅସମ୍ଭାବିତ ସାହସ କରିଅଛି ମୁହିଁ । ମନକୁ ନ
ଆସେ ଏ ଫଳ ଦେବ କେହି ଯେ । ଅସିତ ମୁକୁରବିମ୍ବ କେହି ଅଳି-
ଙ୍ଗନେ । ପାରଦ ରହିବ ମୁଠା ଭିତରେ କେସନେ ଯେ । ୯ । କେତକୀ
କୁସୁମେ କେହି ବିହରିବ ଅଳି । ପାତକୀକୁ ହେବ ପୁରନ୍ଦର ପଦ ଭଳି
ଯେ । ଲୋଷ୍ଟ୍ରେ ନଷ୍ଟକରି ଯେବେ ହୋଇବ ଗିରିକି । ସାଧିବ ଜୀବନେ
ଥାଉଁ ହରବଇରିକି ଯେ । ୧୦ । ବିନାଶ ହୋଇବ ଯେବେ ବସ୍ତୁସିନ୍ଧୁ

---

୩ । ଭୃଙ୍ଗରାଜ—ଭଅଁରସବୁ, କୁମୁଦିନୀ—କଇଁ, କୁଳଟା ବିଟପୀ, ପ୍ରକଟ—ବିଖ୍ୟାତ ।

୪ । ନିଦ୍ରାହତ—ନିଦଶେଷ, କାର୍ଯ୍ୟକୁଶଳାଗ୍ରଣୀ—କାମ କରିବାରେ ପାରଗ, ପଲ୍ଲବେ—କଅଁଳ ପତରେ ।

୫ । ତନୁ—ଦେହ, ଧାନକରି—ଚିନ୍ତାକରି, ଆଗମନ—ଯିବା ।

୮ । ଜନ୍ମାନ୍ତେ—ଅନ୍ୟ ଜନ୍ମରେ, ତ୍ରିଶୂଳୀ—ଶିବ, ମହାଦେବ ।

୯ । ଅସମ୍ଭାବିତ—ଅତିଶୟ, ସଫଳ—ସିଦ୍ଧି ।

୧୦ । ଲୋଷ୍ଟ୍ର—ଢେଲା, ହରବଇରି—କନ୍ଦର୍ପ ।

କଳା । ଯେବେ ବିନାଶ ହୋଇବ ମୋ ବିରହ ଜ୍ୱାଳା ଯେ । ଭେଳା ପଷବିନା ଏକ ନିଃଶ୍ୱାସେ ସାଗର । ତରିଲେ ଲଭିବ ଅବା ଶୋକସିନ୍ଧୁ ପାର ଯେ ।୧୧। ପଶ୍ଚିମେ ଉଦୟ ଯେବେ ହୋଇବ ମିହିର । ତେବେ ବା ହୋଇବ କନ୍ୟାତାତ ସ୍ୱୀକାର ଯେ । ରାମାମଣି ସ୍ୱୀକାର ହୋଇଲଣି ଯଦି । ତାତ ସ୍ୱୀକାରେ କପାଁ ଏତେ ପ୍ରତିବାଦୀ ଯେ ।୧୨। ଯେଉଁ କର୍ମେ କର୍ପୂର ହୋଇଛନ୍ତି ଅଗ୍ନି ଜାତ । ସୁମନସ ଭରିଛନ୍ତି ଅଶନି ସନ୍ନିପାତ ଯେ । ସେହି କର୍ମେ ସ୍ୱପ୍ନଧନେ କରିବି ବାଣିଜ୍ୟ । ସଫଳ ହୋଇବ ତେବେ କାମନା ସମାଜ ଯେ ।୧୩। ଇଚ୍ଛା କରୁଅଛି ଅରୁଣରୁ ସୁଧା ପାନ । ସ୍ଥିରକରି ବିଜୁଳି କରିବି ଆଲିଙ୍ଗନ ଯେ । କରେ ଧରି ଚୁମ୍ବିବା ଇଚ୍ଛଇ ସୁଧାକର । ହେମଫୁଲ୍ଲଙ୍କ ଗନ୍ଧ ଲଭିବାକୁ ମନ ମୋର ଯେ ।୧୪। ପିକଠାରୁ କଥା ଶୁଣିବାକୁ ସ୍ନେହ ଅତି । ମନ୍ଦରକୁ କମଳେ ଘୋଡ଼ି ଲେଡ଼େ ନିତ ଯେ । ଚମ୍ପକ ଭ୍ରମର ମେଳ କରିବାକୁ ମନ । ନକ୍ଷତ୍ରମାଳା କରିବି ମହୀ ଉଦ୍ଦୀପନ ହେ ।୧୫। ବିନାମେଘେ ଘନରସ ବରଷା ହୋଇବ । ଭସ୍ମ ହୋଇଥିବା ଜନମୂର୍ତ୍ତିଙ୍କି ପାଇବ ଯେ । ଏମନ୍ତ ଚିନ୍ତନ୍ତେ ବେଳେ ଜଣାଇଲା ଦ୍ୱାଃସ୍ଥ । ଭେଟିବେ ବୋଲିଣ ଦ୍ୱିଜୋତ୍ତମେ ଉପଗତ ଯେ ।୧୬। ବାହାରେ ସେ ବୋଲି ମନ୍ତ୍ରୀସୁତ ପଚାରିଲା । ବେତ୍ରକର ଏହି ଦେଶ ପୁରୋଧା ବୋଇଲା ଯେ । ଆସନ୍ତୁ ଯେ ବୋଲି ଆଜ୍ଞା ଦେଲେ ମିତ୍ର ବେନି । ରାଜା ସ୍ୱୀକାର ହେଲା ପରି ଶବ୍ଦେ ଯେନି ଯେ ।୧୭। ବିପ୍ର ଆଣି ପରବେଶ ଦ୍ୱାରପାଳ କଲେ । କଲ୍ୟାଣ ବାଞ୍ଛିଲା ସେ ନୃପଜ ନମସ୍କାରେ ଯେ । ଆସନ ପାଇ ବସୁଧା ଦେବ ଅତିତୋଷି । ଛାମୁରେ କରନ୍ତି ପାଠଶାଠ ବୋଲି ଭାଷି ଯେ ।୧୮। ନୃପଙ୍କ ପ୍ରଶଂସା ଶ୍ଳୋକ ପ୍ରଥମ

---

୧୧ । କଳା—ଅଂଶ ।

୧୨ । ମିହିର—ସୂର୍ଯ୍ୟ, କନ୍ୟାତାତ—କନ୍ୟାବାପ, ପ୍ରତିବାଦୀ—ବିପକ୍ଷ ।

୧୩ । ସୁମନସ—ଫୁଲ, ଅଶନି—ବଜ୍ର, କାମନା ସମ୍ବାଦ—ଇଚ୍ଛାସମୂହ ।

୧୪ । ଅରୁଣ—ସୂର୍ଯ୍ୟ, ସୁଧା—ଅମୃତ, ସୁଧାକର—ଚନ୍ଦ୍ର ।

୧୫ । ପିକ—କୋଇଲି, କମଳ—ପଦ୍ମ, ମନ୍ଦର—ପର୍ବତ ବିଶେଷ, ନକ୍ଷତ୍ରମାଳ—ତାରାସବୁ, ଉଦ୍ଦୀପନ—ପ୍ରକାଶ, ଆଲୁଅ ।

୧୬ । ଘନରସ—ଜଳ, ଦ୍ୱାଃସ୍ଥ—ଦ୍ୱାରୀ ।

୧୭ । ବେତ୍ରକର—ପ୍ରତିହାରୀ, ପୁରୋଧା—ପୁରୋହିତ ।

୧୮ । ବସୁଧାଦେବ—ବ୍ରାହ୍ମଣ ।

ପଠନ । କୁମାର ବୋଲିବା ଖ୍ୟାତ ବେନି ରସେ ଘେନ ଯେ । ବିଧୁସମ ଯଶ ପରଚକ୍ର ଦରକର । କଲି ସେ ବିବାଧ ଶ୍ଳେଷ ଘେନି ଅଙ୍ଗୀକାର ଯେ । ୧୯ । ତଦୁତ୍ତରେ କାମଶାସ୍ତ୍ର ରସ ପକାଇଲି । କାମିନୀ ବର୍ଣ୍ଣନା ଅତିଶୟ କରି କଲି ଯେ । ରମା ନ ମୋହିଲି ହୋଇ ଚଉଦ ଭୁବନ । ଅନ ନାହିଁ ଥିଲେ ଥିଲେ ନପୁଂସକ ଜନ ଯେ । ୨୦ । ବିକଳ୍ପ ନ ଥିଲେ ବ୍ୟାକୁଳତା ତାଙ୍କ ଅଛି । ଭକ୍ତିଛନ୍ତି ଅମୃତ ଜୀବନ ନୁହେ କଛି ଯେ । ସ୍ୱର୍ଗ ଅପବର୍ଗରୁ ଅଧିକ ସୁଖ ନାହିଁ । ରତିସୁଖ ସଙ୍ଗେ ସେ ସମାନ ହେବ କେହି ଯେ ।୨୧। ସ୍ୱର୍ଗ ସୁଖ ଇନ୍ଦ୍ର ବଡ଼ ଯାହା ଭୁକ୍ତମାନ । ସେ ରତିଲୋଭୁ ଶାପେଟି ସହସ୍ର ଲୋଚନ ଯେ । ଅପବର୍ଗ ବ୍ରହ୍ମାର ଅଭ୍ୟାସ ବୋଲି କହି । ରତିରସେ ବ୍ରହ୍ମଲୀନ ପୁଣି ଅଛି କହି ଯେ ।୨୨। କେଉଁଠାରେ ବୋଲିବ ବା ଶୁଣ ଦୃଷ୍ଟାନ୍ତର । ଯୋଗମାୟା ଆଶ୍ରୟ ପୁରୁଷ ଗଦାଧର ଯେ । ଗୋପାଙ୍ଗନା ଲମ୍ପଟ ନିଷେଧ ଆଚରଣେ । ଶିବଅର୍ଦ୍ଧ ଅଙ୍ଗ ଗିରିସୁତା ପ୍ରତିକ୍ଷଣେ ଯେ । ୨୩ । ପ୍ରତିପଦେ ଶୃଙ୍ଗାର ରତିପଦରେ ସ୍ନେହ । ବେନି ରତିରୁ ସ୍ଥୂଳ ନିତମ୍ବିନୀ ଦେହ ଯେ । ନାରୀ ପଦ୍ମିନୀ ଚିତ୍ରିଣୀ ଶଙ୍ଖିନୀ ହସ୍ତିନୀ । ଗୁରୁକାତ ପ୍ରଧାନ ଅଜ ଶଙ୍କରୀ ଘେନି ଯେ । ୨୪ । ଦେବ ଗନ୍ଧର୍ବ ଯକ୍ଷ ପ୍ରେତ ସତ୍ତ୍ୱାଦକମେ । ଯେ ପୁଂସର ଯେତେ ଭାଗ୍ୟ ସେ ଲଭି ତା ରମେ ହେ । ହୀରା ନୀଳା ମାଣିକ୍ୟ ମୁକୁତା ବିଦ୍ରୁମର । ମୂଲ୍ୟ ଅଛି ମୂଲ୍ୟ ନାହିଁ ସ୍ତ୍ରୀରତନର ଯେ । ୨୫ । ଫୁଲାଇ ନାସା ଡୋଳାକୁ ଖେଳାଇ ନେବାର । ମୁଖ ହଲାଇ ଗେହ୍ଲାଇ ଭାଷା କହିବାର ଯେ । ଶିରୁକେ ତର୍ଜନୀ ଦେଇ ହୋଇବାର ଜଣା । ନେକ ଦେଖିଥିବ କି ଏପରି ଅନ ଶୋଭା ଯେ ।୨୬।

---

୧୯ । ବିଧୁ—ଚନ୍ଦ୍ର, ଦର—ଭୟ, ଶ୍ଳେଷ—ଆକ୍ଷେପ, ଅଙ୍ଗୀକାର—ସ୍ୱୀକାର ।

୨୦ । ରମା—ଯୌବନା ସ୍ତ୍ରୀ, ନପୁଂସକ—ପୁରୁଷପଣ ନ ଥିବା ଲୋକ ।

୨୧ । ବିକଳ୍ପ—ବିଶେଷ ଆଶା, ବ୍ୟାକୁଳତା—ଦୁଃଖର ସହିତ ଆକୁଳ ହେବା, ଅପବର୍ଗ—ଫଳସିଦ୍ଧି ।

୨୨ । ଭୁକ୍ତମାନ—ଜଣାଶୁଣା, ଅଭ୍ୟାସ—ଇଚ୍ଛା ।

୨୩ । ଦୃଷ୍ଟାନ୍ତର—ଉଦାହରଣ, ଯୋଗମାୟା—ପ୍ରକୃତ ସୁନ୍ଦରୀ, ଗଦାଧର—ଭଗବାନ, ଗୋପାଙ୍ଗନା—ଗୋପୀମାନେ, ନିଷେଧ—ମନା, ଆଚରଣ—ସ୍ୱଭାବ, ଶିବ—ମହାଦେବ, ଗିରିସୁତା—ପାର୍ବତୀ ।

୨୪ । ପତି-ସ୍ୱାମୀ, ଶୃଙ୍ଗାର-କାମକେଳି, ସ୍ଥୂଳ-ମୋଟା, ନିତମ୍ବିନୀ-ନାୟିକା

୨୫ । ବିଦ୍ରୁମ—ପୋହଳା ।

୨୬ । ଭାଷା—କଥା ।

ନୀବି ଫେଡ଼ାବେଳେ କରିବାର ନାହିଁ ନାହିଁ । ବଚନ ସମ ସୁସ୍ୱର ବୀଣା ପିକେ କାହିଁ ଯେ । ବିପରୀତ ମାଗୁଁ କେ ଜାଣଇ ବୋଲିବାର । ସଞ୍ଜୀବନୀ ମନ୍ତ୍ର ସମ ନିକ୍ଷ ତା ତୁଲରେ ଯେ । ୨୭ । ଶୟନରେ ଅଣିକର କୋପେ ଅଣିବାର । ଅଣିମାଦ ସୁଖ ନିକ୍ଷ ସମ ତା ସଙ୍ଗର ଯେ । ରତିକାଳେ ମୁଦ ଫେଡ଼ିବାର ନେତ୍ର ଦୁଇ । କଳ ନୀଳୋତ୍ପଳକୁ ଧିକ୍କାର କରୁଥାଇ ଯେ ।୨୮। ଏତିକ ହେଜ କୋଳିଣ ଭିଡ଼ିବାର ଷଣେ । ସେ ସୁଖ ପାଇବ ଯୁବା କେଉଁ ରାଜପଣେ ଯେ । ଯାହାଠାରେ ଅଭିଳାଷ କରେ ଯାହା ମନ । ସେହି ତାର ସକଳ ସୁଗତି ବୋଲି ଘେନ ଯେ । ୨୯ । ମୁଗ୍‌ଧାରୁ ମଧ୍ୟା ପ୍ରଗଲ୍‌ଭା ଯାଏ ସୀମନ୍ତିନୀ । ପୁରୁଷର ହୁଅଇ ଅଶେଷ ସୁଖଦାୟିନୀ ଯେ । ଉଦୟରୁ ଅସ୍ତ ଯାଏ ଚନ୍ଦ୍ରିକା ମଣ୍ଡଳ । ଯଥା କରଇ ଚକୋର ସୁଖକୁ ସଫଳ ଯେ ।୩୦। ସୁରତରୁ ଜାତ ଲୋଭ ଲୋଭୁଁ ପ୍ରୀତି ଲେଖ । ପ୍ରୀତିରୁ ସୁରତ ଜାତ ପୀରତିରୁ ସୁଖ ହେ । ପ୍ରାଣ ଛାଡ଼ ହୋଏ ସ୍ତ୍ରୀ ଛାଡ଼ ନୋହେ କେବେ । ରାବଣାଦିଠାରୁ ଶୁଣିଥିବ ତ ପ୍ରସ୍ତାବେ ଯେ । ୩୧ । ପୁଣ ନେତ୍ର ଭୃଙ୍ଗଙ୍କର ରସ ଆସ୍ୱାଦନ । ହୃଦେ ଘେନ କହେ ପୁଂସ ହେବ ଏ ବିଧାନ ଯେ । ସୁଖୀ ହୋଇଥିବ ନୃପ-ଉପଜୀବୀ ନୋହି । ବିଦ୍ୟା ଥିବ ଦିବ୍ୟସ୍ତ୍ରୀ ମିଳିଥିବ ତହିଁ ଯେ । ୩୨ । କି ହେବ ଇନ୍ଦ୍ର ହୋଇଲେ ସର୍ବ ସମ୍ପଦରେ । ସ୍ତ୍ରୀହୀନ ଠାରୁ ପାପୀ ନାହିଁ ଏ ସଂସାରେ ଯେ । ରସିକ ବୋଲିଣ ବୋଲି ଏହି ପୁରୁଷକୁ । ଯେ ଘେନିଣ ଥାଇ ଏତେ ଲକ୍ଷଣ ବଂଶକୁ ଯେ ॥ ଦୋଷ କଲେ ରମା ରୋଷ ନ ଘେନଇ ମନେ । ଦାସ ପ୍ରାୟ ସ୍ୱାନ୍ତୁ ବିରଚଇ ପ୍ରିୟା ମନେ ଯେ । ପଛ ନ କରଇ ତାକୁ ଶୟନେ ଗମନେ । ଜାଣିଥାଇ କାମଶାସ୍ତ୍ର ବହୁତ ବିଧାନେ ଯେ । ୩୪ । କର ନାହିଁ ଯେ ଦର୍ଶନ ବାଳା ବିବସନ । ଅନ୍ଧ ସେହୁ ଜନ ଥାଇ ନିର୍ମଳ ନୟନ ଯେ । ଯୋଷା ପରିହାସ ଭାଷା ସେହୁ ନ ଶୁଣନ୍ତି । କର୍ଣ୍ଣ ନୋହେ କୁହରଯୁଗଳ ସେ ବହନ୍ତି ଯେ । ୩୫ । ଯେ କର ନାହିଁ ସୁନ୍ଦରୀ ବିମ୍ବାଧର ପାନ ।

---

୨୭ । ନୀବି—କଛ ବା ଖୋସଣୀ, ସଞ୍ଜୀବନୀମନ୍ତ୍ର—ଜୀବଦାନ ମନ୍ତ୍ର ।
୨୮ । ଅଣିମାଦ—ଅଷ୍ଟ ଐଶ୍ୱର୍ଯ୍ୟ, ନୀଳୋତ୍ପଳ—ନୀଳ କଇଁ ।
୨୯ । ସୀମନ୍ତିନୀ—ସ୍ତ୍ରୀ, ମୁଗ୍‌ଧା—ମଧ୍ୟା, ପ୍ରଗଲ୍‌ଭା—ପ୍ରଧାନ ସ୍ତ୍ରୀ ।
୩୫ । ବାଳା—ସ୍ତ୍ରୀ, ବିବସନ—ଉଲଗ୍ନ, ନିର୍ମଳ ନୟନ—ପରିଷ୍କାରଚକ୍ଷୁ । ପରିହାସ—ଥଟ୍ଟା, କୁହର—ଗାତ ।

କି ସ୍ୱାଦୁ ଜାଣିଛୁ ଧିକ ତାହାର ଜୀବନ ଯେ । ମହା ମହା ଦାନ ଦେଇ
ନାହିଁ ଯେତୁ କରେ । ସେ କାହିଁ ପଣ୍ଡିତ ଉସବତୀ ଚତୁରରେ ଯେ । ୩୬ ।
ସ୍ୱୟମ୍ଭୁ ଶମ୍ଭୁ ସେବାରେ ଯାହା ତନ ମନ । ସେ ସ୍ମରଣ କରଇ ସାରସ-
କୋଷ-ସ୍ତନ ହେ । କହୁଥିଲେ ସରବାର ନୋହେ ଏ ଚରିତ । ସ୍ମରଣାସ୍ତ୍ର
ଅଳଂକାରେ ଯେ ପ୍ରତିପାଦିତ ହେ । ୩୭ । ତୁମ୍ଭେ ରାଜପୁତ୍ର ଯୁବା ସୁନ୍ଦର-
ରସିକ । ତୁମ୍ଭଙ୍କୁ କି ଅଗୋଚର କାବ୍ୟରୀତି ଯାକ ହେ । ଏକା କାବ୍ୟରୀତି
କମ୍ପା ଅନୁଭବୀ ପୁଣ । ଯାହା ସେବା କିପୁଣ ନୃପତିସୁତାଗଣ ଯେ । ୩୮ ।
ତହିଁକି ପତି ଜଗତର ଭଲ ରତ୍ନଧ୍ୱଜ । ବିଭା ହୋଇ ନାହାନ୍ତି ଅମ୍ଭର
ସ୍ୱବରାଜ ଯେ ! ସମେ କନ୍ୟା ନ ମିଳଇ ପୃଥିବୀ ମଣ୍ଡଳେ । ଉଣା ଅଧିକ
ଦ୍ରବ୍ୟ କି ପାବେ ଦେବେ ତୁଳେ ଯେ । ୩୯ । ପାରିଲେ ଲଗାଅ ତୁମ୍ଭ
ରାଜପୁତ୍ରୀ ଅଛି । ସୁନ୍ଦରୀ ବୋଲି ଶବଦ ଲୋକେ ପ୍ରକଟିଛି ହେ । ଦେଖିଲ
ଯେତେ ସୁନ୍ଦର ଅମ୍ଭ ନୃପାତ୍ମଜ । ଯେ ଦେଖୁ ସେ ହେଉ କନ୍ୟାଇଁ ବାଞ୍ଛା-
କାର୍ଯ୍ୟ ହେ । ୪୦ । ଦ୍ୱିଜ କହେ କି କହୁଛ ମରଇଁ ମରଇଁ । ଏତେ
ସୁକୁମାର ଦେହ ମାର ପ୍ରହାରଇ ହେ । କହେଲ ଦେଖ କି ଦେଖ କି
ତୁହେଁ ବଡ଼ ରାଜା । ରାଜପୁତ୍ରେ ବିଭା ସିନା ଚାହାନ୍ତି ତନୁଜା ହେ । ୪୧ ।
ତଥାପି ଲାବଣ୍ୟବତୀ ନିପୁରାଳଙ୍କାର । ସୁନ୍ଦରପଣେ ତାହାର ନାହିଁ ସମ
ଗାର ହେ । ତପୂରୁ କି ସମସ୍ତେହେଁ କରନ୍ତିକ ତପ । ବନେ ପଶିଛନ୍ତି
ଯାଇ କମଳକଳାପ ହେ । ୪୨ । ଏମନ୍ତ ମୃଗ ନୟନ ରୁଚିର ତାହାର ।
ବୁଧେ ବୋଲନ୍ତି ମଦନମନୋହରସର ଯେ । କବି ଗଣେଶ ବର୍ଣ୍ଣନ ନ
ପାରନ୍ତି କବି । ଗୁଣ ସ୍ମରଣ କରନ୍ତି ଜପାମାଳ ଧରି ହେ । ୪୩ । ଅଧିକ-

---

୩୭ । ସ୍ୱୟମ୍ଭୁ—ବ୍ରହ୍ମା, ଶମ୍ଭୁ—ମହାଦେବ, ସାରସ—ପଦ୍ମ ।

୩୮ । ଅଗୋଚର—ଅଜଣା, ନୃପତି ସୁତା—ରାଜକନ୍ୟା ।

୩୯ । ପୃଥିବୀ ମଣ୍ଡଳେ—ସାରା ପୃଥିବୀରେ ।

୪୦ । ତନୁଜା—ଝିଅ ।

୪୨ । କମଳ କଳାପ—ମୃଗ ସବୁ ।

୪୩ । ବୁଧ—ପଣ୍ଡିତ, ମଦନ ମନୋହର ସର-କନ୍ଦର୍ପର ସୁନ୍ଦର ପୋଖରୀ,
କବି—ଶୁକ୍ର, ବୃଷା-ଇନ୍ଦ୍ର, ବୃଷାସନ-ମହାଦେବ, ବଧୂ—ବିଧାତା,
ଅନନ୍ତ—ଶେଷଦେବ, କୁମାର—କାର୍ତ୍ତିକେଶ୍ୱର ।

ନେତ୍ର ବନ୍ଧିଲେ ବୃଷାସନ । କହିବାକୁ ଶୋଭିବଟି ଶେଷ ଦରଶନ ହେ । ବାଧି କୁମାର ଅନନ୍ତ ମୁଖାଧିକ ହୋଇ । ବର୍ଣ୍ଣନ୍ତି ତାହା ଶୋଭା ବର୍ଣ୍ଣିବାର ପାଇଁ ଯେ ।୪୪। ଏସନ ଯେଉଁ ସୁନ୍ଦରୀ ଇତର ଉପରେ । ପରାପତି ହୁଅନ୍ତି କି ଶରୀରୀଜନରେ ଯେ । ସୁନ୍ଦରୀ ଯାଗୋଳ ଯେବେ କହିବେ ଭୂପତି । ବାସ୍ତ କହି ନ ପାରିବେ ମନୋହରବନ୍ତୀ ଯେ । ୪୫ । ନାକ ନାଗେ ସମ ନାହିଁ ଥାଉ ଅଉ ଧରା । ବର ଖୋଜି ମନ୍ତ୍ରୀଙ୍କ ହୋଇଲା ମହାଭାର ହେ । ଅବାସ୍ତରେ କୁଳୀନଗଣେ ମିଳିଲେ ପୁଂସ । ନୃପେ ପ୍ରବର୍ତ୍ତିଲ ବାସ୍ତ କହିବା ଅବଶ୍ୟ ହେ । ୪୬ । ତୃଷାର୍ତ୍ତ ସିନା ସଲିଳ ପାଶେ ଉପଗତ । ପାଣି ତୃଷାର୍ତ୍ତ ପାଶକୁ ଆସେ କି ଦେଖ ତ ହେ । ନଦୀସନ୍ନିଧିକୁ ଜଳପାନ କରି ଗଲେ । ତାହା ଅସନମତ ହୋଇଛନ୍ତି କେଉଁ କାଳେ ହେ । ୪୭ । ଆପଣେ ଅମ୍ଭ ସଙ୍ଗତେ ହୁଅ ଅସିବାକୁ । ନୃପେ କହି ନିର୍ବାହ କରିବା ଏ କାର୍ଯ୍ୟକୁ ଯେ । ଏ ଉତ୍ତରେ ରତ୍ନଧ୍ୱଜ ଦ୍ୱିଜସଙ୍ଗେ ଯାଇ । ସଚିବକୁ ଦେଖି ନୃପ ସମ୍ମୁଖରେ ପକାଇ ଯେ । ୪୮ । ସେ ବୋଇଲେ ସବୁରୂପେ ଅମ୍ଭର ସମ୍ମତ । ଜାତକ ବିରୁଦ୍ଧେ ନାହିଁ କେବଣ ଅଯୁତ ଯେ । ପାଠଯୋଷୀ ଡାକି ଭଲ ବେଳକୁ ଜାଣିଲେ । ଉତ୍ତମ ଶୁଝିଲା ବେନିଜାତକ ବୁଝିଲେ ଯେ । ୪୯ । ନୃପ ଆଜ୍ଞା ଦେଲେ ପରେ ଯିବା ହୁଅ ହଜ । ମନ୍ତ୍ରୀକି ଦେଖି କୁମାରପଣେ ଗଲେ ଦ୍ୱିଜ ହେ । ନୃପତି ସମ୍ମତ ଶୁଣି ହୋଇଲେ ହରଷ । ଚିର କ୍ଷୁଧାର୍ତ୍ତି ପାଇଲା କି ପିୟୂଷରସ ହେ । ୫୦ । ତେଣେ ଅରୁଣଅଧରୀ ପୀନପୟୋଧରୀ । ଏକାନ୍ତେ ବସି କୁମାରଦର୍ଶନ ସୁମରି ଯେ । କେତେ ଅଦଭୂତ ଶୋଭା ଦେଖିଲା ନୟନ । ଉପମାକୁ ସମ ହୋଇନାହିଁ ଯେ ବଚନ ଯେ । ୫୧ । ଏ ସମୟେ ପରବେଶ ହେଲା ଚନ୍ଦ୍ରାବଳୀ । ତାପ ଧ୍ୱଂସି

---

୪୫ । ଶରୀରୀ—ମନୁଷ୍ୟ, ଭୂପତି—ରାଜା ।

୪୬ । ନାକ—ସ୍ୱର୍ଗ,ନାଗ—ପାତାଳ, ଧରା—ପୃଥିବୀ,କୁଳୀନ—ଉତ୍ତମବଂଶ

୪୭ । ସଲିଳ—ପାଣି, ଅସନମତ—ଅରାଜି ।

୪୮ । ନିର୍ବାହ—ସ୍ଥିର ।

୪୯ । ଜାତକ—ଜନ୍ମକୋଷ୍ଠି, ବିରୁଦ୍ଧେ—ଅମେଳରେ, ପାଠଯୋଷୀ—
ଜନ୍ମସ୍ଥ ଜ୍ୟୋତିଷ ।

୫୦ । ଚିରକ୍ଷୁଧାର୍ତ୍ତ—ସର୍ବଦା ଭୋକିଲା, ପିୟୂଷ ରସ—ଅମୃତ ରସ ।

ଦେଲା ଏ ବଚନାମୃତ ଭାଲ ଯେ । କର୍ଣ୍ଣାଟ ଯୁବରାଜକୁ ତୋତେ ଦେବା-ପାଇଁ । କଥା ହୋଇ ରାଜା ମନ୍ତ୍ରୀ ଦେଲେ ପଠିଆଇ ଯେ । ୫୨ । ସତେ କି ବୋଲି କେତକୀବରନା ପଚାରି । ଅନ ଅଛୁ ବୋଇଲା ସୁନ୍ଦରୀ ସହଚରୀ ଯେ । ସିନ୍ଧୁର ଗତି ଅନନ୍ଦସିନ୍ଧୁ ଉଚ୍ଛୁଳିଲା । କେତେ ଦେବତାଙ୍କୁ କେତେ ଭୋଗ ମନାସିଲା ଯେ । ୫୦ । ଦରଶନ ଭାବନା ହୋଇଲା ଅନ ତାର । ବିରହଉତ୍କଣ୍ଠିତା ହୋଇଲା ରମାବର ଯେ । ଅନୁରାଗରକୁ ଦେଇ ମନ ନୋହେ ତୋଷ । ପୁନଃ ପୁନଃ କଲା ପ୍ରିୟସଖୀଙ୍କି ଅଶ୍ଳେଷ ଯେ । ୫୪ । ଅହେ ରାମ କରୁଣାସାଗର ଗୃପଧର । ଖର-ପ୍ରଖର-ଦୂଷଣ-ଶିଶିର-ପ୍ରହର ହେ । ମୁନିଜନ ତୋଷ ଜନପଦସ୍ଥିର କର । ଉପଇନ୍ଦ୍ର ଭଞ୍ଜ ବୀରବର ତାପ ହର ହେ । ୫୫ ।

## ଊନତ୍ରିଂଶ ଛାନ୍ଦ

( ସଖୀମାନଙ୍କର ଅଗ୍ରେ କଥାବାର୍ତ୍ତା )

ରାଗ—ନଳିନୀଗୌଡ଼ା

ସିଂହଳେଶ ତୋଷଭର । ଗୃହଳଦେଲା ଅନ୍ତଃପୁର । ନାରୀ ବହିଁକେ ବସାଇ । ସୁନ୍ଦର ଶବ୍ଦେ ଭାଳଇ । ୧ । କୁମର ବାହୁଡ଼ ଯିବ । କାହିଁକି ଥିବ ଏ ଜୀବ । ପଡ଼ିବ ସିନ୍ଧୁ ମଧ୍ୟର । ଏ ବିଚାର ସବୁ ସାର । ୨ । ମନାସି

---

୫୨ । ବଚନାମୃତ—କଥାମୃତ ।

୫୩ । ଅନ—ରାଣୀ, ସିନ୍ଧୁରଗତି—ଗଜଗମନୀ ।

୫୪ । ବିରହ ଉତ୍କଣ୍ଠିତା—ମଦନରେ ଉତ୍କଣ୍ଠା ।

୫୫ । ଗୃପ—ଧନୁ, ପ୍ରହାର—ବିନାଶ, ଜନପଦ—ଗ୍ରାମ, ଏଠାରେ ଦଣ୍ଡକାରଣ୍ୟ ସିଂହଳଦେଶ ପୁରୋହିତ ଚନ୍ଦ୍ରଭାନୁ ପାଖକୁ ଯାଇଁ ନାନାଦି ବିଦ୍ୟାପରେ କାମଶାସ୍ତ୍ର ପ୍ରସଙ୍ଗ କରି ବିବାହ କଥା ପଚାରନ୍ତେ ମନ୍ତ୍ରୀସୁତ ବିଭା ନୋହି ଥିବାର କହିଲେ ଏବଂ ତୁମ୍ଭେ ରାଜକନ୍ୟା ସଙ୍ଗେ ସ୍ଥିର କର ବୋଲି କହନ୍ତେ, ରାଜାଙ୍କ ନିକଟେ ପୁରୋହିତ ଓ କାଞ୍ଚି ରାଜପୁତ୍ର ସହଚର ଅସି କଥା ଠିକ କଲେ ଜାତକମଧ୍ୟ ମିଳିଲା, ବିଭାର ବନ୍ଦୋବସ୍ତ ହେବାର ଠିକ ହେଲା । ମନ୍ତ୍ରୀକି ନେଇ ବ୍ରାହ୍ମଣ ରାଜପୁତ୍ର ପାଖକୁ ଗଲେ ।

**ଊନତ୍ରିଂଶ ଛାନ୍ଦ**

୨ । ଜୀବ—ପ୍ରାଣ, ବାହୁଡ଼—ଫେରି, ସିନ୍ଧୁ—ସମୁଦ୍ର ।

ମୁଁ ଝାସିଥିବି । ଜନମାନ୍ତରେ ପାଇବି । ଅନ ବିଧିରେ ମରଣ । ହେଲେ
ହେବ ଅକାରଣ । ୩ । ଏ ବିଗୃର ମୂଳ କର । ବିଜେ ବହୁନେ ସୁନ୍ଦରୀ ।
ନିଜେ ତାହା ତାହା ରୂପ । ଅନାଇଁ ଲଭିଲେ ତାପ । ୪ । କହିଲେ
ସଖୀଙ୍କି ଛଳ । କି ଦିଶୁଛୁ ନବବାଳୀ । ତାତ କର୍ଣ୍ଣାଟେଶସୁତ । ବର
କଲେ କାଳି ସତ । ୫ । ଅସିବେ ରହିଲେ ପଛେ । ବହନେ ବସାଇ
ସ୍ୱଚ୍ଛେ । ଏବେ ନ କଲେ ଯତନ । ପାଇବଟି ନିନ୍ଦାମାନ । ୬ । ଏ ବାଣୀ
ଶ୍ରୁତ ତକ୍ଷଣ । କେମାର ଜୀବ ରକ୍ଷଣ । ସମୁଦ୍ର ହୋଇଲେ ପାର ।
ଚଳିଲେ ସନ୍ତୋଷେ ଘର । ୭ । କୁମାର ଘେନି ନୃପତି । ପାରି ହୋଇ
ପୁରରେ ସ୍ଥିତ । ଦିବ୍ୟପୁରେ ବସା ଦେଇ । ରଖିଲେ ହରଷ ହୋଇ । ୮ ।
ସର୍ବ ନୃପତି ନିରାଶ । ବାହୁଡ଼ିଗଲେ ସ୍ୱଦେଶ । ନିରାଶ ଅମୃତ ପାନେ ।
ଯେମନ୍ତ ଅସୁରମାନେ । ୯ । ସିଂହଳଦ୍ୱୀପକୁ ଦେଖି । ଯୁବରାଜ ଅତି
ସୁଖୀ । ଭଜିଲି ଲବଣ୍ୟବତୀ । ଜନ୍ମସ୍ଥାନ ଯେଉଁ କ୍ଷିତି । ୧୦ । ତାକୁ
ସ୍ୱର୍ଗ ସମ କାହିଁ । ବୋଲିବା ଅସ୍ତର୍ଫ ନୋହି । ଏଣୁକରି ଅନୁପମା ।
ସଂସାରେ ନାହିଁ ଉପମା । ୧୧ । ଶୁଭିଲ କନ୍ଦରେ ଗୀତ । ଏଥି ବୀଣାଧ୍ୱନି
ମତ । ହୋଇଥିବ ବାଳାମଣି । ଏମନ୍ତ ମନକୁ ଆଣି । ୧୨ । ଲେଖିଲ
ସେ ମନେ ମନ । ଅଛି ଆଉ କେତେ ଦିନ । ମୋ ଅଙ୍କପଲ୍ୟଙ୍କ କରି ।
ବସିବ ଅବନୀଶିରୀ । ୧୩ । ରସିବ ଗୃହକୁ ଶୁଣି । ହସିବ ଅଳପ ପୁଣି ।
ଦିଶିବ ମୁଖ ଯେସନ । ସେହି କୋଳରେ ପ୍ରସନ୍ନ । ୧୪ । ସେ ଶୋଭା
ସନ୍ଦର୍ଭ ତଳେ । ନ ଥିବ ଚନ୍ଦ୍ର ମଣ୍ଡଳେ । ହୋଇବ ପଦ୍ମ ମୁକୁର । କାହିଁକି
ତୁଳନା ତାର । ୧୫ । ମୋତେ ଚାହିଁବ ଶଙ୍କାରେ । ନେଉଥିବ ନେତ୍ରା-
ନ୍ତରେ । ଡୋଳା ଖେଳାଇ ଖେଳାଇ । ସେ ଯେ ଲାଜ ଲାଜ ହୋଇ । ୧୬ ।
ଅନନ୍ତ ତୁରଙ୍ଗ ଲୀଳା । ହେବ ଅବା କେତେ ତୁଲା । ମୂର୍ତ୍ତି ଖଞ୍ଜନ
କୁରଙ୍ଗୀ । କାହିଁ ପାଇଲେ ସେ ଭଙ୍ଗୀ । ୧୭ । ଯେଉଁ ଭଙ୍ଗୀ ଅନୁସରି ।

---

୩ । ଜନମାନ୍ତରେ—ଅନ୍ୟ ଜନ୍ମରେ ।

୯ । ସ୍ୱଦେଶ—ନିଜ ଦେଶ ।

୧୧ । ଅନୁପମା—ଅତୁଳନୀୟା ।

୧୩ । ଅବନୀ—ପୃଥିବୀ, ଶିରୀ—ଶୋଭା, ଅବନୀଶିରୀ—ପୃଥିବୀମଧ୍ୟରେ ଶୋଭା ଯେ ଲବଣ୍ୟବତୀ ।

୧୫ । ସନ୍ଦର୍ଭ—ଶୋଭା, ମୁକୁର—ଅରସି ।

୧୭ । ତୁରଙ୍ଗ—ଘୋଡ଼ା, କୁରଙ୍ଗ—ମୃଗ ।

ଭୃଙ୍ଗ ଭ୍ରମନ୍ତେ ବିହର । ନୀଳୋତ୍ପଳ ବାତେ ଚଳେ । ଇଚ୍ଛାରେ ଭୁଜଙ୍ଗ ଖେଳେ । ୧୮ । ଗୃହିଁ କି ସନ୍ତୋଷ ହେବ । ସବୁ ଚୁମ୍ବନ ମୁଁ ଦେବି । ନେବ ମୁଖଅଙ୍ଗେ କର । ତନୁରେ ପୁଲକ ଭର । ୧୯ । ସୁବର୍ଣ୍ଣ ପନସ ସମ । ଦିଶୁଥିବ ମନୋରମ । ଭାଲବ ପକାଇ ହୃଦେ । କି କାର୍ଯ୍ୟ ଇନ୍ଦ୍ର ପଦେ । ୨୦ । ଏମନ୍ତ ଭାବନାବେଳେ । ମାଳାକାର ନାରୀ ମିଳେ । ବହୁଛି ଫୁଲ ଚନ୍ଦନ । ପ୍ରୀତିଯୁକ୍ତ ବାଣୀମାନ । ୨୧ । ଶୁକ ଯେ ଦେଲା ଚାହିଁଇ । ଆନନ୍ଦେ ପୁଂସ ଅନାଇଁ । ଶୋଭା ସେ ଚନ୍ଦନ ଫୁଲେ । ଅଙ୍ଗକୁ କଲା ଚପଳେ । ୨୨ । ବୋଇଲା ଏ ଦ୍ରବ୍ୟ କର । ଜୀବନ ପ୍ରଭୁର ମୋର । ଲାଗି ଥିବାରୁ ଶୀତଳ । କରିବ ବିରହାନଳ । ୨୩ । ନୋହିଲେ ଏ ଦ୍ରବ୍ୟମାନେ । ଦହୁଥିଲେ କାଷିଦନେ । ଚତୁରୀ ହସିଲା ହୋଇ । ମଧୁରେ ଭାଷିଲା ତହିଁ । ୨୪ । ଏହି ବଚନରେ ଜାଣି । ପକାଇଲା ରାମାମଣି । ସୂତିଶରେ ଭେଦ ମାର । ଗୁଣବନ୍ତ ମାଳାକାର । ୨୫ । ଏ ବିଧିରେ ନିତି ନିତି । ବୃଦ୍ଧି ହେଲା ବେନି ପ୍ରୀତି । ଶୁଣିମା ଏଥି ଉତ୍ତାରୁ । ମହାଦେବୀଙ୍କ ଅଜ୍ଞାରୁ । ୨୬ । ମାତାମହୀ ପୂରୁ ଅସି । ଥିଲା ଯେ ଜରତୀ ଦାସୀ । କଉତୁକୀ ନାମ ତାର । ପରିହାସ ସ୍ୱଭାବର । ୨୭ । ବଶୀକରଣାଦି ବିଧି । ଜଣାଇ ନାମ ଔଷଧି । କେମାପୁରକୁ ଗମନ । କହଇ ଯତ୍ନ ବିଧାନ । ୨୮ । ସଖୀମାନଙ୍କୁ ବସାଇ । ହେଲା କଥା ଏ ନୁହଇ । କେମା କ୍ଷୀଣ କଳେବର । ଅତି ବଳଅର ବର । ୨୯ । ସଙ୍ଗେ କେହି ବିହରିବ । ଏମନ୍ତ ତୁମ୍ଭେ କହିବ । ଦେବ ଶିତା ମେଥି କ୍ଷୀରେ । ନିତି ପ୍ରଭାତ

---

୧୮ । ବାତେ—ପବନରେ, ଭୁଜଙ୍ଗ—ସର୍ପ ।
୧୯ । ପୁଲକ—ଆନନ୍ଦ ।
୨୨ । ଚପଳେ—ଶୀଘ୍ର ।
୨୩ । ବିରହାନଳ—କନ୍ଦର୍ପ ଅଗ୍ନି ।
୨୪ । ଦହୁଥିଲେ—ପୋଡୁଥିଲେ ।
୨୫ । ସୁତିଶରେ—ସୂକ୍ଷ୍ମ ଶରରେ, ମାର—କନ୍ଦର୍ପ ।
୨୬ । ବୃଦ୍ଧି—ବଢ଼ିବା, ପ୍ରୀତି—ସ୍ନେହ ।
୨୭ । ମାତାମହୀ—ବୁଢ଼ୀମା, ଜରତୀ—ବୁଢ଼ୀ ।
୨୯ । କ୍ଷୀଣ—ସରୁ, କଳେବର—ଦେହ, ବଳଅର—ବଳୁଆ ।
୩୦ । ଶିତା—ଚିନି, କ୍ଷୀରେ—ଦୁଧରେ ।

ଢାଳରେ । ୩୦ । ବଦର୍ଯ୍ୟା ଚୂର୍ଣ୍ଣ ଦବସେ । ରବିକରେ ଥୋଇ ତୋଷେ ।
ମଧୁ ନବନୀତ ଯୁକ୍ତେ । ଅଶନକୁ ଦିଅ ସ୍ନେହେ । ୩୧ । ମଲ୍ଲିକା ବୋଇଲା
ଶୁଣି । ଶାଣେ କ୍ଷୀଣ ହେଲେ ମଣି । ଶୋଭା କି ତୁଟଇ ତାର । ମନରେ
କର ବିଗ୍ଭର । ୩୨ । ଗଜ ବଳବନ୍ତ ହୋଇ । ଅଙ୍କୁଶ କି ନ ମାନଇ ।
ଶଶୀ କ୍ଷୀଣ ଯେ ହୁଅଇ । କଳା ତା ବୃଦ୍ଧି କରଇ । ୩୩ । ପ୍ରଥମା
ବୋଇଲା ତେବେ । ଏମନ୍ତ କର ଗୋ ଏବେ । ଖଡ୍‌ଗ ସାଧନା ବଶର ।
କର୍କଶ ବଲ୍ଲଭ କର । ୩୪ । ତିଳତୈଳ ତାଳମ୍ବର । ରସଯୁକ୍ତ ତହିଁକର ।
କାର୍ପାସ ତୂଳାରେ ଦେବ । କୁରଜ କଠିନ ହେବ । ୩୫ । ଦ୍ୱିତୀୟା
ବୋଇଲା ଶୁଣ । ଯେଉଁ କୁରଜ କଠିନ । କମଠ ପୃଷ୍ଠ ସ୍ୱଭାବ । ମେରୁଗର୍ବ
କରେ ଖର୍ବ । ୩୬ । କାହିଁକି ଏହା କରିବା । ନାୟକ କର ପୀଡ଼ିବା ।
ପ୍ରଥମା ବୋଇଲା ଶୁଣି । ଏମନ୍ତ କର ଗୋ ପୁଣି । ୩୭ । ଗନ୍ଧ ଉତ୍ପଳ
ଚିତ୍ତଙ୍ଗ । କଟୁ ତୈଳକର ସଙ୍ଗ । ଲେପନ କେଶେ କରିବ । ଅତ୍ୟନ୍ତ
କୁଟିଳ ହେବ ।୩୮। ସୈନ୍ଧବ ପିପ୍‌ପଳୀ ନେଲୀ । ଚୂର ବାସେ ଘୁଣି ଦଳ ।
ଲେପନ କେଶେ କରିବ । ଅତ୍ୟନ୍ତ ପ୍ରଲମ୍ବ ହେବ । ୩୯ । ଦ୍ୱିତୀୟା
ବୋଇଲା ଭଲ । କୁଟିଳ ପ୍ରଲମ୍ବ ବାଳ । ନଦୀ ଲହରୀ ଭ୍ରମରେ ।
ବିବନ୍ଧ କାଳେ ଧିକ୍‌କାରେ । ୪୦ । ବାନ୍ଧନେ ଜଗତଜନ । ମନ କରଇ
ବନ୍ଧନ । କି ହୋଇବ ଅଧିକାରେ । ବିଗ୍ଭର କର ମନରେ । ୪୧ ।
ପ୍ରଥମା କଲା ଉତ୍ତର । ମୁଖବାସକୁ ବିଗ୍ଭର । ଜାତିଫଳ ନାଗେଶ୍ୱର ।
ଗୁଡ଼ତ୍ୱକ ଘନସାର । ୪୨ । ଅଳାଇଚ ନଗୀ ଭରି । ପାନେ ଦିଅ ବଣ୍ଡି
କର । ଦ୍ୱିତୀୟା ବୋଲେ କି କାର୍ଯ୍ୟ । ଯେଉଁ ଲପନ ଅମ୍ବୁଜ । ୪୩ ।

---

୩୧ । ବଦର୍ଯ୍ୟା ଚୂର୍ଣ୍ଣ—ଅଳେଇଚ ଗୁଣ୍ଡ, ନବନୀତ—ଲହୁଣୀ, ଅଶନ—ଖାଇବା ।

୩୪ । ଖଡ୍‌ଗ ସାଧନ—ଖଣ୍ଡା ଖେଳିବା, କର୍କଶ—ଟାଣୁଆ, ବଲ୍ଲଭକର—ସ୍ୱାମୀ ହାତ ।

୩୫ । କାର୍ପାସ—କପା, କୁରଜ—କୁଚ ।

୩୬ । କମଠ—କଇଁଛ, ଖର୍ବ—ଛୋଟ ।

୩୮ । ଗନ୍ଧୋତ୍ପଳ—ସୁଗନ୍ଧ କଇଁ, କେଶେ—ବାଳରେ ।

୩୯ । ପ୍ରଲମ୍ବ—ଲମ୍ବା, ବିବନ୍ଧ—ଫିଟାଇବା ।

୪୨ । ମୁଖବାସ—ମୁହଁ ବାସିବାକୁ, ଘନସାର—କର୍ପୂର ।

୪୩ । ଲପନ—ମୁହଁ, ଅମ୍ବୁଜ—ପଦ୍ମ ।

ଶ୍ରୀକୃଷ୍ଣ ପଦ ତୁଳସୀ । ପଲ୍ଲବ ପରାୟେ ବାସି । ଅଘ୍ରାଣେ ପରମାନନ୍ଦ । ଇନ୍ଦିବର ଧ୍ୱଂସ ମିଳନ୍ଦ । ୪୪ । ପୁଣି ସେ ପ୍ରଥମା ଭାଷେ । ଶ୍ରମେ ସ୍ୱେଦ ଗନ୍ଧନାଶେ । କର ଏହୁ ଜପଗ୍ଲୁର । ଚନ୍ଦନ ନାଗକେଶ୍ୱର । ୪୫ । ଅଭ୍ୟସ୍ତା ହରିଦ୍ରା ସଙ୍ଗେ । ଲେପନ କର ଗୋ ଅଙ୍ଗେ । ଦ୍ୱିତୀୟା ବୋଲେ କି କହ । ଯେଉଁ ତନୁ ମହ ମହ । ୪୬ । ପଦ୍ମ ପ୍ରାୟେ ବାସୁଥାଇ । ତହିଁ ଦୁର୍ବାସନା କାହିଁ । କସ୍ତୁରୀଗନ୍ଧା ବନିତା । ସ୍ୱଭାବେ ଗନ୍ଧର୍ବସତ୍ତ୍ୱା । ୪୭ । ଯା ଅଙ୍ଗ ଗଜର ମୂଲ । ନ ପାଇଅଛୁ ବଜୁଳୀ । ଏଣୁ ଲକ୍ଷଣ ବଗୁର । କହୁ ଗଇବକ ଗୋସ୍ୱ । ୪୮ । କଥାରେ ନ ପାରି ଜିଣି । ପ୍ରଥମା ଏମନ୍ତ ଭଣି । ନବୀନ ଯୁବତୀ ଏହୁ । ରତିଭାବ ଜାଣି ନାହିଁ । ୪୯ । କାମଶାସ୍ତ୍ର ପୋଥି ହସ୍ତେ । ଧଅ ବୁଝି ଥାଉ ନିତ୍ୟେ । ବନ୍ଧ ଚିତ୍ର ଭିତ୍ତି ଯହିଁ । ବସିବା ଶୋଇବା ତହିଁ । ୫୦ । ପ୍ରତିକ୍ଷଣେ କରୁଥାଉ । କୁସୁମସମୟେ ନେଉ । ଶୁଣି ଅପର ହସିଲା । ସଧୀରେ ବାଣୀ ଭାଷିଲା । ୫୧ । ଶିଖୀ ଚନ୍ଦ୍ର ହଂସ ଶ୍ୱେତ । କେ କରିଛି ଯେନ ଚିତ୍ର । ଯାହା ପଢ଼ାଇଲା ସାରି । ସ୍ମରଶାସ୍ତ୍ର ଅର୍ଥ କରି । ୫୨ । ତା ହାତେ ପୋଥି ଦେବାକୁ । ଶୁଣିଲଇଁ ଅଭାଗୀଙ୍କୁ । ଶୁଣି ସେ ହୋଇ ମଜନ । ଚଳିଲା ରାଣୀ ସଦନ । ୫୩ । ଶ୍ୟାମ କମଳ ଶ୍ୟାମଳ । କପଟ କମଳ ବାଳ । ଜପଇନ୍ଦ୍ର ବୀରବର । ଚିତ୍ତେ ଚିନ୍ତେ ନିରନ୍ତର । ୫୪ ।

---

୪୪ । ଅଘ୍ରାଣେ—ସୁଙ୍ଘିବାରେ, ପରମାନନ୍ଦ-ଅତ୍ୟନ୍ତାନନ୍ଦୀ, ମିଳନ୍ଦ-ଭଅଁର ।

୪୫ । ସ୍ୱେଦ—ଝାଳ, ନାଗକେଶ୍ୱର—ନାଗେଶ୍ୱର, ଜପଗ୍ଲୁର—ଚିକସ୍ରା ।

୪୭ । ଦୁର୍ବାସନା—ଗନ୍ଧ, ଗନ୍ଧର୍ବସତ୍ତ୍ୱା—ଗନ୍ଧର୍ବ ଜାତୀୟ ।

୫୦ । ବନ୍ଧଚିତ୍ର ଭିତ୍ତି—ଯେଉଁ କାନ୍ଥରେ ବନ୍ଧ ସବୁ ଚିତ୍ରିତ ହୋଇଛି ।

୫୨ । ଶିଖୀ—ମୟୂର, ସ୍ମରଶାସ୍ତ୍ର—କାମଶାସ୍ତ୍ର ।

୫୪ । ଶ୍ୟାମ—ନୀଳ, କପଟ, କମଳବାଳ—ମୁଗଚର୍ମର ପର କେଶ ।
ଏ ଛନ୍ଦରେ ଲାବଣ୍ୟବତୀର ବେଶ ହେବାଠାରୁ ସମସ୍ତ ଅଙ୍ଗର ସୌନ୍ଦର୍ଯ୍ୟ ବିଶେଷଭାବରେ ବର୍ଣ୍ଣନା କରାଯାଇଛି ।

# ତ୍ରିଂଶ ଛାନ୍ଦ

( ଲବଣ୍ୟବତୀର ବିବାହ )

ରାଗ—କଳଶ

ଏଥୁ ଅନନ୍ତରେ ଶୁଣ ସୁବୁଦ୍ଧି କଳାପ । ଭୃତ୍ୟ ନିର୍ମିଲେ ଛାମୁଁମଣ୍ଡପ ମଣ୍ଡପ ହେ । ୧ । ଛାମୁଁମଣ୍ଡପ ବେଢ଼ିଲ ପର ପରିବାରୀ । ମଣ୍ଡପ ଯେମନ୍ତେ ତହିଁ ପ୍ରଧାନସୁନ୍ଦରୀ ଯେ । ୨ । ସେ ତମାଳଶାଖାକେଶୀ ଏ ଗୃମରକେଶୀ । ସେ ପୃଛଗୁଚ୍ଛରେ ଏ ମୁକୁତାଗୁଚ୍ଛେ ବସି ଯେ । ୩ । ସେ ନାରକେଳ

---

## ତ୍ରିଂଶ ଛାନ୍ଦ

୧ । ସୁବୁଦ୍ଧି—ପଣ୍ଡିତ, କଳାପ—ସମୂହ, ଭୃତ୍ୟେ—ଗୃହକରମାନେ ।

୨ । ପରିବାରୀ—ଦାସୀ । ଏଠାରେ ମଣ୍ଡପ ହେଲା ଲବଣ୍ୟବତୀ ଛାମୁଁ ମଣ୍ଡପକୁ ଦାସୀମାନେ ବେଢ଼ି ରହିଲେ ।

୩-୬ । ସେ ମଣ୍ଡପରେ ତମାଳ ଡାଳରେ ଛାମୁଣ୍ଡିଆ ହୋଇଛି, ନଡ଼ିଆଗୁଚ୍ଛେରି ପଡ଼ିଛି ଏଣେ ତମାଳ ଶାଖା କେଶୀ—ତମାଳ ପତ୍ରପରି ଯାହାର କେଶ ଗୃମର କେଶୀ—ନଡ଼ିଆ ଚଅଁରପରି କେଶ ଯାହାର, ନଡ଼ିଆ ରଚନ—ନଡ଼ିଆକୁ ମଝିରେ ଥୋଇଛନ୍ତି, ଏଣେ ନଡ଼ିଆ ହେଲା କୁଚ, କଳଶ ମଧ୍ୟ ଥୁଆ ହୋଇଛି, କୁଚ କଳଶ ପରି ଦନ୍ତ ଖଞ୍ଜା ହୋଇଛି ଏହାର ହୀରାପରି ଦନ୍ତ । ପଲ୍ଲବ—କଅଁଳିଆ ପତ୍ରସବୁ ଦିଆଯାଇଛି, ପଲ୍ଲବ କଅଁଳିଆ ପତ୍ରପରି ଏହାର ଓଷ୍ଠ ବାନ୍ଧୁନ—ପୋହଳା ମଧ୍ୟ ଟଙ୍ଗା ଯାଇଛି, ଅଧର ପୋହଳା ପରି, ସେଠାରେ ପତନୀ—ପାଟଖଣ୍ଡିଆ ଦିଆଯାଇଛି ଏ ପାଟଶାଢୀ ପିନ୍ଧିଛି, କସ୍ତୁରୀ ଶିକ ପେଡ଼ିରେ ଅଛି ଏହାର ଗାଲରେ କସ୍ତୁରୀ ଅଛି । ମିନ୍ଧା—ପାଣିପାତ୍ର ଥୁଆ ହୋଇଛି, ଏହାର ଅଳଙ୍କାରରେ ମିନ୍ଧାକାମ ହୋଇଛି । ବ୍ୟଞ୍ଜନେ—ସେଠାରେ ଭିଡଣାରେ ବାଣ୍ଟା ଯାଉଛି, ଏହାକୁ ମଧ୍ୟ ବିଚଣାରେ ବିଞ୍ଚୁଛନ୍ତି । ଦର୍ପଣ ସେଠାରେ ଅଛି ଏହାର ମୁହଁ ଦର୍ପଣପରି ତେଣୁ ଲବଣ୍ୟବତୀ ଗୋଟିଏ ମଣ୍ଡପ ହେଲା ।

ଭିରଜ ଏ କଲଶସ୍ତନୀ । ସେ ଦନ୍ତକମନୀୟା ଏ ଘ୍ରାକରଦନୀ ଯେ । ୪ ।
ସେ ପଲ୍ଲବଅଧରୀ ଏ ବନ୍ଧୁଜ ଅଧରୀ । ସେ ପଦ୍ମିନୀ ବାସେ ଶୋଭା ଏହା
ବାସ କର ଯେ । ୫ । ସେ କସ୍ତୁରୀ ତିଳକେ ଏ ସିନ୍ଦୂରତିଳକେ ଶୋଭି ।
ସେ ବ୍ୟଜନେ ରଞ୍ଜନ ଦର୍ପଣମୁଖୀ ଏହି ଯେ । ୬ । ଏମନ୍ତ ଦେଖି
ସିଂହଳପତି ତୋଷଭର । କଥନୀୟ ନୃହଇ କି ଭୂଅଣ ସମ୍ଭାର ଯେ । ୭ ।
କେତେଦିନେ ପରବେଶ ଶ୍ରୀହରିବାସର । ଉତ୍ସବ ଅତି ଉଷ୍ଣୁକ ହେଲେ
ନରେଶ୍ୱର ଯେ । ୮ । ପ୍ରତିଦ୍ୱାରେ ରମ୍ଭାତରୁ ଦବ୍ୟ ଦୋଣି ମାନ ।
ରମ୍ଭାପର ବରନାରୀ ମଙ୍ଗଳଗାୟନ ଯେ । ୯ । ପ୍ରଦୋଷନାଶରେ କଲେ
ଗନ୍ଧଷଣବଧି । ଭୂଦେବନନ୍ଦନୀ ସାତ ପାଞ୍ଚବସ୍ତ୍ର ପିନ୍ଧି ହେ । ୧୦ । ନାପିତୀ
ନୂତନସୂର୍ପ ରେଖି ନାରକେଳ । ନବତେଳ ପ୍ରଦୀପ ବଦରୀ ଦୁର୍ବାଦଳ
ଯେ ।୧୧। ଘେନି ବାହାରିଲେ ଉଚ୍ଚେ ହୁଳହୁଳି ଦେଇ । ଗୀତ ଇଚ୍ଛାସୁଖେ
ବୀଣା କି ଅବା ବାଜଇ ଯେ । ୧୨ । ବାଜଇ ବିବିଧ ବାଦ୍ୟ ଦେବୀ
ଗନ୍ଧଷିଲେ । ସପତଗୃହ ବୁଲିଣ ସଲିଳ ତୋଳିଲେ ଯେ । ୧୩ ।
ବର-ନବରକୁ ଯାଇଁ କଲେ ଗନ୍ଧଷଣ । ସେହି ସଙ୍ଗେ ବରଦାସୀ ବଜାଇ
ଘୋଷଣ ଯେ । ୧୪ । ଅସି କନ୍ୟା ମନ୍ଦିରେ ହେଇଲେ ପରବେଶ ।
ଗନ୍ଧଷିଲେ ଦେଇ ଭୂଷା ଚନ୍ଦଷଣ ବସ ସେ । ୧୫ । ବାହୁଡ଼ି ଯାଇ ସେ
ପୁରେ କଥା ପରସ୍ପରେ । ଏମନ୍ତ ସୁନ୍ଦରୀ ଥିଲା ଜନମି ସଂସାରେ ଯେ । ୧୬ ।

---

୮ । ଶ୍ରୀହରି ବାସର—ଜନ୍ମାଷ୍ଟମୀ, ଏକାଦଶୀ, ପୂର୍ଣ୍ଣିମା ଓ ରବିବାର, ଉଷ୍ଣୁକ—ଅନନ୍ଦ ।

୯ । ରମ୍ଭା—କଦଳୀ, ତରୁ—ଗଛ, ଦୋଣି—ଖୁଣ୍ଟ, ରମ୍ଭା-ସ୍ୱର୍ଗ ବେଶ୍ୟା ବରନାରୀ—ଶ୍ରେଷ୍ଠା ସ୍ତ୍ରୀ ।

୧୦ । ପ୍ରଦୋଷ—ସନ୍ଧ୍ୟା, ଗନ୍ଧଷଣ ବିଧି—ବିବାହରେ ଗନ୍ଧାଦି ଲେପନ, ଭୂଦେବ—ବ୍ରାହ୍ମଣ, ନନ୍ଦନୀ—ଝିଅ ।

୧୧ । ନାପିତୀ—ଭଣ୍ଡାରୁଣୀ, ନୂତନ ସୂର୍ପ—ନୂଆକୁଲା, ନାରକେଳ—ନଡ଼ିଆ, ନବତନ—ନୂଆ, ପ୍ରଦୀପ—ଦୀପ, ବଦରୀ—ବରକୋଳି ପତ୍ର, ଦୁର୍ବାଦଳ—ଦୁବ ।

୧୩ । ଦେବୀ—ଠାକୁରାଣୀ, ଗନ୍ଧଷିଲେ—ଗନ୍ଧାଦି ଘେନି ଘଷି ଗାଧୋଇ ଦେଲେ, ସପତଗୃହ—ସାତୋଟି ଘର, ସଲିଳ—ପାଣି ।

୧୪ । ଗନ୍ଧଷଣ—ବିବାହବିଧି ବିଶେଷ, ଘୋଷଣା—ବାଦ୍ୟ ।

୧୫ । ଭୂଷା—ଅଳଙ୍କାର ।

ଚନ୍ଦ୍ରମୁଖେ ନୟନଯୁଗଳ ଦେଲେ ଚାହିଁ । ଶିଶୁକୁରଙ୍ଗ ଯେମନ୍ତେ ପରତେ ଧୁଅଇ ଯେ । ୧୭ । ତୋଳକୁଙ୍ଗ ଚାଳ ଅନାଇଲେ ସେ ବଦନ । ବିକାଶ ସାରସ ପତ୍ର ଦଶେ ଶୋଭିବନ ହେ । ୧୮ । ଦୁହିଙ୍କ ଏକା-ବେଳକେ ଚାହିଁଲେ ଏମନ । ପୋହନ ପାଶରେ ପଡ଼ି ଚଞ୍ଚଳ ଖଞ୍ଜନ ଯେ । ୧୯ । ଲାବଣ୍ୟସରରେ ମୀନ ଖେଳଲାର ପରି । ପ୍ରଧାନ ଲାବଣ୍ୟ-ବତୀ ତ୍ରିଭୁବନଶିରୀ ଗୋ । ୨୦ । ଦାସୀକଥା ହେବାକୁ କୁମର ସାବ-ଧାନ । ତାକୁ ମୁଁ ପାଉଛୁ ବୋଲି ଉଲ୍ଲସାଇ ମନ ଯେ । ୨୧ । କନ୍ୟା-ପୁରେ ଦ୍ୱିଜନାରୀ କଥା ପରସ୍ପରେ । ନ ଥିଲା ତ ଫୁଲଶର କନ୍ଦର୍ପହସ୍ତରେ ଗୋ । ୨୨ । କାହାକୁ ପ୍ରହାରିଛ କି ଏତେବେ ଥାନ୍ତା ଚାପ । ନୋହିଲେ ଦହନ୍ତ କି କରିଛୁ ହର କୋପ ଗୋ । ୨୩ । ଜଣେ ବୋଇଲା ସେ ଅଛୁ ନ ପାରିଲୁ ଦେଖି । ଧନୁଶର ନାମଟି ହୋଇଛୁ ଭୁରୁ ଆଖି ଗୋ । ୨୪ । ଜମାତାର୍ଯ୍ୟେ ଯାଇ ପାଇଥିଲା ଅପଯଶ । ଏଣୁ ସୁମା ନାଶରେ କି ଅଛୁ ପଉରୁଷ ଗୋ । ନୃପସୁତା ଚତୁରୀ ଜଉଦ୍ରନ୍ତ ପୁଚ୍ଛତେ । ମଲ୍ଲିଗୋଟି ଯେତେ ନବବୟସୀ ଜଗତେ ଗୋ । ୨୬ । ଏମନ୍ତେ କଥା ଶ୍ରବଣେ ସୁନ୍ଦରୀ ଅନନ୍ଦ । ସେ ମୋ ପ୍ରଭୁ ଭାବ ବଢ଼େ ଆନନ୍ଦ ସମୁଦ୍ର ଯେ । ୨୭ । ଏମନ୍ତେ ରଜନୀ ଶେଷ ସମୟରେ ତହିଁ । କୋକିଳମାନ ସେ ବର କନ୍ୟାକୁ କହିଲ ଯେ ୨୮ । ଦଧିଗୁଡ଼ ଭକ୍ତ ଭୁକ୍ତ ଅନୁରକ୍ତ ବଶେ । କନ୍ୟା ଲବଣଚଉଁରୀ ପୂଜିଲା ହରଷେ ଯେ । ୨୯ । ଚଉଁରୀ ନୋହେ କରିଛୁ ଗଉରୀଙ୍କ ସେବା । ପୁରୁଷ ଈଶ୍ୱର ସଙ୍ଗମକୁ ମୋତେ ଦେବା ଗୋ । ୩୦ । ଦଣ୍ଡେ ଏ ବିଳମ୍ବ ନୋହୁ ବେଗେ ହେଉ ଇଚ୍ଛା । ବୈଦ୍ୟ ଯଥା ମନାସିଲା ବ୍ୟାଧିମନ୍ତ ବାଞ୍ଛା ଗୋ । ୩୧ । ଏ ସମୟେ ପରବେଶ ନୃପତିନନ୍ଦନ । ବିବିଧ ବାଦ୍ୟନାଦରେ ଦୁଆରେ ସଘନ ଯେ । ୩୨ । ସିଂହଳେଶ ଜ୍ୟୋତିଷ କହିଲା ଏହି କାଳ । ପ୍ରବେଶ ହେଲାଟି ବିଭା ଅନୁକୂଳବେଳ ହେ । ୩୩ । ମୀନକେତୁ ନାମ କୁମରକୁ ପଟିଅଇ । ଅଣାଇଲେ ସରଣୀବରଣୀ କରି ତହିଁ ଯେ । ୩୪ । ଜ୍ୟେଷ୍ଠ

---

୧୮ । ବିକାଶ ସାରସ—ଫୁଟିଲା ପଦ୍ମ ।
୨୦ । ଲାବଣ୍ୟସର—ସୁନ୍ଦର ପୋଖରୀ ।
୨୫ । ଅପଯଶ—ନିନ୍ଦା, ପଉରୁଷ—ପ୍ରଶଂସା ।
୩୦ । ଗଉରୀ—ପାର୍ବତୀ, ସୁପୁରୁଷ ଈଶ୍ୱର—ଉତ୍ତମପୁରୁଷ ଶ୍ରେଷ୍ଠ ।
୩୪ । ମୀନକେତୁ—ସିଂହଳ ରାଜପୁଅ, ସରଣୀ ବରଣୀ—ବାଟବରଣ ।

ଶୁକ୍ଳ ଦ୍ୱାଦଶୀ ସୋମବାର ହୋଏ । ସଂକ୍ରାନ୍ତି କଳାକୁ ଭୋଗ ଦିବସ
ଭୋଗଏ ଯେ । ୩୪ । ସ୍ୱାତୀ ତାର ତୁଲଚନ୍ଦ୍ର ଶୁଭ ନାମେ ଯୋଗ ।
ସେଦିନ ବେଳର ଷଡ଼ଘଡ଼ି ହୋଏ ଭୋଗ ଯେ । ୩୬ । ରବି ବୁଧ ଶୁକ୍ର
ମିଥୁନରେ ହୋଏ ସ୍ଥିତ । କର୍କଡ଼ା ଲଗ୍ନରେ ମଗ୍ନ ଜଣେ ବୃହସ୍ପତି
ଯେ । ୩୭ । ଚନ୍ଦ୍ର କେନ୍ଦ୍ରବର୍ତ୍ତୀ ତୁଳେ ଶନୈଶ୍ଚର ମୀନେ । ମଙ୍ଗଳ ମଙ୍ଗଳ
ତାର ତୃତୀୟରେ କନ୍ୟେ ଯେ । ୨୮ । ସ୍ୱର୍ଭାନୁ ମକରେ କରେ ବିଳାସକୁ
ତୋଷେ । ଏହି କାଳେ ବର ବିଭାମଣ୍ଡପରେ ବସେ ଯେ । ୩୯ । ସ୍ୱରଶଙ୍ଖ
ଶଙ୍ଖ ବାଜେ ଅସଂଖ୍ୟ ମାଧୁର୍ଯ୍ୟ । ଘଣ୍ଟି ପଟହ କଂସାଳ ତାଳ ତୂରୀ ଭେରୀ
ଯେ । ୪୦ । କର୍ତ୍ତାଳ କାହାଳ ବଜ୍ରଘୋଷ ବେଣୁ ଚମ୍ପା । ମୁରୁଜ ଡିଣ୍ଡିମ
ଦୁନ୍ଦୁଭିରେ ମହୀ କମ୍ପା ଯେ । ୪୧ । ବୀଣା ରବା ତାଳ ତାଳ ମୃଦଙ୍ଗ
ମର୍ଦ୍ଦଳ । ସ୍ୱରମଣ୍ଡଳ ଅମୃତ ବାଏ ଗୁଣିକୁଳ ଯେ । ଗଣକଗଣ ମଙ୍ଗଳାଷ୍ଟକ
ପଢୁଛନ୍ତି । ମଙ୍ଗଳଗୀତ ଗାବନ୍ତି ଗଣିକାଯୁବତୀ ଯେ । ୪୩ । ବନ୍ଦିବୃନ୍ଦ
ବନ୍ଦନା କରନ୍ତି ଅତି ଜଣେ । ବେଦନିକୁଳ ପୁରୋହିତ ବସି କର୍ମେ ରତେ
ଯେ । ୪୪ । ଏକାଳେ ମୃଖଡିଣ୍ଡିମ ଶୁଭେ ଅନ୍ତଃପୁରେ । କୁମାର ବିଗ୍ରୁରେ
ମାର କି ମୋ ମରଣରେ ଯେ । ୪୫ । ଧନୁର୍ଗୁଣ ଟଙ୍କାର ସର୍ବେଷେ
ଅସୁଅଛୁ । ବାଳା ସାହା ହେବାର କି ଜାଣିନାହିଁ କହୁ ଯେ । ୪୬ ।
ଏ ସମୟେ ପରିଗୃସ ବାବଜଗନ୍ଧାକୁ । ଲବଣଚଉଁରୀ ଅର୍ଥେ ଅଣିଲେ
ସେଠାକୁ ଯେ । ୧୭ । ଅନ୍ତରମାଟ ଅନ୍ତରେ ତରଳାକ୍ଷୀ ରହି । ତରଳ-
ନୟନ ଅନ୍ତେ ବଲ୍ଲଭକୁ ଚାହିଁ ଯେ । ୪୮ । ଲବଣ ତଣ୍ଡୁଳ ସହ ପୁରୁଷକୁ
ମାରି । ବିଦ୍ୟୁତ୍ପ୍ରାୟ ବାହୁଡ଼ିଲା ଚଞ୍ଚଳ ଚତୁରୀ ଯେ । ୪୯ । ଜଣାଟ
ମନ୍ଦଧୂଳିକି ପକାଇ ସେ ଯୁବା । ଚିତ୍ତ ଧରି ପଣନ୍ତରେ ବାନ୍ଧି ନେଲା କବା
ଯେ । ୫୦ । 'କୁଶକଣ୍ଠିକି ପାଣ୍ଡେଟି ଯାଅ ବୋଲ ମନ । ପଠାଇଣଦେଲା

---

୩୬ । ଷଡ଼ଘଡ଼ି—ଛଅଘଡ଼ି ।
୩୯ । ବିଭାମଣ୍ଡପ—ବାହାବେଦୀ ।
୪୦ । ସ୍ୱରଶଙ୍ଖ—ହୁଳହୁଳି ।
୪୩ । ମଙ୍ଗଳାଷ୍ଟକ—ଶୁଭଅଷ୍ଟକ, ଗଣିକା ଯୁବତୀ—ବେଶ୍ୟାନାରୀ ।
୪୪ । ବନ୍ଦିବୃନ୍ଦ—ଭାଟମାନେ ।
୩୬ । ସର୍ବେଷେ —ବେଗରେ ।
୪୭ । ବାବଜଗନ୍ଧା—ପଦ୍ମଗନ୍ଧା ।
୪୯ । ବିଦ୍ୟୁ—ବିଜୁଳି, ବାହୁଡ଼ିଲା—ଫେରିଲା ।

କବା ରସିକରତନ ଯେ । ୫୧ । ବହୁତ ବିନୟ ହୋଇ କହୁଛନ୍ତି ସେ ତାଙ୍କୁ । ବିଳମ୍ବ ନ କର ଘେନ ଅସ ବନିତାଙ୍କୁ ଯେ । ୫୨ । ବରବନ୍ଧ ଯଜ୍ଞୋପବୀତଙ୍କୁ ଏହୁକାଳେ । କନ୍ୟାପାଶେ ନିବେଦଣ ଦ୍ୱିଜମାନେ କଲେ ଯେ । ୫୩ । ଚତୁର୍ଗ୍ର ସେ ବଶ୍ରୁବଳ ଅସିଛନ୍ତି ନେଇ । ଅପଣା ବ୍ୟାଜରେ ଯଜ୍ଞୋପବୀତଙ୍କୁ ଦେଇ ଯେ । ୫୪ । ସେହ୍ୱକ୍ଷଣି ରଙ୍ଗେ ଯେ କୁରଙ୍ଗେକ୍ଷଣୀ ବିକେ । ବେଢ଼ିଛନ୍ତି ଚଜପାଶେ ସଜନି ସମାଜେ ଯେ । ୫୫ । ସୁବେଶିତ ବେଶବିଧି ନୋହିଲଇଁ କହି । ଅଲଙ୍କାର ଅଲଙ୍କାଚ ଯେଣୁ ଚନ୍ଦ୍ର ମୁହିଁ ଯେ । ୫୬ । ଧୀରେ ବିଭମଣ୍ଡପେ ପ୍ରବେଶ ଅସି ହେଲ । ବାମ ଦକ୍ଷିଣୀ ବିଗ୍ରହ ନ ବସଇ ବାଲା ଯେ । ୫୭ । ବାମଦେବ ବାମ ବାମଅଙ୍ଗୁ ଅଛୁ ହୋଇ । ସତ ନ ବଲଇ କେହୁ ବାମ ହେବ ମୁହିଁ ଯେ ।୫୮। ଏ ବିଗ୍ରହ କଲ ଭାବ ପୁରୋହିତ ସୁତ । ବିଧାତା ବିଧାନ ଶ୍ଳୋକ ପଢ଼ିଲ ତ୍ୱରିତ ସେ । ୫୯ । ଶ୍ରବଣେ ବସିଲ ବର ସମୀପେ ବନିତା । ପୁରୁଷ ଘେନିଲ ଏ ତ ପରମପଣ୍ଡିତା ଯେ । ୬୦ । ବେଦୋକ୍ତ ମନ୍ତ୍ରବିଧିରେ ଅଚମ୍ବିଣ କର୍ମ । କମରେ ଉଦାତ କଲେ କାନ୍ତା କାନ୍ତ ନାମ ଯେ । ୬୧ । ବଶିଷ୍ଠ ଅରୁନ୍ଧତୀ ଶ୍ରୀରାମ ସୀତା ପର । ଶିବ ପାର୍ବତୀ ଏ ଲକ୍ଷ୍ୟ ସମାନଙ୍କୁ କର ଯେ । ୬୨ । ଦ୍ୱିଜେ ବିଜ୍ଞେ ନାରକେଳ ବାଦୀ ଯୋଗଣ ସ୍ତନେ । ବିଗ୍ରହଣ ନିବେଶିଲେ ତାହାଙ୍କୁ ଦହନେ ଯେ । ୬୩ । ମଧୁଶଯ୍ୟା କାଳରେ ଯେ ତେଙ୍କ୍ୟା କରିବାକୁ । ଲଜାହୋମ ନ କଲେଟି ଦହିବେ ଲଜ୍ଜାକୁ ଯେ ।୬୪। କାନ୍ତା କାନ୍ତ କରପଦ୍ମ କୋକନଦ ଶିରୀ । ସ୍ନେହ କରଥିଲେ ବୋଲି କୁଶବନ୍ଧ କରି ଯେ । ୬୫ । ପରିଭବ ଅନ୍ତେ ଦ୍ୱିଜସୁତ ଫେଡ଼ି ଦେଲ ।

---

୫୨ । ବିଳମ୍ବ—ଡେରି, ବନିତା—ସ୍ତ୍ରୀ ।
୫୩ । ଯଜ୍ଞୋପବୀତ—ପଇତା ।
୫୪ । ବ୍ୟାଜ—ଛଳନା ।
୫୫ । କୁରଙ୍ଗେକ୍ଷଣୀ—(କୁରଙ୍ଗ+ଇକ୍ଷଣୀ) ମୃଗନେତ୍ରୀ ।
୫୬ । ଅଲଙ୍କାର—ଶ୍ରେଷ୍ଠ ।
୫୭ । ବାମଦେବ—ମହାଦେବ । ବାମ—ଶତ୍ରୁ,ବାମଦେବ ବାମ-କନ୍ଦର୍ପ ।
୬୧ । କାନ୍ତା-ସ୍ତ୍ରୀ, କାନ୍ତ—ପୁରୁଷ ।
୬୪ । ଲଜାହୋମ—ମିଳନ ପୂର୍ବରୁ ପ୍ରଥମରେ ଯେ ହୋମ ହୁଏ ସେଥିରେ ଖଇ ପକାନ୍ତି ।
୬୫ । କୋକନଦ—ରକ୍ତପଦ୍ମ, କୁଶବନ୍ଧ—କୁଶରେ ବାନ୍ଧିବା ।

ମନୋଭବ ପରାଭବ ଯାହା ହେଉଥିଲା ଯେ । ୬୨ । ଛୁଅଇଁଲେ କୁମାରକୁ କୁମାରୀଚରଣ । ମନ୍ମଥ ଭୟରୁ କାଣ୍ଟେଁ ପଶିଲା ଶରଣ ଯେ । ୬୭ । କମ୍ବୁରେ ଅମ୍ବୁ ଢୋଳଣ ଦେଲା କନ୍ୟାତାତ । କଣ୍ଠକୁ ସମାନ ନୋହୁ କି ଅବା ରୋଦତ ଯେ । ୬୮ । ଚଉଠିବିଧି ଶେଷ ଯହୁଁ ହେଲା ଏ ରୀତିରେ । ବର କନ୍ୟା ଘେନି ଗଲେ ଅବରୋଧ ପୁରେ ଯେ । ୬୯ । ଅଜ ଯୁତ ହେବେ ବୋଲି ଏ ବ୍ୟାଜରେ ତହିଁ । ଯୁତ ଖେଳାଇଲେ ସ୍ୱର୍ଣ୍ଣ ବରାଟିକା ଦେଇ ଯେ । ୭୦ । ଅନ୍ତଃପୁରସ୍ଥାଙ୍କ କଲା ବ୍ୟାକୁଳ ମଦନ । ଜଗତମୋହନ ରୂପ କର ଦରଶନ ଯେ । ୭୧ । କହନ୍ତି ଭଙ୍ଗୀଲେଖା କେମା ସାନଭଙ୍ଗୀ ଯେତେ । ଦାସୀ ହେବେ କି ବିଗୁର କଲେ ଚିତ୍ତେ ଯେ । ୭୨ । ସେବାବେଳେ କରପଦ୍ମ ଲାଗିଲେ ଉରଜେ । ପରମ ଗତିକି ଆମ୍ଭେ ପାଇବା ସହଜେ ଯେ । ୭୩ । ଜରତୀ ଭାଳିଲେ ଚିତ୍ତେ ଗଲଣି ବୟସ । ନ ହେଲେ ଲାଜ ପଳାଇ ଯାଆନ୍ତୁ ଅବଶ୍ୟ ଯେ । ୭୪ । ତରୁଣୀଏ ମନାସନ୍ତି ଭୋଗ ଦେବୁଁ ଦେବେ । ହେ ପ୍ରଭୁ ଅମ୍ଭଙ୍କୁ କେମା ସଙ୍ଗତରେ ଦେବେ ଯେ । ୭୫ । ଭୋଗ ନୋହିଲେ ତ ହେଉଥିବ ଦରଶନ । ଚନ୍ଦ୍ରମା ଉଲ୍ଲାସେ ଯଥା କୁମୁଦିନୀ ବନ ଯେ । ୭୬ । ଏମନ୍ତ ଭୋଜନ ସ୍ଥାନେ ହେଲେ କନ୍ୟାବର । ଜରତୀ, ଦ୍ୱିଜବନିତା କହିଲା ସେଠାର ଯେ । ୭୭ । ପଞ୍ଚବାଣ ତ୍ରାସରୁ ତରିଲା ପଞ୍ଚଗ୍ରାସି । କର ଏବେ ହରଷରେ ଜାୟାପତି ବସି ଯେ । ୭୮ । ସେ ବିଧି ଶେଷେ ବିଜୟ ବାହାରେ କୁମର । ବଢାଇଲା ରତ୍ନ ଦେଲେ ମନିସୁତା କର ଯେ । ୭୯ । ସେତିକବେଳରୁ ସେ କେମାର ସହଚରୀ । ଆରମ୍ଭିଲେ ସୁବେଶକୁ ବିଗୁର ବିଗୁର ଯେ । ୮୨ । କେତେ ସଖୀ ମଣ୍ଡି ଗଲେ ମଧୁଶଯ୍ୟାପୁର । ଏହିକାଳ ଉତ୍ସବକୁ ଧ୍ୟାୟି ଶ୍ରୀରାମର ଯେ । ୮୧ । କହେ କବି ଭଞ୍ଜବୀରବର ଦିବ୍ୟ ରସ । ଅହେ ରାମ ଅବାଧ୍ୱେ ଏ ଗୀତ

---

୬୭ । ଦ୍ୱିଜସୁତ—ବ୍ରାହ୍ମଣ ପୁଅ, ମନ୍ମଥ—କନ୍ଦର୍ପ ।

୬୮ । କମ୍ବୁ—ଶଙ୍ଖ, ଅମ୍ବୁ—ଜଳ, କନ୍ୟାତାତ—କନ୍ୟାବାପ ।

୭୦ । ଯୁତ—ଏକତ୍ରିତ, ବ୍ୟାଜ—ଛଳନା, ସ୍ୱର୍ଣ୍ଣବରାଟିକା—ସୁନାକଉଡ଼ି ।

୭୮ । ପଞ୍ଚବାଣତ୍ରାସରୁ—କନ୍ଦର୍ପ ଶରଭୟରୁ ।

୮୨ । ଅବାଧ୍ୱେ—ସହଜରେ ।

ତର ଶେଷ ହେ । ୮୨ । ସୀତା ସହିତ ମୋ ଶତ୍ରୁ ନୋହିବ ଅନ୍ତର ।
ଏହି ଅଭିପ୍ସାକୁ କରିଅଛୁ ନିରନ୍ତର ହେ । ୮୩ ।

---

## ଏକତ୍ରିଂଶ ଛାନ୍ଦ

( ପ୍ରଥମ ମିଳନ ସକାଶ ପରସ୍ପରର ଅନୁଚିନ୍ତା ଓ କେଳିପୁର ମଣ୍ଡନ )

ରାଗ—ଧନାଶ୍ରୀ

ଶୁଣ ସୁଜନେ କୁମାର ମାର ବଶେ ଦିବସ ନାଶକୁ ଭାବି । ଚତ୍ୱରେ ଯାଇ ସତ୍ୱରେ ଚାହେଁ ଛାଇ ଅସ୍ତ ହୋଇବାକୁ ରବି । ସେ ବୀର । ମନେ ସ୍ତୁତି କରଇ ଅପାର । କେଉଁ ପ୍ରକାରେ ନୁହଇ ସ୍ଥିର । ତନୁ ପୁଲକ ଉଠଇ ତାର ଯେ । ୧ ।

ବୋଲଇ ହେ ମିତ୍ର ପଦ କର ସାର୍ଥ ମୋଠାରେ ସୁଦୟା ବହି । ଯେନ ତୁମ୍ଭେ ମୁଁ ଦାନମଣି ସ୍ୱଭାବେ ପୁଣି ତ ପଦ୍ମିନୀସ୍ନେହୀ । ହେ ଦେବ । ସବୁକାଳେ ମିତ୍ରପଣ ଥିବ । ମୋତେ ଦିବସ୍ପତିପଦ ଦେବ । ଯେତେ ବେଳେ ବନ୍ଧୁ ଭେଟ ହେବ । ୨ ।

---

୮୩ । ଅଭିପ୍ସା—ବାଞ୍ଛା ।
ସିଂହଳ ରାଜନଗରରେ ଚନ୍ଦ୍ରଭାନୁ ରହିଥିଲେ । ବେଦନିୟମରେ ଆରମ୍ଭ ହେଲା । ବର ଆସନ୍ତେ ସିଂହଳ ଯୁବରାଜ ବାଟବରଣ କଲା—ଲଜା ହୋମାଦି ହୋଇ ବେଦବିଧିରେ ବିବାହ କାର୍ଯ୍ୟ ହେଲା ।

---

## ଏକତ୍ରିଂଶ ଛାନ୍ଦ

୧ । କୁମାର—ରାଜପୁତ୍ର, ମାର—କନ୍ଦର୍ପ, ଚତ୍ୱର—ଅଗଣା ।

୨ । କୁମାର କହିଲି—ମୋ ନା ଭାନୁ, ହେ ସୂର୍ଯ୍ୟ ! ତୁମ୍ଭ ନା ଭାନୁ ଦୁହେଁ ମିତ୍ର-ସୁଦୟା କରି ଦୟାବହି, ତୁମ୍ଭେ ଦିନମଣି, ମୁଁ ଦାନମଣି-କି ଦୁଃଖୀ ଶ୍ରେଷ୍ଠ, ତୁମକୁ ଦେଖିଲେ ପଦ୍ମଫୁଟେ ତୁମ୍ଭେ ପଦ୍ମଫୁଲସ୍ନେହୀ, ମୁଁ ମଧ୍ୟ ପଦ୍ମିନୀ ଜାତୀୟା ସ୍ତ୍ରୀ । ଲାବଣ୍ୟବତୀରେ ସ୍ନେହୀ, ତୁମ୍ଭେ ଦିବସ୍ପତି କି ଦିନପତି, କି ଦାନପତି । ମୋର ସ୍ତ୍ରୀ ମୋ ସଙ୍ଗେ ଭେଟ ନ ହେବାରୁ ମୁଁ ଦୁଃଖିତ ହୋଇଛୁ । ଦିବସ୍ପତି (ଦାନପତି) ଯେ ଇନ୍ଦ୍ରପରି, ମୋର ସ୍ତ୍ରୀ ମୋ ସଙ୍ଗେ ମିଳନ ହେଲେ ମୁଁ ଇନ୍ଦ୍ରସୁଖ ଭୋଗ କରିବି ।

ପୁଣି ବଗୃରଇ ମୋର ଦୂତ ହୋଇ କେ ଅସନ୍ତା ଶୀଘ ଘେନି । ଭାନୁ ଦନ ସଙ୍ଗେ କ୍ଷୀଣକୁ ଭଜନ୍ତା ହୁଅନ୍ତା ଦୀର୍ଘ ରଜନୀ । ସେ ଏତେ । ଚନ୍ଦ୍ର ଦଅନ୍ତା ଚନ୍ଦ୍ର ମରୁତେ । ପଶି ଗବାକ୍ଷେ ବାଳା ପଣନ୍ତେ ସେ । ଅଳ ଯୁବାଙ୍କ ତୋଷ ରତାନ୍ତେ ସେ । ୩ ।

ଧାତା ଦେଖିରେ ସୁରସଭା ମଧ୍ୟରେ ହରଲ୍ଲ ବାରରମଣୀ । ଯଥା ଦୁଷ୍ଟଲୋକ ବୃଦ୍ଧ ହେଲେ ତହେ ବାଳକେ ତଅର ବାଣୀ । ସେ ତଥା । ଧନେ ନାକେଧିଲ୍ଲ ରତ କଥା ସେ । ପାସୋରଲ୍ଲ କ ମଦନ ବ୍ୟଥା ସେ । ମାର ବାଧି ବୋଲାଇବା ବୃଥା ସେ । ୪ ।

ନବତରୁଣୀ କାମସିନ୍ଧୁ-ତରୁଣୀ ତରଣୀକି ଗୃହିଁ ଭାବେ । ଫୁଲ କୋଦଣ୍ଡ ଦଣ୍ଡ ତ ନ ତୁଟିଲ କେତେ ଦଣ୍ଡ ପୁଣି ଥିବେ । ଏ ଭାନୁ । କେତେ ବେଦନା ସହିବ ତନୁ । ନ ତୁଟିବ ସନ୍ତାପ କୃଶାନୁ । ପ୍ରେମରସ ସେଚନ ବାଞ୍ଛନ୍ତୁ ସେ । ୫ ।

ଯେତେ ସଂସାର ଅଭିସାରୀ ତାହାଙ୍କ ନିଶ୍ୱାସ ବତାସ ହୋଇ । ଜଳଧି ହୁତାଶେ ଉଡ଼ାଇ ତପନ ପକାଇ ଦଅନ୍ତା ନେଇ । ସେ ତେବେ । ମନ ସନ୍ତୋଷ ହୁଅନ୍ତା ଭାବେ । ନିଶି ହୋଇଥାନ୍ତା ଟାଙ୍କି ଧବେ । ହୁଅନ୍ତା ଯେ ତନୁ ଭଲ ଲବେ ସେ । ୬ ।

---

୩ । ଭାନୁ—ସୂର୍ଯ୍ୟ, ଦୀର୍ଘରଜନୀ—ବଡ଼ରାତ, ଚନ୍ଦ୍ରମରୁତ—ଶୀତଳପବନ, ଗବାକ୍ଷେ—ଝରକାରେ, ବାଳା—ସ୍ତ୍ରୀ, ପଣନ୍ତେ—କାନରେ, ରତାନ୍ତେ—ରତଶେଷରେ ।

୪ । ସୁରସଭା—ଦେବସଭା, ବାରରମଣୀ—ବେଶ୍ୟା, ବ୍ରହ୍ମା ଦେବସଭା-ଭିତରେ ଉର୍ବଶୀକୁ ହରଥିଲେ, ପାସୋରଲ୍ଲ—ଭୁଲିଗଲା ।

୫ । କାମସିନ୍ଧୁ—କାମସମୁଦ୍ର, ତରଣୀ—ନୌକା, ତରଣି—ସୂର୍ଯ୍ୟ, କୃଶାନୁ —ଅଗ୍ନି ।

୬ । ଅଭିସାରୀ—ଯେ ସ୍ତ୍ରୀ ପୁରୁଷ ସଙ୍କେତ ଦେଇଥିବା ସ୍ଥଳକୁ ଯାଏ । ବତାସ—ପ୍ରଳୟ ପବନ, ଜଳଧି—ସମୁଦ୍ର, ହୁତାଶେ—ତେଜରେ ।

ଅରତ ନିନାଦ ଢାଳେ କୋକ ନଦମଧ୍ୟେ ଏ ସମୟେ ରବ । ଅକାଶ ସର କୋକନଦ ପରି ଧର କୋକନଦ ଛବ । ସେ ଖରେ । ଶୋଭା ହେଲେ ଚରମ ଭୂଧରେ । କାମ ଜଟଜୟକାମରେ । ଜବା ଦେଲ କି ବାରୁଣୀ ଶିରେ ସେ । ୭ ।

ସ୍ତ୍ରୀ ପୁରୁଷ ଅନୁରାଗୁଁ ଅଧିକ କେ ହେବ ମନରେ ଭଲ । ଦ୍ୟୁମଣି ବଶାରେ କି ନଗ ଗୁଣିକ ଅଗ ପୁଂସରାଗ ତୁଲ । ସେ ତାଳ । ଦେଲ ତେଣୁ ବଙ୍ଗ ଦୀପାବଳ । ପୁଣି ବାଳୀ ଅନୁରାଗ ତୁଳ । ସେ ତ ମଞ୍ଜିଷ୍ଠା-ରାଗରୁ ବଳ ସେ । ୮ ।

ବାରୁଣୀ ତରୁଣୀ ସଙ୍ଗେ ଫଗୁ ଖେଳ ସିନ୍ଧୁ ମଜ୍ଜନକୁ ଗଲ । ସେହି ରାଗରଙ୍ଗ ଯୁଗତେ ଜଗତ ହୃଦରେ ପ୍ରକାଶ କଲ । ତା ଶୁଣି । ନୃପନନ୍ଦନ ଆନନ୍ଦ ହୋଇ । ଗଣ୍ଡଦେଶ ଲୋମ କଲସାଇ । ଏହି ଭାବନାମାନ ଭରଇ ସେ । ୯ ।

ସଖୀ ବେଢ଼ି ଚନ୍ଦ୍ରମୁଖୀଙ୍କ ମୋହର ବେଶ କରୁଥିବେ ପରା । ରସିବାକୁ ରସେ ଅସିବାକୁ ପାଶେ କରିବନ୍ତି ତଉ ତ୍ୱରା । ମୁଁ ଧନ୍ୟ । ଅଜ ଛୁଇଁବି ତା ଅପଘନ । ପୁଣି କହିବ ଶୃଷ୍ଟୁବଚନ । ବିଶେଷତ ଦେବ ଅଲିଙ୍ଗନ ସେ । ୧୦ ।

ତୁଚ୍ଛ ଜୀବ ରହିବାକୁ କେତେ ଦାନ କରିବ ପରାଣ ସଖୀ । ଚୁମ୍ବ ଅଲିଙ୍ଗନ ଓଷ୍ଠପାନ ଦାନ ବାସ ନ ପାରିବ ରଖି । ତା ଦେଖି । ମୁଁ ଯେ ହୋଇବି ପରମସୁଖୀ । ସେ ଯେ କରେ କର ଦେବ ଯୋଖି । ମନ ମନକୁ ହୋଇବ ସାକ୍ଷୀ । ୧୧ ।

---

୭ । ଅରତନିନାଦ-ଦୁଃଖଶବ୍ଦ, କୋକ—ଚକୁଆ ପକ୍ଷୀ, ନଦମଧ୍ୟେ-ନଈ ଭିତରେ,ଖରେ-ଅକାଶରେ, ଚଞ୍ଚଳରେ,ଚରମଭୂଧର—ଶେଷଗିରି ବା ଅସ୍ତଗିରି, ଜବା—ମନ୍ଦାରଫୁଲ, ବାରୁଣୀ—ପଶ୍ଚିମଦିଗ ।

୮ । ଦ୍ୟୁମଣି-ସୂର୍ଯ୍ୟ, ଏ ବଶା ପରି ହେଲେ, ନଗ-ଅକାଶ, ପୁଂସରାଗ-ପୁରୁଷ ସ୍ନେହ, ମଞ୍ଜିଷ୍ଠା-ମଞ୍ଜୁଅତ, ରାଗ-ରକ୍ତବର୍ଣ୍ଣ, ଗୁଣିକ—ବଣିଆ ।

୯ । ଫଗୁ—ଅବିର, ସିନ୍ଧୁମଜ୍ଜନ—ସମୁଦ୍ର ଗାଧୁଆ ।

୧୦ । ଅପଘନ—ଦେହ ।

ବାଳା ବସ୍ତ୍ରରେ ପଦ୍ମିଣୀପଣକି କି କର ଦେବାଟି ରତ । ଦେଖିବେ ପଦ୍ମ ମୋ ସ୍ତନ କଳସକୁ କି ହେଉଛୁ ଅନ୍ତରତ । ସେ ଭାବ । ଦେବୀମାନଙ୍କୁ ଉପନ ଦେବ । ଜୀବ ଥିବା ଯାକ ଥିବ ସେବ । ଦୀପ ସେକାଳେ ଯିବଟି ଲିବ ସେ । ୧୨ ।

ବଳଅଇଁ ବାଧ ରଖି ନ ପାରିବ ସ୍ବଭାବେ ଅବଳା ମୁହିଁ । ଉଚିତ କଥା ଏ ନବୀନ ସଙ୍ଗମେ କରିବାର ନହିଁ ନାହିଁ । ହେ ବନ୍ଧୁ । କାନ୍ତେ ନ ହେବ ବିବାସ ବୁଝି । ସବୁ ଚେନା ତୁମ୍ଭର ସିଝି । ରସତନମନ ରସନିଧି । ୧୩ ।

ଯାମିନୀ ଯେନ ଅନ୍ତର ହେବା ଦୋଷ ଚନ୍ଦ୍ର ଛଡ଼ାଇବା ପାଇଁ । ତାରକୁମୁଦିନୀ ତାଙ୍କୁ ପ୍ରଦୋଷ-ଦୂତୀ ଅଗ ପଠିଅଇ । ସେ କାଳେ । ତାର ବଚନ ମନ୍ତ୍ରର ବଳେ । କେହୁ ହସିଲ ଫୁଲଙ୍କ ଛଳେ । କେହୁ ହସିଲ ଦରମୁକୁଳେ । ୧୪ ।

ସେ ସମୟେ ଗୃହ ପାଞ୍ଚ ସହଚରୀ ବସ୍ତ୍ରର ମଣ୍ତ୍ରନ୍ତ୍ରି ପୁର । ରସିକ ବନ୍ଧୁ ବଧୂ ମଧୁଶଯ୍ୟାକୁ ଯେ ହୋଇବ ମନୋହର । ସେ ଗୃହୁ । କର୍ମେ ବିଶ୍ବକର୍ମୀ ମୟୁ ଗୁରୁ । ଧନ୍ୟ ପୁଣ୍ୟଜନପତି ପୁରୁଁ । ଦେଖି ନେନ ବିଂଶ କରେ ଦୂରୁ । ୧୫ ।

ବାସବ ସବୁ ଦେଖିଲେ ଗଉତମ ଉତ୍ତମ କଲେ ଭାଷିବେ । ଲଙ୍କା ଲୋକମାନେ ମାନେ ହନୁମାନେ ମାନସରେ ପ୍ରଶଂସିବେ । ସେ ଘର । ଚିତ୍ରି

---

୧୨ । ଉପନ—ଭୋଗ, ସେବ—ପୂଜା ।

୧୩ । ନବୀନସଙ୍ଗମ—ନୂତନ ମିଳନ ।

୧୪ । ଯାମିନୀ—ରାତ୍ରି, ପ୍ରଦୋଷ—ସନ୍ଧ୍ୟା, ମୁକୁଳ—ଫୁଲକଢ଼ି ।

୧୫ । ରସିକବନ୍ଧୁ-ରସିକଚନ୍ଦ୍ର ବା ରସିକ ଶ୍ରେଷ୍ଠ, ବଧୂ ବୋଲୁ ଲାବଣ୍ୟବତୀ, ବିଶ୍ବକର୍ମା—ଦେବଶିଳ୍ପୀ, ମୟୁ—ଅସୁରଶିଳ୍ପୀ, ଏମାନେ ମୁହୂର୍ତ୍ତକେ ଅତ୍ୟନ୍ତ ସୁନ୍ଦର ନଗର ନିର୍ମାଣ କରନ୍ତି, ପୁଣ୍ୟଜନ ପତି—କୁବେର, କୁବେରପୁର—ଅଳକା ।

୧୬ । ବାସବ-ଇନ୍ଦ୍ର, ଗୌତମ ଶାପରେ ଇନ୍ଦ୍ର ସହସ୍ରକ୍ଷତ ଅଖିପର ହୋଇଥିଲେ । ତେଣୁ ଇନ୍ଦ୍ର ଏ ବାସ କା ଘରକୁ ଦେଖିଲେ ଗୌତମ କଲ୍ୟାଣ ମନେ କରିବେ, ଲଙ୍କାଲୋକେ ଓ ହନୁ ଏ ପୁରକୁ ଦେଖି ଲଙ୍କାଠାରୁ

ନ ଗଲା ଏ ମନୋହର । ଭ୍ରମେ ଶ୍ମଶାନେ ନ କର ଘର । ଗୃହ୍ହିଁ ବଶ ନୋହିବ କେ ନର । ୧୬ ।

ସୁଧାଂଶୁ ପରି ମୋତିସୁଧା ବସୁଧା ବଶୁଛି ରଜତ ବାଡ଼ । ପ୍ରତି କୋଠିରେ କଲା ଚଉଷଠିରେ ପ୍ରତିମାମାନ ନିବାଡ଼ । ଯେ ଝଳି । ବନ୍ଦି-ହୁଡ଼ ହୋଇବାକୁ ଭଲି । ମିନାଲତାରେ କରନ୍ତି ଝଳି । ପ୍ରତେ ବନେ କ କରନ୍ତି କେଳି । ୧୭ ।

ଶ୍ରମଘର୍ମ କ୍ଷୀଣେ ଦକ୍ଷିଣେ ଗବାକ୍ଷ ଅଗମ ପ୍ରାଣେ ରଞ୍ଜନ । ସ୍ତମ୍ଭ ଅରମ୍ଭ ରମ୍ଭୋରୁ ଭଙ୍ଗୀ ଶୋଭା କରେ ଗୃହଗତ ବ୍ୟଜନ । ସେ ଗୃହ । ମହା ରମଣୀୟ ମଣିଜାଳ । ହୋଇଛନ୍ତି ଅତି ଜ୍ୟୋତିଶୀଳ । ପରେ ମନୋହର ହେମତାଳ । ୧୮ ।

ଯହିଁ କାଚବାନ୍ଧ ଚତ୍ୱର ଲୋକେ ସତ୍ୱର ସଲିଳ ଭ୍ରମ । ବଇଡୂର୍ଯ୍ୟ ଭଜ ପଙ୍କଜ ସ୍ଫଟିକ କୁମୁଦସ୍ଫୁଟରେ ରମ୍ୟ । ସେ ଘେନ । ତହିଁ ହଂସ କରେ ବ୍ୟର୍ଥସ୍ନାନ । ମଧୁପାଳି ଅଳି କରେ ସ୍ୱନ । ବଶ ନ କରିବ କାହା ମନ । ୧୯ ।

---

ବେଶୀ ପସନ୍ଦ କରିବେ, ହର—ମହାଦେବ, ହର, ଏ ପୁର ଦେଖି ଶ୍ମଶାନ ଛାଡ଼ି ଏଠାରେ ବାସ କରିବାକୁ ବସିଲେ ।

୧୭ । ସୁଧାଂଶୁ—ଚନ୍ଦ୍ର, ମୋତିସୁଧା—ମୋତିପୋଡ଼ା ଚୂନ, ବସୁଧା—ପୃଥିବୀ, ରଜତ ବାଡ଼—ରୁପାକାନ୍ଥ, କୋଠି—ଘର, ଚଉଷଠି ପ୍ରତିମା—ଚଉଷଠି ବନ୍ଧର ଛବି, ସେ ସବୁ ସେଠାରେ ଦିଆଯାଇ ଥିବାରୁ ଟିକ୍ ବଣରେ ଲତାପରି ଜଣା ଯାଉଛି ।

୧୮ । ଶ୍ରମଘର୍ମ—ଶ୍ରମଝାଳ, କ୍ଷୀଣେ—ମରିବାକୁ, ଗବାକ୍ଷ—ଝରକା, ପବନ ଅସିବାରୁ ଦକ୍ଷିଣ ପାଖରେ ଝରକା ଅଛି, ସ୍ତମ୍ଭ—ଖୁମ୍ବ, ରମ୍ଭୋରୁ-ସୁନ୍ଦରୀ ସ୍ତ୍ରୀ, ଖୁମ୍ବପରି ସୁନ୍ଦରୀ ସ୍ତ୍ରୀମାନେ ଠିଆହୋଇ ବଟଣା ପକାଉଛନ୍ତି, ରମଣୀୟ-ସୁନ୍ଦର, ମଣିଜାଳ-ରତ୍ନସବୁ, ଜ୍ୟୋତିଶୀଳ-ଉଜ୍ଜ୍ୱଳ,ହେମତାଳ-ସୁନାକଳସ,ଗୃହରେ ସୁନାକଳସ ଥୁଆ ହୋଇଛି ।

୧୯ । କାଚବାନ୍ଧ ଚତ୍ୱର-କାଚ ତିଆରି ଅଗଣା, ସଲିଳ-ଜଳ, ଭଜ-ପ୍ରସ୍ଫୁଟିତ କୁମୁଦ—କଇଁ, ମଧୁପାଳି—ଭ୍ରମର, ଅଗଣା କାଚରେ ହୋଇଥିବାରୁ ତାକୁ ଜଳ ବୋଲି ମନେ ହେଉଛି, ବାଇଡୂର୍ଯ୍ୟାଦି ରତ୍ନ ତା ଉପରେ ପଦ୍ମ ଓ କଇଁପରି ସୁନ୍ଦର ଦେଖା ଯାଉଛନ୍ତି—ଜଣାଯାଏ ସେଠାରେ ହଂସ ବୁଲୁଛନ୍ତି,ଲବଣ୍ୟବତୀ ପଦ୍ମିନୀ ଥିବାରୁ ଭଅଁରମାନେ ପାଖେ ପାଖେ ଉଡୁଛନ୍ତି, ଏ ଶୋଭା ଦେଖି କାହା ମନ ବଶ ନ ହେବ ?

ଯହିଁ ନୀଳମଣି ସୋପାନର ମଣି ଗତ ସ୍ବର୍ଣ ମଣି କେକୀ । ମଧୁର ନାଦ ଅଳାପରେ ନାଚନ୍ତି କଳାପି-କଳାପ ଟେକି । ସେ ପୁରୀ । ମହୀମଣ୍ଡନାର ସହଚରୀ । କଲେ ମଣ୍ଡନ କେମନ୍ତ କର । କରୁଁ କହିବା ତହିଁ ମାଧୁରୀ । ୨୦ ।

ନନ୍ଦତନୟ ବନୟ ଭାନୁଜାକୁ ଭାନୁଜା-ତଟରେ ଗୃହି । କମ୍ରକଳିତାଙ୍ଗୀ ଜନକସୁତାକୁ ରାମଚନ୍ଦ୍ର ଗୃହିଅଛି । ସେ ସ୍ୱଚ୍ଛ । ଶିବ ଗୋଡ଼ାଇ ମୋହିନୀ ପଛ । ଇନ୍ଦ୍ର ସୂର୍ଯ୍ୟ ଧୈର୍ଯ୍ୟ କରେ ତୁଚ୍ଛ । ମାୟାନାରୀ ରୂପରେ ଶ୍ରୀବତ୍ସ । ୨୧ ।

କଳାରୀ ସଙ୍ଗରେ କୁବେର ବିହର ବାନରୀ ସାଙ୍ଗରେ ବାତ । ଶୋଭାଧନ୍ୟା ମେନା ମୀନାକ୍ଷୀକୁ ଗୃହିଁ ବିଶ୍ୱାମିତ୍ର ତପ ହତ । ଏ ବଧି । ଚିତ୍ରମାନ ହୋଇଅଛି ସିଦ୍ଧି । ଅଣି ଛୁଟ ଯବନିକା ବାନ୍ଧି । କଲେ ପ୍ରାଙ୍ଗଣ ଶୋଭାକୁ ବୃଦ୍ଧି । ୨୨ ।

---

୨୦ । ସୋପାନ—ପାହାଚ, କେକୀ—ମୟୂର, କଳାପସମୂହ—ପୁଚ୍ଛସବୁ, ଅଳାପ—ଖେଳ, ମହୀମଣ୍ଡନା—ଅତି ସୁନ୍ଦରୀ, ସେଠାରେ ନୀଳମଣିର ପାହାଚ ମେଘପରି ଦେଖାଯିବାରୁ ମୟୂରମାନେ ପୁଚ୍ଛଟେକି ନାଚୁଛନ୍ତି ।

୨୧ । ନନ୍ଦ ତନୟ—ଶ୍ରୀକୃଷ୍ଣ, ଭାନୁଜା ତଟରେ—ଯମୁନା କୂଳରେ, ଭାନୁଜା—ରାଧା, କମ୍ରକଳିତାଙ୍ଗୀ—କୋମଳାଙ୍ଗୀ, ଜନକସୁତା—ସୀତା, ସ୍ୱଚ୍ଛ—ପରିଷ୍କାର, ଶିବ-ମହାଦେବ, ମାୟାନାରୀ-କପଟ ସ୍ତ୍ରୀ । ସେ ଘରର କାନ୍ଥରେ ଯେଉଁ ସବୁ ଚିତ୍ର ଲେଖା ଯାଇଛି, ସେଥିରେ ଶ୍ରୀକୃଷ୍ଣ ଯମୁନା କୂଳରେ ରାଧା ଗୋଡ଼ ଧରୁଛନ୍ତି, ରାମଚନ୍ଦ୍ର ସୀତାଙ୍କୁ ଗୃହି କରୁଛନ୍ତି, ଶିବ ସୁଧା ବଣ୍ଟନବେଳେ ବିଷ୍ଣୁଙ୍କ ମୋହିନୀରୂପରେ ଭୋଳ ହୋଇ ଗୋଡ଼ାଉଛନ୍ତି ।

୨୨ । ଶୋଭାଧନ୍ୟା—ଅତି ସୁନ୍ଦରୀ, ଛୁଟ ଯବନିକା—ଛୁଟ ପରଦା, ପ୍ରାଙ୍ଗଣ—ଦୁଆର । ଅତୁର କୁବେର ପର୍ବତରେ କଳାରୀ ସଙ୍ଗେ ରମଣ କରିବା, ହନୁମାନ ମାତା ଅଞ୍ଜନା ବାନରୀ ସଙ୍ଗେ ପବନ ମାତିବା, ବିଶ୍ୱାମିତ୍ର ମେନକାକୁ ଦେଖି ତପଗ୍ଲାନି ତା ସହିତ ମାତିବା ଇତ୍ୟାଦି ଚିତ୍ର ହୋଇଛି, ସେଠାରେ ଛୁଟ ପରଦା ମଧ୍ୟ ଟଣା ଯାଇଛି ।

ଚତ୍ର ମୋହନ୍ତ ଲୋହିତ ପୀତ ଶ୍ୱେତ ବାସେ ତେଲଙ୍ଗୀମଣ୍ଡଣି । ତତ୍ତ୍ୱମ କରି ଗୃମର ଖଦା ଫୁଲମାଳକା ଖଞ୍ଜିଲେ ପୁଣି । ସେ ଗୁଣି । ଯାହା ପାଶକୁ ଯେ ଶୋଭା ଜାଣି । ଗୃହ ଦର୍ପଣ ଖଞ୍ଜିଲେ ଅଣି । ଯଥା ଅର୍ଦ୍ଧେନ୍ଦୁ ତାରକା ଶ୍ରେଣୀ । ୨୩ ।

ହରିବାରଣଖୁରାତଳେ ସେ ସ୍ୱୀୟ ସ୍ୱୀୟବାରଣକୁ ଥୋଇ । ଯତନ ରତନ ପଲ୍ୟଙ୍କ ଅଙ୍କରେ କୋମଳ ଶେଯ ଶେଯାଇ । ସେ ଅଳୀ । ବିଶେଷତ ଶଙ୍କା ଏହା ଭାଳି । ନାଗେଶ୍ୱରକେଶରେ ମୂରୁଳୀ । ଦେଇ ସିଞ୍ଚିଲେ କର୍ପୁର ଧୂଳି । ୨୪ ।

ମୁକୁତାଝାଲର ମଣ୍ଡିତ ମୁକୁରବିତାନ ବାନ୍ଧୁ କେ ଛଳ । ବାଳୀ ଭାଳିଲେ ଅଳୀପରି ପୁରୁଷ ଥାଇଛି ମନରେ ଭାଳ । ସେ କହୁ । ସାକ୍ଷପଲ୍ୟଙ୍କ ଖୁରାରେ ଶୋହୁ । ଶିଖୀଚନ୍ଦ୍ରକ ବାଞ୍ଛଣା ନାହିଁ । ତାହା ପକାଇଥିବା ଗୋ ତହିଁ । ୨୫ ।

ସେବତୀଦଳ ବିଞ୍ଚି ସିଞ୍ଚି ଅତରେ ଶେଯାଇଲେ ଝୀନବାସ । ଏହୁ ବିଧାନରେ ଅବନୀଶଯ୍ୟାକୁ ବିରଚନ କଲେ ବେଶ । ସେ ନାରୀ । ବାରିପୂର୍ଣ୍ଣ କରି ଝାରଝରି । ନାନାଜାତି କୁସୁମକୁ ଭରି । ଥୋଇଗଲେ ସନ୍ନିକଟ କରି । ୨୬ ।

କୁନ୍ଦନ ପାତ୍ରରେ ଚନ୍ଦନ କର୍ପୂର ଅତର ପନ୍ନିର ଗୁଆ । ଲବଙ୍ଗ ଖଦିର ପୂଗଚୂର୍ଣ୍ଣପୂର୍ଣ୍ଣ ଭଙ୍ଗାପାନ ପାଶେ ଥୁଆ । ସେ ଦୀପ । ଜରିପଞ୍ଜରୀ ମଧ୍ୟରେ ଗୋପ୍ୟ । ରଖି ଗଲେ ସେ ଭର୍ତ୍ତ ସମୀପ । ବାଳା ହରଷକୁ ଅନୁରୂପ । ୨୭ ।

---

୨୩ । ଲୋହିତ—ଲାଲ, ଶ୍ୱେତ—ଧଳା, ପୀତ—ହଳଦିଆ, ଅର୍ଦ୍ଧେନ୍ଦୁ—ଅଧାଚନ୍ଦ୍ର, ତାରକା ଶ୍ରେଣୀ—ତାରାସବୁ ।

୨୪ । ହରି—ସିଂହ, ବାରଣ—ହାତୀ, ସ୍ୱୀୟସ୍ୱୀୟକ—ପିମ୍ପୁଡ଼ି, ଶଙ୍କା—ଭୟ, ନାଗେଶ୍ୱର କେଶର—ନାଗେଶ୍ୱର ଫୁଲକେଶର, ମୁରୁଳୀ—ଡଙ୍କିଆ ।

୨୫ । ମୁକୁର ବିତାନ—ଦର୍ପଣ ଚାନ୍ଦୁଆ, ଶିଖୀଚନ୍ଦ୍ରକ—ମୟୂର ପଙ୍ଖା ।

୨୬ । ଅବନୀ ଶଯ୍ୟା—ତଳ, ବାରି—ଜଳ ।

୨୭ । କୁନ୍ଦନ ପାତ୍ର—ସୁନାପାତ୍ର, ଖଦିର—ଖଇର, ପୂଗ—ଗୁଆ, ଭର୍ତ୍ତ ସମୀପ—କାନ୍ତ ପାଖରେ ।

ଗୃହ କପୋତୀ ପଢ଼ା ସାରୀସଂଘାତ ଭର ପଞ୍ଜରୀକୁ ନେଲେ । ରଜନୀ ଥିବା ଯିବାର ଜାଣିବାକୁ ପୁରପାଶେ ଲମ୍ବାଇଲେ । ସେ ପ୍ରଣି । ସୀତାପତି ରଘୁବଂଶମଣି । ଦିବ୍ୟ କାର୍ମୁକ ସାୟକପାଣି । ରୂପଇନ୍ଦ୍ର ବୀରବର ଭଣି ।୨୮।

## ଦ୍ୱାତ୍ରିଂଶ ଛାନ୍ଦ

( ଲାବଣ୍ୟବତୀର କେଳବେଶ ଓ କାନ୍ତ ପାଶକୁ ଗମନ )

ରାଗ—ମାଳବ

ରସିକ ଚାତକ ସୁଖ ଘନରସଦାୟୀ । ଏ ଛାନ୍ଦକୁ ଶୁଣିମା ସୁଜନେ ମନ ଦେଇ ଯେ । ୧ । କାନ୍ତା କାନ୍ତ ପ୍ରମୋଦ ରଜନୀରୂପେ ଆସି । ଜଗତକୁ ଆଚ୍ଛାଦ ରଜନୀ ପରକାଶି ଯେ । ୨ । ପିକ ନାଦେ କହିଲା କନ୍ଦର୍ପ ଅନୁକୂଳ । କଲା ତରୁଣ ଦମ୍ପତି ବେଗେ ହୁଅ ମେଳ ଯେ । ୩ ।

---

୨୮ । ଗୃହକପୋତ—ପାରା, ପଢ଼ାସାରୀ, ସଂଘାତ—ପଢ଼ିଲା ସାରୀମାନଙ୍କୁ, କାର୍ମୁକ—ଧନୁ, ଶାୟକ—ଶର, ପାଣି—ହାତ ।

ଚନ୍ଦ୍ରଭାନୁ କପରି କାମକେଳି କରିବାକୁ ହେବ, ଭାବିବାକୁ ଲାଗିଲା, ସଖୀମାନେ ହୀରାମାଳା ପାନିଆ, ଅତର, ଫୁଲ ଚନ୍ଦନ, ପାନ, ଦୀପ, ଜରି ବିଛଣା, ଚଉବଟାଳ ଗୃହରେ ଖଟ ଉପରେ ସଜାଇ ରଖିଲେ, ଯାହା କି ଇନ୍ଦ୍ରଭୁବନ ବା କୁବେର ପୁରଠାରୁ ସୁନ୍ଦର ଦେଖାଗଲା ।

## ଦ୍ୱାତ୍ରିଂଶ ଛାନ୍ଦ

୧ । ଘନରସ ଯେ ବର୍ଷା, ଚାତକ ପକ୍ଷୀ ଯେପରି ବର୍ଷାଜଳକୁ ସୁଖ ପାଏ, ରସିକମାନେ ଏ ଛାନ୍ଦକୁ ଶୁଣି ସେହିପରି ସୁଖୀ ହେବେ ।

୨ । ଆଚ୍ଛାଦ—ଢାଙ୍କି, ରାତି ହେବାରୁ ସ୍ତ୍ରୀ ପୁରୁଷର ଆମୋଦ ଯେ ରଜନୀ ରୂପରେ ଆସିଲା ।

୩ । ପିକ—କୋଇଲି, ନାଦ—ଶବ୍ଦ ।

ଏ ସମୟେ ଉଦୟ ହୋଇଲେ ସୁଧାକର । କରଣରେ ପ୍ରତଦଶ ଦଶିଲା ସୁନ୍ଦର ଯେ । ୪ । ତ୍ରିଯାମା ଅଲଙ୍ଗନରୁ ଏହୁ ଅନୁମାନ । କଲାଦେହେଁ ଯେମନ୍ତ ଚନ୍ଦନ ବିଲେପନ ଯେ । ୫ । କାଚଭିତ୍ତ ସ୍ଫଟିକସୋପାନ ବିମ୍ବାଧରେ । କ୍ଷୀରାର୍ଣ୍ଣବ ମିଶିଲା କି ଭାନୁସୁତାମାରେ ଯେ । ୬ । ରବିତାପ ଶାନ୍ତ ଅର୍ଥେ କିବା ପରମେଷ୍ଠୀ । ଘନସାର ଚୂର୍ଣ୍ଣରେ ପୂରିତ କଲା ସୃଷ୍ଟି ଯେ । ୭ । ଖଣ୍ଡପରଶୁ ଭୂଷଣ ଖଣ୍ଡପର୍ଶୁଧର । ସୁଧାରେ ଧବଳଦେଲା କି ବସୁଧାପୁର ଯେ । ୮ । ପ୍ରଦୋଷସଙ୍ଗ ଯେ କ୍ଷଣଦାର ହୋଇଥିଲା । ଏଣୁ କି ନିପଥ ଗଙ୍ଗାଜଳେ ସ୍ନାନ କଲା ଯେ । ୯ । ସ୍ୱୀରକରଥପଦ କି ବିଶ୍ୱ-ଜୟ ପାଇଁ । ଚନ୍ଦ୍ର ବ୍ୟାଜେ ମନସିଜ ଫିଙ୍ଗିଛୁ ବୁଲାଇ ଯେ । ୧୦ । ପୂର୍ବରୁ ତ ପାରାବାରୁ ଦେଇଅଛୁ ପାଣି । ଅନାଇଁ ବିଯୋଗୀ କଲେ ମଲାଇ ଭ୍ରଲେଣି ଯେ । ୧୧ । ଦେଖି ପ୍ରାଚୀ-ନିଷାଦ ପଦ୍ମିନୀ ବ୍ୟଭ୍ରଗ୍ରୁର । ଛଡ଼ାଇ ନେଇଛୁ ଏକ ତାହଙ୍କ କି ତାର ଯେ । ୧୨ । ମୋହନମିତ ମର୍କତନାୟକ ବିରାଜ । କଳଙ୍କ ବୋଲେ ଯେ ଏହା ନ ପାରଇ ହେଜ

---

୪ । ସୁଧାକର—ଚନ୍ଦ୍ର, ପ୍ରତଦଶ—ପ୍ରତ୍ୟେକ ଦଗ,

୫ । ତ୍ରିଯାମା—ରାତି,

୬ । କାଚଭିତ୍ତ—କାଚକାନ୍ଥ, ସୋପାନ—ପାହାଚ, କ୍ଷୀରାର୍ଣ୍ଣବ—କ୍ଷୀରସମୁଦ୍ର, ଭାନୁସୁତା-ଯମୁନା । କାଚବାଡ଼ ପାଖରେ ସ୍ଫଟିକର ପାହାଚ, କ୍ଷୀରସମୁଦ୍ର ଯମୁନା ସଙ୍ଗେ ମିଳିଲା ପରି ଜଣାଗଲା ।

୭ । ରବିତାପ—ଖରା, ପରମେଷ୍ଠି-ବିଧାତା, ଘନସାର—କର୍ପୂର ।

୮ । ଖଣ୍ଡ ପରଶୁ ଭୂଷଣ-ମହାଦେବର, ଖଣ୍ଡ ପରଶୁଧର—ରାଜମିସ୍ତ୍ରୀ, ବସୁଧାପୁର—ପୃଥିବୀ ରୂପକ ଘର, ସୁଧାରେ-ଚୂନରେ, ଅମୃତରେ ।

୯ । ପ୍ରଦୋଷ—ସନ୍ଧ୍ୟା, କ୍ଷଣଦା—ରାତି, ତ୍ରିପଥା—ତିନି ବାଟ, ଗଙ୍ଗା ଏଠାରେ ଗଙ୍ଗା ସ୍ୱର୍ଗ,ମର୍ତ୍ତ୍ୟ,ପାତାଳ ତିନି ପୁରକୁ ଗଲା ପରି ଜଣାଗଲା ।

୧୦ । ରଥପଦ—ଚକ, ବିଶ୍ୱଜୟ—ପୃଥିବୀକୁ ଜୟ କରିବା, ଚନ୍ଦ୍ରବ୍ୟାଜେ-ଚନ୍ଦ୍ର ଛଳରେ, ମନସୀଜ—କନ୍ଦର୍ପ ।

୧୧ । ପାରାବାର—ସମୁଦ୍ର, ଚନ୍ଦ୍ରତ ସମୁଦ୍ରରୁ ଜନ୍ମ ।

୧୨ । ନିଷାଦ—ଶବର, ଡଗର, ତାହଙ୍କ—କର୍ଣ୍ଣାଳଙ୍କାର ପଦ୍ମ ସୂର୍ଯ୍ୟ ଦେଖିଲେ ଫୁଟେ, ଭ୍ରମରମାନେ ଅସନ୍ତ ତେଣୁ ପଦ୍ମ ବୁଜେ ।

୧୩ । ଯେହୁ ତାହଙ୍କ ମୋତ ତଥର ପୁଣି ମର୍କତ ନାୟକ—ଯେ ଶ୍ରେଷ୍ଠ ମର୍କତ ସେଥିରେ ଦିଆଯାଇଛୁ, ଏହା ନ ବୁଝି ଚନ୍ଦ୍ରରେ କଳଙ୍କ ଏହା ଭୁଲକରି କହନ୍ତି ।

ଯେ । ୧୩ । ଗଗନ କାନନେ ଅଙ୍କୁରିଲଅଛୁ ଧାତା । ରଜତଅଲବାଲରେ
କି ତମାଲଲତା ଯେ । ୧୪ । ପୁଣି ନିର୍ମଳ ତାରକା ଦେଖି ସେ ଗଗନ ।
ପ୍ରଫୁଲ୍ଲିତ ମଲ୍ଲି ବାଟୀ ପରାୟେ ରଞ୍ଜନ ଯେ । ୧୫ । ଯାମିନୀ-ନବକାମିନୀ
ମୁଖ କଳାକର । ଗୁରୁ ଲୋଚନରେ ହୋଇଅଛୁ ମନୋହର ଯେ । ୧୬ ।
ସେ ଲୋଭେ ପାରଦ ଗର୍ଭରୁ ଉଛୁଳି ଧଇଲା । ନଭେ ବାଷ୍ପ ହୋଇ କି ତାରକା
ବୋଲାଇଲା ଯେ । ୧୭ । କଣ୍ଟେ କାଟିଲି ପୁଷ୍କର ଆକାଶମଣ୍ଡଳ । କି
ଜଳପୃଷନ୍ତୀମାନ ପଡ଼ି ଟଳଟଳ ଯେ । ୧୮ । ଶିତିପଦ କେଶରେ ପୁଣି
ବିଭ୍ରାଜମାନ ସେ । ମତ୍ତ ମଧୁବ୍ରତ ତହିଁ ଚୟେ ଲୋଭବଶେ ଯେ । ୧୯ ।
ନିଶାରେ ପ୍ରକଟ ବୋଲି ପ୍ରସାର ହୋଇଛୁ । ରତିକାଳ ବୋଲି କି ହୃଦରେ
ଦେଖାଉଛୁ ଯେ । ୨୦ । ତାରାକୁଳ ଛଳେ ଯୁବାଜସୁଯଶ ବାନ୍ଧି । ଜାଣିଲି
ମାର ଚନ୍ଦ୍ରର ସୁମିତ୍ରତା ଅଛୁ ଯେ । ୨୧ । ଉଦ୍ଦୀପନ କାରକ ଗୁହଦନୀ ନିଶି
ଦେଖି । କଲେ ବେଶ ଜେମାକୁ ଚତୁରୀ ପ୍ରାଣସଖୀ ଯେ । ୨୨ । କେଶ

---

୧୪ । ଗଗନେ କାନନେ—ଆକାଶ ଓ ବଣରେ, ଅଙ୍କୁରିଛି—ଲଗାଇଛୁ, ରଜତ ଅଲବାଲ—ରୂପା ମଦାରେ ତମାଲ ଲତା ଲଗାଇଛୁ ।

୧୫ । ନିର୍ମଳ ତାରକା—ପରିଷ୍କାର ତାରାସବୁ, ପ୍ରଫୁଲ୍ଲିତ ମଲ୍ଲୀ ବାଟି—ଫୁଟିଲା ମଲ୍ଲୀଫୁଲ ବଗିଚା । ଆକାଶରେ ତାରା ପଡ଼ି ଥିବାରୁ ଯେପରି ଫୁଲ ବଗିଚା ପରି ଦେଖାଯାଉଛୁ ।

୧୬ । ଯାମିନୀ ନବକାମିନୀ—ରାତି ରୂପକ ନୂଆସ୍ତ୍ରୀ, କଳାକର—ଚନ୍ଦ୍ର,

୧୭ । ପାରଦ—ପାରା, ପାରା ଖଣିରେ ଥାଏ ତାହା ସ୍ତ୍ରୀ ମୁହଁଦେଖି ଉଛୁଳି ଆସେ ସେ ପାରା ଆକାଶରେ ବୁଣି ହୋଇ କଣ ତାରା ବୋଲାଇଛୁ ।

୧୮ । ଆକାଶ ମଣ୍ଡଳ ହେଲାପଦ୍ମ—ତା ପାଖରେ ଜଳବିନ୍ଦୁ ଟଳଟଳ ହେଉଅଛୁ । ପୁଷ୍କର—ପଦ୍ମ । ପୃଷନ୍ତ—ବିନ୍ଦୁ ।

୧୯ । ଶିଶଦ କେଶରେ—ବେଣୀ ଘନକେଶରେ, ବିରାଜମାନ-ବିଦ୍ୟମାନ, ମତ୍ତମଧୁବ୍ରତ—କାମାନ୍ଧ ଭ୍ରମର ।

୨୦ । ପଦ୍ମ ଦିନରେ ଫୁଟେ—ମାତ୍ର ଏହା ରାତିରେ ଫୁଟିକରି ପ୍ରକାଶ ହୋଇଛୁ ବୋଲି ରତି ସମୟ ବୋଲି ମନରେ ଜାଗ୍ରତ କରୁଛୁ ।

୨୧ । ମାର—କନ୍ଦର୍ପ ଓ ଚନ୍ଦ୍ରର ମିତ୍ରତା ଅଛୁ, ତେଣୁ ତାରାମାନେ ରାତିରେ ଉଜ୍ଜ୍ୱଳ ଭାବରେ ପଡ଼ି ଯୁବାଦମ୍ପ କରିବାକୁ ଜ୍ୟୋତି ବିସ୍ତାର କରିଛନ୍ତି ।

୨୨ । ଗୁହନୀ ନିଶି—ଅନ୍ଧକାର ରାତି, ଉଦ୍ଦୀପନ କାରକ—କାମଭାବ ଜାଗ୍ରତକାରକ ଜାଣି ଚତୁରୀ ସଖୀମାନେ ଜେମାକୁ ବେଶକଲେ ।

ବାନ୍ଧୁ ପଗୁରଲେ ରମଣୀମଣିଙ୍କ । ସଜାଡ଼ିବା ଜୁଡ଼ା କବା ବାନ୍ଧିବା ବେଣୀକ ଯେ । ୨୩ । ନାସିକାରେ ମୋତି ଦେଇ ଦେଖାଇଲା ତାକୁ । ଏ ନାଚ ଅଟଇ କରେ କିଙ୍କିଣୀ ବାଦ୍ୟକୁ ଯେ । ୨୪ । ଭଙ୍ଗି କଲେ ସଙ୍ଗିନୀ ମଣ୍ଡିବାବେଳେ ହାର । ଅଛୁ କି ନାହିଁ ଗୋ ଏଥି ସ୍ନେହ ସୁନା ପର ଗୋ ॥ କସ୍ତୁରୀ ଗୋଳୁ ସଜନୀ ଆରମ୍ଭିଲେ ଛଳ । ଉରଜ-ଚକ୍ରକୁ ପର ନ ସହିବ ଭାଲ ଯେ । ୨୬ । ଅଞ୍ଜନରଞ୍ଜ୍ ନୟନେ ବୋଇଲା କେ କେତେ । ଏ ଶର ବସାଇବାକୁ ଯୁବା ଧୈର୍ଯ୍ୟ କେତେ ଯେ । ୨୭ । ଅଙ୍ଗୁଳି କଟକ ମଣ୍ଡି ବୋଲନ୍ତି ବଗୁର । ଯେଉଁ କର ଗ୍ରହଣ ଯେ କରିବ କୁମର ଗୋ । ୨୮ । ସୁବେଶ ସମ୍ପୂର୍ଣ୍ଣ ହେବାଯାଏ ଠାବେ ଠାବେ । କେତେ କହିବା କହିଲେ ଯେତେ ହାସଭାବେ ଯେ । ୨୯ । ଦର୍ପଣ ଦେଖାଇ ସଖୀଗଣେ ପ୍ରଶଂସଇ । ଏ ବେଶକୁ ସୁନ୍ଦରୀ ଉତ୍ତମ-କାନ୍ତ ପାଇଁ ଯେ । ୩୦ । ମଣ୍ଡିଲା ପରାଙ୍ଗେ କାମ କନକ ପରଭା । ବାସ ପିନ୍ଧାଇବାକୁ ତାହାକୁ କଲେ ଉଭା

---

୨୩ । କେଶ—ବାଳ ବାନ୍ଧିବା ବେଳେ ଲାବଣ୍ୟବତୀଙ୍କ ପଗୁରଲେ ଜୁଡ଼ା କି ବେଣୀ ପାରିବା ।

୨୪ । ନାସିକା—ନାକ, ନାକରେ ମୋତି ଦେବାରୁ ସେ ଭାବିଲା, ମନେହେଲା ପାଦର କିଙ୍କିଣୀ ନାଦରେ ନାକ ମୋତି ନୃତ୍ୟହେଲା ଅର୍ଥାତ୍ ନାକ ଫୁଲଇବାରୁ ତା ନାଚିଲାପରି ଜଣାଗଲା ।

୨୫ । ହାର-ହାର, ସଖିମାନେ ହାର ପିନ୍ଧାଇଲାବେଳେ ଛଳନା କରି କହିଲେ ଆଜ ଏ ହାରରେ ଶଙ୍କା ଅଛୁ ତ ତୁମ୍ଭେ ତ ବଡ଼ ସୁନାହାର ପାଇଛ ।

୨୬ । ସଖିମାନେ କସ୍ତୁରୀକି ଗୋଳାକରି ବୋଲଦେବା ସମୟରେ କହିଲେ, —ସୁନ୍ଦର ବକ୍ଷକୁ ଚନ୍ଦ କଲେ ଭାଲ ସହିବଟିକି ?

୨୭ । କୌଣସି ସଖୀ ଆଖିରେ କଳାଦେବାବେଳେ କହିଲା, କେଉଁ ଯୁବା ପୁରୁଷ ଏ ଶର ଘାତକୁ ସହି ପାରିବ ?

୨୮ । ହାତରେ ଖଡ଼ୁ ଓ ମୁଦି ପିନ୍ଧାଇ ଦେଲେ, କହିଲେ ତୋତେ ଦେଖିଲାକ୍ଷଣି ତୋର ସ୍ୱାମୀ ଏହି ହାତକୁ ଧରିନେବେ ।

୨୯ । ଏହିପରି ବେଶ କରିବା ସମୟରେ ସଖିମାନେ ଅନେକ ପ୍ରକାର ଥଟ୍ଟା ପରିହାସ କଥା କହିଲେ ।

୩୦ । ଆରସି ଦେଖାଇ ସଖିମାନେ ପ୍ରଶଂସା କଲେ ଏ ବେଶକୁ ଉପଯୁକ୍ତ ହେଲେ ହେଲା ।

୩୧ । ସୁନା କଣ୍ଢାଇକି ଲୁଗା ପିନ୍ଧାଇଲାପରି ଲାବଣ୍ୟବତୀଙ୍କ ଲୁଗା ପିନ୍ଧାଇ-ଦେବାରୁ ସେ ଲାବଣ୍ୟବତୀ କାମ ତେଜକୁ ମଳିନ କଲା ।

ଯେ । ୩୧ । ନିବିଡ଼େ ନୀବି ନିବାଡ଼ୁ ଭିଡ଼ି ବଦନକୁ । ଅଳୀ ପୃଚ୍ଛନ୍ତି ଏଡ଼େ କୋପ ପରା ମଦନକୁ ଗୋ । ୩୨ । ଯେତେଡ଼େ ଦୃଢ଼ ଚୀର କଲେ ପାରିବି କି ରଖି । ବୁଦ୍ଧି ସରିତକୁ ବାଲିବନ୍ଧ କି କି ସଖି ଗୋ । ୩୩ । ତେତେବେଳେ ତିଅରି କହୁଛନ୍ତି କେଉଁ ସଖୀ । ଦେହଳି ବଳି ଚଳିବା ସମୟରେ ତହିଁ ଗୋ । ୩୪ । ନାଥ ହାତ ଧରି ଗୃହେ ଥିଲି ନେବେ ତୋତେ । ମଥା ଟେକି କଥା ନ କହିବୁ ବଦ ରୀତି ଗୋ । ୩୫ । କୋଳେ ଧରନ୍ତି ଶେଯେ ଶସି ବସୁଥିବୁ ଟାଳି । ସୀତ୍କାର କରିବୁ ଖେଳାଇ କୋଣେ ତୋଳା ଗୋ ॥ କେ ବୋଲଇ ଅବଳା କୋମଳ ବୋଲି ତୁହି । ନୋହିବୁ କାତର କାନ୍ତ ବଳବନ୍ତ ଗୃହେ ଗୋ । ୩୭ । ପ୍ରଚଣ୍ଡ କିରଣେ ରବି ତୋଷଇ ନଳିନ । ଅଳି କେଳିରେ ନୁହଇ ଶିରୀଷ ମଳିନ ଯେ । ୩୮ । ଏକାଳେ କେଳି-ମନ୍ଦିରେ ବିଜୟୀ ନାଗର । ଦେଖିଲେ ସେ ଶୋଭା ମହା ଉଦ୍ଦୀପନକର ଯେ ॥ ବିଚାରଇ ଏକ୍ଷଣି ଆସିବ ସୁଲକ୍ଷଣୀ । ନାହିଁ ତାର ଗୃହକୁ ଗୃହୁରି ହୋଇ

---

୩୨ । ନିବିଡ଼େ-ଗାଢ଼ରେ, ନିବାଡ଼ୁ—ପିନ୍ଧୁ, ନୀବି-କଟିବସ୍ତ୍ର, ପ୍ରକୋପ-ରାଗ କୋପ—ରାଗ । ସଖୀମାନେ କହିଲେ, ମଦନକୁ ଏଡ଼େ ରାଗପରା ।

୩୩ । ଯେତେ ଟାଣରେ ପିନ୍ଧିଲେ ସେ କି ରହିବ । ବୁଦ୍ଧିସରିତ—ନଈ-ବଢ଼ିରେ ବାଲିବନ୍ଧ କି ସମ୍ଭାଳି ହେବ ?

୩୪-୩୫ । ଦେହଳି—ଦୁଆର ବନ୍ଧ, ବଳି—ଡେଇଁଯିବା ସମୟରେ କେଉଁ ସଖୀ କହେ, ସ୍ୱାମୀ ତୋର ହାତ ଧରି ଗୃହେ ଥିଲି ମିଠା କଥା କହି ପାଖକୁ ନେଲବେଳେ ତୁ ମୁଣ୍ଡଟେକି ତାଙ୍କ କଥା କହିବୁ ନାହିଁ ।

୩୬ । କୋଳରେ ଧରିଲେ ବେଳେ ତୁ ଶୋଇ ପଡ଼ୁଥିବୁ, ତୋର ତୋଳାକୁ ବୁକୁରେ ଖେଳାଇ ସମ୍ମତ ଜଣାଇବୁ ।

୩୭ । ତୁ ସରଳା ଓ କୋମଳାଙ୍ଗୀ ହେଲେ ସୁଦ୍ଧା ସ୍ୱାମୀର ଟାଣ ହସ୍ତକୁ ଡରିବୁ ନାହିଁ ।

୩୮ । ସୂର୍ଯ୍ୟକିରଣ ଅତି ପ୍ରଖର ହେଲେ ମଧ୍ୟ ପଦ୍ମକୁ ତୋଷ କରେ । ଭ୍ରମର ଶିରୀଷ ଫୁଲରେ ବସିଲେ ସେ ମଧ୍ୟ ମଳିନ ହୁଏ ନାହିଁ, ତୁ ସେହିପରି ।

୩୯ । ଏ ସମୟରେ ନାଗର କେଳି ମନ୍ଦିରକୁ ଗଲେ, ଦେଖିଲେ କେଳିଘର ଅତ୍ୟନ୍ତ ଜାକଜମକ ହୋଇଅଛି ।

୪୦ । ଏବେ—ଏକ୍ଷଣି, ଲାବଣ୍ୟବତୀ ଆସିବ ତାକୁ ବିନୟ କଥା କହିବାକୁ କଥା ତ ଅଛି ନାହିଁ ।

ବାଣୀ ଯେ । ୪୦ । ବୋଲନ୍ତି ଅବା ମୁଁ ପିଣ୍ଡ ତୁ ମୋର ଜୀବନ । ପିଣ୍ଡକୁ
ପରାଣ ଛାଡ଼େ ଦେଖିବ ଶମନ ଯେ । ୪୧ । ନୟନପ୍ରତିମା ବୋଲି ଭାଷିଲେ
ହସିବ । ଯାହାକୁ ଚାହିଁ ସେ ଦିଶେ ତହିଁ ପ୍ରତିବିମ୍ବ ଯେ ।୪୨। ରଙ୍ଗ ଚରଣେ
ଶରଣଜନ ମୁଁ ତୋହର । ବୋଇଲେ ସେ ସ୍ନେହାଧୀନା ହୋଇବ
କାତର ଯେ । ୪୩ । ତାକୁ କାତର କରାଇ ଯେଉଁ ବଡ଼ପଣ । ଏହୁପର
ସିନା ଯେତେ ବିନୟ ଭଅଣ ଯେ । ୪୪ । ଏ ରୂପେ ଭାବ ଭାବନା କରୁ
ନୃପସୁତ । ସଖୀଏ ଭାଷିଲ ମିଳି ସୁଦତୀପ୍ରବୃତ ଯେ । ୪୫ । ଜଠ ମଠ ନ
କର ମଦନମଦାଳସି । ନାଥ ପଥ ଚାହିଁଥିବେ ପଲ୍ୟଙ୍କରେ ବସି ଯେ । ୪୬ ।
ବିଳମ୍ବର କାରଣ କି ପ୍ରଳମ୍ବକୁନ୍ତଳା । ପାହିଯିବ ରଜନୀ ନ ସରୁଁ ରତିଲୀଳା
ଯେ । ୪୭ । ଦରହାସି ହେବୁ ଦରକ୍ଷୁଧାତୁର ପର । ଏହା ଶୁଣି ବଦନ
ନୁଆଁଇ କୃଶୋଦରୀ ଯେ । ୪୮ । ଛଳରେ ଆଳୀଏ ରମ୍ଭାସଦୃଶୀ ସଙ୍ଗୀତ ।
କାମନା ସଫଳେ ମୁଖ ପୋତିବା ଉଚିତ ଯେ । ୪୯ । କେ ବୋଇଲା
ଦାଇବ ନେଇ ତା ସନ୍ନିଧାନେ । ଯାହା ଲପନକୁ ଦେଖି ନାହିଁ ଏ ସ୍ୱପନେ

---

୪୧ । କହନ୍ତି ମୁଁ ପିଣ୍ଡ, ତୁ ଜୀବନ, ମାତ୍ର ଏହା କହୁ ହେବ ନାହିଁ; କାରଣ ପିଣ୍ଡ ଜୀବନ ତ ଅଲଗା ହୁଏ, ଏଣୁ ସେ ଦୁଃଖିତ ହେବ ।

୪୨ । ମୁଁ ତାକୁ ଆଖିର ପ୍ରତିମା କହିଲେ ସେ ହସିବ, ଯାହାକୁ ଚାହିଁଛୁ ସେଠାରେ ସେ ଦେଖା ଯାଉଛୁ ।

୪୩ । ମୁଁ ତାକୁ କହୁଛି, ତୋର ଲାଲ ପାଦରେ ମୁଁ ଆଶ୍ରିତ ଜନ, ଏକଥା ଶୁଣି ସେ ସ୍ନେହବଶ ହୋଇ କାତର ହେବ ।

୪୪ । ତାକୁ କାତର କରିବାଠା ମୋର ଯେଉଁ ଠେକ ପଣ ହେବ, ଏହାପରି ସବୁ ବିନୟ କରନ୍ତି ।

୪୭ । ବିଳମ୍ବ-ଡେରିର କାରଣ କ'ଣ ହେବ, ପ୍ରଳମ୍ବ କୁନ୍ତଳା-ଲମ୍ବାବାଳ ଯୁକ୍ତା, ରତିଲୀଳା ନ ସରୁଣୁ ରାତି ଯେ ପାହିଯିବ ।

୪୮ । ଦର କ୍ଷୁଧାତୁର-ଅଧାଭୋକିଲ । ହେ ଦରହାସୀ ତୁ ଅଧାଭୋକିଲପରି ହେବୁ, ଏ କଥା ଶୁଣି ସେ ଲାବଣ୍ୟବତୀ ମୁଣ୍ଡ ନୁଆଁଇ ଦେଲା ।

୪୯ । ରମ୍ଭାପରି ଜଣେ ସଖି ଗୀତ ଛଳରେ କହିଲା, କାମନା ଫଳବତୀ ହେବାରେ ମୁହଁ ପୋତିବା ଠିକ୍ ।

୫୦ । କିଏ କହିଲା, ଯାହାର ମୁହଁକୁ ଦିନେ ଦେଖି ନାହିଁ ଯେ ଅଚାନ୍ଦା, ତା ପାଖକୁ ବଧାଢା ନେଇଛୁ ।

ଯେ ।୫୦। କି କରିବି କି ବୋଲିବି ବିଳମ୍ବ ଏଥିକି । ଏ ବିଗ୍ରହ ଛୁଟାଇ
ବାହାର ହେବାଟିକି ଯେ ।୫୧। କେ ଭୃଷଇ ନ ଅସଇ ଏ କଥା ମନକୁ ।
ଯାହାବୋଲେ ଛାଡ଼ ଦେବ ପିନ୍ଧାବସନକୁ ଯେ । ୫୨ । ତାହା ପାଶେ
ଯିବାକୁ କରୁଛୁ କିପାଁ ଲାଜ । ନ ଜାଣେ କି ସେ ନାଶ ହୋଇବ ବୋଲି
ଅଜ ଯେ । ୫୩ । ରହୁଥିଲେ କହୁ ହେଉଥିବେ ଏହୁ ବାଣୀ । ଗମନ
ମନ୍ତ୍ରର ଏହା ଶୁଣି ଗୁଣମଣି ଯେ । ୫୪ । ଚେଳପୁର ଦିଶୁଁ ଅତି ମନ୍ଦ କଲା
ଗଲି । ହସିବ ହସିଲା ହୋଇ ସଜନୀଏ ବୋଲି ଯେ । ୫୫ । ଅମ୍ଭେ
ସଙ୍ଗେ ଥିଲାକୁ କି ହେଉ ରହି ବହି । ତୁ ଛାଡ଼ିଲୁ ବୋଲି ଅମ୍ଭେ ଛାଡ଼ିବୁଁ
କି ସ୍ନେହ ଗୋ । ୫୬ । ତୋତେ କାନ୍ତକୁ ସମର୍ପି ଦେବାଯାଏ ଥିବୁଁ ।
ରହି ସ୍ଥାନ ନିକଟରୁ ଅହଜେ ରହିବୁଁ ଗୋ । ୫୭ । ଜଣେ ବୋଇଲାରେ
ଏମାନଙ୍କ କଥା ସ୍ମର । ଭାବ ଦାନେ କୃପଣ ନୋହିବୁ କୃଶୋଦର ଗୋ ॥
ଶିଖାଇ ଦେବାର ବୁଦ୍ଧି କେତେବେଳେ ଥାଇ । ହଂସ ଶ୍ୱେତ ଶିଖୀ ଚିତ୍ର
କେ କରିଛି ସିଦ୍ଧ ଗୋ । ୫୯ । କଥା କଥାକେ ଏଣିକି ଉଅଇବ ଛନ୍ଦ ।
ଯେତେ ମନ ଦେଲେ ପାଇବା ନିକି ହୃଦ ଗୋ । ୬୦ । ଏତେ ବୋଲି
ଗଲି ବୋଲେ କେ ରସନିଧିକି । ଶୁଭିଲା ନୂପୁର ନାଦ କାନ୍ତ ସନ୍ନିଧିକି
ଯେ । ୬୧ । ପଥମେ ପାଞ୍ଚିଲା କାମ ଜୟତୂର ବାଜା । ମୋହ ଉପରକୁ
କି ଅସୁଛି ଦଣ୍ଡ ସାଜ ଯେ । ୬୨ । ଘଣ୍ଟିନାଦେ ମୃଗ ପ୍ରାୟ ଚେକିଲା
ଶ୍ରୁତିକି । ଜାଣିଲା ଅସଇ ରସବତୀ ମୋ କତିକି ଯେ । ୬୩ । ଦ୍ୱାରପାଶେ
ଅସି କାନ୍ତ ଦେଖିଲା ସୁନେତ୍ରା । ରତି କି ଅସଇ କରି ନାସ୍ତି ରଥଯାତ୍ରା ।

---

୫୧ । କି'ଣ କରିବି, କି'ଣ କହିବି, ଡେରିର କାରଣ ।
୫୩ । ନାଶ—ବିନାଶ ।
୫୭ । ରହି ସ୍ଥାନ—ରହିବା ଜାଗା ।
୫୮ । ଜଣେ ସଖୀ ଏମାନଙ୍କ କଥା ସ୍ମରି ମନେ କରି କହିଲା,
ଭାବଦାନେ—ପ୍ରେମଦାନେ, କୃପଣ-ଲୋଭୀ ହେବୁ ନାହିଁ ।
୫୯ । ହଂସକୁ ଶ୍ୱେତ କି ଧଳା, ଶିଖୀ—ମୟୂରକୁ ଚିତ୍ରିତ କିଏ କରିଛି,
ତାର ଏ ସବୁ କଳା ଶିଖାଇ ଦେବା ବୁଦ୍ଧି କେତେବେଳେ
ଯାଏ ଥିବ ।
୬୦ । ଛନ୍ଦ—କପଟ ।
୬୨ । ଜୟତୂର—ବିଜୟତୂରୀ, ଦଣ୍ଡ—ବଳ ।
୬୩ । ଶ୍ରୁତିକୁ—କାନକୁ ।

ଯେ । ୬୪ । ଲୀଳା କରୁଛନ୍ତି କିବା ହେମପୁଷ୍ପଲତା । ଏ ଜଡପାରୁଁ ପଡ଼ିବ ସ୍ଥେଲେ ଚଞ୍ଚଳତା ଯେ । ୬୫ । କାଞ୍ଚି ଅଞ୍ଚଳର କୁନ୍ତଳ ଆକର୍ଷଣ ହେବ । ମାଳବରେ ଛନ୍ନଭିନ୍ନ ଦଶା ପଡ଼ିଯିବ ଯେ । ୬୬ । ଅଙ୍ଗଦେଶରେ ହୋଇବ ଅଶେଷ ସଙ୍ଗର । ପୁଣି କାମପ୍ରଭା ଖେଳାଇଲ୍ ପରକାର ଯେ । ୬୭ । ସ୍ତୈର କରଅଛୁ ବାଳା ସବ ଶୋଭାଶୀଘ୍ର । ଏଣୁ ଆଣୁଛନ୍ତି କି ମଦନପାଶେ ଧରି ଯେ । ୬୮ । ଦନ୍ତନଖ ବାହୁପାଶେ ଦଣ୍ଡକୁ ପାଇବ । ବିଶେଷତଃ ପ୍ରେମଧନ ଦେଇ ମୁକୁଳିବ ଯେ । ୬୯ । ହୋଇଲା ମନ୍ଦରନେତ୍ରା ମନ୍ଦର ସମୀପ । ଗଲା ତ ମୋ ବଳମଣ ବିଗ୍ରହ କନ୍ଦର୍ପ ଯେ । ୭୦ । ବେନି ହୃଦୟ ଲକ୍ଷିକୁ କଲ ସେ ପ୍ରହାର । ରୋମାଞ୍ଚ ବ୍ୟାଜେ କି ପୁଣ୍ଡ୍ର ଅପଘନ ଶର ଯେ । ୭୧ । ରୁଧିର ଛଳେ କି ସ୍ୱେଦ ଜଳ ପରକାଶ । ନୋହିଲେଟି ସ୍ତମ୍ଭ-ବଶେ ସେ ବେନି ଅବଶ ଯେ । ୭୨ । ଏଠାରୁ ଏ ମନୋରମ ଛାନ୍ଦ ହେଲା ଶେଷ । ସୀତା ମଧୁଶଯ୍ୟା ଅର୍ଥେ ସେ ଗ୍ରନ୍ଥ ଉଲ୍ଲାସ ଯେ । ୭୩ ।

---

୬୫ । ଲୀଳା—ଖେଳା, ହେମ ପୁଷ୍ପଲତା—ସ୍ୱର୍ଣ୍ଣଫୁଲ ଲଟା, ଜଡପାରୁ—କାରଣରୁ ।

୬୬ । କାଞ୍ଚି—କାଞ୍ଚିଦେଶ, କାଞ୍ଚି—କଟିଭୂଷଣ, କୁନ୍ତଳ—କୁନ୍ତଳ ଦେଶ, କୁନ୍ତଳ-ବାଳ, ମାଳବ-ମାଳବ ଦେଶ, ମାଳବରେ-ମାଳ ସବୁରେ ।

୬୭ । ଅଙ୍ଗଦେଶ-ଅଙ୍ଗ ଦେଶ ବିଶେଷ, ଅଙ୍ଗଦେଶ-ଦେହ, କାମପ୍ରଭା—କାମତେଜ ।

୬୮ । ବାଳା ଯେ ସ୍ତ୍ରୀ ସମସ୍ତ ସୌନ୍ଦର୍ଯ୍ୟର ଶିଘ୍ରକୁ ସ୍ତୈର କରି ଥିବାରୁ ମଦନ କି କନ୍ଦର୍ପ ପାଶରେ ତାକୁ ଧରି ଆଣୁଛନ୍ତି ।

୬୯ । ଦନ୍ତ, ନଖ ଓ ବାହୁଭିଡ଼ାରେ ଏ ଦଣ୍ଡ ପାଇବ ମାତ୍ର ପ୍ରୀତିଦେଇ ଏଥିରୁ ଉଦ୍ଧାର ହେବ ।

୭୦ । ମନ୍ଦର ନେତ୍ରା-ସୁନ୍ଦର ନେତ୍ରୀ, ମନ୍ଦର-କେଳିପୁର, କନ୍ଦର୍ପ-ମାର ।

୭୧ । କାମାତୁରଙ୍କ ହୃଦୟକୁ ଲକ୍ଷ୍ୟ କରିଲା ତେଣୁ ଦୁହିଁଙ୍କ ଶରୀର ସ୍ଥଳରେ ରୋମ ଟାଙ୍କୁର ଉଠିଲା ।

୭୨ । ରୁଧିର-ରକ୍ତ, ଛଳେ-ଛଳନାରେ, ସ୍ୱେଦଜଳ-ଝାଳ ବାହାରୁଛି, ସମ୍ଭବ କ୍ଳାନ୍ତବଶରେ ଦୁହେଁ ଅବଶ ହୋଇଛନ୍ତି କି ?

ତାଙ୍କ ଚରଣ ପଙ୍କଜେ ମନ ଅବିରତ । ଉପେନ୍ଦ୍ରଭଞ୍ଜ ବୀରବର କହେ ଗୀତ ଯେ । ୭୪ ।

---

## ତ୍ରୟୋତ୍ରିଂଶ ଛାନ୍ଦ

( ଲାବଣ୍ୟବତୀ ଓ ଚନ୍ଦ୍ରଭାନୁର କେଳିଗୃହ ରହସ୍ୟ )

ରାଗ—ପଞ୍ଚମବରାଡ଼ି

କର୍ଣ୍ଣେ ମନ ମହୋତ୍ସବ ରସ ସାବଧାନ । ହୋଇ ଶୁଣ ସୁରସିକ ତରୁଣ ସଜ୍ଜନ ହେ । ଚକବାଳ ପର ଦେହଳୀକି ବାଳା ତହିଁ । ଅମ୍ବୁଜ ଅରୁଣ ପଦ ନ ପାରେ ବଳାଇ ଯେ । ୧ । ନଦୀ ଯାଇ ଯଥା ସିନ୍ଧୁ ସଙ୍ଗମରେ ଲଭି । ସେତୁ ଲଙ୍ଘି ନ ପାରିବା ଲକ୍ଷଣ ବଲ୍ଲଭୀ ଯେ । ଏ କସ ଗୋ ଭ୍ରମି ସଜନୀଏ ଦେଲେ ପେଲି । ବଲ୍ଲଭକୁ ଶୁଣାଇ ଏମନ୍ତ ବାଣୀ

---

୭୪ । ଅବିରତ—ସର୍ବଦା ।
ସଖିମାନେ ଲାବଣ୍ୟବତୀଙ୍କ ଅନ୍ତଃପୁରରେ ବେଶ କରି ନାନାପ୍ରକାର ଥଟ୍ଟାପରିହାସ କଥା କହି ଓ ସ୍ୱାମୀ ସଙ୍ଗେ ପ୍ରଥମରେ କପରି କଅଣ କରିବ ଶିଖାଇ କେଳିପୁରକୁ ଅଣି ଛାଡ଼ିଦେଇ ଗଲେ ।

---

## ତ୍ରୟୋତ୍ରିଂଶ ଛାନ୍ଦ

୧ । ଚକବାଡ଼-ଦିଗ୍‌ଶେଷ,ଦେହଳି-ଦ୍ୱାରବନ୍ଧ,ଅମ୍ବୁଜ-ପଦ୍ମ, ଅରୁଣ-ରକ୍ତିମ, ଚନ୍ଦ୍ର ସୂର୍ଯ୍ୟ ଦିଗ ଶେଷକୁ ଟପିଯାଇ ନ ପାରିଲା ଭଳି ଲାବଣ୍ୟବତୀ ତାର ଲାଲପଦ୍ମ ପାଦକୁ ଦ୍ୱାରବନ୍ଧକୁ ଡେଇଁକରି ଯିବାକୁ ଇଚ୍ଛାକଲା ନାହିଁ । ।

୨ । ସିନ୍ଧୁ-ସମୁଦ୍ର, ସେତୁ—ଧପାଳି, ବଲ୍ଲଭୀ—ସ୍ତ୍ରୀ, ନଦୀ ଯେପରି ସମୁଦ୍ରକୁ ଗଲାବେଳେ ବାଟରେ ବାଧା ପାଇଲେ ଅଗ ପଛକୁ ନ ଯାଇ ସ୍ଥିରହୁଏ ସେହିପରି ଲାବଣ୍ୟବତୀ ଦୁଆରବନ୍ଧ ପାଖରେ ଠିଆହୋଇ ରହିଲା ।





"ଲଜ୍ଜବଶେ ସେ ଯେ ଶେଯେ ଖସି ବସେ ତହିଁ,
ବଲ୍ଲଭ ଗୃହେ ଅରମ୍ଭେ ଅଧୋମୁଖ ହୋଇ ଯେ ।"

ବୋଲ୍ ଯେ । ଅମରେ ଭୋଗ କରନ୍ତୁ ରଙ୍ଗ ଶଶୀ ଶେଷ । ଲତାରୁ କଳିକା ଛାଣ୍ଡ଼ ତୋଳ ସୁମନସ ଯେ । ଦାରୁଭେଦକ ଭ୍ରମର ପଦ୍ମ ଫୁଲେ ଶୋଇ । ପୁନଃ ପୁନଃ ରସଭୋଗ ଉପଯୋଗ ପାଇ ଯେ । ୩ । ତୁମ୍ଭେ ତ ରସିକସିଂହ ହରଣୀ ସୁକେଶୀ । ବଳବନ୍ତର କି ଯଶ ଅବଳା ଧରସି ଯେ । ସେ ଛଳନ୍ତ ହେଲକୁ ଜେମାର ପ୍ରାଣସଖୀ । ତାହା ଦୁଃଖେ ଦୁଃଖୀ ଅମ୍ଭେ ତାହା ସୁଖେ ସୁଖୀ ଯେ । ୪ । ଅମ୍ଭେ ଜଣାଇବାର ଅଧିକ କଥା ସିନା । ଯେ ଯାହାର ତାକୁ କି ନଲାଗେ ତା ବେଦନା ଯେ । ଏତେ କହି କପାଟ ଓଟାର ଅଣି କଲ । ପୁର ପରସରରୁ ଅନ୍ତର ହେଲେ ଅଲି ଯେ । ୫ । ମୋହିନୀ ପୀୟୂଷକୁମ୍ଭ ବସନେ ଘୋଡ଼ାଇ । ଇନ୍ଦ୍ର ଅଗେ ଉଭା ହେଲ ପ୍ରାୟ ଶୋଭା ପାଇ ଯେ । କାନ୍ତ ଦେଖି ଏକାନ୍ତ କରକୁ ଧର କରେ । ମନ୍ଦପବନରେ ଯଥା ପଦ୍ମ ଲତା ଥରେ ଯେ । ୬ । ମାଳୀ ଚମ୍ପକ ମାଳିକା ଘେନାଲର ପର । ସେନେହବଶରେ ତାକୁ ସେ କୋଳରେ ଧର ଯେ । ଲାଜବଶେ ସେ ଯେ ଶେଯେ ଖସି ବସେ ତହିଁ । ବଲ୍ଲଭ ଗୃହୁ ଥରମ୍ଭେ ଅଧୋମୁଖ ହୋଇ ଯେ । ୭ । ହେଠ କଲେ ବଦନ ଚନ୍ଦ୍ରକୁ କୁଶକଟି ।

---

୩ । ସଖିମାନେ ଶୁଣାଇ କହିଲେ ଚନ୍ଦ୍ର ଯେ ଅମୃତ ଦେବତାମାନେ ତାହା ରଙ୍ଗି ପାନ କରନ୍ତୁ—ଲତା ନଭାଙ୍ଗି ପରି ନ ଛିଣ୍ଡାଇ ଫୁଲ ତୋଳନ୍ତୁ—ଭ୍ରମରମାନେ କାଠ ଫୁଟାଇଲେ ମଧ୍ୟ ପଦ୍ମଫୁଲର କିଛି କରନ୍ତି ନାହିଁ—ପଦ୍ମଫୁଲରେ ଶୁଅନ୍ତି, ତୁମ୍ଭେ ସେହିପରି ସଖି ଭୋଗ କରିବ—ଶଶୀ—ଚନ୍ଦ୍ର, ( ଚନ୍ଦ୍ରକଳା ), କଳିକା—କଢ଼ ।

୪ । ସୁକେଶୀ—ସୁନ୍ଦରୀ, ଅବଳା—ସ୍ତ୍ରୀ, ଧରସି—କଷ୍ଟଦେଇ ।

୫ । ପୁରପରସରରୁ—କେଳିଘର ନିକଟରୁ, ଅଳୀ—ସଖି ।

୬ । ବିଷ୍ଣୁ ମୋହିନୀ ରୂପରେ ସୁଧାକୁମ୍ଭ ଧରି ଦେବ ରାକ୍ଷସଙ୍କ ଅଗରେ ଠିଆ-ହେଲାପରି ଲାବଣ୍ୟବତୀ ସୁଧା କୁମ୍ଭ କି (କୁଚ)କୁ ନେଇ ସ୍ୱାମୀଅଗରେ ଠିଆହେବାରୁ କାନ୍ତ କି ସ୍ୱାମୀ ଏହା ଦେଖି କର କି ହାତକୁ ଧରିବାରୁ ପବନରେ ପଦ୍ମଲଟା ଥରିଲାପରି ଲାବଣ୍ୟବତୀ ଥରୁଥାଏ ।

୭ । ଚମ୍ପକ ମାଳିକା—ଚମ୍ପାମାଳା, ଶେଯେ—ବିଛଣାରେ, ଗୃହୁ—ବିନୟ ।

ଭାବେ ଅଜ୍ କେହ୍ନ ଯିବ ମୋର କାମ ତ୍ରୁଟି ଗୋ । ତା ଶରକୁ ନ କଲେ ନୟନ ପ୍ରତଶର । ନିରନ୍ତର ହେଉଥିବ ସିନା ଜର ଜର ଗୋ । ୮ । ବାରଣଗତି ଚରଣ ଶରଣଜନରେ । ଉଚିତ ପ୍ରଭୁ କପଟ ରଖିବା ମନରେ ଯେ । ତୋ ବାହାରେ ନାହିଁ ଅହା କରିବାକୁ ସାହା । ଯାହା ଇଚ୍ଛା ତାହା କର ଜଣାଇବି କାହା ଗୋ । ୯ । ଏ ବିନୟ ବାଣୀକି ଦ୍ୱିତୀୟା ତିଥି ତାର । କଣ୍ଠୁ ଉଦେ କରାଇଲା ହାସସୁଧାକର ଯେ । ରୁଚୁ ଚକୋର ଈକ୍ଷଣ ବିଳାସ ଉଲ୍ଲାସ । କ୍ଷଣକ ଭିତରେ କରି ଗଲା ପରକାଶ ଯେ । ୧୦ । ମୃଦୁଅଙ୍ଗୀ ଅଙ୍ଗୀକାର ଏ ଭଙ୍ଗୀରୁ ଜାଣି । ନେଇ ଚିବୁକେ ପୁରୁଷେ-ନିବେଶିଲା ପାଣି ଯେ । ଭୋଳ ହୋଇ କୋଳ କରି ଶ୍ରୀମୁଖ ଟେକିଲା । ଯୋଗଭଙ୍ଗୀ ଭଙ୍ଗୀସ୍ଥାନ ଥୟ ନ ରଖିଲା ଯେ । ୧୧ । ଭ୍ରମରେ ଏହି ବଦନ ଭ୍ରମରେ ସାରସ । ଚୁମ୍ବନ୍ତି ଭାବି ଚୁମ୍ବନ ଦେଇ ସେ ହରଷ ଯେ । ଅଙ୍ଗହାର କରି ହାର କରି ଅଲିଙ୍ଗନ । ଧୃତ କଲା ଘନସାର ଚନ୍ଦନ ଲେପନ ସେ । ୧୨ । ମନ ତାର ଅଧରପାନରେ ମତ୍ତ ଲଭେ । ରସନାରେ ରସ ଅସ୍ୱାଦନ କରି ଭାବେ ଯେ । ଏ ଥାଉ ଅମୃତ ପିଇ କି ଲଭନ୍ତି ଦେବେ । ମଧୁପଦେ ମଦମତ୍ତ ପିଶୁନ ଦାନବେ

---

୮ । କାମତମ-କାମଅନ୍ଧାର, ନିରନ୍ତର-ସର୍ବଦା ।

୯ । ବାରଣଗତି—ଗଜଗମନା ।

୧୦ । ଦ୍ୱିତୀୟା ତିଥି-ଦ୍ୱିତୀୟା ତିଥିରେ ଚନ୍ଦ୍ର ଯେପରି ବଙ୍କାହୋଇ ଉଦୟ ହୁଅନ୍ତି, ସେହିପରି ବିନୟ ବାଣୀରେ ଲାବଣ୍ୟବତୀ ବଙ୍କେଇ କରି ହସିଲା, ରୁଚୁ-ସୁନ୍ଦର, ଚକୋରଈକ୍ଷଣ-ଚକୋର ଅକ୍ଷି ଆନନ୍ଦରେ ଫିଟିଲା କି ଲାବଣ୍ୟବତୀର ଆନନ୍ଦର ଚିହ୍ନ ଦେଖାଗଲା ।

୧୧ । ମୃଦୁଅଙ୍ଗୀ-କୋମଳଅଙ୍ଗୀ, ଅଙ୍ଗୀକାର-ସ୍ୱୀକାର, ଭଙ୍ଗୀରୁ-ସ୍ୱଭରୁ ଚିବୁକ-ଓଷ୍ଠ, ପାଣି-ହାତ, ଯୋଗ ଭଙ୍ଗୀ—ଯୋଗଭଗ୍ନ କାରଣୀ, ଭଙ୍ଗୀସ୍ଥାନ-ମୁଖ ।

୧୨ । ଭ୍ରମରେ-ଭଅଁରମାନେ, ବଦନ-ମୁଖ, ଭ୍ରମରେ-ଭୁଲରେ ସାରସ—ପଦ୍ମ, ଅଙ୍ଗହାସ—ଅଙ୍ଗଚାଳନା ।

୧୩ । ଅଧରପାନ—ଓଷ୍ଠ ଚୁମ୍ବିବା, ରସନା—ଜିଭ, ଅସ୍ୱାଦନ—ଚାଖିବା, ମଧୁମଦେ—ମଦରେ, ପିଶୁନ—ମୂର୍ଖ, ଦାନବ—ଅସୁର ।

ଯେ । ୧୩ । ଭାବିଲା ଏ ମେରୁ ଉରଜକୁ ଧରି କରେ । ବାଞ୍ଛା କରି
ଅତି କେଉଁ ସ୍ୱର୍ଗ ପ୍ରାପତରେ ଯେ । କରଜ ଚଳାଇ ତନୁ ଶୋଭାକୁ
ଗ୍ରହିଲା । ଭାଳେ ଏତେକାଳେ ନୀପଫୁଲେ ନିସ୍ତାରିଲା ଯେ । ୧୪ ।
ରତିବଶେ ଦେଖି ତା ଚଞ୍ଚଳ ଛଟକକୁ । ମନେ ମନେ ନିନ୍ଦା କଲା ବିଦ୍ୟୁ-
ଚ୍ଛଟକକୁ ଯେ । କେତେବେଳ ମଦନେ ଆତୁର ସେ ଚତୁର । ନିବିଡ଼ ନୀବି-
ବନ୍ଧରେ ପକାଇଲା କର ଯେ । ୧୫ । ନିଷେଧିଲା କରଭୋରୁ କରି କରେ
କର । କରୀ ଧରି ହୋଏ ନିକି ମୃଣାଳସୂତ୍ରର ଯେ । ପୁଂସ କକ୍ଷମୂଳେ ଚିପି
ଦେଇ ନଖ ମୂନ । କୁଚାଗ୍ରେ ସମଗ୍ରେ କଲା ରସନା ଗୁଳନ ଯେ । ୧୬ ।
ଦଶନେ ଦଂଶନ କରି ଗଣ୍ଡମଣ୍ଡଳକୁ । ଗୁଳିଦେଲା ଚନ୍ଦ୍ର ଥିଲା ଶଶୀର
ସ୍ଥଳକୁ ଯେ । ଶୀତ୍କାର ଉକ୍ତି ରସିକା ହୋଇଲା ଅଜ୍ଞାନ । ବିଶେଷତଃ ମାଦକ
ପାନରେ ଯଥା ଜନ ଯେ । ୧୭ । ଘୋଷିଦେଲା ଲଲାଟପଟରେ ନେତ୍ର
ଦୁଇ । ବିବସନ କଲା କାନ୍ତ ଏ ସମସ୍ତ ଗ୍ରହି ଯେ । ତନୁ ତନୁଭିନ୍ନ ହେବ
କରି ଏ ବିଚାର । ଆପଣା ପିନ୍ଧିଲା ବସନହିଁ କଲା ଦୂର ଯେ । ୧୮ ।
ସେ ଶୋଭାରେ ଲୋଭା ହୋଇ ମନେ କଲା ପୁଣି । ସୁବର୍ଣ୍ଣ ବର୍ଣ୍ଣକୁ ନିଷ୍ଟେ
ଏକାଳେ ରସାଣି ଯେ । ବନ୍ଧଯୋଗେ ଧରି ଉରେ ଉର ଲଗାଇଲା । ଜିହ୍ୱା
ସ୍ଥଳ କଣ୍ଠ ଧୀର କରି ଫୁଙ୍କିଦେଲା ଯେ । ୧୯ । ଉରଜ ମଧ୍ୟୁ କରଜ ଅଣିଲା
ଚଳାଇ । ନାଭିରେ ଦେଲେ କନିଷ୍ଠାଙ୍ଗୁଳିକି ବୁଲାଇ ଯେ । ନିତମ୍ବେ
ହାଣ୍ଡୋଳ ଠୁକ୍ତି ଚେତନା ବସିଲା । ଭିଡ଼ି ମହାମତେ ରାମା ସୁରତେ ରସିଲା

---

୧୪ । କରଜ-ନଖ, ତନୁ-ଦେହ, ନୀପଫୁଲ-କଦମ୍ବଫୁଲ, ନଖରେ କୁଚକୁ ପୀଡ଼ା ଦଅନ୍ତେ ରୋମ ଟାଙ୍କୁରିଲାରୁ କଦମ୍ବଫୁଲର ଲକ୍ଷଣ ଜଣାଗଲା ।

୧୬ । ନିଷେଧିଲା-ମନାକଲା, କରଭୋରୁ—ସୁନ୍ଦରୀର ଜଙ୍ଘ, କରୀ—ହାତୀ, ମୃଣାଳ ସୂତ୍ର-ପଦ୍ମନାଡ଼ର ସୁତା, କକ୍ଷମୂଳେ-କାଖମୂଳରେ, କୁଚାଗ୍ରେ—ସ୍ତନ ଅଗରେ, ରସନା—ଜିଭ ।

୧୭ । ଦଶନ-ଦାନ୍ତ, ଦଂଶନ-କାମୁଡ଼ିବା, ଗଣ୍ଡମଣ୍ଡନ-ଗାଲ, ମାଦକ—ନିଶାଦ୍ରବ୍ୟ, ଅଜ୍ଞାନ-ମୋହ ।

୧୮ । ଲଲାଟପଟ-କପାଳ, ନେତ୍ର-ଆଖି, ବିବସନ-ଉଲଗ୍ନ, ତନୁ-ଦେହ, ଭିନ୍ନ-ଅଲଗା, ବସନ-ଲୁଗା ।

୧୯ । ରସାଣି—ପାଲିସ କରିବା, ଉର-ଛାତି ।

୨୦ । ଉରଜ-କୁଚ, କରଜ-ନଖ, ନାଭି-ନାହି, କନିଷ୍ଠାଙ୍ଗୁଳି-ଛାଣୀ-ଅଙ୍ଗୁଠି, ନିତମ୍ବ-ପିଚ୍ଛ, ରାମା-ସ୍ତ୍ରୀ, ହାଣ୍ଡୋଳ-ମାଡ଼ିବସି ।

ଯେ । ରତିପତି ଛଳେ ରତି ପତି ବିପରୀତ । କଙ୍କଣ ନୂପୁର ନାଦେ ପୁର
ଉଚ୍ଛୁଳିତ ଯେ । ପରସ୍ପରେ ହୋଇଲେ ଅଧର ପିଆପିଇ । ଏଣୁ ତେଣୁ
ଯହିଁରେ ଚୁମ୍ବନ ଦଅଦେଇ ଯେ । ୨୧ । ହାର ଜିଣି ମୁକୁଳି ପଡ଼ୁଛି ବାସ
ବେନି । ସେହି ଯାଉଛନ୍ତି ସଙ୍ଗେ ସଙ୍ଗେ ଲଜ୍ଜା ଘେନି ଯେ । କେଳିତଜନନୀ
ଜରାଭୀରୁ ଗୁରୁ ବାଦ । ସାକ୍ଷୀ କରି ରଖିଛନ୍ତି ପ୍ରଦୀପ ପ୍ରସିଦ୍ଧ ଯେ । ୨୨ ।
ରାଜସୁତ ରାଜା ହେଲି ବୋଲି ହୋଏ ତୋଷି । ସୁତନୁ ବିଶାଳ ଜାନୁସିଂହା-
ସନେ ବସି ଯେ । କେ ନଖରେ କ୍ଷତ କରେ କେ ପୀଡ଼ଇ ଦନ୍ତେ । କଲେ
ଜଘନ ପାର୍ଶ୍ୱଶୟନ ବନ୍ଧ ଯେତେ ଯେ । ୨୩ । ରମଣୀ ଇଷିବଚନେ
ପୁରୁଷ ହୁଂକୃତ । ବାଳା ନଖକ୍ଷତକୁ ପୁରୁଷ ମୁଷ୍ଟିଘାତ ଯେ । କି କରନ୍ତି
କି ବୋଲନ୍ତି ନ ପାରନ୍ତି ଜାଣି । ପିତ୍ତରୋଗ ହୋଇଲେ ଅଧିକ ଯଥା
ପ୍ରାଣୀ ଯେ । ୨୪ । ସନ୍ନିପାତୀ ପ୍ରାୟେ କ୍ଷଣେ କ୍ଷଣେ ଚନ୍ଦ୍ର ନାଡ଼ୀ । ବାତକା
ପରାୟେ ବେପଥୁରେ ଛନ୍ତି ଜଡ଼ି ଯେ । ଇଚ୍ଛା ହୁଏ ମନ୍ଦ ଶୀତଗନ୍ଧବହ ବହୁ ।
ଏ ବଡ଼ କାମନା ଏକା ରଜନୀ ନ ପାହୁ ଯେ । ୨୫ । ଏମନ୍ତ ଯେ ଦର୍ପଣ
ଗୃହୂଅ ପୁରେ ଥିଲା । ନାଗରୀ ଗୃହିଁଲା ଯୋଗେ ଓଲଟି ଦିଶିଲା ଯେ ।
ଲକ୍ଷେ ବୁଜି ନେଇ ମହାବ୍ୟାକୁଳ ତା ମତି । ସତେହେଁ ଅରମ୍ଭ କଲେ
ବିପରୀତ ରତି ଯେ । ୨୬ । ପୁଣି ବସ୍ତୁ ଫେଡ଼ି ଦେଇ ଅରତ ହୋଇଲା ।
ଖସିବାବେଳକୁ କାନ୍ତ ମୋ ଅନ ବୋଇଲା ଯେ । ରହିଲା ଅଣଅଯୁକ୍ତେ ସେ
ସେହି ଠାଣିରେ । ନୃତ୍ୟ ଅଧିକାର ଦେଲା ନାସିକାମଣିରେ ଯେ ।୨୭। ସେ
ରତିମଧୁକୁ ଏ ଯେ ବରଷା ପ୍ରାୟୁକ । କିଙ୍କିଣୀ କେକନାଦରେ ମୁକ୍ତ ବାଳ-
ପିକ ଯେ । ଯୋଷାମୁଖେ ସ୍ୱେଦବିନ୍ଦୁ ଗୃହିଁ ପୁଂସ ଲୋଭ । ଇନ୍ଦ୍ର ଅମୃତ-

---

୨୧ । ହାରଜଣ—ହାରିବା ଜିଣିବା ।

୨୨ । ମୁକୁଳି—ଫିଟିବା, ବାସ—ଲୁଗା, ଜନନୀ-ମାତା, ଜରାଭୀରୁ-କନ୍ଦର୍ପ । କାମ ଯୁଦ୍ଧରେ ସ୍ତ୍ରୀ ପୁରୁଷ ଦୁହେଁ କିଏ ହାରିବ କିଏ ଜିଣିବ ବାଜି ରଖି ଲୁଗାକୁ ଘୁଡ଼ି ଲାଗିଥିବାରୁ ଲଜ୍ଜା ଲୁଗା ସଙ୍ଗେ ଯାଉଛି, ରତି ଓ କନ୍ଦର୍ପର-ଯୁଦ୍ଧପର ଏ ଲଟିଥିବାରୁ, ହାରଜିଣ ଦେଖିବାକୁ ଦୀପକୁ ସାକ୍ଷୀ ରଖି ଜାଳୁଛନ୍ତି ।

୨୩ । ସୁତନୁ—ସୁନ୍ଦରୀ, ବିଶାଳ-ବଡ଼, ଜାନୁ-ଜଙ୍ଘ ।

୨୪ । ବେପଥୁ-ଥରିବା, ଶୀତଳ ବହ-ଥଣ୍ଡା ପବନ । ହୁଂକୃତ-ହୁଙ୍କାର କରି ।

୨୬ । ଅରତ-ଅସ୍ଥିର, ଅନ-ଋଣ, ଅଣଅଯୁକ୍ତ-ସହଜ ।

ବିଧୁ ବଢ଼ିଲା ପ୍ରାୟ ଶୋଭା ଯେ । ୨୮ । କୁଚଗିରି ମାଡ଼ି ପଡ଼ିବାକୁ କରି
ଭୟ । ଚିତ୍ରାରିତ କରିଛନ୍ତି ଛଇଳ କର ଦ୍ୱୟ ଯେ । ଗାଢ଼ରତେ ଯଥା
ଭୀତ ଥିଲା ଯୁବତୀର । ଭାଜି ଯାଇ ଥାଇ ନୀବି ସରୁକଟି ମୋର ଯେ । ୨୯ ।
ଏମନ୍ତ ସମୟେ ଚୁମ୍ବି ବାଳା ଅବଶକୁ । ପୂର୍ଣ୍ଣ ପୁରୁଷ ଆରମ୍ଭେ ପ୍ରକୃତ
ରସକୁ ଯେ । ବିଗୁଡ଼ିଲା ମୋତେ ଏଥି ଯଶ ନାହିଁ ଆଜ । ଧନୁଶର
ପକାଇ ପଳାଇ ମନସିଜ ଯେ । ୩୦ । ବଲ୍ଲଭ ନେତ୍ର ବନ୍ଧାଇ ଯୁବତୀ
ରତନ । ତରତରେ ବେଢ଼ ଦେଇ ପିନ୍ଧିଲା ବସନ ଯେ । ପୁରୁଷ ଚତୁର
ଆଦର କରି ତତପରେ । ପ୍ରିୟକୁ ଘେନି ଶୟନ ପଲ୍ୟଙ୍କ ଉପରେ ଯେ ।୩୧।
ଶ୍ରମଧର୍ମଯୋଗେ କରି ନଖକ୍ଷତ ଜ୍ୱାଳା । ଶ୍ରମ ହେଲା ଏ ଘେନି ନ ଲଭେ
ନିଦ୍ରା ବାଳା ଯେ । ଗୃହେ କହେ ପ୍ରିୟ କଥା ଶୁଣିବାକୁ ପ୍ରିୟ । ଏ ସକାଶୁଁ
ନିଦ୍ରା ତାକୁ ନ କଲା ଆଶ୍ରୟ ଯେ ॥ ନିର୍ଲଜ୍ଜ କାମ ମଗଧରାଜା ପ୍ରାୟ ହୋଇ ।
ପୁଣି ଧାଡ଼ି ଦେଇ ଚିତ୍ତ ଉଚ୍ଛନ୍ନ କରାଇ ଯେ । ଏଣୁ ପ୍ରକାଶିଲେ ରତି ପୁଣି
ସେ ଦମ୍ପତି । ସେ ରାତଯାକ ଲଭିଲେ ଅଶେଷ ସମ୍ପତ୍ତି ଯେ । ୩୩ ।
ରମାକୁ କୋଳେ ବସାଇ ଫେଡ଼ି ବାତାୟନ । ରତାନ୍ତେ କରୁଅଛନ୍ତି
ବ୍ୟଜନ ଚାଳନ ଯେ । କାହାର କରରେ ସ୍ନେହେ କେ ନ ଦେଲେ ରଙ୍ଗ ।
କେଳି ତନୁ ଜଡ଼ିତ ଶୟନେ ମହାସୁଖୀ ଯେ । ୩୦ । ଏ ସମୟେ ନଷ୍ଟ
ନାଶ କଲେ ମନ୍ଦ ଘୋଷ । ଦରଶବଦେ ଲଭିଲେ ଷଣ୍ଠପୀ ବିରସ ଯେ ।
ନିଃଶ୍ୱାସ ବାର ଗଣିକା ଷଣ୍ଠପାଶୁଁ ଗଲେ । ଦୀପ ମଳିନ ଅନାଇଁ ବଧୂଏ
ଉଠିଲେ ଯେ । ୩୫ । ବାସରଶଯ୍ୟା ନାଗ୍ରିଶ ନିଶ୍ୱାସ ପକାଇ । ଅକାଶକୁ

---

୨୮ । ମଧୁ—ବସନ୍ତ ସମୟ । କେକାନାଦ—ମୟୂର ଶବ୍ଦ । ପିକ—କୋକିଳ ।
ଯୋଷା—ସ୍ତ୍ରୀ । ସ୍ୱେଦ—ଝାଳ । ବିଧୁ—ଚନ୍ଦ୍ର ।

୨୯ । କୁଚଗିରି—କୁଚପର୍ବତ, ଛଇଳ—ନାଗର, ଭୀତ-ଭୟ, ଭାଜି-ଭାଙ୍ଗି,

୩୦ । ଅବଶ—କ୍ଳାନ୍ତ, ମନସିଜ—କନ୍ଦର୍ପ ।

୩୧ । ବଲ୍ଲଭ—ପୁରୁଷ, ନେତ୍ର—ଆଖି, ବନ୍ଧାଇ ଜହାଡ଼ କରି ।

୩୨ । ଶ୍ରମଧର୍ମ—ଶ୍ରମଝାଳ, ଜ୍ୱାଳା—ପୋଡ଼ିବା, ଶ୍ରମ—କଷ୍ଟ ।

୩୩ । ନିର୍ଲଜ୍ଜ କାମ—ନିଲଠା ମଦନ, ମଗଧରାଜା—ଜରାସନ୍ଧ ।
ଜରାସନ୍ଧ କୃଷ୍ଣଙ୍କ ସଙ୍ଗରେ ଯୁଦ୍ଧକୁ ଯାଇ ଥରକୁ ଥର ହାରି ପୁଣି ନିର୍ଲଜ୍ଜ ପଣରେ ଧାଡ଼ିଦିଏ; ସେହିପରି ମଦନଶରେ ହାରି ସୁଦ୍ଧା ପୁଣି କାମଯୁଦ୍ଧ ଆରମ୍ଭ କରନ୍ତି ।

୩୪ । ରମ୍ଭା—ସ୍ତ୍ରୀ, ବାତାୟନ—ଝରକା, ବ୍ୟଜନ—ବିଞ୍ଚଣା ।

୩୫ । ମନ୍ଦଘୋଷ-କାକ, ଦର—ଶଙ୍କା, ଷଣ୍ଠପୀ—ଅସତୀ, ଗଣିକା—ବେଶ୍ୟା, ଷଣ୍ଠ—ଲମ୍ପଟ ।

ଗୃହିଁ ତାସ୍ର ମଳିନ ଅନାଇଁ ଯେ । ହାର ଶିଥିଳ ତାମ୍ବୂଳ ତକ୍ତ ଜାଣି ସ୍ରମା । ମନେ ମନେ ବଚୁରିଲ ବିନାଶ ନିଯାମା ଯେ । ୩୬ । ଏମନ୍ତେ ଗୃହିଁବ ଯାଇଁ ସଜ୍ଜନାଙ୍କ ମୁଖ । ସୁଖରୁ ତ ଅଧିକ ହୋଇବ ଲଜ ଦୁଃଖ ଯେ । ତାହାଙ୍କ ନ ଛଟୁଁ ଯିବ ବଚୁରି ରୁଚିଲି । ଇଷି ଭ୍ରଷି ଅଙ୍ଗ ମୋଡ଼ ହୋଇ ବାହାରିଲ ଯେ । ୩୭ । ବାଲା ପଛେ ପଛେ ଧବ ଶୋଭା ଦେଖିବାକୁ । ଅସିବା ବେଳକୁ ସେହି ଦ୍ୱାର ନିକଟକୁ ଯେ । ଜାଣି ସିହାଣୀ ରହିଲ ପଛ ହେଲ ବୋଲି । ଏ କାହାକୁ ନ ଯାନ୍ତି ସେନେହବଳେ ବଳି ଯେ ।୩୮। ଲଭ୍ରରେ ଲଭ୍ରରେ ପୁଂସ କଲ୍ ଅଲିଙ୍ଗନ । ବୋଇଲ ପାଶୁଁ ଯିବାକୁ ନ ଚଳଇ ମନ ଗୋ । ଛାଡ଼ି ଗଲେ ଜୀବ ଯିବ ଛାଡ଼ି ଏ ପରତେ । ଶୁଭିଲ ସଖୀମାନଙ୍କ ଚହଲ ଏମନ୍ତେ ଯେ । ୩୯ । ତରୁଣୀ ଚଞ୍ଚଳ ଯଥା ଯୂଥବଣା ଏଣୀ । ମୁଖେ ଚୁମ୍ବ ଦେଇ ପୁଂସ ହୋଇଲ ମେଲଣି ଯେ । ମିତ୍ରଙ୍କ ସଙ୍ଗତେ ଯାଇ ହେଲ ପରବେଶ । ହାସ୍ୟ ନ କଲେ କରେ ଦେଖାଇ ଅଦରଶ ଯେ ।୪୦। ତଦୁତ୍ତରେ କେଳିପୁରୁଁ ବାହାର ସୁନ୍ଦର୍ରୀ । ମନ୍ଦେ ମନ୍ଦେ ଅସେ ଭର୍ତ୍ତ ଅବଲମ୍ବ କରି ଯେ । ଅଳସ ଗୃତୁରି ପ୍ରିୟସଖୀ ପ୍ରତଭ୍ରଷ । ଅର ଛାନ୍ଦେ ଶୁଣିବ ଏ ଛାନ୍ଦ ହେଲ ଶେଷ ଯେ । ଜାନକୀକୁଚ କୁଙ୍କୁମ ଅଙ୍କିତ ହୃଦୟୁ । ମୃନିଜନ ଚିତ୍ତେ କାମ ବିକାର ଉଦୟୁ ଯେ । ତାରକ ତାରକ ମନ୍ତ୍ର ଯାହା ନାମ ଶୁଣି । ଉପଇନ୍ଦ୍ର ବୀରବର ସେହି ସ୍ରମ ଗୁଣି ଯେ । ୪୨ ।

---

୩୬ । ବାସରଶଯ୍ୟା-ବିବାହଦିନ ସ୍ତ୍ରୀବର ଶୋଇବା ଘର, ନାସ୍ରଶ-ନାସ୍ରୀଶ୍ରେଷ୍ଠ, ତାମ୍ବୂଳ-ପାନ, ତକ୍ତ-ପିଢ଼ା, ଶିଥିଳ-ଢ଼ିଗୁଲା, ନିଯାମା-ସ୍ରାତ୍ରି ।
୩୮ । ଧବ—ସ୍ୱାମୀ ।
୩୯ । ଲଭ୍ରରେ ଲଭ୍ରରେ—ଠିଆ ଠିଅରେ, ଅଲିଙ୍ଗନ—କୋଳ ।
୪୦ । ଚଞ୍ଚଳ—ଶୀଘ୍ର, ଅସ୍ଥିର, ଯୂଥବଣା—ଦଳଛଡ଼ା, ପଲ ଛାଡ଼ିଥିବା, ଏଣୀ—ମୃଗୀ, ଅଦରଶ—ଆରସି ।
୪୧ । ଭର୍ତ୍ତ—କାନ୍ତ, ଅବଲମ୍ବନ—ଆଶ୍ରୟ ।
୪୨ । ସ୍ରମତାରକ ମନ୍ତ୍ର—ତାରକ ମନ୍ତ୍ର, ତାରକ—ତ୍ରାଣକର୍ତ୍ତା ।

ଲବଣ୍ୟବତୀକୁ ଚନ୍ଦ୍ରଭାନୁ ନାନାଦି ଗୃହୁ ବାହ୍ୟ କୋଳକୁ ନେଲବେଳେ ଲବଣ୍ୟବତୀ ଅନେକପ୍ରକାର ଛଟା କଲ; କିନ୍ତୁ ସ୍ନେହବଶରେ କ୍ରମେ ଅଲିଙ୍ଗନ—ଚୁମ୍ବନ ନଖକ୍ଷତ ଇତ୍ୟାଦିରେ ଉନ୍ମତ୍ତ ହୋଇ ଦୁହେଁଯାକ ମିଳନ ସୁଖ ଅନୁଭବ କଲେ । ଥରକୁ ଥର ଏହିପରି ମିଳନରେ ମତ୍ତହୋଇ ସକାଳ ହେବାରୁ ଦୁହେଁଯାକ କେଳିଘରରୁ ବାହାରକୁ ବାହାରି ଅସିଲେ ।

# ଚତୁସ୍ତ୍ରିଂଶ ଛାନ୍ଦ

( ଲାବଣ୍ୟବତୀ କେଳିପୁରରୁ ଆସନ୍ତେ ସଖୀମାନଙ୍କ ନାନାପ୍ରକାର ଥଟ୍ଟା )

ରାଗ—କଲ୍ୟାଣ ଅହାରୀ

କେଳିସଦନୁ ବାହୁଡ଼ି ପଥ ହୁଡ଼ି ଆସିବା ବେଳେ ସୁକେଶୀ ଯେ । କୋକିଳଭାଷୀଙ୍କି ଭାଷିଲ ଏମନ୍ତ କେଉଁ ପରିହାସୀ ହସି ଯେ । ସୁନ୍ଦରି । ଛନ୍ଦ ଛନ୍ଦ ମହୀଶୋଭି ରେ । କରୁଛୁ ବାଟର କେଉଁ ସୁକୃତରୁ ଭ୍ରମର କେତକୀ ଲଭି ଚରେ । ୧ । କ୍ଷିତିପତି ରଣପରାଜୟୁ ତୁରି ପରାୟୁ ନୂପୁର ବାଜେ ରେ । ଖସିପଡ଼ିବାରୁ ନିତମ୍ବ ଉପରୁ ତଳି ଏ ବସନ ରାଜେ ରେ । ସୁନ୍ଦରି । ଖେଦ ପାଇ ଯୁଦ୍ଧବଶେ ରେ । ଖସିଯାଉଛି କି ଯୋଦ୍ଧାମସ୍ତକରୁ ଉଷ୍ଣୀଷ ଏମନ୍ତ ଦିଶେ ରେ । ୨ । ଗୃହୁ ଚଞ୍ଚଳ ଈକ୍ଷଣ କ୍ଷଣେ କ୍ଷଣେ ଭଜୁଅଛୁ ସୁଲକ୍ଷଣୀ ରେ । ଗଜରିପୁ ଆଗେ ପଡ଼ିଥିଲ ଏଣୀ ହୋଇଛୁ କି ଗଣବଣୀ ରେ । ସୁନ୍ଦରି । ଗତ କଥା ଘେନି ମାରି ରେ । ଗୁଣି ପୁଣି ପରାଭବ ଭୀତି ଚିତ୍ତେ ଡରଡରେ ବନ୍ଦେ ଶରି ରେ । ୩ । ଘେନୁଛୁ

---

## ଚତୁସ୍ତ୍ରିଂଶ ଛାନ୍ଦ

୧ । କେଳିସଦନୁ—କେଳୀଗୃହରୁ, ହୁଡ଼ି-ଭୁଲି, ସୁକେଶୀ—ସୁନ୍ଦରୀ, କୋକିଳଭାଷୀଙ୍କି—କୋଇଲିପରି ଯେ କଥା କହେ ସେ ଲାବଣ୍ୟବତୀ, ପରିହାସୀ—ସଖୀ, ଭାଷିଲ—କହିଲ, ମହୀଶୋଭି—ପୃଥିବୀ ଶୋଭନୀ ।

୨ । କ୍ଷିତିପତି—ରାଜା, ଏଠାରେ ରାଜପୁତ୍ର, ରଣପରାଜୟୁ-ଯୁଦ୍ଧରେ ହାରିବା ଏଠାରେ କାମ ଯୁଦ୍ଧରେ ହାରିଯିବା, ନିତମ୍ବ—ପିଚ୍ଛା, ରାଜେ—ଶୋଭାପାଏ, ଖେଦ—ଦୁଃଖ, ଯୋଦ୍ଧା ମସ୍ତକରୁ—ବୀର ମୁଣ୍ଡରୁ ଉଷ୍ଣୀଷ—ପଗଡ଼ି ।

୩ । ଗୃହୁ—ସୁନ୍ଦରି, ଈକ୍ଷଣ—ଆଖି, ବନରିପୁ—ସିଂହ, ଏଣୀ—ମୃଗୀ ଗଣବଣୀ—ପଲଛଡ଼ା, ପରାଭବ—ହାରିବା ।

ମୃଗ ଯେପରି ସିଂହକୁ ଦେଖିଲେ ଏଣିକି ତେଣିକି ଚାହିଁ ଚାହିଁ ପଳାଏ ସେହିପରି ଲାବଣ୍ୟବତୀ କେଳିପୁରରୁ ବାହାରି ଏଣିକି ତେଣିକି ଅନାଇ ପଳାଉଛନ୍ତି ।

କୋକନଦମଦମର୍ଦ୍ଦନେ କରୁଛି ରଙ୍ଗ ଅସ୍ପଦ ରେ । ଘନେ ଦଣ୍ଡିବ ମଦ-
କଳମଦର ବ୍ୟକ୍ତ କି ମଦନମଦ ରେ । ସୁନ୍ଦର । କେନାଶେଣ ତୋର
ଭଲ ରେ । ଘୋର ବିଭାବରୀ ଅନିଦ୍ରିତ କର ପଦ୍ମମୁଦ୍ରିତ ନ କଲ
ରେ । ୪ । ନିଟିଳେ ମୃଗମଦ ବିନ୍ଦୁ ରହିଛି ଜାତହୋଇ ସ୍ୱେଦପନ୍ତ ରେ ।
ନିକଟେଁ ଅଳକା ଅହିବର ତରଳଗରଳ କରୁଛି ବାନ୍ତ ରେ । ସୁନ୍ଦର ।
ନୋହିଲେ ହେବ ଏମନ୍ତ ରେ । ନିଶୀଶ କଳଙ୍କ ନାଶ କରୁଥିଲା ପ୍ରକାଶ
ବିଧିରେ ଭୀତ ରେ । ୫ । ଚଟୁଲନୀରବିନ୍ଦୁ ଧାଡ଼ି ହୋଇ ଯେ ରହିଛି
ଅଳକାତଳରେ । ଚନ୍ଦ୍ରଅର୍ଦ୍ଧକୁ ଗ୍ରାସ କରି ରାହୁ କି ଖଣ୍ଡିଣ ଗଲା
ଚପଳରେ । ସୁନ୍ଦର । ଶୈକ୍ଷଦନ୍ତଯୋଗେ ତାର ରେ । ଚିନ୍ତନ କରୁଛି
ସ୍ଫୋଟକନିକର ଦଶେ ମନୋହରତର ରେ । ୬ । ଛୁଡ଼ପଢ଼ିଲା ସୁଜ୍ୟୋତି

---

୪ । କୋକନଦ—ରକ୍ତକଇଁ, ମଦ—ଗର୍ବ, ମର୍ଦ୍ଦନ—ନାଶକରିବା, ଘନେ—ନିଷ୍ଟୟ, କଳମଦର—ଖଞ୍ଜନପକ୍ଷୀର ଅକ୍ଷି, ଦଣ୍ଡିବ—ପରାସ୍ତ କରିବ, ବିଭାବରୀ—ରାତ୍ରି, ଅନିଦ୍ର-ଅନିଦ୍ରା, ମୁଦ୍ରିତ—ବୁଜିଦେବା ।

**ଲାବଣ୍ୟବତୀର ଅକ୍ଷି ଅନିଦ୍ରାରୁ ଲାଲ ହୋଇଥିବାରୁ ନାଲକଇଁର ଗର୍ବକୁ ଖର୍ବ କରୁଛି । ଖଞ୍ଜନପକ୍ଷୀର ଅକ୍ଷିକୁ ମଧ୍ୟ ପରାସ୍ତ କରି ପୁଣି କନ୍ଦର୍ପର ମାଦକତା ଉପରକୁ ଉଠି ଯାଉଛି କି, ରାତରେ ତ ପଦ୍ମ ବୁଜି ହୋଇଯାଏ । ମାତ୍ର ତାରି ରାତରେ ତୋର ନେତ୍ର ପଦ୍ମ ବୁଜି ହୋଇନାହିଁ ।**

**୫ । ନିଟିଳ—କପାଳ, ମୃଗମଦ—ମୃଗନାଭି କସ୍ତୁରୀ, ଅଳକା—ଚୂର୍ଣ୍ଣକୁନ୍ତଳ, ଅହିବର—ସାପ, ଗରଳ—ବିଷ, ନିଶୀଶ—ଚନ୍ଦ୍ର ।**

ଝାଳ ହେତୁ କପାଳରୁ କସ୍ତୁରୀ ଟିକା ଝାଳରେ ବୋହିବାରୁ ବାଳ ଏପାଖ ସେପାଖ ହେବାରୁ ସାପ ଗରଳ ବାନ୍ତ କଲାପରି ଜଣାଯାଉଅଛି । କିବା ଚନ୍ଦ୍ର ନିଜ ଦେହରୁ କଳଙ୍କ ଛଡ଼ାଇବାକୁ ବସିଲା ବେଳେ ଭୟରୁ କରି ରହି ଯାଉଛି ।

୬ । ଚଟୁଳ—ଗୋଲ, ନୀର ବିନ୍ଦୁ—ଝାଳବିନ୍ଦୁ, ଚପଳ—ଚଞ୍ଚଳ, ଶୈକ୍ଷ-ଶୈକ୍ଷ—ସୁନ୍ଦର, ସରୁ ସରୁ, ସ୍ଫୋଟକ—ଫୋଟକା, ମନୋହର—ସୁନ୍ଦର ।

**ଲାବଣ୍ୟବତୀର ମୁହଁରୁ ଝାଳ ଟୋପି ଟୋପି ହୋଇ ରହିଥିବାରୁ ଏପରି ଜଣାଯାଉଛି—ରାହୁ ଅର୍ଦ୍ଧଚନ୍ଦ୍ରକୁ ଗ୍ରାସ କରୁଥିଲା; ମାତ୍ର ଶୀଘ୍ର ଖଣ୍ଡି ପଳାଇ ଯାଉଛି, ଦନ୍ତପନ୍ତି ସରୁ ସରୁ ହୋଇଥିବାରୁ ଏହିପରି ଜଣାଯାଉଛି ।**

ମୋତମାଳ ବାଳ ନ ଜାଣିଲୁ ତହିଁରେ । ଛଇଲ ମାତ ତାହା ପତ ସୁରତ
ଶିକ୍ଷା ଯେତେବେଳେ ଦେଇ ରେ । ସୁନ୍ଦର । ଛଟକାକ୍ଷି ଗୁଣଶାଳ ରେ ।
ଛଦ୍ମେ ନ ଜାଣିବ ବାସ ପ୍ରକାରରେ କରଥିବ ନାଗିଗ୍ରଲ ରେ ।୭।
ଜାହ୍ନବୀ ଲଭିଲ୍ଲ ମାନ ଶାମ୍ଭୁକାରେ କସ୍ତୁରୀ କାଳନ୍ଦୀ ଗୁହିଁ ରେ । ଜଣା-
ଯିବାକୁ ନଖପଦ୍ମ ଶଶଦମୟୂଖ ନାୟକ ବନ୍ଧ ରେ । ସୁନ୍ଦର । ଜବାଧର
ଚନ୍ଦ୍ରମୁହିଁ ରେ । ଜଳଜ ପାଣିରେ ପୂଜା କରଥିବ କାମ ବ୍ୟାଧି ହତ ପାଇଁ
ରେ ।୮। ହିଂଲକ ଅଙ୍କୁଶ ପ୍ରାସ ଲଭିଛୁ କି ଯଉବନ କର କୁମ୍ଭ ରେ ।
ହଂସନିବାସ ସୁତରେ ମର୍ଦ୍ଦି ହେଲ ମହା ମହୀଧର ଦମ୍ଭ ରେ । ସୁନ୍ଦର ।
ହିଂଳଛୁ ଶତ୍ରେ ଏ ଶବ ରେ । ହଂଠକହାସିନୀ ଘର୍ମେ ଲଭିଗଲ ମର୍ମେ
ଲେଖିଥିଲ ଶବରେ ।୯। ନୀଳ କୁନ୍ତଳ ଫିଟି ଲୋଟେ ଚରମେ ବିରହାଗ୍ନି
ପ୍ରେମନୀର ରେ । ନାସ୍ତା କଲୁ ଶାନ୍ତ କି ସେ ଧୂମପନ୍ତ୍ର ଊର୍ଦ୍ଧ୍ୱେ ଅଧୋଗତ
ତାର ରେ । ସୁନ୍ଦର । ନୟନ କରଇ ବଶ ରେ । ନବ ବକଚ ନଳିନ
ମଧୁ ପିଇ ଉଡ଼ିଲେ କି ଅଳିବଂଶରେ ।୧୦। ଠେକ କରୁଣା ହେବାପାଇଁ

---

୭। ସ୍ୱଚ୍ଛୋଦ୍ୟୋତ—ଅତ୍ୟନ୍ତ ଉଜ୍ଜ୍ୱଳ, ଛଦ୍ମେ—କପଟରେ, ତାହା ପତ ସୁରତ—ବିପରୀତ ରତ ।

୮। ଜାହ୍ନବୀ—ଗଙ୍ଗା, ନାୟକ—ପୁରୁଷ, ଜଳଜ ପାଣି—ପଦ୍ମକର ।

୯। ଯୌବନ ରୂପକ ହାତୀର ମୁଣ୍ଡରେ ଅଙ୍କୁଶ ପ୍ରହାର ଭଳି କୁଚରେ ନଖକ୍ଷତ ହୋଇଛୁ । ହଂସ-ମତ୍ସ୍ୟ, ନିବାସ-ଘର, ସୁତ-ପୁତ୍ର, ହଂସ-ନିବାସ ସୁତ-ପଦ୍ମ, ମହା-ପ୍ରଧାନ, ମହୀଧର-ପର୍ବତ (ମେରୁ ପର୍ବତ) ପୁରୁଷର ହସ୍ତ ପଦ୍ମରେ ସ୍ତ୍ରୀର ମେରୁତୁଲ୍ୟ ସ୍ତନ ମର୍ଦ୍ଦି ହେଲ । ଘର୍ମ—ଝାଳ ।

୧୦। କୁନ୍ତଳ-ଘନକଳା ବାଳ, ଚରମ-ପିଠି, ନାସ୍ତା-ଲୁଣ୍ଠନ, ଧୂମପନ୍ତ—ଧୂଆଁ ସବୁ, ଊର୍ଦ୍ଧ୍ୱ-ଉପର, ଅଧୋ-ତଳ, ଲାବଣ୍ୟବତୀର ବାଳ ରତ ସମୟେ ଫିଟି ପିଠିରେ ପଡ଼ିବାରୁ ତାହା ଉଡ଼ା ଉତରେ ତଳୁ ଉପରକୁ ଓ ଉପରୁ ତଳକୁ ଯାଉଥିବାରୁ ସେଥିରୁ ଫୁଲ ହିଞ୍ଚ ପଡୁଥିବାରୁ ଭ୍ରମରମାନେ ଘେର ବୁଲିଲ ପର ମଧୁ ଅଣା କର ପୁରୁଷ ମଧୁପାନ କରୁଛୁ ।

ଅରୁଣାଧରୁ ଫୁରୁଣାରେ କହ ରେ । ଟିକାଏ ଗଳ୍ପ ରତରେ କି ପତିଙ୍କ
କଲ୍ଲ ଏ ଗୃମରେ ସେବା ରେ । ସୁନ୍ଦର । ଚାହୁଁ ନୁହଇ ଏ ଗିର ରେ ।
ଚହଳ ହାସ କୁଟିଳ ଲୋକେ କି ବନ୍ଧନ ମୁକ୍ତ ବେଭାର ରେ । ୧୧ ।
ଟିକେ ପତନ ହୋଏ ବାଳା ରତନ ଯତନ ଫୁଲ ମାଳିକା ରେ ।
ଠାଟିକ ଦଶେ ଅମ୍ବୁଜରୁ କି ଖସେ ଅବନୀକି ବଳାକା ରେ । ସୁନ୍ଦର ।
ଠଣ ହେ ପୁଣ ଏ ପଶ୍ନ ରେ । ତୁଲେ ଗଙ୍ଗାରୁ ଜଳ ଆଣି ଘନ କି ପତନ
କରଇ ଧରା ରେ । ୧୨ । ଜମ୍ବୁରୁ ମଧ୍ୟ ମହୋଜ୍ଜ୍ୱଳ ତାମ୍ବୁଳ ବୋଳ ତୋ
ନିର୍ମଳ ଗଣ୍ଡରେ । ଡାଳିମ୍ବ କୁସୁମ ବିମ୍ବ ମନୋହର କି ଅବା ମୁକୁର ଖଣ୍ଡ
ରେ । ସୁନ୍ଦର । ତୋଳା ବଣଚରେ ପୁଣି ରେ । ତାହା ଉତ୍ତୀର୍ଣ୍ଣ ରସାଣ
ହେମ ପାତ୍ରେ ସ୍ଥିତ କି ମାଣିକ୍ୟ ମାଣିରେ । ୧୩ । ତଳି ଗୃହଁ ରଙ୍ଗ ଅଧରୁ
ହରୁଛି ଦନ୍ତ ଝତ ବଶେ ରକ୍ତ ରେ । ତାଲେ ହୃଦୟୁ ସୁଖେ
ମୁଖେ କରେ କି ଜାଣି ଅନୁରାଗ ବ୍ୟକ୍ତ ରେ । ସୁନ୍ଦର । ତମାଳ
ନୋହେ ଏ ସତ ରେ । ତଳହଳ ଚୂତପଲ୍ଲବେ ଯେମନ୍ତ ମତ୍ତ

---

୧୧ । ଫୁରୁଣା-ଆନନ୍ଦ, ଗୀର-କଥା । ହେ ସୁନ୍ଦର, ତୁ ବାଳ ମୁକୁଳା କର ତୋର ସ୍ୱାମୀଙ୍କ ଏ ବାଳରୂପ ଚଅଁରରେ ସନ୍ତୋଷ କରିବାକୁ ଇଚ୍ଛା କରୁଥିଲୁ କି, ତୋ ବାଳ ତ କୁଞ୍ଚିକୁଞ୍ଚିଆ ବା କୁଟିଳ, କୁଟିଳ ଲୋକଙ୍କୁ ବନ୍ଧନ ମୁକ୍ତ କରିବା ଭଲ ନୁହେଁ, ତୋର ବାଳ ଫିଟାଇବା ସେହିପରି ।

୧୨ । ଅମ୍ବୁଜ-ମେଘ, ବଳାକା-ବଗସବୁ, ଧରା-ପୃଥିବୀ । ମେଘରେ ବଗ ଉଡ଼ିଲା ପରି ତୋ ମୁଣ୍ଡର ଫୁଲମାଳ ଖସିବା ଦେଖା ଯାଉଛି, ପୁଣି ମନେ ହୁଏ ଗଙ୍ଗାଜଳ ସ୍ୱଚ୍ଛ, ମେଘ ଗଙ୍ଗାଜଳ ଉଠାଇ ପୃଥିବୀରେ ପକାଉଛି କି ?

୧୩ । ଜମ୍ବୁରୁ ମଧ୍ୟ-ସରୁ ଅଣ୍ଟା, ତାମ୍ବୁଳବୋଳ-ପାନପିକ, ଡାଳିମ୍ବ କୁସୁମ-ବିମ୍ବ-ଡାଳିମ୍ବ ଫୁଲ ଗଛ, ତାହା-ପୋଡ଼ା, ରସାଣ-ପାଲିସ, ହେମ-ପତ୍ର-ସୁନା ପାତ୍ରରେ ସରୁ ସରୁ ପାନ ବୋଳ ତୋ ଗାଲରେ ଲାଗି ଥିବାରୁ ଏପରି ମନେ ହୁଏ । ଆରସିରେ ଡାଳିମ୍ବ ଫୁଲ ପାଖୁଡ଼ା ଲାଗିଛି କି, କିବା ପାଲିସ ସୁନା ପାତ୍ରରେ ମାଣିକ୍ୟ ଅଛି କି ?

୧୪ । ଦନ୍ତକ୍ଷତ-ଦାନ୍ତରେ ଖଣ୍ଡିଆ, ଅନୁରାଗ-ସ୍ନେହ, ତମାଳ-ଗଛ, ଚୂତ ପଲ୍ଲବେ-ଅମ୍ବ ପତ୍ରରେ, ରତିରେ କାମ ମଦରେ ତୋର ପତି ତୋ ଗାଲରେ କୋଚ ଦେଲାବେଳେ ଦାନ୍ତସବୁ ବସିଯାଇ ଖଣ୍ଡିଆ ହୋଇଛି । କୋଇଲି ଅମ୍ବପତ୍ରକୁ ଖଣ୍ଡିଆ କଲାପରି ଜଣାଯାଉଛି ।

ପିକ ଚଞ୍ଚୁଘାତ ରେ ।୧୪। ଅମୂଲ୍ୟ କୁନ୍ଦ ସୁନ୍ଦର କାଶ ମନ୍ଦହାସ ଲେଶମାତ୍ର ନାହିଁ ରେ । ଅନନ୍ତଚନ୍ଦ୍ରମା କେବଣ କାରଣେ କିରଣ ହେଲା କୁନ୍ଦାଇ ରେ । ସୁନ୍ଦରୀ । ଅତ୍ୟନ୍ତ ରସିକ ସେହୁ ରେ । ଅମୃତ ଭାବ ଓଷ୍ଠମଧୁ ସହିତ ପିଇଗଲା ପରା ତାହୁ ରେ । ୧୫ । ତନୁରେ ଠାବେ ଠାବେ ଲାଗି ଚନ୍ଦନ ଏହୁ ପ୍ରତୀତ କରାଇ ରେ । ତୋତେ ସେ ଏ ଶୋଭା ଦେଇଗଲା ସ୍ତନକୁଙ୍କୁମ ପାଲଟ ନେଇ ରେ । ସୁନ୍ଦରୀ । ତଥା ତୋ ଅଙ୍ଗ ଶୋଭନ ରେ । ତରୁଣକୁଞ୍ଜର କରମର୍ଦ୍ଦନରେ ଯେମନ୍ତ ପଦ୍ମିନୀ ବନ ରେ । ୧୬ । ସ୍ଥୂଳଜାନୁରେ ଧୀପ୍ୟମାନ ଅନେକ ପ୍ରଖର ନଖର ଗିରା ରେ । ଥସ୍ତୁ ଏ ଇଙ୍ଗିତ ସଙ୍ଗୀତ ଜାଣେ ସେ କଳାପ୍ରସାରକ ପରାରେ । ସୁନ୍ଦରୀ । ଅନ୍ଥୁଅଛୁ କାହିଁ ତରି ରେ । ଥିରେ କହୁଥା କରଛୁ କି ବଲ୍ଲଭ ଚିତ୍ତରତନକୁ ଗ୍ରହି ରେ ।୧୭। ଦେହେଁ ଦିଶୁଛୁ କଙ୍କଣ ଚିହ୍ନମାନ ଖଞ୍ଜନଗଞ୍ଜନଦୃଶୀ ରେ । ଦ୍ରବ୍ୟ ଦାହ ହେମ ପିତ୍ତଳାକୁ କାମ ସୁଚିକମ କଲା ବସି ରେ । ସୁନ୍ଦରୀ । ଦେଖି ମୁଁ

---

୧୫ । କୁନ୍ଦ-କୁନ୍ଦଫୁଲ, କାଶ-କାଶତଣ୍ଡୀ ଫୁଲ, କୁନ୍ଦଫୁଲ ଓ କାଶତଣ୍ଡୀ ଫୁଲପରି ଧଳା ହାସ ତୋର ତ ଦେଖାଯାଉ ନାହିଁ, ଚନ୍ଦ୍ରର କିରଣ ନ ଥିଲେ ଯେପରି ଦେଖାଯାଏ ମୁଖ ସେହିପରି ଦେଖାଯାଉଛି, ଜଣାଯାଏ ତୋ ସ୍ୱାମୀ ଭାରି ରସିକ, ଅମୃତ ମନେ କରି ତୋର ଓଠ ମଧୁ ପିଇବାରୁ ଏପରି ଜ୍ୟୋତିହୀନ ହୋଇଛି ।

୧୬ । ତନୁ-ଦେହ, ଠାବେ ଠାବେ-ଜାଗାଏ ଜାଗାଏ, ପାଲଟ-ଲେଉଟ, ଅଙ୍କ-କୋଳ, କୁଞ୍ଜର-ହାତୀ, କର-ଶୁଣ୍ଢ, ପଦ୍ମବନ । ତୋ ଦେହରେ ଜାଗାଏ ଜାଗାଏ ଚନ୍ଦନ ଲାଗିଥିବାରୁ ଏହା ମନେ ହୁଏ, ତୋର ସ୍ତନରେ ଥିବା କୁଙ୍କୁମକୁ ନେଇ ତା ବଦଳରେ ତାଙ୍କ ଦେହରେ ଥିବା ଚନ୍ଦନ ତୋତେ ଦେଇଗଲା, ଅର୍ଥାତ୍ କୁଣ୍ଢାଇଲା ବେଳେ ଚନ୍ଦନ ତୋ ଦେହରେ ଲାଗିଲା, ଯୁବାହାତୀ ଶୁଣ୍ଢରେ ପଦ୍ମବନକୁ ମନ୍ଥିଲେ ଯେପରି ଏପାଖ ସେପାଖ ହୁଏ ତୋର ସ୍ୱାମୀ ହାତରେ ତୋତେ ମନ୍ଥିବାରୁ ତୋର ସବୁଅଙ୍ଗ ସେହିପରି ଛିନ୍ନଭିନ୍ନ ହୋଇଛି ।

୧୭ । ସ୍ଥୂଳ-ମୋଟ, ତୋର ମୋଟା ଜଙ୍ଘରେ ଅନେକ ନଖ ଗାର ଦେଖା ଯାଉଛି ସଙ୍ଗୀତ ବୋଲିଲାବେଳେ କଳା ବାହାର କଲାପରି ଏ ଜଣା ଯାଉଛି ଅନ୍ଥୁଛ କାହିଁକି, ଅସ୍ତେ ଅସ୍ତେ କଥା କହି ତ ସ୍ୱାମୀ ମନକୁ ହରଣ କରିଛ ।

୧୮ । ଖଞ୍ଜନଦୃଶୀ—ଚଞ୍ଚଳ ନୟନା, ଦ୍ରବ୍ୟଦାହ-ଭଲରୂପେ ପୋଡ଼ି ହୋଇଥିବା, ହେମ-ସୁନା, ପ୍ରୀତିବାନ-ପ୍ରେମସୁନା ।

ହେଲଣି ତୋଷି ରେ । ବଲ୍ଲଭ ହୃଦକଷଟିରେ ଥିବ ସେ ପ୍ରୀତିବାନମାନ
କଷି ରେ ।୧୮। ଧର ମଧ୍ୟ ଧୀରେ ଅଶକତଭରେ ଆସିବାରୁ ମୁଁ ଯେ
ହେଜ ରେ । ଧୂର୍ଜଟି ଡମ୍ବରୁ ସର ସରୁକଟି ଅହା ସେ ଗଲା କି ଭାଜି
ରେ । ସୁନ୍ଦରି । ଧରାଧର ଯେହ୍ନୁ ଟେକି ରେ । ଧବ ଭାର ନାକି ସହି ନ
ପାରିଲା ଯେଣୁଛୁ ଅଛୁ ଏଥିକି ରେ ।୧୯। ନବଢ଼ ନୀବି ତ ମହା ଅସ୍ତବ୍ୟସ୍ତ
ଖୋସିଲେ ଖସି ପଡ଼ଇ ରେ । ନାଗର ଶ୍ରୀକର ଦର ଏତେଦୂର କରି
ସ୍ଥାନେ ନ ରଖଇ ରେ । ସୁନ୍ଦରି । ନରହେ ଏହା ଶୁଣି କି ରେ । ନ କଲା
ମୋତେ ବନ୍ଧନ ଅବକାଶ ନୋହୁବ ଅଜି ଏଣିକି ରେ ।୨୦। ପ୍ରଣିତ
ପଣନ୍ତ ମଧ୍ୟାରେ ଲେଟିଛୁ ଭାଳେ ଅସମ୍ଭାଳ ଦେଖି ରେ । ପାଦେ ପଢ଼
ଶାଢ଼ୀ କହେ ପତି ସଙ୍ଗବେଳେ ପାରନ୍ତି କି ରଖି ରେ । ସୁନ୍ଦରି । ପଚାରୁଛୁ
ଏତେ ମୁହିଁ ରେ । ପାଇ ନାହାନ୍ତି ସ୍ଥାନ ଯହିଁ ଏମାନେ ଲଜ୍ଜା ରଖିଥିବ
କାହିଁ ରେ ।୨୧। ଫୁଲ୍ଲାରବିନ୍ଦମୁଖେ ନାହିଁ ପ୍ରସନ୍ନ କାନ୍ତେ ପରାଜୟ
ଇଚ୍ଛି ରେ । ଫରୁଣା ହୁଏ ଫୁଲଧନୁ ଜିଣିଲୁ ଏଥେ ପୁଣି ଯଶ ଅଛି ରେ ।
ସୁନ୍ଦରି । ଫେଡ଼ କହୁଅଛୁ ଜାଣି ରେ । ସ୍ଫୁଟେ ରହୁଥିଲା ବଳା ଫୁଲଧନୁ

---

ହେ ଖଞ୍ଜନନେତ୍ରୀ ତୋ ଦେହରେ କଙ୍କଣ ଚିହ୍ନମାନ ଦେଖା-
ଯାଉଛି, ଭଲରକମ ପୋଡ଼ା ହୋଇଥିବା ସୁନା ପ୍ରତିମାକୁ ଚୁଳିରେ
ଚାବକଲା ଭଳି ଜଣାଯାଉଛି, ତୋର ସ୍ୱାମୀ ତ ହୃଦୟରୂପ କଷଟି
ପଥରରେ ପ୍ରେମରୂପ ସୁନାକୁ କଷି ଅଛି କି ?

୧୯ । ମଧ୍ୟ-ଅଣ୍ଟା, ଧୂର୍ଜଟି ଡମ୍ବରୁ-ଶିବଡମ୍ବରୁ, ଧରାଧର-ପର୍ବତ । ଅଣ୍ଟାକୁ
ଧରି ଅଶକତରେ ଅସ୍ତେ ଅସ୍ତେ ଆସିବାରୁ ମୁଁ ମନେ କରୁଛି,
ଶିବଙ୍କ ଡମ୍ବରୁ ପରି ଯେ ତୋର ସରୁକଟି କଣ ଭାଙ୍ଗିଗଲା ଯେ (କୁଚ)
ପର୍ବତ ଧରିବାରୁ କଣ ସେ ସ୍ୱାମୀର ଭାର ସହିପାରିଲା ନାହିଁ ।

୨୦ । ଦର-ଭୟ, ବନ୍ଧନ-ବାନ୍ଧିବା, ଅବକାଶ-ଫୁରସତ । ତୋର ଭଲରୂପେ
ଭିଡ଼ା ହୋଇଥିବା ନୀବି ସମ୍ଭାଳି ନୋହି ଖସି ପଡ଼ୁଛି, ତୋର
ସ୍ୱାମୀର ହାତରେ ଭୟରେ ସେ କ'ଣ ରହୁନାହିଁ, ବାନ୍ଧିବାକୁ
କ'ଣ ଫୁରସତ ନାହିଁ ।

୨୧ । ଅସମ୍ଭାଳ—ଅତିଶୟ ।

୨୨ । ଫୁଲ୍ଲାରବିନ୍ଦମୁଖେ-ଫୁଟିଲା ପଦ୍ମରୂପ ମୁହଁରେ, ଫରୁଣା-ଆନନ୍ଦ, ସ୍ଫୁଟେ-
ପ୍ରକାଶ୍ୟରେ କାନ୍ତକୁ ହରାଇବାକୁ ଇଚ୍ଛା କରି କ'ଣ ମୁଖ-ପଦ୍ମରେ
ଆନନ୍ଦ ନାହିଁ, ଛଡ଼ ସେ କଥା କନ୍ଦର୍ପକୁ ଜିଣିଲୁ ଏଥିରେ ତ ଯଶ
ଅଛି, ପ୍ରକାଶ୍ୟରେ କହୁଥିଲା ରେ ଫୁଲଧନୁ ଏବେ ତୁ ପଳା ।

ଯଳା ପଳା ପୁଣି ପୁଣି ରେ ।୨୨। ବିଧୁ ବିଧୁନ୍ତୁଦ ମୁଖୁଁ ଏହିକ୍ଷଣି ବାହାରିଲା ପରି ମୁଖ ରେ । ବିଧିରେ ଚିକୁରଶୋଭି ମିଛ ହେଲେ ମୁକୁର ଅଣାଇ ଦେଖ ରେ । ସୁନ୍ଦରି । ବିଶ୍ବରେ ଏଥି କି ଗୋଳ ରେ । ବୋଲନ୍ତି ତୋତେ ସୁକୁମାରି ଏ ଦୁଃଖ ସୁହାଇଲା ଭାବ ଭୋଳ ରେ ।୨୩। ଭର୍ତ୍ତ ଧରି କରୁ ଗମନ ମଣ୍ଡୁଛୁ ପଦ୍ମିନୀଙ୍କ ଶତକୋଶ ରେ । ଭର ଦେଇ ଅପସରେ ଅବସର ପାଇଲୁ ଏବେ ତୁ ବଶ ରେ । ସୁନ୍ଦରି । ଭାବ କି ସେ ତାର ଅଛି ରେ । ଭୃଙ୍ଗ ଦରବିକଶିତ କୋକନଦ ମଦ ଜୃମ୍ଭାକୁ ଆଦରି ରେ ।୨୪। ମହା ଅଳସଭରେ କୁଚକଳସ ଲୋଡ଼େ ମେରୁଦର୍ପ ହରି ରେ । ମର୍ଦ୍ଦନ ତାଡ଼ନ କରଜ-ପୀଡ଼ନ କେତେ ବେଗରେ ପାସୋରି ରେ । ସୁନ୍ଦରି । ମୁହିଁ ଶିଖାଇଛୁ ତୋତେ ରେ । ମନ୍ଦ କରିବା ପରେ ନୁହେ ଉଚିତ କରିଥିବୁ ଦିବ୍ୟଚିତ୍ତେ ରେ ।୨୫। ଯଶ ଅଯଶ ବିଶ୍ବର ଅନୁଗ୍ରହ ବିଗ୍ରହ ନିଗ୍ରହ କରି ରେ । ଯୁବତୀ ରତିରଣ ଭାବି ନିତମ୍ବ ଉରଜ ମିଶିଲା ଉରରେ । ସୁନ୍ଦରି । ଯୁକ୍ତି ଏ ପାଇବେ ଶାଢ଼ୀରେ । ଯୋଗ ବେଗେ ଆଗେ କର ବନ୍ଧି କଲା ତାକୁ ଦଅ ମଣି ଚୁଡ଼ୀ ରେ ।୨୬। ରଙ୍ଗବେଶ ହୋଇ ଅତଙ୍ଗ ନୟନ ଭୃଙ୍ଗ ହେଲା ଅତିସୁଖରେ । ରମଣୀ ଚତୁରି ଶିରୋମଣି ଅଣି କାଲି ଦେବା ତାର ମୁଖ ରେ । ସୁନ୍ଦରି । ରତେ କେଶ ଅସମ୍ଭାଳ ରେ । ରମ୍ୟ ଚରମେ ପଳାଇ ଲୁଚିଥିଲା ବାନ୍ଧିବା ତାହାକୁ ଭଲ ରେ ।୨୭। ଲାବଣ୍ୟ ବିମ୍ବ ବିଡ଼ମ୍ବି ଅଧର ତୋ ଘାତକ ହୋଇଛି ଅତି ରେ । ଜଳସେ ଏବେ ତାମ୍ବୂଳ ଅଙ୍ଗିକି ଦେଇଣ କର ତୃପତ ରେ । ସୁନ୍ଦରି । ଲଖପ୍ରାୟ ଅଦ୍ୟ ପ୍ରାନ୍ତ ରେ । ଲଳିତ ଅଙ୍ଗ ଯେ ରଞ୍ଜୁଥିଲା ଯାକୁ ଚନ୍ଦନେ କର ଲେପିତ ରେ ।୨୮।

---

୨୩ । ବିଧୁ—ଚନ୍ଦ୍ର, ବିଧୁନ୍ତୁଦ—ରାହୁ, ମୁକୁର—ଆରସି, ଚିକୁର—ବାଳ ।

୨୪ । ଭର୍ତ୍ତ—କାନ୍ତ, ଅପସର—ତଳିଆ, ଦର ବିକଶିତ—ଅଳ୍ପ ଫୁଟିଥିବା, କୋକନଦ—ଲାଲକଇଁ, ଜୃମ୍ଭା—ହାଇ ।

୨୫ । କରଜ—ନଖ, ପୀଡ଼ନ—ପୀଡ଼ାଦେବା, କରଜ ପୀଡ଼ନ—ନଖକ୍ଷତ ।

୨୬ । ବିଗ୍ରହ—କଜିଆ, ନିଗ୍ରହ—ଦଣ୍ଡଦେବା, ନିତମ୍ବ—ପିଚ୍ଛ, ଉରଜ—ସ୍ତନ, କର—ହାତ ।

୨୮ । ଲାବଣ୍ୟ—ସୁନ୍ଦର, ବିମ୍ବ—ପ୍ରତିମା, କଇଁଚ କାକୁଡ଼ି, ବିଡ଼ମ୍ବି—ଖରାପ, ଅଧର—ଓଷ୍ଠ, ତୃପତ—ସନ୍ତୋଷ, ଲଖ—ଜଉ ।

ତୋର ପାଚିଲା କଇଁଚ କାକୁଡ଼ି ଓଷ୍ଠ ଲାଲ, ପାନ ଖାଇ ତାକୁ ନିବାରଣ କର । ତୋର ଦେହ ଜଉପରି ପୁରୁଷ ଦେହରେ ଲାଗିଥିଲା, ତାକୁ ଚନ୍ଦନ ବୋଲି ହୋଇ ଶୀତଳ କର ।

ବସ୍ତ୍ରରେ ପବନ ଘନସାର ଅଗ୍ନି ସମେ ଦେଉଥିଲେ ପୀଡ଼ା ରେ । ବ୍ୟାଜ
ଙ୍କ ଅଙ୍ଗ ସେ ସୁଖଦ ହେଲକୁ ସିନା କରୁଅଛୁ ଲୋଡ଼ା ରେ । ସୁନ୍ଦର ।
ବିବେକ ସେ ଶୋଭାନିଧି ରେ । ବିଧୁ ଅସ୍ତବ୍ୟସ୍ତ କରିଥିବ ସାଧୁ ସବୁ ଶଙ୍କୁ
ହେଲ ସାଧି ରେ । ୨୯ । ଶୟନ କର ନୟନରୁ ଜାଣିଲିଁ ଗ୍ରାସ କଲ
ଶିବରିପୁରେ । ଶ୍ରୀଅଙ୍ଗକୁ ତେବେ କାହୁଁ ଶାନ୍ତି ହେବ ଅଶେଷ ସୁରସପାଣି
ରେ । ସୁନ୍ଦର । ଶ୍ରଦ୍ଧା ଏକା ଅଛି ତହିଁରେ । ଶଶିହାସି ସେ ବିଧି ସ୍ୱପ୍ନେ ଦେଖିବୁ
ପାଟସୋରିବା କଥା ନୋହୁ ରେ । ୩୦ । ଷଡ଼ାନନ ତାତଅଧ ଦେବତାଙ୍କୁ
ଏ ପୁରୁଷ ସଙ୍ଗ ଅଶେ ରେ । ଷୋଡ଼ଶୀ ଯେତେ ଦ୍ରବ୍ୟ ଥିଲ ମନାସି ଦେବୁଟି
ଏହୁ ଦିବସେ ରେ । ସୁନ୍ଦର । ଷଣକୁସୁମ ସୁକାନ୍ତିରେ । ଷଡ଼ାର୍ଦ୍ଧପୁରେ
ପ୍ରମଦା ମାନେ ନାହିଁ ତୋ ସମାନ ଭାଗ୍ୟବତୀ ରେ ॥ ସାରସଗଡ ସଖୀଭାଷ
ବଶରେ ମଜ୍ଜିଲ ହୀରା-ସରିତେ ଯେ । ସତେ ଜରଜ କଲ ଚନ୍ଦ୍ରଶେଖର ମୁଖ
ନିବେଶ ଭୁରିତେ ସେ । ସୁନ୍ଦର । ସଖୀରେ ସଖୀରେ ଯାଇ ଯେ ।
ସମୀର ବହିଲ ସ୍ଥାନରେ ବସିଲ ଆଶ୍ୱାସନା କଲେ ସହ୍ମି ଯେ । ୩୨ ।
ହାଟକଟଙ୍କ ଗୋଗ୍ରାର ଦେଲେ ସେ ଛଟକେ ମୀଢ ବଢ଼ାଇ ଯେ । ହସ୍ତୀ
ଦଶନପତ୍ନୀଙ୍କ ଅଙ୍କରେ ସେ ନିଃଶଙ୍କେ ଦେଲେ ଶୁଆଇ ଯେ । ସୁନ୍ଦର ।
ହେଲ ପୂର୍ଣ୍ଣ ମନୋରଥ ଯେ । ହେଲା ନ କଲ ପୁଂସଲୀଳା ଭାବନା
ଲବମାନ ହୃଦପଥ ଯେ । ୩୩ । କ୍ଷିତିମଣ୍ଡଳମଣ୍ଡନ ଯୀଶୋଦସି ଭାବନା
ବଶରେ ପୁଂସ ଯେ । କ୍ଷଣଦା କ୍ଷଣ ପ୍ରାୟ ଗଲ ବସ୍ତ୍ରରେ କାହିଁ ଥିଲ ଏ
ଦିବସ ହେ । ସୁଜନେ । କ୍ଷିପ୍ରେ ଶାନ୍ତି ରାମଚନ୍ଦ୍ର ଯେ । କ୍ଷମେ କପଇନ୍ଦ୍ର ଭଞ୍ଜ
ବୀର କହେ ଅଘ କରୀନ୍ଦ୍ର ପାରନ୍ଦ୍ର ହେ । ୩୪ ।

---

୨୯ । ଘନସାର—କର୍ପୂର, ବ୍ୟାଜ—ଛଳନା, ବିଧୁ—ଚନ୍ଦ୍ର, ସାଧୁ—ପଣ୍ଡିତ,
ପୁଂସ । ସ୍ୱାମୀ ସଙ୍ଗରେ ଭେଟ ନ ହେବା ଆଗରୁ ପବନ ଓ କର୍ପୂର
ନିଆଁପରି ଜଣା ଯାଉଥିଲ । ଏ ଛଳନା କଥା ନୁହେ, ଚନ୍ଦ୍ର ମଧ୍ୟ କଷ୍ଟ
ଦେଉଥିବ, ତେଣୁ ପୁରୁଷ ଚନ୍ଦ୍ରମୌଳକ କରି ଚନ୍ଦ୍ରକୁ ଅସ୍ତବ୍ୟସ୍ତ କରିଛି ।

୩୦ । ଅଶେଷ—ବେଶୀ, ସୁରସପାଣୀ—ରସିକାସ୍ତ୍ରୀ ।

୩୧ । ଷଡ଼ାନନ—କାର୍ତ୍ତିକେଶ୍ୱର, ତାତ—ପିତା, ଷଡ଼ାନନ ତାତ—
ମହାଦେବ, ଷଣକୁସୁମ—ଛଣପଟ ଫୁଲ, ଷଡ଼ାର୍ଦ୍ଧ—ସ୍ୱର୍ଗ ମର୍ତ୍ତ୍ୟ
ପାତାଳ ତିନିପୁର, ପ୍ରମଦା—ସୁନ୍ଦରୀ ସ୍ତ୍ରୀ ।

୩୨ । ସାରସ ଗଡ—ହଂସଗଡ ।

ଲାବଣ୍ୟବତୀ କେଳିପୁରରେ କାନ୍ତ ସଙ୍ଗ ଲଭକର ବିକୃତ ଅବସ୍ଥା
ହେବାରୁ ସେହି ଅବସ୍ଥାର ବର୍ଣ୍ଣନା କରି ଯାଇଛି ।

# ପଞ୍ଚତ୍ରିଂଶ ଛାନ୍ଦ

( ଦେବ ଅଭିଶାପ ଓ ବରକନ୍ୟା ସ୍ୱଦେଶ ପ୍ରବେଶ )

ରାଗ—କଳଶା

ଏଥୁ ଅନନ୍ତରେ ଜନେ ଶୁଣ ଦିବ୍ୟରସ । ପୁରେ ସପତମଙ୍ଗଳା ହେଲା ତହିଁ ଶେଷ ଯେ । ୧ । ପଡ଼ିଲା ପରମ କଷ୍ଟ ଅଷ୍ଟମଙ୍ଗଳାରେ । ନୋହିଲା ସେ ଧନ ଭେଟ ପୁରୁଷ ବାଳାରେ ଯେ । ୨ । ବସି ବାସ୍ତୁର କରଇ ରସିକ ରତନ । ଉତ୍ସବେ କାହିଁକି ହେଲା ଏତେ ମ୍ଳାନବଦନ ଯେ ।୩। ମୋତେ ହରତାଳଗୋରୀ ହରତାଳ କର । ପର ବର ଦେବ ଦୁଃଖ ଏ ଘୋର ଶର୍ବରୀ ଯେ ।୪। କୁହୁ ନୋହି ଜଗତରେ ମୋଠାରେ ହୋଇଲା । ବଦନଇନ୍ଦୁ ଦର୍ଶନ ଏଣୁ ବିରୋଧିଲା ଯେ । ୫ । ଏକାଳେ ଜ୍ୟୋତିଷସୁତ ପାଶେ ପରବେଶ । ବୋଇଲା ମନ୍ତ୍ରୀସୁତକୁ ମନ୍ତ୍ରୀ କର ବେଶ ଯେ । ୬ । ସୁତା ବିଭାକର ଦେବ ନେଇଅଛୁ ବର । ଚିତ୍ତଚିନ୍ତା ଅନ ଏ ସନ୍ଦେଶ ଶୁଣିକର ଯେ । ୭ । ଉତ୍ତୁଧିକ ବଧୂ ପୁଣି ପୁରୋହିତ ସୁତା । ମୋତେ ଅଗ୍ରୁ ଏ ଦେଶେ କରଛୁ ଯୋଗଧାତା ଯେ । ୮ । ରତ୍ନାକର ସାଧୁ ତ ଅମ୍ଭର ଅତିସ୍ନେହୀ । ତାହାର ଭଗ୍ନୀକୁ ମାଗ ପୁରନ୍ଦର ପାଇଁ ଯେ । ୯ । ଶୁଣି ତୋଷ ହୋଇ ଧରାପତି ପ୍ରିୟସୁତ । ସେ କାର୍ଯ୍ୟ ନିର୍ବାହ କଲା

---

## ପଞ୍ଚତ୍ରିଂଶ ଛାନ୍ଦ

୨ । ପରମ—ଶ୍ରେଷ୍ଠ, ଅତ୍ୟନ୍ତ, ବାଳା—ସ୍ତ୍ରୀ ।

୩ । ଉତ୍ସବେ—ଆନନ୍ଦରେ, ମ୍ଳାନମାନ—ଦୁଃଖ ଅବସ୍ଥା ।

୪ । ହରତାଳୀ ଗୋରୀ-ହଳଦଆବର୍ଣ୍ଣ ସ୍ତ୍ରୀ, ହରତାଳ-ଗଣେଶ ଚତୁର୍ଥୀ, ହର—ଚନ୍ଦ୍ର, ଘୋର—ଭୟଙ୍କର, ଶର୍ବରୀ—ରାତି, ( ହରତାଳିକା ଦିନ ଚନ୍ଦ୍ର ଦେଖନ୍ତି ନାହିଁ ) ସେହିପରି ସ୍ତ୍ରୀ ଅଷ୍ଟମଙ୍ଗଳା ଦିନ ସ୍ୱାମୀକୁ ଦେଖେ ନାହିଁ ।

୫ । କୁହୁ-ଅମାବାସ୍ୟା, ବଦନଇନ୍ଦୁ-ମୁଖଚନ୍ଦ୍ର, ବିରୋଧିଲା—ନିଷେଧ କଲା ।

୭ । ସୁତା—ଝିଅ, ସନ୍ଦେଶ—ଖବର ।

୯ । ଭଗ୍ନୀ—ଭଉଣୀ, ସାଧୁ—ସାହୁକାର, ବ୍ୟବସାୟୀ ।

୧୦ । ଧରାପତି—ରାଜା ।

ଯାଶୁ ପେଶି ଦୂତ ଯେ । ୧୦ । ତିନି ମିତ୍ର ବାର୍ତ୍ତାବଧି ଶୁଭେ ହେଲ ସିଦ୍ଧି ।
ପୁଣି ଅତି ହରଷ ହୋଇଲ ରସନିଧି ସେ । ୧୧ । କାମ କଲା ମେଘମାଳା
ହାରାବଳୀ ନାମ । ସପତି ହେବାରୁ ସେ ହୋଇଲେ ପୂର୍ଣ୍ଣକାମ ଯେ । ୧୨ ।
ଅଜମାନେ ଦାସୀମୁଖୁଁ ପାଇଲେ ବାରତା । ଦେବେ ଯଉତୁକେ ସାରେ
ଏଣୁ ଦୂର ଚିନ୍ତା ଯେ । ୧୩ । ଏମନ୍ତ କେତେକ ଦିବସ ଶେଷ କଲେ ତହିଁ ।
ସିଂହଳଭୂପାଳେ ପୁରୋହିତ ସୁତ କହି ଯେ । ୧୪ । ବୋଇଲ ଯେ କର୍ଣ୍ଣାଟ
ସେ ସିଂହଳ ପ୍ରଦେଶ । ଏମନ୍ତ ଅବଧାନରେ କର ନରଈଶ ଯେ । ୧୫ ।
ଶଶିଶେଖର ରାଜାର ଏକମାତ୍ର ପୁତ୍ର । ଅଛୁ ପ୍ରତିମାକୁ ପଟେଥାଇ ରଖି ନେତ୍ର
ଯେ । ୧୬ । ଅବଧାନ କଲେ ଏବେ ହୋଇବୁଁ ମେଲାଣି । ଦଣ୍ଡଧର ହରଷ
ହୋଇଲେ ଚିତ୍ତେ ଶୁଣି ଯେ ।୧୭। ଯଉତୁକ ସମ୍ଭାର ଘେନାଇ ସଚିବଙ୍କୁ ।
ପ୍ରେଷିତ କଲେ ତ୍ୱରିତ କୁମାର ପାଶକୁ ଯେ । ୧୮ । ଗୃହି ସେ ସମ୍ଭାର
ଯୁବରାଜ ହୋଇ ତୋଷ । ଦେଇଛୁ ଧନଦକୋଷ ପର ରତ୍ନକୋଷ
ଯେ । ୧୯ । କରି ହୟ ହରିଚୟ ଯାନ ସମାନରେ । ଲକ୍ଷ ସଂଖ୍ୟକ
ଦେଇଛୁ ସହଜ ଚିତ୍ତରେ ଯେ । ୨୦ । କାମଧେନୁ ପର ଧେନୁ ସବତ୍ସା
କରଣ । କୋଟି ପରମିତ ଘେନିଛନ୍ତି ବ୍ରଜଗଣ ଯେ । ୨୧ । କଥା କୁହା
ପିକ ଶୁକ ସାରିକା ଅନେକ । ଅଶେଷ ମଞ୍ଜୁଷ ଚର୍ମ ଆଚ୍ଛେଣୀ ସାୟକ
ଯେ । ୨୨ । ବସନ ଭେଣୀମାନଙ୍କ ସଂଖ୍ୟା ହେବ କାହିଁ । ହାନ୍ଦୋଳା
ସ୍ୟନ୍ଦନ ଯହିଁ ଗଣନାହିଁ ନାହିଁ ଯେ । ୨୩ । ଏ ବିଧିରେ ପଦାର୍ଥ ସମର୍ପି

---

୧୧ । ରସନିଧି—ଲାବଣ୍ୟବତୀ,କାରଣ ଏ ତିନିହେଁ ତାହାର ସଙ୍ଗୀ ଥିଲେ ।
୧୨ । ସପତି—ପତିଯୁକ୍ତା ।
୧୪ । ସିଂହଳ ଭୂପାଳ—ସିଂହଳ ଦେଶ ରାଜା ।
୧୫ । ଅବଧାନ—ବିଚାର ।
୧୭ । ମେଲାଣି—ବିଦାୟ, ଦଣ୍ଡଧର—ରାଜା ।
୧୮ । ସଚିବ-ମନ୍ତ୍ରୀ,କୁମାର-ରାଜପୁତ୍ର, ସମ୍ଭାର-ସାମଗ୍ରୀ, ପ୍ରେଷିତ-ପ୍ରେରିତ ।
୧୯ । ଧନଦ—କୁବେର, କୋଷ—ଭଣ୍ଡାର ।
୨୦ । କରି—ହାତୀ, ହୟ—ଘୋଡ଼ା, ହରିଚୟ—ସିଂହ, ଯାନ—ରଥ ।
୨୧ । କାମଧେନୁ—କାମନା ପୂର୍ଣ୍ଣ କାରିଣୀ ଗାଈ, ସବତ୍ସା—ବାଛୁରସହିତ,
ବ୍ରଜଗଣ—ଗଉଡ଼ମାନେ ।
୨୨ । ସାରିକା—ସାରୀ, ମଞ୍ଜୁଷ—ସାଞ୍ଜୁ, ସାୟକ—ଶର । ଚର୍ମଆଚ୍ଛେଣୀ—
ଗଣ୍ଡା ଚମର ଡାଲ ।
୨୩ । ହାନ୍ଦୋଳା—ପାଲିଙ୍କି, ସବାରି, ସ୍ୟନ୍ଦନ—ରଥ ।

ଜଣାଇଲା । ସୁଭୂଷଣ କରି ଦାସୀ ସହସ୍ରେକ ଦେଲା ଯେ । ୨୪ । ଯାଉଛନ୍ତି ଏ ବାହାରେ ପ୍ରିୟସଖୀଗଣ । ଯାହାକୁ ଲବଣ୍ୟଲକ୍ଷ୍ମୀ କଲେ ସମର୍ପଣ ହେ । ୨୫ । ତାହାଙ୍କୁ ପଦାର୍ଥ ଦେଇ ନାହିଁ ତୋଷିବାକୁ । ଶିବର ଅଙ୍କକୁ ଇଚ୍ଛା ଲଭିଲେ ଶିବାକୁ ଯେ । ୨୬ । ଯାହା ଅଙ୍କରେ ହୋଇଛୁ ଦେଖି ଇନ୍ଦ୍ରପଦ । ଶୁଣାନେ ଭ୍ରମି ସେ ଇଚ୍ଛା ନ କଲେ ସମ୍ପଦ ଯେ । ୨୭ । ଏ କଥିରେ ଘେନାଘେନ୍ନା ଅନେକ ରତନ । ସଜ କରିଦେଲା ସେ ବହୁତ ପୋତମାନ ଯେ । ୨୮ । ମାତା କୋଳକରି ପ୍ରିୟସୁତାକୁ ତଥିର । ତଦୁତ୍ତରେ ରତ୍ନହାଦୋଳାରେ ବିଜେ କରି ଯେ । ୨୯ । ବୋଇତରେ ବିଜେ କଲା ଯୁବରାଜ ସଙ୍ଗେ । ଅଛନ୍ତି ପରସ୍ପରକା ସଖୀ ସଙ୍ଗେ ରଙ୍ଗେ ଯେ ।୩୦। ଜେମାବ୍ରାତ ଅଦ ମନ୍ତ୍ରୀ ଘେନି ବାହାରିଲେ । ସେ ଦିନ ସକଳ ହୋଇ ସିନ୍ଧୁ ପାରହେଲେ ଯେ । ୩୧ । ନାରଦ ମୁଖୁଁ ଶୁଣିଲେ ଅମର ନିକର । ଅତୁଲ୍ୟ ଶୋଭା ନାଗ୍ରଏ ଥିଲା ମର୍ତ୍ତ୍ୟପୁର ଯେ । ୩୨ । କାଞ୍ଚିପତିସୁତ ଚନ୍ଦ୍ରଭାନୁ ହେଲା ବିଭା । ଦେବେ ପଚାରିଲେ କହ ସେ ସୁନ୍ଦରି ଶୋଭା ଯେ । ୩୩ । ଋଷି କହେ କ କହିବି କନ୍ଥମାନ ଶୁଣ ।

---

୨୪ । ସୁଭୂଷଣ—ଭଲ ଗହଣା ପିନ୍ଧାଇ ।

୨୬ । ଶିବ—ମହାଦେବ, ଶିବା—ପାର୍ବତୀ ।

୨୮ । ପୋତ—ଜାହାଜ ।

୨୯ । ପ୍ରିୟସୁତା—ସ୍ନେହର ଝିଅ, ତଥିର—ବୁଝାଇ ।

୩୦ । ବୋଇତ—ଜାହାଜ ବା ଡଙ୍ଗା ।

୩୧ । ଜେମାବ୍ରାତ—ରଜାଝିଅ, ମନ୍ତ୍ରୀଝିଅ, ପୁରୋହିତ ଝିଅ, ସାଧୁ ଭଉଣୀ । ସିନ୍ଧୁ—ସମୁଦ୍ର ।

୩୨ । ଅମର—ଦେବତା, ନିକର-ସମୂହ, ଅତୁଲ୍ୟ-ଅତୁଳନୀୟ, ମର୍ତ୍ତ୍ୟପୁର—ପୃଥିବୀ ।

୩୩ । କାଞ୍ଚିପତି ସୁତ—କାଞ୍ଚିରାଜ ପୁଅ ।

୩୪ । ନୀଳ—ନେଳିଆ, ଧବଳ-ଧଳା, ରୁଷାଳ-ସୁନ୍ଦର ।

୩୫ । ଗହଳ-ଘନ, ପକ୍ଷ୍ମଳ-ପତା, ରଙ୍ଗପୁର-ସୌନ୍ଦର୍ଯ୍ୟପୂର୍ଣ୍ଣ ।

୩୬ । ଇନ୍ଦୀବର-ନୀଳକଇଁ, ପୁଣ୍ଡରୀକ-ଧଳାପଦ୍ମ, ଖଞ୍ଜରୀଟ ଖଞ୍ଜନପକ୍ଷୀ, ମୀନ-ମାଛ, ମଦିର-ମଧୁ, ଅଳସନେଇ ।

ସେ ଲବଣ୍ୟବତୀର ଆଖି ନୀଳକଇଁ ପରି ନେଳିଆ, ଧଳା ପଦ୍ମପରି ଧଳା, ଖଞ୍ଜନ ପକ୍ଷୀପରି ଚଞ୍ଚଳ, ମାଛପରି ସୁନ୍ଦର, ଭ୍ରୁଲୁପତା ଗହଳ ହେତୁ ଧନୁପରି ଅତ୍ୟନ୍ତ ସୁନ୍ଦର ଦେଖା ଯାଉଅଛି ।

ନୀଳ ଧବଳ ଚଞ୍ଚଳ ବିଶାଳ ତା ଗୁଣ ଯେ । ୩୪ । ଅତି ରଙ୍ଗ ଗହଳ ପକ୍ଷ୍ମଳ
ପୂର ନେତ୍ର । ଗୁଣେ ଗୁଣେ ଲଭି ହେଲେ ଏମାନେ ପବିତ୍ର ଯେ ।୩୫ ।
ଇନ୍ଦୀବର ପୁଣ୍ଡରୀକ ଖଞ୍ଜରୀଟ ମୀନ । ମଦର ଅନ୍ୟ ନେତ୍ରକୁ ହୁଅନ୍ତି
ସମାନ ହେ ।୩୬। ସିହାଣୀ ଗୁହାଣୀ ଶର ବାନ୍ଧିବା ଛଟକ । ଗୁହିଁ ନ
ଗୁହିଁବ କି ସେ ବିକୁଳି ଝଟକ ଯେ । ୩୭ । ଡୋଳା ଚଞ୍ଚଳ ରସିକା
ନାସିକାକୁ ଗୁହିଁ । ଅନ୍ତପଳାୟିତ ଶ୍ରୁତି ଗୁହିଁ ଲେଉଟଇ ଯେ । ୩୮ ।
ଏତେମାତ୍ର ନେତ୍ର ପ୍ରଶଂସାକୁ ଶୁଣି ସୁରେ । ଲାବଣ୍ୟବତୀ କି ବୋଲି
କଥା ପରସ୍ପରେ ଯେ । ୩୯ । ସେହି ବୋଲି ବାହାରିବାବେଳେ ମୁନିବର ।
ଶରପରେ ମାର ତହିଁ ପ୍ରହାରିଲା ଶର ଯେ । ୪୦ । ନିଶ୍ୱାସ ପକାଇ କର
ସିଞ୍ଚାଇ ବିସ୍ମୟ । ନରେ ନିକ ଭୋଗ ହେଲା ଏତେ ଶୋଭାମୟ ଯେ । ୪୧ ।
ଆମ୍ଭ ଅଶା ବିଫଳକୁ ନେଲା ତ ଦଇବ । ଅବଶ୍ୟ ତାହା ତାହାର ବିଚ୍ଛେଦ
ହୋଇବ ଯେ । ୪୨ । ସୁରରମଣୀଙ୍କ ମହାଶଙ୍କା ହେଲା ଦୂର । ଭାବିଲେ
ବିଚ୍ଛେଦ ଶାପ ନୁହଇ ବେଭାର ଯେ । ୪୩ । ନଳ ଦମୟନ୍ତୀ ପ୍ରାୟ
କଷ୍ଟଦାନ ଭିନ୍ନ । ହୋଇ ପୁଣି ଲଭନ୍ତି ବିପୁଳ ଭୋଗମାନ ଯେ ।୪୪।

---

୩୭ । ସିହାଣୀ-ଚତୁରୀ, ଗୁହାଣୀ-ଅନାଇବା, ବିକୁଳି ଝଟକ-ବିଜୁଳି ତେଜ ।
୩୮ । ଡୋଳା-ଆଖିଡୋଳା, ନାସିକା-ନାକ, ଶ୍ରୁତି-କାନ, ଅନ୍ତପଳାୟିତ
—ଶେଷଯାଏ ଲମ୍ବିତ ।
୩୯ । ସୁର—ଦେବତା ।
୪୦ । ଶରପରେ ଶର—ବାଣପରେ ବାଣ, ମାର—କନ୍ଦର୍ପ ।
୪୧ । କର-ହାତ, ବିସ୍ମୟ-ଅଶ୍ଚର୍ଯ୍ୟ, ଶୋଭାମୟ-ସୁନ୍ଦର ।
୪୨ । ବିଚ୍ଛେଦ-ପୃଥକ୍ ।
୪୩ । ସୁର ରମଣୀ-ଦେବସ୍ତ୍ରୀ, ମହାଶଙ୍କା-ବେଶି ଭୟ ।
ଦେବସ୍ତ୍ରୀମାନେ ଲାବଣ୍ୟବତୀ ଶୋଭା ଦେଖି ଭାବିଲେ ସେ ଦେବଙ୍କୁ
ବରିଲେ ଆମ୍ଭ ସୁଖ ଯିବ । ବିଭା ହେବାରୁ ସେମାନେ ସୁଖୀ ହେଲେ ।
୪୪ । ବିପୁଳ ବେଶି, ଭୋଗ-ସୁଖ ।
ଦମୟନ୍ତୀ ଦେବଙ୍କୁ ଛାଡ଼ି ନଳକୁ ବରିବାରୁ ନାନାଦି କଷ୍ଟ ପାଇ ମଧ୍ୟ
ନିଜର ସତୀତ୍ୱ ବଳରେ ପୁନରାୟ ରାଜ୍ୟ ଓ ସ୍ୱାମୀସୁଖ ପାଇଲେ ।

ନିଃଶ୍ୱାସଜଭବା ଚଣ୍ଡୀ ସିନ୍ଧୁ ଦେଶେ ଯାଇ । ଉପକାରେ ରହିଲା ରାଜାରେ ପୂଜା ପାଇ ଯେ ।୪୫। ଏଣୁ ଅନନ୍ତରେ ତହିଁ ନୃପତି କୁମାର । ବେଢେବେଦନେ ପରବେଶ ଆପଣା ନଗର ଯେ । ୪୬ । କର୍ଣ୍ଣାଟ ଜନକ ଶୁଣି ଅତି ତୋଷ ହେଲେ । ସଚିବଙ୍କୁ ହକାରାଇ ପୁର ମଣ୍ଡାଇଲେ ଯେ । ୪୭ । ମହୋତ୍ସବେ ଅନ୍ତଃପୁରେ ନେଲେ କନ୍ୟା ବର । ଏହି ବିଧି ମନ୍ତ୍ରୀ ପୁରୋହିତ ସାଧୁ ତର ଯେ ।୪୮। ନନନ୍ଦା ନିଷେଧେ ପୁର ସ୍ୱୟଂ ସୁକୁମାରୀ । ଯନ୍ତ୍ର ବହୁଭୂଷଣ ବସନେ ବୋଧକର ଯେ । ୪୯ । ଶାଶୁଙ୍କ ଓଳଗି ବାସ ନିଜସ୍ଥଳ କଲା । ପୁରସିନ୍ଧୁ ହୁଳହୁଳ ନାଦେ ଉଚ୍ଛୁଳିଲା ଯେ । ୫୦ । ନାରୀଏ ପ୍ରଶଂସା କଲେ ଏ ସଂସାର ସାର । ଜଗଜ୍ଜୟୀ ଜୟମୂର୍ତ୍ତି କି ଏ ମଦନର ଯେ । ୫୧ । କୁନ୍ତଳ କାଳିନ୍ଦୀଜଳ ଜଳଦ କଜ୍ଜ୍ୱଳ । କି ଏ ତମ ତାମସ ତମାଲ ଖେତମାଲ ଯେ । ୫୨ । କି ଶ୍ୟାମର ଭ୍ରମର ଅମରବର ମଣି । ଶୁଚି ସୁରୁଚି କସ୍ତୁରୀ ଶିଖିପୁଚ୍ଛ ଜିଣି ଯେ । ୫୩ । ଚକୋର ପାଳକା କିବା ଅଳିତା ଅଳକ । ଲଲାଟପଟ ଅର୍ଦ୍ଧେନ୍ଦୁ ଅନଙ୍ଗ ଫଳକ ଯେ । ୫୪ । କର୍ଣ୍ଣ ଚୂତଫଳଫାଳ କିଂଶୁକ ପାଟଳୀ । କିବା ବନ୍ଧୁର ଢକାର ପାଶ ଖଟଦୋଳୀ ଯେ । ୫୫ ।

---

୪୫ । ନିଶ୍ୱାସଜଭବା-ନିଶ୍ୱାସରୁ ଜନ୍ମ ହୋଇଥିବା, ଚଣ୍ଡୀ-ଯୋଗିନୀ ।

୪୭ । କର୍ଣ୍ଣାଟ ଜନକ-କର୍ଣ୍ଣାଟ ରାଜା , ସଚିବ-ମନ୍ତ୍ରୀ ।

୪୮ । ମହୋତ୍ସବେ-ଅତ୍ୟନ୍ତ ଉତ୍ସବରେ, ଅନ୍ତଃପୁରେ-ଭିତର ପୁରକୁ ।

୪୯ । ନନନ୍ଦା—ନଣନ୍ଦ ।

୫୦ । ନାରୀଏ-ସ୍ତ୍ରୀମାନେ, ସଂସାର ସାର-ଜଗତରେ ପ୍ରଧାନ, ଜଗଜ୍ଜୟୀ-ସଂସାର ଜୟକାରୀ ରୂପ, ଏ କ'ଣ ମଦନଙ୍କୁ ଅର୍ଥାତ୍ କାମ ସଂସାର ଜୟ କରିବାକୁ ଏ ରୂପ ତିଆର କରିଛି ।

୫୨ । କୁନ୍ତଳ-ବାଳ, କାଳିନ୍ଦୀ ଜଳ-ଯମୁନାପାଣି, ଜଳଦ-ମେଘ, କଜ୍ଜ୍ୱଳ-କଳା, ତମ-ରାହୁ, ତାମସ-ଅନ୍ଧାର, ତମାଲ-କଳା, ଖତମାଲ-ମେଘ ।

୫୩ । ଭ୍ରମର-ଭଅଁର, ଅମର ବରମଣି-ଇନ୍ଦ୍ର ନୀଳମଣି, ଶିଖିପୁଚ୍ଛ-ମୟୂରପୁଚ୍ଛ, ଶୁଚି-ପବିତ୍ର ।

୫୪ । ଚକୋର-ଚକୁଅ ପକ୍ଷୀ, ପାଳକା-ପର, ଅଳକ-ଚୂନାବାଳ, ଅଳିକା—ଇତସ୍ତତଃ, ଲଲାଟପଟ-କପାଳ, ଅର୍ଦ୍ଧେନ୍ଦୁ-ଅଧାଚନ୍ଦ୍ର, ଅନଙ୍ଗ ଫଳକ—କନ୍ଦର୍ପର ଶର ଫାଳ ।

୫୫ । ଚୂତଫଳ ଫାଳ—ଅମ୍ବଫାଳ, କିଂଶୁକ—ପଳାଶ ଫୁଲ, ପାଟଳୀ—ପାଟଳଫୁଲ, ଭଲ, ବନ୍ଧୁର—କୁଶବନ୍ଧୁ, ଢକାର—ଢ ଅକ୍ଷରପରି କାନ ।

ଗଣ୍ଡ ଖଣ୍ଡଚନ୍ଦ୍ର ଅଦରଶ ପାଳି ଦଶି । ଗୃହୁ ଭୁରୁ କମାଣ ପରଶୁ ଶିଶୁଗଣୀ
ଯେ ।୫୬। ନାସିକା କୀର ତୂଣୀର ତିଳଫୁଲ୍ଲ ତୁଳ । ଶବୁକ ଚତୁର୍ଥୀ ଚନ୍ଦ୍ର
ନାଗରଙ୍ଗ ଫଳ ଯେ ।୫୭। ନେତ୍ର କୁରଙ୍ଗ ତୁରଙ୍ଗ ନୀଳଇନ୍ଦୀବର । ମୀନ
ଖଞ୍ଜନ ନଳିନ ମାର୍ଗଣ ମଦର ଗୋ ।୫୮। କଳାଡୋଳା ଖେଳା
ଇନ୍ଦୀବର ଲୀଳା ନିନ୍ଦ । ଅନ୍ତ କୁନ୍ତ ଶାଣିତ ତରୁଣମର୍ମଭେଦୀ ଯେ ।୫୯।
ଗୃହୁ ଝଲକ ପଲକ ପତନ ଗୃହୁସି । ସଂଯତନରେ ଦର୍ପକ ଦର୍ପକକତୁସ୍ତ
ଗୋ ।୬୦। ଅଧର ବାଲ ଅରୁଣ ପ୍ରବାଳ୍ଲ ପ୍ରବାଳ । କି ବିମ୍ବ
ତାଳମ୍ବପୁଷ୍ପ ମାଣିକ୍ୟ ହିଙ୍ଗୁଳ ଯେ ।୬୧। ବନ୍ଧୁକ ସନ୍ଧ୍ୟାମିହିର
ମନ୍ଦାର ସିନ୍ଦୁର । ପୁଣି ଅନୁରାଗ ଜନୁସ୍ଥଳ ପରକାର ଗୋ ।୬୨।
ହାସ କାଶ ପୀୟୂଷ କର୍ପୂର ଚନ୍ଦ୍ରକର । କିଏ କୁମୁଦ ହିଣ୍ଡୀର ଦର
ହରଧର ଗୋ ।୬୩। ଦଶନ କୁନ୍ଦକୋରକ କରକ ହୀରକ । ମୋତିପନ୍ତ
ସୁଧାବିନ୍ଦୁ ଉଣ୍ଡୁଳ ତୁଳକ ଗୋ ।୬୦। ମୁଖବାସ ଝଲ ଅହ୍ଲାଦ
ମନୋହର । ଏକତନ୍ତୁ କମଳ ଦର୍ପଣ ନିଶାକର ଗୋ ।୬୫। ବିମ୍ବୁ କପୋତ

---

୫୬ । ଗଣ୍ଡ—ଗାଲ, ଖଣ୍ଡଚନ୍ଦ୍ର-ଅଧାଚନ୍ଦ୍ର, ପାଳି—ଫାଳ, ଭୁରୁ—ଭ୍ରୂଲତା, କମାଣ—ଧନୁ, ପରଶୁ—ଫାରସୀ, ଶିଶୁଗଣୀ—ଦ୍ୱିଜାସ୍ତ୍ର କଙ୍କ ।

୫୭ । ନାସିକା—ନାକ, କୀର—ଶୁଆ, ତୂଣୀର ଶରମୁଣା, ଶୁଆଥଣ୍ଟ ଓ ତିଳଫୁଲ ସଙ୍ଗେ ନାକ ସମାନ, ଶବୁକ—ଓଠ, ନାଗରଙ୍ଗ-ନାରଙ୍ଗ ।

୫୮ । କୁରଙ୍ଗ—ହରିଣ, ତୁରଙ୍ଗ—ଘୋଡ଼ା, ନୀଳଇନ୍ଦୀବର—ନୀଳକଇଁ, ନଳିନ—ପଦ୍ମ, ମାର୍ଗଣ—ଶର, ମଦର—ଗୁହାଁଣୀ ।

୬୦ । ପଲକପତନ—ପତା ପକାଇବା, ସଂଯତନରେ—ସାବଧାନରେ, ଦର୍ପକର-କନ୍ଦର୍ପର, ଦର୍ପକ କତୁସ୍ତ-ଦମ୍ଭ ନାଶ କାରୀ ।

୬୧ । ବାଲଅରୁଣ—ସକାଳ ସୂର୍ଯ୍ୟ, ପ୍ରବାଳ—ପୋହଳା, ପ୍ରବଳ-ଅଧିକ, ବିମ୍ବ—କଇଁଚ କାକୁଡ଼ି, ହିଙ୍ଗୁଳ—ଲାଲ ।

୬୨ । ବନ୍ଧୁକ—ବଧୂଲିଫୁଲ, ସନ୍ଧ୍ୟାମିହିର—ଅସ୍ତବେଳର ସୂର୍ଯ୍ୟ ।

୬୩ । କାଶ—କାଇଁଶଫୁଲ, କର—କିରଣ, କୁମୁଦ—କଇଁ, ହିଣ୍ଡିର—ଫେଣ, ଦର—ଶଙ୍ଖ, ହରଧର—କୈଳାସ ପର୍ବତ ।

୬୪ । କୁନ୍ଦ—କୁନ୍ଦଫୁଲ, କୋରକ—କଢ଼, କରକ—ଡାଳିମ୍ବମଞ୍ଜି, ପନ୍ତ—ସମସ୍ତ, ଉଣ୍ଡୁଳ—ଉଜ୍ଜଳ ।

୬୫ । ଝଲ—ଝଟକ, ନିଶାକର—ଚନ୍ଦ୍ର, ପଦ୍ମ, ଦର୍ପଣ, ଚନ୍ଦ୍ର—ଏକକରେ ତା ମୁହଁରେ ଅଛି ।

ମଙ୍ଗଳକୁମ୍ଭ ଗ୍ରୀବାଗଳ । ଚରମପ୍ରଭା ନିର୍ଜ୍ଜଳ ନଦୀ ରମ୍ଭାଦଳ ଗେ ।୬୬। ଭୁଜ ଚମ୍ପାମାଳଶୋଭି ମୃଣାଳବଲ୍ଲରୀ । କର କୋକନଦ ଭେଦୁ ପଲ୍ଲବକୁ ସର ଯେ ।୬୭। ଗନ୍ଧଫଳୀ ଅଙ୍ଗୁଳି କଳେ ଜାତିକଳୀ । ବାଣୀ ବେଣୁ ବୀଣା ପିକ ଶୁକ ଥିବ ଦଳି ଯେ ।୬୮। ଉରଜ କନ୍ଦୁକ ଚକ୍ରବାକ ସମ୍ପୁଟକ । କି ସ୍ୱୟଂଭୂ ଶମ୍ଭୁ ତମ୍ଭୁ ଅମ୍ବୁଜ କୋରକ ଯେ । ୬୯ । ସାତକୁମ୍ଭ କୁମ୍ଭ କୁମ୍ଭୀ କୁମ୍ଭ ରମ୍ଭାକୋଷ । ମୁଦ୍ରିତଛତ୍ର ବୋଇବ ସ୍ୟନ୍ଦନକଳଶ ଗୋ । ୭୦ । କାମନୃପର ଚୋପର ଉଲଟ ନଗାଣ । କି ମଲ୍ଲସାଧନଚକା ପ୍ରସ୍ତର ଘଟଣ ଗୋ ।୭୧। କି ନାରକେଳ ଶ୍ରୀଫଳ ତାଳ ମାତୁଲଙ୍ଗ । ପୀୟୂଷକୋଷ କି ମେରୁସର ଗୁରୁ ତୁଙ୍ଗ ଯେ । ୭୨ । ଉଦର ଲାବଣ୍ୟସର ସାରସପତର । ତ୍ରିବଳୀ ସୋପାନ କିବା ତ୍ରିବେଣୀ ରୁଚିର ଗୋ । ୭୩ । ରୋମଲତା ଧୂମଲତା, ଶଇ-ବାଳ ଲତା । ନୀଳପିପିଲିକା ଅଳିଅଳକା ଶୋଭିତା ଯେ ।୭୪। ନୀଳମଣିମାଳା ଭେଳା ମରକତଦଣ୍ଡ । ପଚ୍ଛିଶ ତେର ଥୋଇଛନ୍ତି କି ଫୁଲକୋଦଣ୍ଡ ଗୋ ।୭୫।

---

୬୬। କମ୍ବୁ—ଶଙ୍ଖ, ଗ୍ରୀବା—ବେକ, ଚରମପ୍ରଭା—ପିଠିର ଶୋଭା, ନିର୍ଜ୍ଜଳ ନଦୀ—ଶୁଖିଲା ନଈ, ରମ୍ଭାଦଳ—କଦଳୀ ପତ୍ର ।

୬୭। ମୃଣାଳ ବଲ୍ଲରୀ—ପଦ୍ମନାଡ଼, କୋକନଦ—ଲାଲକଇଁ, ପଲ୍ଲବ—କଅଁଳ ପତ୍ର ।

୬୮। ଗନ୍ଧଫଳୀ-ଚମ୍ପାକଢ଼, ଜାତିକଳୀ-ଜାଇଫୁଲକଢ଼, ବେଣୁ-ବାଂଶ ।

୬୯। କନ୍ଦୁକ—ପେଣ୍ଡୁ, ସଂପୁଟକ-ଫରୁଆ, ସ୍ୱୟମ୍ଭୁ ଶମ୍ଭୁ—ମାଟି ତଳୁ ବାହାରିଥିବା ଶିବଲିଙ୍ଗ, ଅମ୍ବୁଜ କୋରକ—ପଦ୍ମକଢ଼ ।

୭୦। ସାତକୁମ୍ଭକୁମ୍ଭ—ସୁନାମାଠିଆ, କୁମ୍ଭିକୁମ୍ଭ—ହାତୀ ଉପରେ ଥିବା ମାଂସ ବା କଳଶ, ରମ୍ଭାକୋଷ—କଦଳୀ ଭଣ୍ଡା, ମୁଦ୍ରିତ—ମୁଦ୍ରା, ଛତ୍ର—ଛତା, ସ୍ୟନ୍ଦନ—ରଥ ।

୭୧। କାମନୃପ—କନ୍ଦର୍ପରାଜା, ନଗାଣ—ନାଗରା, ମଲ୍ଲସାଧନ—ମାଲକୁସ୍ତି, ପ୍ରସ୍ତର—ପଥର, ଚୋପର—ବନ୍ଦୀଘର ।

୭୨। ନାରକେଳ—ନଡ଼ିଆ, ଶ୍ରୀଫଳ—ବେଲ, ମାତୁଲଙ୍ଗ-ଟଭା, ପୀୟୂଷ-କୋଷ—ଅମୃତଭଣ୍ଡା, ଗୁରୁତୁଙ୍ଗ—ଅତି ଉଚ୍ଚ ।

୭୩। ଲାବଣ୍ୟସର-ଶୋଭାପୁଷ୍କରିଣୀ, ତ୍ରିବେଣୀ-ଗଙ୍ଗାଯମୁନା ସରସ୍ୱତୀ ସଙ୍ଗମ;

୭୪। ରୋମଲତା-ପେଟର ଲୋମ, ଶଇବାଳ-ଶିଉଳି, ପିପିଲିକା-ପିମ୍ପୁଡ଼ି, ଅଳି ଅଳକା—ଭ୍ରମର ସମୂହ, ସାରସ ପତର—ପଦ୍ମପତ୍ର ।

୭୫। ପଚ୍ଛିଶ—ଖଣ୍ଡା, ଫୁଲକୋଦଣ୍ଡ—କନ୍ଦର୍ପ ।

ମଝ ସିଂହ ଉପରୁ ଓବର୍ଣ୍ଣ ଅଣୁ ଧରି । ଗୁରୁଅଙ୍କ କୁଶମୁଦ୍ରା ବିସର୍ଗରେ ଛବି ଗୋ ।୭୬। ନାଭି ଟୋପ କୂପଗୁଣ ଭୋଟି ଜଳଭ୍ରମ । ନିତମ୍ବ ସୁଧାଂଶୁ ବିମ୍ବ ରଥାଙ୍ଗକୁ ସମ ଗୋ ।୭୭। ରତି ଯଜ୍ଞଅର୍ଘ୍ୟସ୍ଥାଳୀ କିବା ପାନପତ୍ର । ସୁସଞ୍ଚ ସ୍ଫିଚ ଲକ୍ଷଣ ଯନ୍ତ୍ରତୁମ୍ବି ମାନ ଯେ ।୭୮। ମଣ୍ଡପ କଚ୍ଛପ ଯଜ୍ଞବେଦୀ ଭଦ୍ରାସନ । ହେମପାଣୀ କାମପୁର ଚକ୍ରର ଜଘନ ଯେ ।୭୯। ଗୁରୁ ଉରୁ ରମ୍ଭାତରୁ ଅର୍ଗଳ ପୁଳନ । କରଭ ଉଡ଼ୁପ ଜାନୁ ଗୁଳୁଫ ବନ୍ଧନ ଗୋ ।୮୦। ଅଙ୍ଗୁଳି ଅଶୋକଦଳ ନଖ ଭାନୁମଣି । ପଦ୍ମ ସ୍ଥଳପଦ୍ମ ତଳ ମନ୍ଦାରକୁ ଜିଣି ଗୋ ।୮୧। ଗଉରୀ ଗଉରକାନ୍ତି ଦେଉଅଛି ଦଳି । ଶମ୍ପା ଚମ୍ପା ସମ୍ପାକ କୁସୁମ ହେମଝଳ ଗୋ ।୮୨। ଗଉରୀ ହରିଦ୍ରା ହରିତାଳ ସ୍ୱର୍ଣ୍ଣଫୁଲ । କେତକୀ କଞ୍ଜକେଶର କେହ୍ନେ ହେବ ତୁଲ ଗୋ ।୮୩। କୋମଳେ ତୁଳା ଲବଣୀ ଶିରୀଷ ଧୂକ୍କାରି । କରଣିରେ ପଦ ଦେବ କରିଗତି କରି ଗୋ ।୮୪। ବାସେ ଉତ୍ପଳ କସ୍ତୁରୀ ଅନ୍ୟ ମନୋରମା । କାହା ଆଖି ଦେଖି ନାହିଁ ଏମନ୍ତ ସୁଷମା ଯେ ।୮୫। ଏ ବିଧି ପ୍ରଶଂସିପୁରେ ରଖି ଶୋଭାନିଧି । ଦମ୍ପତି କରନ୍ତି କେଳି ତହିଁ ନାନାବିଧି ଯେ ।୮୬। ସିଂହଳ ଦ୍ୱୀପ ନୃପଜ ମନ୍ଦୀକି ମେଲାଣି । କେତେଦିନ ଅନ୍ତେ ଯହିଁ କଲେ ନୃପମଣି ଯେ ।୮୭। ଗଉତମନାରୀର ଉତ୍ତମ ଗତିଦାୟୀ । ଉପଇନ୍ଦ୍ର ବୀରବର ସେ ଶ୍ରୀରାମ ଧ୍ୟାୟି ଯେ ।୮୮।

---

୭୬ । ମଝ—ମଝି ବା ଅଣ୍ଟା । ନାଭିଟୋପ—ନାଭିଖାଲ ।

୭୭ । ଜଳଭ୍ରମ-ପାଣି ଭଉଁରି, ସୁଧାଂଶୁ-ଚନ୍ଦ୍ର, ରଥାଙ୍ଗ-ଚକ୍ର ବା ଚକ ।

୭୮ । ସୁସଞ୍ଚ—ସୁନ୍ଦର, ସ୍ଫିଚ—ପିଚ୍ଛ, ଯନ୍ତ୍ର ତୁମ୍ବୀ—ବୀଣାର ଲାଉ ତୁମ୍ବୀ ।

୭୯ । କଚ୍ଛପ—କଇଁଛ ।

୮୦ । ଅର୍ଗଳ—କାଠଖମ୍ବ, କରଭ—ହାତୀଛୁଆ, ଉଡ଼ୁପ—ଭେଳା ।

୮୧ । ଭାନୁମଣି—ସୂର୍ଯ୍ୟକାନ୍ତ ମଣି ।

୮୨ । ଗଉରୀ—ଗୋରୀ, ଗଉରକାନ୍ତି-ଗୋରା ତେଜ ବା ଜାଫ୍ରାନ କେଶର ତେଜ, ଶମ୍ପା-ବିଜୁଳି, ସମ୍ପାକକୁସୁମ-ସୁନାରି ଫୁଲ, ହେମ-ସୁନା ।

୮୩ । କଞ୍ଜକେଶର—ପଦ୍ମକେଶର ।

୮୪ । କରି—ହାତୀ ।

୮୫ । ଉତ୍ପଳ-କଇଁ, ଏଠାରେ ନୀଳକଇଁ, ସୁଷମା-ସୁନ୍ଦର, ନୃପଜ-ରଜାପୁଅ ।

୮୮ । ଗଉତମ ନାରୀ—ଅହଲ୍ୟା । ଚନ୍ଦ୍ରଭାନୁ ବିବାହ ଶେଷରେ ଲବଣ୍ୟବତୀଙ୍କ ସଙ୍ଗରେ ନେଇ ଆଡ଼ମ୍ବର ସହକାରେ ନିଜ ଦେଶକୁ ଆସିବା ସମୟରେ ସେ ସମୟର ସୌନ୍ଦର୍ଯ୍ୟ ବର୍ଣ୍ଣନା ଏ ଛାନ୍ଦରେ କରି ଯାଇଛି ।

## ଷଟ୍‌ତ୍ରିଂଶ ଛାନ୍ଦ

( ନବଦମ୍ପତିଙ୍କର ଆନନ୍ଦ ବିହାର ବର୍ଣ୍ଣନ )

ରାଗ—ରାଜବିଜେ, ତାଳ ରୂପକ

ପ୍ରବେଶ ସୁରଭି ଘନରସମୟ ଜଡ଼ବର ସୁରଞ୍ଜନ । ସୁଖଦାତା ଘନସାର ପ୍ରକାଶରେ ହରିତାପପ୍ରଭଞ୍ଜନ ହେ ସାଧୁ ।୧। କମଳତୋଷଦାନକର ହୋଇଲା ଦୀନକୁ ଦୁର୍ବହ କର । ସୁବାସସୁମନାରେ ସ୍ନେହ ଅଧିକ

---

## ଷଟ୍‌ତ୍ରିଂଶ ଛାନ୍ଦ

୧ । ସୁରଭି-ସୁବାସଯୁକ୍ତ, ଘନରସମୟ-ମେଘ ଅବା ରସପୂର୍ଣ୍ଣ, ଜଡ଼ବର—ବୃକ୍ଷମାନେ, ପର୍ବତମାନେ, ବେଶିଶୀତ । ସୁରଞ୍ଜନ-ରଞ୍ଜିତ, ଦାବାଗ୍ନି । ଘନସାର—କର୍ପୂର, ମେଘ । ହରିତାପ—(ହରିତ-ଅପ) ହରିତ—ଦାଗ, ଅପ—ଜଳ, ହରି—ବେଙ୍ଗ, ସୂର୍ଯ୍ୟ, ପ୍ରଭଞ୍ଜନ—ପବନ ଓ୍ୱଣା, ସାଧୁ—ପଣ୍ଡିତ ।

(କ) ଅଧିରସର ( ବସନ୍ତ ) ଆନନ୍ଦ ଦାୟକ ସମୟ ଆସିଲା । କାରଣ, ଗଛମାନେ ନୂଆପତ୍ର ଫୁଲରେ ଶୋଭିତ ହେଲେ, କର୍ପୂର ଦେହକୁ ଭଲ ଲାଗିଲା, ଦାଗମାନେ ସୁନ୍ଦର ଦିଶିଲେ, ଜଳ ହେବାରୁ ପଦ୍ମ ଫୁଟିଲା, ପବନ ମଧ୍ୟ ବହିଲା ।

(ଖ) ଖରା ସମୟ ହେଲାପରି ଜଣାଗଲା, କାରଣ ବଉଳ ଗଛ ପତ୍ର ଫୁଲରେ ଶୋଭିତ ହେଲା, ପର୍ବତରେ ନିଆଁ ଲାଗିଲା, କର୍ପୂର ମଧ୍ୟ ଥଣ୍ଡା ଲାଗିଲା, ପବନ ଆରାମ ହେଲା ।

(ଗ) ବର୍ଷା ସମୟ ହେଲାପରି ଜଣାଗଲା, ମେଘ ବର୍ଷିଲା, ଗଛମାନେ ସତେଜ ହେଲେ, ବେଙ୍ଗଙ୍କର କଷ୍ଟଗଲା ।

(ଘ) ଶୀତ କାଳପରି ମଧ୍ୟ ଜଣାଗଲା, ବେଶି ଶୀତ ହେଲା, ଘୋଡ଼ି ହେବାକୁ ସୁଖ ଲାଗିଲା, କର୍ପୂର ମୁଖକୁ ପିତା ହେଲା ଓ ଅସୁଖ ଲାଗିଲା, ସୂର୍ଯ୍ୟଙ୍କର ତେଜ ମଧ୍ୟ କମିଲା ।

୨ । କମଳ—ପଦ୍ମ, ଜଳ, ସାରସପକ୍ଷୀ, ଅଗ୍ନି । ଦିନ—ଦିବସ, ଦୀନ—ଦୁଃଖୀ । (ଏଠାରେ ବିଚ୍ଛେଦୀ) ସୁବାସ ସୁମନା—ମାଳତୀ ଫୁଲ, ସୁନ୍ଦରୀ ସ୍ତ୍ରୀ, ସୁବାସ—ଉତ୍ତମ ଲୁଗା ।

(କ) ଏହି ବସନ୍ତ କାଳରେ ପଦ୍ମ ଆନନ୍ଦ ଦେବାରୁ ଦିନରେ ସାକ୍ଷାତ ହେବା ଯୋଗୁଁ ଦିନଯାକ ଦୁର୍ବହ ନା କଷ୍ଟକର ହେଲା । ସମସ୍ତେ ବାସନା ଫୁଲକୁ ସ୍ନେହ କଲେ ।

ସକଳଜନ ଆଦର । ୨ । କଳକଣ୍ଠ ରବ ଦିଗନ୍ତେ ଶୁଭଇ ଅନଙ୍ଗ ପ୍ରବଳ ଯହିଁ । ହେଲା ଶୋଭା ବନବିହାର ଯହିଁରେ ଅନେ ମନ ନ ରସଇ । ୩ । ପୁଷ୍କରେ ସାରଙ୍ଗ ଲୀଳା ପ୍ରକାଶିଲେ ନାୟିକା ବିଚ୍ଛେଦୀ ଛନ୍ତି । ଅଶାରେ

---

(ଖ) ଖରାଦିନ ହେତୁ (ଜଳକୁ ସମସ୍ତେ ଆଦର କଲେ । ଖରାହେତୁ ଦିନଯାକ ବଡ଼ କଷ୍ଟ ହେଲା, ସମସ୍ତେ ସୁଗନ୍ଧ ଫୁଲମାଳ ପକାଇଲେ) ।

(ଗ) ବର୍ଷାହେତୁ-ସାରସ ପକ୍ଷୀ ଆନନ୍ଦ ହେଲା, ବିଚ୍ଛେଦୀମାନେ ବର୍ଷାଯୋଗୁ ଦୁଃଖ ଅନୁଭବ କଲେ, ମାଳତୀ ଫୁଲକୁ ସମସ୍ତେ ଆଦର କଲେ ।

(ଘ) ଶୀତକାଳ ହେତୁ ଲୋକେ ନିଆଁକୁ ଭଲ ପାଇଲେ, ସୁନ୍ଦରୀ ସ୍ତ୍ରୀମାନଙ୍କୁ ସମସ୍ତେ ନବାକୁ ଇଚ୍ଛା କଲେ ।

୩ । କଳକଣ୍ଠ-କୋଇଲି ଶବ୍ଦ; ହଂସ ପାରାବତ, ବନବିହାର-ବଣରେ କ୍ରୀଡ଼ା କରିବା, ପାଣିରେ କ୍ରୀଡ଼ା କରିବା, ଘରେ ଘରେ କ୍ରୀଡ଼ା ହେଲା ।

(କ) ବସନ୍ତକାଳ ହେତୁ କୋଇଲି ବୋବାଇଲା, ତାହା ଶୁଣିଅଡ଼େ ଶୁଣି ଲୋକେ କାମରେ ଆତୁର ହୋଇ ଫୁଲ ବଗିଚାରେ ବିହାର କଲେ ।

(ଖ) ଖରାଦିନରେ ପାରାବତର ଶବ୍ଦ ଶୁଭିଲା, ଲୋକେ ଖରା ହେତୁ ଜଳ-କେଳି କରି ସନ୍ତୋଷ ହେଲେ ।

(ଗ) ବର୍ଷାଦିନରେ ଗାୟକମାନେ ଗୀତ ବୋଲିବାକୁ ସମସ୍ତେ ଆନନ୍ଦ ହେଲେ, ପାଣି ସବୁ ନଈରେ ପ୍ରବଳ ବେଗରେ ଯିବାକୁ ଲାଗିଲା ।

(ଘ) ଶୀତ ଦିନରେ ହଂସମାନେ ଶବ୍ଦ କରି ଆନନ୍ଦରେ ଜଳକ୍ରୀଡ଼ା କଲେ । ଏହା ଦେଖି ଲୋକମାନେ ଆନନ୍ଦ ହୋଇ ଘରେ ରହି କ୍ରୀଡ଼ାରେ ମାତିଲେ ।

୪ । ପୁଷ୍କର—ମେଘ, ପଦ୍ମଫୁଲ, ପାଣି, ଆକାଶ । ସାରଙ୍ଗ—କୋଇଲି, କର୍ପୂର, ଚାତକ ପକ୍ଷୀ, ହଂସ ।

(କ) ବସନ୍ତରେ ପଦ୍ମଫୁଲ ଫୁଟିବାରୁ ଶୋଭା ଦିଶିଲା, କୋଇଲି ବୋବାଇବାରୁ ଆନନ୍ଦ ଜାତ ହେଲା, ସ୍ୱାମୀ ପାଖରେ ନ ଥିବା ସ୍ତ୍ରୀମାନେ ସ୍ୱାମୀ ଆସିବା ଦିନକୁ ଗଣି କାନ୍ଥରେ ଗାର ପକାଇଲେ ।

(ଖ) ଗ୍ରୀଷ୍ମରେ ଲୋକସବୁ କର୍ପୂର ନାଇ ପାଣିରେ ପଡ଼ି ଗ୍ରୀଷ୍ମତାପ ହରିଲେ, ବିଚ୍ଛେଦୀ ସ୍ତ୍ରୀମାନେ କାମ ଭୟରେ ନିଶିଦିନ ଗଣିଲେ ।

(ଗ) ବର୍ଷାହେତୁ ଆକାଶରେ ଚାତକ ପକ୍ଷୀ ଉଡ଼ି ଆନନ୍ଦ ହେଲେ, ମେଘମାନେ ଆକାଶରେ ଛୁଟି ଖେଳିଲାପରି ବର୍ଷା କଲେ, ବିଚ୍ଛେଦୀମାନେ ସ୍ୱାମୀ ନ ଥିବାରୁ ବସି ଦୁଃଖିତ ହୋଇ ଦିନ ଗଣିଲେ ।

ଦୃଷ୍ଟି ପକାଇ ସେ ଭିତରେ ଲେଖି ବସେ କଣ୍ଠ ଧନ । ୪ । ନଗରେ ବରହୀ ଦୀପ୍ତମାନ ହେଲେ ସଂଯୋଗ ଜ୍ୱାଳାପ୍ରକାଶ । ଜନନସ୍ୱନକୁ କଦା-ଚିତ ଅଜ ଜୀମୂତ ନୋହିଲ ଦୃଶ୍ୟ । ୫ । ଏମନ୍ତ କାଳମାନଙ୍କେ ନୃପସୁତ ନୃପନନ୍ଦନୀର ସଙ୍ଗେ । ଗୃନ୍ଦଣୀ ମଣାଇ ଜଗତୀଅଙ୍କରେ ବିହାର କରଇ ରଙ୍ଗେ । ୬ । ଏକ ଲବ ନବପଲ୍ଲବଅଧରସ୍ୱ ପାଶରୁ ତୁଟଇ ଭିନ୍ନ । ଅଙ୍ଗ ସୁବାସ ଶୀତଳ ନିନ୍ଦା କରୁଥାଇ କର୍ପୂର ଚନ୍ଦନ । ୭ । ଅଧରପାନେ ଅମୃତ ଅଛି ଜାଣେ ସକଳ ମଧୁର ଶେଷ । ଭାବଇ ସ୍ୱୟମ୍ଭୁ ଶମ୍ଭୁ କମ୍ବୁକଣ୍ଠୀ ଉରଜ

---

(ଘ) ଶୀତରେ ପାଣିରେ ହଂସମାନେ ଆନନ୍ଦରେ ଖେଳିଲେ, ଏହା ଦେଖି ବିଚ୍ଛେଦୀ ସ୍ତ୍ରୀମାନେ ଏକାକୀ ଶୀତକଷ୍ଟ ଓ ସ୍ୱାମୀ କଷ୍ଟରେ ବଡ଼ ଦୁଃଖିତ ହୋଇ ଧନ ଗଣିଲେ ।

୫ । ନଗରେ—ପର୍ବତମାନଙ୍କରେ,ବୃକ୍ଷମାନଙ୍କରେ,ଲୋକ ବସତିନଗରରେ । ବରହୀ—ଗଛସବୁ, ବନଅଗ୍ନି, ମୟୂର, ଅଗ୍ନି । ସଂଯୋଗ—ଏକତ୍ର, ଜୀମୂତ—ମେଘ, ପର୍ବତ—ଜଳଦ ।

(କ) ବସନ୍ତରେ—ପର୍ବତମାନଙ୍କରେ ଥିବା ବୃକ୍ଷସବୁ ନୂଆଫୁଲ ପତ୍ରରେ ଭୂଷିତ ହେବାରୁ ସୁନ୍ଦର ଦିଶିଲେ, ସ୍ତ୍ରୀ ପୁରୁଷ ଏକତ୍ରରେ ଆନନ୍ଦରେ କ୍ରୀଡ଼ାକଲେ, ମେଘ ମଧ ଦେଖା ନ ଯିବାରୁ ଆକାଶ ନିର୍ମଳ ଦେଖାଗଲା ।

(ଖ) ଖରାରେ ପର୍ବତମାନଙ୍କର ଗଛକୁ ଗଛ ଘଷି ହୋଇ ଘସି ହେବାରୁ ନିଆଁ ବାହାରିଲା,ସେ ନିଆଁ ଏ ବଣରୁ ସେ ବଣକୁ ମାଡ଼ିବାର ଦେଖା-ଗଲା, ସୂର୍ଯ୍ୟଙ୍କ ତେଜହେତୁ ମେଘ ଆକାଶରେ ଦେଖାଗଲା ନାହିଁ ।

(ଗ) ବର୍ଷାରେ ବର୍ଷା ହେବାରୁ ପର୍ବତରେ ବା ଗ୍ରାମମାନଙ୍କରେ କଳାମେଘକୁ ଦେଖି ମୟୂରମାନେ ପୁଚ୍ଛଟେକି ନାଚିବାରୁ ଶୋଭା ଦିଶିଲା, ପର୍ବତ ସବୁ ମେଘରେ ଘୋଡ଼ାଇ ହୋଇଗଲେ ।

(ଘ) ଶୀତରେ ଲୋକମାନେ ଘରେ ଘରେ ନିଆଁ ଜାଳି ଶୀତକଷ୍ଟ ନିବାରଣ କଲେ, ଆକାଶ ନିର୍ମଳ ଦେଖାଗଲା,ସଂଯୋଗଜ୍ୱାଳା ମଧ ଅଧିକ ହେଲା ।

୬ । ଗୃନ୍ଦଣୀ—ଚଉତରା, ଚନ୍ଦ୍ରଶାଳ, ଜଗତ ଅଙ୍କରେ—କୋଠାଘର ଭିତରେ ବା ସିଂହାସନ ଉପରେ ।

୭ । ନବପଲ୍ଲବ—ନୂଆ କଅଁଳ ପତ୍ର (ଲାଲ), ଅଧର—ଓଷ୍ଠ, ଅଙ୍ଗ—ଦେହ, ସୁବାସ-ବାସନା, ଶୀତଳତା-ଥଣ୍ଡା । ଏକଲବ—ଅଳ୍ପକ୍ଷଣ ।

୮ । ସକଳ ମଧୁର—ସମସ୍ତପ୍ରକାର ମିଠା ଜିନିସ । ସ୍ୱୟମ୍ଭୁ—ନିଜ ଇଚ୍ଛାରେ ଉଠିଥିବା, ଶମ୍ଭୁ—ମହାଦେବ, କମ୍ବୁ—ଶଙ୍ଖ ।

ଅଭୟ ଦାନୀ ।୮। ସକଳ ଚାତୁରୀ ଉପରେ ଚାତୁରୀ କହଇ ଚତୁରୀ ବାଣୀ । ଅଣିମାଦ୍ୟ ସୁଖୁ ବଡ଼ କରି ଗଣେ ଚୁମ୍ବନ ଦେବାର ଅଣୀ ।୯। ଲେଖଇ ନୀବିମୋକ୍ଷକୁ ମୋକ୍ଷ କରି ଜାଣିଛି ମନରେ ତାର । ଭାବେ ଦମ୍ପତ୍ତିରୁ ବଡ଼ ସମ୍ପତ୍ତି କି ଭୋଗ କରେ ପୁରନ୍ଦର ।୧୦। ନୀରଦକୁନ୍ତଳ ପରାୟ ଚାମର ଗତି ପରାୟ ଦ୍ୱିରଦ । ନୟନ ପରାୟେ କୁରଙ୍ଗ କାହିଁକି କରି ତରଙ୍ଗ ବିନୋଦ ।୧୧। ଜଘନ ପରାୟ ସିଂହାସନ, ସ୍ତନ ପ୍ରାୟ ପୂର୍ଣ୍ଣକୁମ୍ଭ କାହିଁ । ଚକ୍ର-ବର୍ତ୍ତୀଏ ସମାନେ ସୁଖ ଅଭିଷେକ କ'ଲେ ପାଇ ନାହିଁ ।୧୨। ଏମନ୍ତ ସ୍ନେହୀ ଜାନୁ ବିନା ଆସନ ଉର ବାହୁ ଆନ ଶଯ୍ୟା । ନ ଦେଇ ହରଲା ଦିବା ରଜନୀକି ବଶ କରି ଦୁଷ୍ଟରଜା ।୧୩। ଚଞ୍ଚଲେକ୍ଷଣୀ ଯେ ଅଞ୍ଚଳେ ବାନ୍ଧିଲା ତା ମନ ପ୍ରକାଶି ପ୍ରେମ । ଥାଉ ଶୟନେ ନୟନେ ନ ଦେଖଇ ଅୟନେ ଅଉ ଚରମ ।୧୪। ସୋପାନେ ଅବରୋହଣେ କରପଇଠ ଯାଚି ଭାଙ୍ଗି ଦେଇ ପାନ । ରତାନ୍ତେ ବ୍ୟଜନେ ବାଣ୍ଟୁ ଛଡ଼ାଇଲେ କଟେ ଚନ୍ଦନ ଲେପନ ।୧୫। ପ୍ରାତରୁ ଉଠି ସୁମରଣ କରନ୍ତି ଦୁହେଁ ଦୁହିଁଙ୍କର ନାମ । ମୁଖ ନିରେଖିଲ ଉତ୍ତାରୁ ଦେଖନ୍ତି ଦେବପଠ ଏହେ ପ୍ରେମ ।୧୬। ବାରନ୍ତି ନେତ୍ରକୁ ପଲକ ଥିବାକୁ ପୁଲକ ହେବାକୁ ଅଙ୍ଗେ । ରଖି ଦେବେ ନାହିଁ ତାର ବସନକୁ ଅଲିଙ୍ଗନ ଅନୁରାଗେ ।୧୭। ଶୟନ କାଳେ ବେନି ହୃଦ ମଧ୍ୟରେ ନ ଗଲେ ମୃଣାଳସୂତା । କୁସୁମକାଳେ ଏକପୁରେ ଥିଲେହେଁ ତନୁଅନ୍ତ-

---

୯ । ଅଣୀ—ଢଙ୍ଗ ଓ ଭଙ୍ଗୀ, ଅଣିମାଦ୍ୟ—ଅଷ୍ଟଐଶ୍ୱର୍ଯ୍ୟ ।

୧୦ । ନୀବିମୋକ୍ଷ—କଚ୍ଛ ଫିଟାଇବା, ପୁରନ୍ଦର—ଇନ୍ଦ୍ର ।

୧୧ । ନୀରଦ—ମେଘ, କୁନ୍ତଳ—ବାଳ, ଚାମର—ଚଅଁର, ଦ୍ୱିରଦ-ହାତୀ ତରଙ୍ଗବିନୋଦ-ଡୋଳାଖେଳାଇବା ଭଙ୍ଗୀ ।

୧୨ । ଜଘନ—ଜଙ୍ଘ, ଚକ୍ରବର୍ତ୍ତୀ—ଲକ୍ଷେରାଜାର ମଉଡ଼ମଣି ।

୧୩ । ଆସନ—ବସାଇବା, ଦୃଷ୍ଟରଜା-ନବଯୁବତୀ ।

୧୪ । ଚଞ୍ଚଲେକ୍ଷଣୀ—ଶୀଘ୍ର ଅକ୍ଷି ଫେରାଇବା, ଶୋଇଲାବେଳେତ ପିଠି କରିବା ଦୂରେଥାଉ-ପରସ୍ପର ବିଦାୟ ବେଳେ ପିଠିକରି କେହି ଯାଆନ୍ତି ନାହିଁ ।

୧୫ । ସୋପାନ—ପାହାଚ, କରପଇଠ—ହାତଭରା ।

୧୬ । ନେତ୍ର-ଅକ୍ଷି,ପଲକ-ପତା,ପକାଇବା, ପୁଲକ-ଆନନ୍ଦ,ରୋମଟାଙ୍କୁରିବା

୧୮ । ମୃଣାଳସୂତା—ପଦ୍ମନାଡ଼ ଭିତରୁ ଯେଉଁ ସରୁସୂତା ବାହାରେ, କୁସୁମକାଳ—ଋତୁ ସମୟ, ତନୁ—ଦେହ ।

ରକୁ ଚିନ୍ତା ।୧୮। ନିନ୍ଦନ୍ତି ଧାତାକୁ ବଡ଼ ଦାରୁଣ ସେ ଏ କଥା କାହୁଁ ବିଚାରି । ତାହା ଚନ୍ଦ୍ରପରି ଲୋଗ ତ କରଇ କୁମୁଦ ଚନ୍ଦ୍ରମା ପରି ।୧୯। ନିଶାପତି ଦୀପଜ୍ୟୋତି ଯହିଁ ଦୂତୀ ହୋଇ ଛଡ଼ାଇ ସଙ୍କୋଚ । ପଞ୍ଚନାରାଚ ପାଞ୍ଚ ତାଙ୍କ ନ ପାଇ ଦୁହେଁ ଦୁହିଁଙ୍କ କବଚ ।୨୦। କ୍ଷୀର ନୀର ପରି ଅଭେଦ ପୀରତି ବେନି ତନୁ ଏକ ପ୍ରାଣ । ଦର୍ପଣ କରି ହୃଦରେ ପ୍ରତିବିମ୍ବେ ମନେ କଳ୍ପ କଥା ପୁଣ ।୨୧। ନାଗବଲ୍ଲୀଦଳ ବେନିଭାଗ କରି ଭୁଞ୍ଜନ୍ତି ରଞ୍ଜନ୍ତି ଚିତ୍ତ । ବଚନ ପ୍ରତିପଦରେ ରସଗର୍ଭ ହୋଇଥାଇ ଯେ ଇଙ୍ଗିତ ।୨୨। ମଧୁ ମାଧବରେ ଜଳଯନ୍ତ୍ରପୁରେ ନଳଦବାଡ଼ ରଚନ । ଅତର ଚନ୍ଦନ ଚୁଆରେ ପିଚକା କରନ୍ତି ଭାବେ ସେଚନ ।୨୩। କୁସୁମଶେଯେ କେତ୍ରକରେ ଶୟନ ଏଣୁ ନିଦ୍ରା ନ ଆସଇ । ଯେଣୁ ମନ ଶଙ୍କା ବିବସନ ପାଇଁ ବେନି ଜନଙ୍କର ଥାଇ ।୨୪। ବରଷାରେ ବିଦ୍ୟୁ ଝିଟି ଝିଟି କେକୀନାଦକୁ ଗୃହାନ୍ତି ସୁଖେ । ଅତି ତାମସ ଦିବସ ନିଶାମଣି ଋତୁକୁ ପ୍ରଶଂସି ମୁଖେ ।୨୫। ରହି ନ ପାରନ୍ତି ବିଧିନିଷେଧକୁ ଭେକ ଡାକୁଛି ଶବଦ । ଶୁଣନ୍ତି ମଣନ୍ତି କାହୁଁ ଭିଆଇଲା ଅନଙ୍ଗ ତେଲଙ୍ଗୀ ବାଦ୍ୟ ।୨୬। ଶରଦ ଋତୁରେ ଚତ୍ୱରେ ଭ୍ରମନ୍ତି କରି ଧରାଧରି ହୋଇ । ମାଳତୀ ମଧୁପ ପ୍ରୀତିକି ଲଭନ୍ତି ଏହି ନାମ ଛଳ ଦେଇ ।୨୭। ନିଜ ଅନୁରାଗ ଅଧିକେ ଦେଖାଇ ସେ

---

୧୯ । ତାରା ଚନ୍ଦ୍ର ଏକତ୍ର ଥାନ୍ତି ସ୍ନେହଥାଏ କିନ୍ତୁ ଚନ୍ଦ୍ର ଦୂରରେ ଥାଇ ପରସ୍ପର ଦେଖା ହେତୁ ସ୍ନେହଥାଏ ସେହିପରି—

୨୦ । ଦୂତୀ—ଯେ ସ୍ତ୍ରୀ ପୁରୁଷ ମିଳାଇ ନାନାଦି କଥା କହି ଭୟ ଛଡ଼ାଇ ଆନନ୍ଦ ଦିଅନ୍ତି ସେହିପରି ଚନ୍ଦ୍ର ଦୂତୀପରି ଆଲୁଅ ଦେବାରୁ ଆନନ୍ଦରେ କ୍ରୀଡ଼ା କରନ୍ତି, ପଞ୍ଚନାରାଚ କନ୍ଦର୍ପ, କବଚ-ସାଞ୍ଜୁ ।

୨୧ । ଆରସିରେତ ମୁହଁ ଦେଖାଯାଏ, ମାତ୍ର ଏ ଦୁହେଁ ପରସ୍ପର ମନକୁ ଦେଖନ୍ତି

୨୨ । ନାଗବଲ୍ଲୀଦଳ-ପାନପତ୍ର, ରସଗର୍ଭ ରସପୂର୍ଣ୍ଣ ।

୨୩ । ମଧୁ—ବସନ୍ତ ସମୟ, ମାଧବ—ଗ୍ରୀଷ୍ମକାଳ, ନଳଦ—ବେଣାଚେର ବାଡ଼-ପରଦା, ଜଳଯନ୍ତ୍ରପୁରେ-ପାଣି ସିଞ୍ଚିତ ଘରେ ।

୨୪ । କୁସୁମ-ଫୁଲ, କରେ—କରଣରେ, ବିବସନ-ଲଙ୍ଗଳା, ଶଙ୍କା-ଭୟ ।

୨୫ । ବିଦ୍ୟୁ—ବିଜୁଳି, ଝିଟିକ-ଝିଟିକବା, କେକୀ—ମୟୂର, ଦିବସ-ଦିନ । ତମସ—ଅନ୍ଧାର, ନିଶା—ରାତି ।

୨୬ । ବିଧି ନିଷେଧ—ନିୟମ ନଥିବା, ଭେକ—ବେଙ୍ଗ, ଅନଙ୍ଗ-କନ୍ଦର୍ପ ।

୨୭ । ସ୍ତ୍ରୀ ପୁରୁଷକୁ ଭ୍ରମର ଓ ପୁରୁଷ ସ୍ତ୍ରୀ କୁ ମାଳତୀ ବୋଲି ଡାକନ୍ତି—

ତା'ଲେ ସମାରତନ । ସବୁଠାରେ ଜୀବଧବ ପାଇଁ ପ୍ରିୟା ତେଜଇ ସିନା ଜୀବନ । ୨୮ । ବିସ୍ମର ତରୁଣ ବୋଲଇ ଦାରୁଣ ଜୀଅଁଇ ସିନା ରେ ସଖି । ତାମ ବିନା ରତ ଚନ୍ଦ୍ରବନ୍ତ ଗ୍ରହ ନ ପାରିଲେ ଜୀବ ରଖି । ୨୯ । ହିମ ଶିଶିରେ ଅଗୁରୁଧୂପ ଧୂରେ କରି ହସନ୍ତୀ ଜ୍ୱଳିତ । ନିଶାରେ ନୀଶାରେ ଅଧର ତେଜନ୍ତି ତନୁ ଜଘନୁ ସତ । ୩୦ । ଭାବନ୍ତି କେନ୍ତ ଯେ ଧନ୍ୟ ଦମ୍ପତିଙ୍କ ବିପତ୍ତି ନାହିଁ ଏ କାଳେ । କହୁତ ବାସ ବାରଣର ସମ୍ପତ୍ତି ଜରୁ ତରୁଣୀର ବଳେ । ୩୧ । ଭାବୁଥିବେ ଦନ ବିରହୀ ଆମ୍ଭଙ୍କ କଳ ସ୍ଥଳେ ଗତି ନାହିଁ । ବିସ୍ମ ମକର ବିଷମ ଘାତ ସହି ଜୀଇବା କେମନ୍ତ ହୋଇ । ୩୨ । ଏ ବିଧି ଭାବ ଜକ୍ତି ନାନା ବିବିଧ ବିଳାସ ପ୍ରକାଶ ଯେତେ । ପଛେ ତ ପଞ୍ଚସ୍ଥନ୍ଦେ ବ୍ୟକ୍ତ ହୋଇବ ଶୁଣିବ ପୁଣି ପଣ୍ଡିତେ । ୩୩ । କହିବା ଦାନଙ୍କ ରସ ରହସ୍ୟକୁ ଶୁଣ ଦେଇକର ମନ । ପଶା ଖେଳିବା କି ବାଳୀ ବୋଲିବାକୁ ଛଳିଲି ପୁଂସ ରତନ । ୩୪ । କର ଚରଣ ପାଲି ଛକ ଚକକ ସ୍ତନ ସାରେ ଶୋଭା ପାଉ । ବିଦ୍ୟୁବିଜିତ କାନ୍ତି ଦାନ ଯହିଁରେ କି ଖେଳ ଖେଳିବା ଆଉ । ୩୫ । କେନ୍ତ ଜନରୁ ଜଣେହେଁ ନ ହାରିବା ହାରିବ କୁସୁମଶର । ମନେ ବିସ୍ମିର ତ ଏତେକ ସୁଖ ସ୍ଥିତି ଆନ କିକ କହିବାର । ୩୬ । ଶୁଣି ରସିକା ରମଣୀ ଯେ ବୋଇଲା ଏ ଭଙ୍ଗିକି କେ ପାରିବ । କାହିଁ କଥା ନେଇ କାହିଁ ଲଗାଇବ ତହିଁ କି ଜଉଳ ଥିବ । ୩୭ । ଏ ସମୟରେ ବୀରମାତା ବଧୂକୁ ଦେଖିବା ପାଇଁ ନିଅଇ । ପ୍ରିୟାପ୍ରତିପଟ୍ଟ ପେଡ଼ିରେ ଥିଲା ତା ଫେଡ଼ି ପ୍ରତ୍ୟକ୍ଷ ଦେଖଇ । ୩୮ । ଏହି ସମୟରେ ଚରମେ ଭରମବରନା ପ୍ରବେଶ ହେଲା । ପୁଣି କେ ସଦୃଶା ହେଲଣି ସପତ୍ନୀ ହେବା ଶଙ୍କାକୁ ଘେନିଲା । ୩୯ । ସ୍ୱଭାବେ

---

୩୦ । ହସନ୍ତୀ—ନିଅଁ ଜଳୁଥିଇ, ନିଶି-ରାତି, ନୀଶାର-ଶଯ୍ୟା ।

୩୧ । ଜରୁ—ସ୍ଥିତ ବା ବକ୍ଷ ।

୩୨ । (ଶୀତଦନ, ବିସ୍ମ ମକରମାସ) ଏ ଶୀତ ତ ବିସ୍ମ ମକରପର କଷ୍ଟଦେବ ।

୩୫ । ଗୋଡ଼ ଓ ହାତ, ପଶାପାଲି, ଗୃହପାଲି, ଚକକ ଭଲକ ହେଲା ଛକ, କୁଚ ହେଲା ସାର, ଦେହ ହେଲା ଦାନ ।

୩୬ । କୁସୁମଶର—କନ୍ଦର୍ପ, ପଶାରେ ଯେବେ ହାରେ, ଏ ପଶାରେ କନ୍ଦର୍ପ ହାରିଯିବ ।

୩୮ । ବୀରମାତା-ଲବଣ୍ୟବତୀ ଶାଶୁ, ପ୍ରିୟାପ୍ରତିପଟ୍ଟ-ଲବଣ୍ୟବତୀର ଚିତ୍ରପଟ୍ଟ

୩୯ । ଭରମ ବରନା—ସୁନାଗୋସ୍ତି ।

କୋପନା ଚନ୍ଦ୍ରମାଲପନା ନ ମଣିଲ ନିଜ ସ୍ନେହ । ଜଳେ ପ୍ରତିବିମ୍ବ ନିରେଖି
କେଶରୀ ଯେମନ୍ତ କଲାକ କୋହ । ୪୦ । ମାନ ଆରମ୍ଭ ରମ୍ଭୋରୁ କଲ ଥାଇଁ
ମଦନ ପରି ବିପକ୍ଷ । କହେ ଉପେନ୍ଦ୍ର ଭଞ୍ଜ ବୀରବର ରାମଚନ୍ଦ୍ର ରକ୍ଷାକକ୍ଷ ।୪୧।

---

## ସପ୍ତତ୍ରିଂଶ ଛାନ୍ଦ

( ଲାବଣ୍ୟବତୀ ମାନ କରନ୍ତେ ଚନ୍ଦ୍ରଭାନୁର ଗୁହାରି )

ରାଗ—କାଳି

ଅତି କାତରେ ନିଜ କାନ୍ତରେ ଶଙ୍କା ଚିତ୍ତରେ ଲଭି ।
କୋପ ଅଙ୍କୁର ମଣ୍ଡି ମୁକୁର କଲା ଚିକୁର ଶୋଭି ।
ରତିଅବେଶୀ ରତନବେଶୀ ଗଣ୍ଡେ ନିବେଶି କର ।
ନୟନନୀରରୁହରୁ ନୀର ଢାଳିଲା ନିରନ୍ତର । ୧ ।

---

୪୦ । କୋପନା—ରାଗୀ, ଲପନ—ମୁହଁ, କେଶରୀ—ସିଂହ, ପ୍ରତିବିମ୍ବ—ଛାଇ ।

୪୧ । ରମ୍ଭୋରୁ—ସୁନ୍ଦରୀ, ବିପକ୍ଷ—ଶତ୍ରୁ ।
ଋତୁଭେଦ ନେଇ ସ୍ତ୍ରୀ ପୁରୁଷ ଉଭୟେ ହାସ ପରିହାସ ଶୃଙ୍ଗାରାଦ ବିଷୟରେ ଲାବଣ୍ୟବତୀର ଚନ୍ଦ୍ରଭାନୁଙ୍କୁ ଅଭିମାନ କରିବା ।

---

## ସପ୍ତତ୍ରିଂଶ ଛାନ୍ଦ

୧ । କାତରେ—ବିକଳରେ, କାନ୍ତରେ—ସ୍ୱାମୀଠାରେ, ଶଙ୍କା—ଭୟ, ଏଠାରେ ସଉତୁଣୀର ଭୟ, କୋପ—ରାଗ, ମଣ୍ଡି – ଭଳ, ମୁକୁର—ଦର୍ପଣ, ଚିକୁରଶୋଭି-ବାଳଶୋଭିନୀ (ଲାବଣ୍ୟବତୀ), ରତିଅବେଶୀ-ରତିକୁଶଳା, ରତନବେଶୀ—ନାନାଦ ରତ୍ନ ଅଳଙ୍କାରରେ ଭୂଷିତା ( ଲାବଣ୍ୟବତୀ ), ନୟନନୀରରୁହ—ନେତ୍ରପଦ୍ମ, ନୀର—ଲୁହ, ନିରନ୍ତର—ସର୍ବଦା ।

ଶ୍ୱାସ ପ୍ରଖରେ ବହେ ଦୁଃଖରେ ଧରା ନଖରେ ଶରେ ।
ଓଷ୍ଠ କମ୍ପନ ହାସ ସ୍ୱପନ ମ୍ଳାନଲପନ ଧରେ ।
ଦେଖି ନାଗର ଅସି ଅଗର ଅନୁରାଗରେ ବଶେ ।
ଅତି ଆରତ ହୋଇ ପୀରତଯୁକ୍ତ ଭାରତୀ ଭାଷେ । ୨ ।
ତୋର ସୁଚରିତ ଅନଙ୍ଗରତି ମାନ ସଞ୍ଚିତ ଯେଣୁ ।
ରେ ସର୍ବଭୂତ ମୋହ ଅଦ୍ଭୁତ ମାନସମ୍ଭୂତ ଏଣୁ ।
ଉଦେ କମଳକୋଳେ କମଳଧର ନିର୍ମଳ ପ୍ରୀତି ।
ଧୈର୍ଯ୍ୟଭଞ୍ଜନ ମୋତିରଞ୍ଜନ କରେ ଗଞ୍ଜନ କାନ୍ତି ।୩।
ବସନ୍ତେ କଳକଣ୍ଠ ବିକଳ ଏ କି ସକଳମତେ ।
ଶୁଣୁ ବିରାଜମାନ ନାରାଜ ମଦନରାଜ ହାତେ ।
କେ ତୋ ସମାନ କାହାକୁ ମାନ ଘେନ ତୋ ମାନସର ।
ତୋ ବିନା ଗତି ନାହିଁ ଜଗତୀ ମଧ୍ୟେ ସଙ୍ଗତି ମୋର । ୪ ।
ମୋ ନିବେଦନା ଘେନ ବେଦନା ଚନ୍ଦ୍ରବଦନା ହର ।
କର ବିକାଶ କୁସୁମକାଶ ହାସ ପ୍ରକାଶ କର ।
ରେ ବୀଣାଭାଷି ବାଣୀ ନ ଭାଷି ବସିଲେ ଭାସିଗଲି ।
କୋଳରେ ହାର କରୁ ବାହାର ଏବେ କାହାର ହେଲି ।୫।

---

୨ । ଶ୍ୱାସ—ନିଶ୍ୱାସ, ପ୍ରଖର—ଶୀଘ୍ର, ଧରା—ପୃଥିବୀ, ହାସ ସ୍ୱପନ—ହସ ସପନ ପରି ହେଲା, ମ୍ଳାନ—ମଳିଅ, ବିମର୍ଷ, ଲପନ-ମୁହଁ, ଅନୁରାଗ-ସ୍ନେହ, ଆରତ—ଉତ୍କଣ୍ଠିତ, ପୀରତଯୁକ୍ତ—ସ୍ନେହପୂର୍ଣ୍ଣ, ଭାରତୀ—ବିନୟ, କଥା, ଭାଷେ—କହେ ।

୩ । ସର୍ବଭୂତ ମୋହ—ସମସ୍ତ ପ୍ରାଣୀଙ୍କ ମୋହକାରିଣୀ, ଅଦ୍ଭୁତ-ଆଶ୍ଚର୍ଯ୍ୟ, ମାନ—ଅଭିମାନ, ଉଦେ—ପ୍ରକାଶେ, କମଳ—ପଦ୍ମ, କୋଳେ—ଭିତରେ, କମଳଧର-ସୂର୍ଯ୍ୟ, ଧୈର୍ଯ୍ୟଭଞ୍ଜନ—ଦମ୍ଭହତ, ଗଞ୍ଜନକାନ୍ତି—ଖଞ୍ଜନ ସଦୃଶ ଆଖି, ମୋତିରଞ୍ଜନ—ମୋତିପରି ପାଣିଟୋପା ।

୪ । କଳକଣ୍ଠ—କୋଇଲି, ଜଗତୀ ମଧ୍ୟେ—ସଂସାର ମଧ୍ୟରେ ।

୫ । ନିବେଦନ—ବିନୟ, ବେଦନା-ଦୁଃଖ, ବିକାଶ-ପ୍ରକାଶ, କାଶହାସ-କାଶତଣ୍ଡି ଫୁଲପରି ହାସ, ବାଣୀ—କଥା, କୋଳରେ ଯାହାକୁ ହାର ପରି କରିଥିଲି ଏବେ ତାକୁ ବାହାର କଲି କାହାର ହେବ ?

ରସଜଦୟା ମୃଦୁ ହୃଦୟା ପର ତୋ ଦୟାବାର ।
କରୁ ନିରଣ ରବିଗରାସ ମୋତେ ପରାସ କର ।
ମୁଁ ଯେ ସ୍ତବକସ୍ତନା ସେବକ ପାଦଯାବକ ପର ।
ଏବେ ଖଣ୍ଡ ନା ସୁଖ, ଦଣ୍ଡନା ମହୀ ମଣ୍ଡନା ଗୋର ।୬।
ସବୁ ଭରସା ତୁ ମୋର ରସାଳସା ସାରସାନନା ।
ନୋହେ ଏ ମତ୍ତକାଶିନୀ ମତ ମୁଁ ତୋ କେମନ୍ତ ଅନା ।
ଗୃରଦ୍ୱିଗୁଣ ମଙ୍ଗଳାଗୁଣି ଅଙ୍କ କି ଗୁଣବତୀ ।
ଦରିଦ୍ରଧନ ତୁ ମୋର ଧନ କର ନିଧନ ଭୀତ । ୭ ।
ଭଜୁଛୁ ବିନାଶକୁ ନବୀନା ମୁହିଁ ତ ବିନା ଦୋଷେ ।
ଦଣ୍ଡି ଯାହାକୁ ମଣ୍ଡି ତାହାକୁ ମୃଦୁଦେହାକୁ ରୋଷେ ।
ଧରୁଛୁ ପଦ ନାଶ ବିପଦ ଇନ୍ଦ୍ର ସମ୍ପଦ ଦତ୍ତ ।
ରତି ରମଣୀ ରସିକ ମଣି ନାସିକାମଣି ନୃତ୍ୟ । ୮ ।
ଲେଖି ମକରୀ ସୁବେଣୀ କର ଢଅଇ କରିଗତି ।
ଅଛୁ ରସନା ଅନେ ରସନା ହୁଅ ପ୍ରସନ୍ନମତି ।
ନୃପନନ୍ଦନା ଜଗତ୍‌ବନ୍ଦନା ଭଙ୍ଗ ଚନ୍ଦନାଙ୍କିତେ ।
ନୋହେ ଭୂଷଣ ରୋଷେ ଦୂଷଣ ଦେଇ କଷଣ କେତେ । ୯ ।

---

୬। ମୃଦୁ ହୃଦୟ—କୋମଳମନା, ଦୟାବାର—ଦୟାର ଜଳ, ରବିଗରାସ—ସୂର୍ଯ୍ୟ ତାପରେ ଅସ୍ଥିର, ଏଠାରେ କନ୍ଦର୍ପର ଗ୍ରାସ, ପରାସ—ଦୁଃଖ, ସ୍ତବକସ୍ତନା—ବର୍ତ୍ତୁଳ ସ୍ତନା, ସେବକ—ଗୃକର, ପାଦଯାବକ—ଗୋଡ଼ର ଅଳତା ।

୭। ସାରସାନନା—(ସାରସ+ଆନନା)ସାରସ—ପଦ୍ମ, ଅନନ—ମୁଖ, ମତ୍ତକାଶିନୀ—ସୁନ୍ଦରୀ, ଗୃରଦ୍‌ଗୁଣି—ଅଠ, ଅଠମଙ୍ଗଳାରେ ପୁରୁଷ ସ୍ତ୍ରୀର ଦେଖାଦେଖି ମନା । କରନିଧନ ଭୀତ—ମରିବାକୁ ଭୟ କରିବା, ଅର୍ଥାତ୍ ମୁଁ ତୋ ଦୟା ବିନା ମରିବି ।

୮। ବିନାଶକୁ—ମାରିବାକୁ, ଦଣ୍ଡି—ଦଣ୍ଡଦେବା, ମଣ୍ଡି—କ୍ଷମାଦେବା, ମୃଦୁଦେହୀ—କୋମଳାଙ୍ଗୀ, ରସିକାମଣି—ରସିକାଶ୍ରେଷ୍ଠ, ରମଣୀ—ସୁନ୍ଦରୀ ।

୯। ମକରୀ—ଗାଲରେ ମଗର ଲେଖିବା, ସୁବେଣୀ—ଉତ୍ତମବେଣୀ ପକାଇ ଦେବା, କରିଗତି—ଗଜଗମନା, ରସନା—ଜିଭ, ରସ—ମଜ୍ଜ, ଭୂଷଣ—ଉଚିତ, ଦୂଷଣ—ମନ୍ଦ, ନିନ୍ଦା, କଷଣ—ଦୁଃଖ ।

ସରସଲତା ପାଦେ ଅଳତା ମଞ୍ଜୁଳଲତା କୁଚେ ।
ଅରେ ହେମାଙ୍ଗି ସୁଜଙ୍ଘମାଙ୍ଗି ଥିଲି ଯେ ମାଗି ତୋତେ ।
ମୋର ବର୍ତ୍ତିନ ସୁଧା ଯତନ ମଧ୍ୱାପତନ କରୁ ।
ହେଠଅଧରୁ କେଉଁ କୋଧରୁ ଚଢେ ନ ଧରୁ ସ୍ପୃହୁ । ୧୦ ।
ନ କର ଦଣ୍ଡ ଚଳମ୍ବ ଦଣ୍ଡ ହେଲେ ଅଦଣ୍ଡ ମୁହିଁ ।
ବାହୁପାଶରେ ବାନ୍ଧ ପାଶରେ ରଖ ତୋଷରେ ତୁହି ।
କୁଚମନ୍ଦର ଠେଁସି ହୃଦର ଦଅ ମୋ ଦର ନାହିଁ ।
ନଖକରତ ତହିଁ କରତ ତନୁ ନାରତ ସହି । ୧୧ ।
ଦୁଃଖ ସିହାଣି ବଙ୍କଗୃହାଣୀ ଖଡ଼ଗେ ହାଣି ପକା ।
ସ୍ତବେ ନାଞ୍ଜନ ନୋହେ ମୁଁ ଭନ୍ନ ନୁହ ମଞ୍ଜନା ଏକା ।
ପରେ ପ୍ରାଭବ ଦଅଇ ଭବ ମଧ୍ୟରେ ଭବମୋହି ।
ହେବ କାରତ ନାନ୍ଦତ ରତରମ୍ୟସୁରତ ସହି । ୧୨ ।
ସେବେ ଅଳପଦନ୍ତୁ କଳପ ତୁ ଯେ କଳପତରୁ ।
ପୂର୍ଣ୍ଣ ନ କର ବାଞ୍ଛାନ୍ତର ମୋର 'କ କରମରୁ ।
ରବାକରଣେ ଥିଲେ ବାରଣେ ଅହା କାରଣେ ଘଟେ ।
ନାହିଁ ଜଗତେ କେହି ଯୁଗତେ ତୋ ବନ୍ଧୁ ଗତେ ଏବେ । ୧୩ ।
ରେ ପ୍ରେମକଳା କୁଟିଳ କଳା ତୋ କେଶକଳାପର ।
ଯହୁଁ ରହିଲେ ନାନ୍ଦା ନୋହିଲେ ସେ ଯେ ମୋହିଲେ ସୁର ।
ମନ୍ଦ କନ୍ଦର ହାସେ ସୁନ୍ଦର ତୋହ ଅଦରବଶେ ।
ମୁଁ କି ଅସାର ଏଥୁଁ ସଂସାର-ସୁନ୍ଦରୀ ସାର ଘୋଷେ । ୧୪ ।

---

୧୦ । ସୁରସଲତା—ସୁନ୍ଦରୀ, ମଞ୍ଜୁଳଲତା-ସୁନ୍ଦରଲଠା, ହେମାଙ୍ଗି—ସୁନାଦେହୀ, ବର୍ତ୍ତିନ—ପାଇଣା, ମଧ୍ୱାପତନ—ତଳେ ପକାଇବା । ହେଠ—ତଳକୁ ।

୧୧ । ଦଣ୍ଡ—ସମସ୍ତ, ଦଣ୍ଡ—କଷ୍ଟ, ସଦା, ଅଦଣ୍ଡ—ଇଷ୍ଟ ସନ୍ତୋଷ, ଦର—ଭୟ, କରତ—ଚିରିବା ଅସ୍ତ୍ର, ତନୁ—ଦେହ ।

୧୨ । ଦୁଃଖ—କଷ୍ଟ; ବଙ୍କଗୃହାଣୀ—ବଙ୍କେଇ ଗୃହିବା, ସ୍ତବେ—ଅଳାପରେ, ମନୋହରେ, ନାଞ୍ଜନ—ଗୁଣ, ଭବ—ସଂସାର, ଭବମୋହି—ମହାଦେବ ମୋହକାରଣୀ, କାରତ—ଯଶ ।

୧୩ । ଅଳପଦନ୍ତୁ—ପିଲାଦନ୍ତ, କଳପ—ମନୋହର ।

୧୪ । କେଶକଳାପ—ବାଳସବୁ, ସୁର—ଦେବତା ।

ସମୀରଣନେ ପ୍ରେମରତନେ ହୋଇ ଯତନେ ବଢ଼ି ।
ଦୁଃଖ ପାଇଲି କାହିଁ ନୋହିଲି ତ୍ୟାଜ୍ୟ ହୋଇଲି ନାଢ଼ି ।
କୃପା କୃପଣ ଏ ତ୍ରିଭୁବନ ଶୋଭା ଦର୍ପଣମୁଖି ।
ପକାଇ ନ ଦେ ସନ୍ତାପନଦେ ପିକନିନାଦେ ସଖି । ୧୫ ।
କନ୍ଦୁକବର୍ତ୍ତୁଳା ତୋଳା ପିତୁଳା ମୋର କି ତୁଳା ତୋତେ ।
ଏହି ଭୁବନ ମୁଁ ପିଣ୍ଡ ବନଜାକ୍ଷି ଜୀବନ ସତେ ।
ହେବ ମୁଁ ବଳା ପ୍ରାୟ ଅବଳା ସ୍ନେହ ପ୍ରବଳା ଘେନ ।
ଛନ୍ଦ ଚରଣେ ତ୍ୟକ୍ତକରଣେ ନାହିଁ ଶରଣେ ଆନ । ୧୬ ।
ଜଳଦରସେ ଚାତକ ବସେ ସେ ନ ବରଷେ ଯେବେ ।
ଯାଇ ଆଶାରେ ନଦୀକାସାରେ ମହାତୃଷାରେ କେବେ ।
ନ ପାଇ ମଧୁ ଭୁଲନ୍ତି ମଧୁକର କି ମଧୁରକୁ ।
ଡରେ ମୁଁ ବିଧୁ କୁମୁଦ ବିଧୁହାସି ତୋ ବିଧୁରକୁ । ୧୭ ।
ଚନ୍ଦ୍ର ଯାମିନୀ ଦେଖି ଦାମିନୀକାନ୍ତି କାମିନୀବନ୍ଧୁ ।
ନୋହୁ ଫୁଲ୍ଲୁଣା କପାଁ ଅରୁଣାଧର କରୁଣାସିନ୍ଧୁ ।
କେଳିଆଶ୍ରମ କି ଅଭିଶ୍ରମ ଅନା ରେ ଶ୍ରମଦୃଶା ।
ଆଜ ଶୋକର ବଶେ ନ କର ଚକ୍ରବାକର ଦଶା । ୧୮ ।

---

୧୫ । ତ୍ୟାଜ୍ୟ—ଛାଡ଼ିବା, କୃପା—ଦୟା, କୃପଣ—ଲୋଭୀ, ସନ୍ତାପନଦେ—ଦୁଃଖ ନଦୀରେ, ପିକ ନିନାଦେ—କୋଇଲି ବଚନେ ।

୧୬ । କନ୍ଦୁକବର୍ତ୍ତୁଳା—ଗୋଲକଣ୍ଢୀ, ତୁଳା—ସମାନ, ବନଜାକ୍ଷୀ—ବନଜ+ଅକ୍ଷି, ବନଜ—ପଦ୍ମ, ତ୍ୟକ୍ତ କରଣେ—ଛାଡ଼ିବାରେ ।

୧୭ । ଜଳଦରସେ-ବର୍ଷା ଜଳରେ,ନଦୀ—ନଈ, କାସାରେ—ପୋଖରୀରେ ମଧୁ—ମଦ୍ଯ, ମଧୁକର—ଭ୍ରମର, ବିଧୁ—ଚନ୍ଦ୍ର, କୁମୁଦ—କଇଁ, ବିଧୁର—ବିଚ୍ଛେଦ ।

ବର୍ଷା ଜଳବିନା ଚାତକ ଅନ୍ୟ ପାଣି ପିଏ ନାହିଁ । ମଧୁଛଡ଼ା ଗୁଡ଼କୁ ଭ୍ରମରମାନେ ଆଦର କରନ୍ତି ନାହିଁ । ଚନ୍ଦ୍ର ଓ କୁମୁଦ ପରି ତୋହର ମୋର ଭାବ ବିଚ୍ଛେଦ ହେତୁ ମୁଁ ଦୁଃଖିତ ହେଉଛି ।

୧୮ । ଚନ୍ଦ୍ରଯାମିନୀ—ଜହ୍ନରାତି, ଦାମିନୀକାନ୍ତି—ବିଜୁଳିରୂପା, କାମିନୀ—ସୁନ୍ଦରୀ, ଫୁଲ୍ଲୁଣା—ଆନନ୍ଦ, ଅରୁଣାଧରୀ—ଅରୁଣ+ଅଧରୀ, ଅରୁଣ—ରକ୍ତବର୍ଣ୍ଣ, ଅଧର—ଓଷ୍ଠ, କେଳି ଆଶ୍ରମ—କ୍ରୀଡ଼ାଘର, ଅଭିଶ୍ରମ—ସୁନ୍ଦର, ଶ୍ରମ—ମୃଗ, ଶ୍ରମଦୃଶା—ମୃଗାକ୍ଷି ।

ତୋ ଏ ଚରିତ ନ୍ୟାସ୍ତେ ସରିତ ସ୍ନେହବାରିତ ହୋଇ ।
ଚାରୁଜଘନେ ଦୁଃଖ ସଘନେ ଶଙ୍କ୍ୟ ଲଙ୍ଘନେ ନାହିଁ ।
ମାନ ରଜନୀ ଅନ୍ତ ସଜନୀ ମୋ ସୁଖ ଜନ୍ମି ଭଲେ ।
କେ ମୋ ରକ୍ଷଣେ ନାହିଁ ଈକ୍ଷଣେ ଲୋତକ କ୍ଷଣେ ଥିଲେ । ୧୯ ।
ବାଗୁରେଁ ଧୀରେ ରସନାଧରେ ଅଛୁ ବାଧିରେ ଦୋଷ ।
କରେ ବାଳିକା ଗୁଞ୍ଜାମାଳିକା ଚିତ୍ରଅଳକା ନାଶ ।
କାମପ୍ରବଳେ ସୁରତ ବଳେ ରଚେ ଶବଲେକ୍ଷଣି ।
ଦୀପପ୍ରକରେ ଚନ୍ଦ୍ରମାକରେ ବିବାସ କରେ ପୁଣି । ୨୦ ।
କରେ କରଜକ୍ଷତ ଉରଜ ଚାରୁ ନୀରଜ କଢ଼େ ।
ମୁଁ ନ ଛାଡ଼ଇ ଓଷ୍ଠ ପୀଡ଼ଇ ହୃଲେ ଭିଡ଼ଇ ଗାଢ଼େ ।
ତୋର ନିସତ ନ ଘେନେ ସତ ଦୋଷୀ ମୁଁ ସନ୍ତତର ।
ମୋ କଷ୍ଟ ଗରିଷ୍ଠ ରେ ନାଗର କ୍ଷମା ସାଗର ହର । ୨୧ ।
ଲବ ଅନ୍ତର ବଶେ କାତର ହୋଇ ମାତର ଗୋର ।
ନୋହେ କପଟ ଦେଖି ଲମ୍ପଟ ତୋ ରୂପପଟ ଧର ।
ସପତ୍ନୀଦର ଘେନି କି ଦରକଣ୍ଠି ସାଦର ବେପେ ।
କସ ଏ ଥରେ ଭାବ ତ ଥରେ ହୃଦ ପଥରେ ବିଶେ । ୨୨ ।
ଏହି ବଚନାମୃତ ରଚନା କଲା ଶୋଚନା ଦୂର ।
ବନ୍ଦେ ଗୃହିଲା ମନ ମୋହିଲା ନେତ୍ରୁଁ ବହିଲା ନୀର ।

---

୧୯ । ସରିତ—ନଈ, ସ୍ନେହବାରିତ—ସ୍ନେହରୁ ବର୍ଜିତ, ସ୍ନେହରୂପ ଜଳ, ଚାରୁ—ସୁନ୍ଦର, ଜଘନ—ଜଙ୍ଘ, ଅନ୍ତ—ଶେଷ ।

୨୦ । ଗୁଞ୍ଜାମାଳିକା—ଗୁଞ୍ଜାହୋଇ ଥିବା ଫୁଲମାଳ, ଚିତ୍ରଅଳକା—ଗଣ୍ଡରେ ମକରୀ ପ୍ରଭୃତି ଚିତ୍ରସବୁ, ଶବଲେକ୍ଷଣୀ—ସୁଲୋଚନୀ, ଦୀପପ୍ରକରେ—ଦୀପ ଆଲୁଅରେ, ଚନ୍ଦ୍ରମାକରେ—ଚନ୍ଦ୍ର କିରଣରେ, ବିବସନ—ଲଙ୍ଗଳା ।

୨୧ । କରଜ—ନଖ, କ୍ଷତ—ଖଣ୍ଡିଆ, ଚାରୁ—ସୁନ୍ଦର, ନୀରଜକଢ଼ି—ପଦ୍ମକଢ଼, ନିସତ—ଅବଶ ମନା, ଗରିଷ୍ଠ—ଅଧିକ । ସନ୍ତତର—ସବୁବେଳେ ।

୨୨ । ଲବ—କ୍ଷଣ, ଅନ୍ତର ବଶେ—ଅଲଗାହେବାରୁ, ରୂପପଟ—ଚିତ୍ରପଟ, ସପତ୍ନୀଦର—ସଉତୁଣୀଙ୍କଠୁ, ବେପେ—ସ୍ୱଗରେ, ହୃଦପଥରେ—ମନମଧ୍ୟରେ, ବିଶେ—ଆଲୋଚନାକର ଟିକିଏ ।

ଵଚନେ ବାହାର ହେଲ ତାହାର ହାସ ନିହାରଭାନୁ ।
ଛାଡ଼ ହୁଣ୍ଡିଲ କଥା ପୋଡ଼ିଲ ବୋଲି ଜଣ୍ଡିଲ ତନୁ । ୨୩ ।
ଫୁଲଶାୟକବଶନାୟକ-ପ୍ରେମଦାୟକ ବାଳା ।
ନୋହେ କହିତ ଅଶେଷ ହିତ ଯେତେ ବାହିତ ଲୀଳା ।
ସେ ବିଚକ୍ଷଣେ କଲେ ଯେ କ୍ଷଣ ପରିଯନ୍ତେ କ୍ଷଣଦାଙ୍କୁ ।
ବାସ ହରିଲେ ସେ ବାହାରିଲେ ବେଗେ ଡରିଲେ ଦଙ୍କୁଁ । ୨୪ ।
ତପସ୍ୟାଭଙ୍ଗୀ କୋପିତଭଙ୍ଗୀ ଖ୍ୟାତ ତ୍ରିଭଙ୍ଗୀଛନ୍ଦ ।
ବୁଧମୋହନ ଖଳଗହନ ନାଶେ ଦହନ ଛାନ୍ଦ ।
ହେ ରାମ ଘନଶ୍ୟାମ ସଘନ ଦୁରିତ ଘନ ହର ।
ଭଞ୍ଜି ଉପେନ୍ଦ୍ର ଆପ-ଦ୍ୱିପେନ୍ଦ୍ର ହରି ନୃପେନ୍ଦ୍ର ଦର । ୨୫ ।

---

## ଅଷ୍ଟତ୍ରିଂଶ ଛାନ୍ଦ

( ଲାବଣ୍ୟବତୀ କେଳିରେ ସନ୍ତୋଷ ହୋଇ ଚନ୍ଦ୍ରଭାନୁର ପ୍ରଶଂସା )

ରାଗ—ବରାଡ଼ି

ସୁରତଶେଷେ ପୀରତନାଥିଙ୍କ ଆଗରେ ପଡ ବସାଇ ବସି ପଲ୍ୟଙ୍କ ପରେ । ଆବେଶ ହୋଇ ସୁବେଶ କରି ସାରି ସେ ଜୀବେଶ କରକୁ

---

୨୩ । ବଚନାମୃତ—କଥାସୁଧା, ଶୋଚନା—ଦୁଃଖ, ନୀର—ଲୁହ, ହାସନିହାର ଭାନୁ—ଚନ୍ଦ୍ରପରି ହାସ ।

୨୪ । ଫୁଲଶାୟକ ବଶ—କନ୍ଦର୍ପ ଅଧୀନ, ବିଚକ୍ଷଣ—ରତିକୁଶଳ, କ୍ଷଣଦାଙ୍କୁ—ରାତିକୁ, ଦଙ୍କୁ-ଭୟରୁ ।

୨୫ । ତପସ୍ୟାଭଙ୍ଗ—ଯେ ତପସ୍ୟାକୁ ଭାଙ୍ଗିପାରେ, ଖ୍ୟାତ—ବିଖ୍ୟାତ, ବୁଧ ମୋହନ—ପଣ୍ଡିତ ତୃପ୍ତିକାରକ, ଖଳ ଗହନ ମୂର୍ଖରୂପକ ବଣ, ଦହନ—ଅଗ୍ନିରେ ପୋଡ଼ିବା, ସଘନ-ବେଶି, ଦୁରିତ—ପାପ, ଘନହର—ନାଶକର, ତାପ—ଦୁଃଖ, ଦ୍ୱିପେନ୍ଦ୍ର—ହାତୀ, ହରି—ସିଂହ, ଦର—ଭୟ ।

ଚନ୍ଦ୍ରଭାନୁର ଲାବଣ୍ୟବତୀ ବିଚ୍ଛେଦରେ ଅନୁତାପ କରିବାର ବିଷୟ କୁହା ଯାଇଛି ।

---

## ଅଷ୍ଟତ୍ରିଂଶ ଛାନ୍ଦ

୧ । ଆବେଶ—ଆନନ୍ଦରେ ମନଯୋଗ, ସୁବେଶ—ଉତ୍ତମବେଶ, ଜୀବେଶ —ସ୍ୱାମୀ, ଚିବୁକ—ଗାଲ, ସନ୍ଦର୍ଭ—ଆନନ୍ଦ, ସୁଗର୍ଭ—ରସପରିପୂରିତ ପୂର୍ଣ୍ଣ ରସଗର୍ଭ—ରସରସିଆ, ବଚନ—କଥା ।

ନିବେଶି ଗରୁଡରେ । ସେ ମନୋହର । ଏବେ ବସନ୍ତ ଗୃହମଣି ନାଶି ।
ମନ୍ଦର୍ଭିଗର୍ଭିସୁହାସି ଶୋଭାଗୁଣଙ୍କୁ ପ୍ରଶଂସି ରସଗର୍ଭ ବଚନକୁ ଭାଷି ସେ । ୧ ।
ମନ୍ଦରସ୍ତନୀ ସୁନ୍ଦରୀ ପୁରନ୍ଦରୀ କୃଶୋଦରୀ ଦରିଦ୍ର ମୁଁ ତୁ ନିଧିପ୍ରତିମା ।
ଦର୍ପକଦର୍ପବର୍ଦ୍ଧିନୀ ଧନୀ ଦର୍ପଣବଦନା ଅଶେଷ ଅନଙ୍ଗ ରଙ୍ଗସୀମାରେ ।
ଜୀବେଶ୍ୱର । ତେତେ ଉପମା ହୋଇଣ ତୁହି । ସାରଭାଗ ତୋ ଶ୍ରୀମୁଖ
ସେ ପିଠା ଶୀତମୟୂଖ ତୋଷେ ଦେବଙ୍କୁ ଅମୃତ ଦେଇ ରେ । ୨ । ରମା
କଳନା ପାଇଁଲା ରମା ଉମା ନିର୍ମାଣିଲା ହସ୍ତ ବଳିବାକୁ ଅଗ ବାହି ।
ହେମପିତୁଳା ନିର୍ମାଣି ରସରେ ରସାଣି ପୁଣି ଭାବ ହାବ ଯୋଗେ ଜୀବ
ଦେଇ ରେ । ଜୀବେଶ୍ୱର । ଶୋଭା ଗୃହିଁ ହୋଇଲା କାତର । ବାନ୍ଧୁ ବାନ୍ଧୁ
ସୁକୁନ୍ତଳ ହେଲା ଚକ୍‌କଣ କୁଟିଲ ସ୍ୱେଦ କମ୍ପ ବହୁଥିବ କର ରେ । ୩ ।
ଗଣେଶ ତୋ ଶୋଭା ଗୃହିଁ ଗଣେ କରେ ମାଳା ବହି କେଉଁ ଅଙ୍ଗେ କି
ଉପମା ଦେବ । ଅଶେଷମୁଖ ବହିଲା ଶେଷ କହି ନ ପାରିଲା ଦେଖି

---

ପ୍ରୀତି ଶେଷରେ ଚନ୍ଦ୍ରଭାନୁ ଲାବଣ୍ୟବତୀଙ୍କ ପଲଙ୍କରେ ବସାଇ ତାର ଇତସ୍ତତଃ ହୋଇଥିବା ବେଶକୁ ଭଲରୂପେ ସଜାଡ଼ି ଦେଇ ରସରସିଆ କଥା କହିଲା ।

୨ । ମନ୍ଦରସ୍ତନା—ପର୍ବତସ୍ତନା, ସୁନ୍ଦରୀ ପୁରନ୍ଦରୀ—ସୁନ୍ଦରୀ ଶ୍ରେଷ୍ଠା, କୃଶୋଦରୀ —କ୍ଷୀଣଉଦରୀ, ନିଧି— ରତ୍ନାଦି ସମ୍ପତ୍ତି, ଦର୍ପକ—କନ୍ଦର୍ପ, ଦର୍ପ—ଗର୍ବ । ଶୀତମୟୂଖ—ଚନ୍ଦ୍ର, ଚନ୍ଦ୍ରରୁ ଦେବତାମାନେ ଅମୃତ ଖାଇବାରୁ ସେ ପିଠା ଦେଖା ଯାଏ ।

୩ । ରେ ରମା ! ରେ ସୁନ୍ଦରୀ ! ମୁଁ ମନେକରେ ବିଧି-ଯେ ବିଧାତା, ସେ ରମା କି ଲକ୍ଷ୍ମୀ ଉମା କି ପାର୍ବତୀ ଏହି ଦୁହିଙ୍କୁ ପ୍ରଥମେ କରି ତାଙ୍କର ହାତ ଠିକ ହେବା ପରେ ତୋତେ କଲା, ତେଣୁ ତୁ ତାଙ୍କଠାରୁ ସୁନ୍ଦରୀ ଅଛୁ । ହେମ ପିତୁଳା ନିର୍ମାଣ—ସୁନାର ପ୍ରତିମାଟିଏ କରି ରସରେ ରସାଣି—ଅଧରସରେ ପାଲିସ କରି ଜୀବଦାନ ଦେବାକୁ ଏପରି ସୁନ୍ଦରୀ ହେଲୁ, ତୋର ବାଳକୁ ବାନ୍ଧୁ ବାନ୍ଧୁ ବିଧାତାର ହାତ କମ୍ପିଲା ଅର୍ଥାତ୍ ସେ ମଧ୍ୟ ମଦନରେ ଅସ୍ଥିର ହେଲା ତେଣୁ ତା ହାତ କମ୍ପିବାରୁ ତୋ ବାଳ କୁଞ୍ଚି କୁଞ୍ଚିଆ ହୋଇଗଲା ।

୪ । ଗଣେଶ ତୋର ସୁନ୍ଦର ପଣ ଦେଖି କେଉଁ ଅଙ୍ଗକୁ କି ଉପମା ଦେବେ ବୋଲି ଠିକ୍ କରି ନ ପାରି କରରେ ମାଳା ଧରି ଗଣନା କଲେ । ଶେଷଦେବ ତୋର ନାସିକାର ଛବିକୁ ସହସ୍ର ମୁଖ ଧରି ସୁଦ୍ଧା

ନାସିକା ନାସିକା ଛବିରେ । ଜୀବେଶ୍ୱର । ଗୁଣ ଶୋଭା ଅକଥନ
ତୋର । ଗୁରୁସ୍ତନ ରମ୍ଭାଉରୁ ଏହି ଶବଦ ଶ୍ରୁତିରୁ ରମ୍ଭା କଲେ ସ୍ୱର୍ଗେ
ଅଲଙ୍କାର ରେ । ୪ । ଧନ୍ୟ ତୋ ନୟନରଙ୍ଗ ନୀଳ ଧବଳ ସୁରଙ୍ଗ
ତିନିବର୍ଣ୍ଣ ତ୍ରିଭୁବନ ତୋଷେ । ପୁଣି ଶ୍ରୀପତି ଶଙ୍କର ସବିତା କମଳାକର
ନିଜଗୁଣି କରିବାର ଅଶେ ରେ । ଜୀବେଶ୍ୱର । ସେ ଉକ୍ତିରୁ
କରିବେ ସେ ସ୍ତୁତି । ସ୍ମରଶରରେ ତୁ ଈଶ ଅମ୍ଭେ ତ
ସରଶବଶ ପାଇଲେ ବିନାଶ କର ଯତି ରେ । ୫ । ତୋପରି
ଗୁଲିବା ଇଚ୍ଛି ଇନ୍ଦ୍ର ଗଜେନ୍ଦ୍ର ଚଢ଼ିଛି ମୁନି ଶାପତାପ ଲୋପ ମନ୍ତୁ ।
ତପ କର କେତେ କାହିଁ କେଉଁ ଦେବତା ମନାଇ ମୁହିଁ ତୋତେ

---

କହି ପାରିଲି ନାହିଁ । ତୋର ଗୁଣ ଓ ସୌନ୍ଦର୍ଯ୍ୟ ବଡ଼ ଅକଥନୀୟ ।
ତୋର ଗୁରୁସ୍ତନ କି ସ୍ଥୂଳ କୁଚ ଓ ରମ୍ଭାଉରୁ କି କଦଳୀ ଗଛପରି
ଜଙ୍ଘଦେଖି ସ୍ୱର୍ଗରେ ଦେବତାମାନେ ରମ୍ଭାକୁ ଶ୍ରେଷ୍ଠ କରିଥିଲେ
ମାତ୍ର ତୋତେ ଦେଖି ତାଙ୍କର ସେ ଭ୍ରମ ଦୂରହେଲା ଅର୍ଥାତ୍ ତୁ
ରମ୍ଭାଠାରୁ ଅଧିକ ସୁନ୍ଦରୀ ହେଲୁ ।

୪ । ରେ ସଖି ; ତୋର ନୟନ ରଙ୍ଗ, କି ଆଖି ରଙ୍ଗ, ନୀଳ କି ନେଳିଆ
ଧବଳକି ଧଳା ଓ ସୁରଙ୍ଗ କି ଲାଲ ଏହି ତିନିବର୍ଣ୍ଣ ଯଥା—ନୀଳବର୍ଣ୍ଣ
ବିଷ୍ଣୁ, ଧଳା ବର୍ଣ୍ଣ ଶଙ୍କର ଓ ଲାଲବର୍ଣ୍ଣ ସୂର୍ଯ୍ୟ ଏ ତିନିଦେବ ତ୍ରିଭୁବନକୁ
ତୋଷ କରନ୍ତି ସେହିପରି ତୋ ଆଖିକି ଦେଖିଲେ ତିନିପୁର ଲୋକ
ତୋଷ ହୁଅନ୍ତି ପୁଣି ବିଷ୍ଣୁ, ଶିବ ଓ ସୂର୍ଯ୍ୟ ତୋର ଆଖିରେ ଏତିକି
ପ୍ରକାର ଶୋଭା ଦେଖି ତୋତେ ମାନ୍ୟ କରିବା ଇଚ୍ଛା କରନ୍ତି,
ତୋର ଜ୍ୟୋତି ତାଙ୍କର ତେଜରୁ ଅଧିକ ପୁଣି ଦେବତାମାନେ
ଅମ୍ଭଙ୍କୁ ସିନା ସ୍ତୁତି କରନ୍ତି ଯେ କି ପ୍ରଧାନ ବୋଲି ମାନନ୍ତି କିନ୍ତୁ
କନ୍ଦର୍ପ ବାଣରେ ମୋହିତ ହୋଇ ତୋତେ ସମସ୍ତେ ସ୍ତୁତି କରନ୍ତି
ଓ ଶ୍ରେଷ୍ଠ ବୋଲି ମାନନ୍ତି । ଯତି କି ତପସ୍ୱୀମାନଙ୍କର ସୁରସବଶ
କି ମଧୁର ଭକ୍ତି ରସରେ ଅମ୍ଭେ ସିନା ତାଙ୍କୁ ରକ୍ଷା କରୁ କିନ୍ତୁ ତୋ
ଶୋଭା ଦେଖି ଯତିମାନେ ସୁରସରସ କନ୍ଦର୍ପ ରସରେ ଘାରିହୋଇ
ମରିବେ ।

୬ । ଗଜେନ୍ଦ୍ର—ଐରାବତ ହସ୍ତୀ, ତୋର ଗତିକି ଦେଖି ଇନ୍ଦ୍ର ଐରାବତ
ଚଢ଼ିଛି ମୁନିଶାପ ତାପ ଲୋପ ମନ୍ତୁ—ମନରୁ ମୁନିଙ୍କର ଶାପକୁ ଲୋପ
କରିଛି ଅର୍ଥାତ୍ ତାକୁ ବରବୋଲି ମଣିଛି—କାରଣ ଇନ୍ଦ୍ର ଗୌତମନାରୀ

ଲଭିଲି ସୁତନୁରେ । ଜୀବେଶ୍ୱର । ନରେନ୍ଦ୍ର ତୁ ନରେନ୍ଦ୍ରକୁମାରୀ । ଅନଙ୍ଗ
ଭୁଜଙ୍ଗର ବିରହ ସନ୍ତାପ ମୋର ସ୍ମରଣେ ହରୁଛୁ ଯେଣୁ କିବ ଯେ । ୬ ।
ଅନବରତରେ ହାସବଦନ ରଦନବାସ ରସ ରହସ ସ୍ୱରୂପ ପ୍ରିୟେ ।
ନଭଗଙ୍ଗାଜଳ ଅଣି ସୁରଙ୍ଗ ପ୍ରୀତ-ବରଣି ଜିବଡେ ତାଳି ହୋଇଲି ପ୍ରାୟେ
ରେ । ଜୀବେଶ୍ୱର । ତୁହି ମୁଁ ମଜ୍ଜନ ହୋଇ ତହିଁ । ବିଶେଷେ କାମକଳୁଷ
ସହଜେ କରୁଛୁ ନାଶ ସୁଗତ ତୁ ମୋ ସୁମତଦାୟିରେ ।୭। ହେଜୁଥାଇମନେ
ମନ ତୁ ମୋ ଅମୂଲ୍ୟ ରତନ ବୋଲନ୍ତି ଯେ ଏନୁ ମୂଲ୍ୟ ହୋଇ । ନାଶ
କଲୁ ଏ ସଂଶୟ ରମଣୀୟ ରତ୍ନ-ମୟ ଅର୍ଥେ ରମଣୀରତ୍ନ ବୋଲଇ ରେ ।
ଜୀବେଶ୍ୱର । ପଦ୍ମରାଗ ଓଷ୍ଠ ପାଦ ପାଣି । ହୀର ଦନ୍ତ ସ୍ଥିର ମୋତି ଭୂରୁ
ତୋଳା ରୋମପନ୍ତି ଶକୁର ଅଳକା ନୀଳମଣିରେ । ୮ । ଭଲି ବିବେକି
ବିଜ୍ଞାଣି କଟିନଗୁଣକୁ ଘେନି ଘଟସ୍ତନ କଲା ତୋ ଘଟଣା । ହୃଦରେ ପଦକ
ମୋର ବାନ୍ଧବ ହେବାକୁ ତୋର ଅବୟବଯାକ କଲା ସୁନାରେ ।
ଜୀବେଶ୍ୱର । ଏଣୁ ଦିବ୍ୟଗୁଣେ ତୁ ରଞ୍ଜନ । ଫନ୍ଦା କର ତୋତେ ପାଇ କରୁଛି
ମୋର ଚିନ୍ତା ନାହିଁ ଏ ଢେନା ବୋଲଇଁ ସିନା ଧନ୍ୟ ରେ । ୯ । ଛଇଲ
ଭ୍ରମର ବୋଲି ବୋଲିବାକୁ ମୋତେ ବାଳ ଛଳ ମୋ ନୋହିବ ଜଣାଉଛି ।
ଶ୍ରୀମୁଖ ଚଞ୍ଚଳ ନେଜ ବେଣୀ ପଦ୍ମ ବିକଶିତ ଅଧର ବନ୍ଧୁଲି ଚୁମ୍ବ ଇଚ୍ଛି
ରେ । ଜୀବେଶ୍ୱର । କାନ୍ତ କେତକୀ ଜିଣିଲ ବାସ । ଉରଜ ନୀରଜକୋଷ
ପ୍ରଫୁଲ୍ଲ ମଲ୍ଲିକାହାସ ନୋହିଲା ମୋ କେଉଁ ଫୁଲେ ଅଣରେ । ୧୦ । ପ୍ରିୟେ

---

ଅହଲ୍ୟାକୁ ହରନ୍ତେ ଗୌତମ ଶାପରେ ତାଙ୍କର ଦେହରେ ସହସ୍ର ଚକ୍ଷୁ
ହେଲା, ମାତ୍ର ସେ ସହସ୍ର ଚକ୍ଷୁରେ ତୋ ଶୋଭା ଦେଖିବାରୁ ଖୁସି ହୋଇ
ଶାପକୁ ବର ବୋଲି ମନେକଲେ ।—ରେ ନରେନ୍ଦ୍ରକୁମାରୀ—ରଜାଝିଅ
ତୁ ନରେନ୍ଦ୍ର—ନରେନ୍ଦ୍ର ପୁଷ୍କରଣୀ ତୀର୍ଥ ଅଛୁ, ଭୁଜଙ୍ଗ—ସର୍ପ, ସର୍ପର
ବିଷପରି କନ୍ଦର୍ପର ତେଜ, ତୋତେ ଛୁଇଁଲାକ୍ଷଣି ଦୂର ହେଉଛି ।

୭ । ଅନବରତ—ସର୍ବଦା, ରଦନବାସ—ଦାନ୍ତସବୁ, ଓଷ୍ଠ, ସୁରଙ୍ଗ ପ୍ରୀତ
ସୁଗତ—ମୁକ୍ତି ଓ ଉତ୍ତମଗତି ।

୮ । ପଦ୍ମରାଗ—ଲାଲବର୍ଣ୍ଣ ମଣି, ପାଣି—ହାତ ଏଠାରେ ପାପୁଲି, ଅଳକ
—ମୁଣ୍ଡର କ୍ଳୋଟବାଳ,

୯ । ଘଟ—ମାଠିଆ—କୁମ୍ଭ, ଅବୟବ-ଶରୀର ବା ଦେହ ।

୧୦ । କାନ୍ତି—ସୁନ୍ଦର, ନୀରଜକୋଷ-ପଦ୍ମକଢ଼, ପ୍ରଫୁଲ୍ଲ ମଲ୍ଲିକା—ଫୁଟିଲାମଲ୍ଲି

ତୋର ସଙ୍ଗ ନୋହୁଁ ରମ୍ଭା ମାଳା ପରି ବାହୁ ଭାବ ଲୋଡ଼େ ଗଳେ
ବାନ୍ଧିବାକୁ । ଚନ୍ଦ୍ରଚନ୍ଦନ ଲେପନ କରୁଥାଇ ଅପଘନ କ୍ଷଣେ ପୀତାମ୍ବର
ପିନ୍ଧିବାକୁ ରେ । ଜୀବେଶ୍ୱର । ଲଗାଇ ନବପଲ୍ଲବେ ଶିର । ପ୍ରିୟା ତୋ
ପ୍ରତି ପ୍ରତିମା ଦେଖିଲାଦିନୁ ନିଯାମା ଘେନେ ଏହି ବ୍ୟବସାୟୀ ମୋର ରେ ।୧୧।
ଯାବତ ଶୋଭା ସଂଗ୍ରହ ପାଇ ବିଗ୍ରହେ ବିଗ୍ରହ ଲଭିଲି ଯେଉଁ ସ୍ୱପନ ଭ୍ରମେ ।
ନିଷ୍ଟେ ସେ ସ୍ୱପ୍ନ ଦେବୀର ମହାମହ ଉପକାର ଶୁଝି ନୋହିବ ସହସ୍ର ଜନ୍ମେ
ରେ । ଜୀବେଶ୍ୱର । କସ୍ତୁରୀ ସୁଗନ୍ଧା ସକୋମଳା । ଚତୁରୀ ଶ୍ରେଣୀରେ ମଣି
ବୋଲି ତୋ ଚାତୁରୀ ବାଣୀ ପ୍ରେମ ପତ୍ରିକାରେ ଜଣାଇଲି ରେ । ୧୨ ।
ଘେନରେ ହରିଣଦୃଗି ମାନସ ହଂସେ ନ ରସି ହଂସର ମାନସ ସରୁ
ଫାନ୍ଦା । ଭାନୁ-ଜଳଜ ଜଳଦ ଚାତକ ଚନ୍ଦ୍ର କୁମୁଦ ପ୍ରୀତି ଲକ୍ଷ୍ୟ ଯାକ କଲି
ନିନ୍ଦାରେ । ଜୀବେଶ୍ୱର । ଅଛି ପୁଣି ବିଚ୍ଛେଦ ତାଙ୍କର । ଦେହକୁ ନ
ଛାଡ଼େ ଛାଇ ଛାଇ ଦେହ ନ ଛାଡ଼ଇ ଧନ୍ୟ ତୋର ଅନୁରାଗ ସାର ରେ ।୧୩।
ଫୁଲ ଭ୍ରମର ବାଞ୍ଛଇ ଭ୍ରମର ଫୁଲ ଇଚ୍ଛଇ ମଧୁଦେଇ ଫୁଲ ତୋଷ କରେ ।
ଅନୁସରଇ ଭ୍ରମର ତୋର ମୋର ଏ ପ୍ରକାର ସ୍ନେହ ନ ତୁଟିବ ଜୀଇଁବାରେ
ରେ । ଜୀବେଶ୍ୱର । ନିଷ୍ଠା କର ଜାଣେ ମୁଁ ଏ କଥା । ମାର୍ଜିଲି ମୁକୁର
ପରି ନିର୍ମଳ ତୋ ହୃଦ ମୋର ପ୍ରତିବିମ୍ବେ ମୋର ହୃଦବ୍ୟଥା ରେ । ୧୪ ।

---

୧୧ । ସଙ୍ଗନୋହୁ—ଏକତ୍ର ନୋହୁ, ପ୍ରତିପ୍ରତିମା—ଚିତ୍ରପଟ, ନିଯାମା—ରାତି, ଚନ୍ଦ୍ରଚନ୍ଦନ—କର୍ପୂର ଚନ୍ଦନ, ଅପଘନ—ଦେହ, ପୀତାମ୍ବର—ହଳଦିଆ ପାଟଲୁଗା, ନବପଲ୍ଲବ—ନୂଆପତ୍ର (ଗଛ) ।

୧୨ । ବିଗ୍ରହ—ଦେହ ବା ଶରୀର, ପତ୍ରିକା—ଚିଠି, ବିଗ୍ରହ—ବିସ୍ତାରିତ ।

୧୩ । ମାନସ—ମନ ଓ ମାନସରୋବର, ଭାନୁ—ସୂର୍ଯ୍ୟ, ଜଳଜ—ପଦ୍ମ, ଜଳଦ—ମେଘ, କୁମୁଦ—କଇଁ, ହଂସ—ମାନସରୋବର, ସୂର୍ଯ୍ୟ—ପଦ୍ମ, ଚନ୍ଦ୍ର—କଇଁ, ମେଘ ଓ ଚାତକ, ଏମାନଙ୍କ ପ୍ରୀତିରେ ବିଚ୍ଛେଦ ଅଛି,ମାତ୍ର ତୋର ମୋର ପ୍ରୀତିରେ ଦେହ ଛାଇ ପରି ବିଚ୍ଛେଦ ନାହିଁ ।

୧୪ । ନିଷ୍ଠା—ନିଶ୍ଚୟ, ମୁକୁର—ଦର୍ପଣ, ପ୍ରତିବିମ୍ବେ—ଦେଖାଯାଏ । ଫୁଲରେ ମଧୁ ସକାଶେ ଭ୍ରମର ଫୁଲକୁ ଅନୁସରଣ କରେ, ମୁଁ ମଧ୍ୟ ତୋ ପାଖରେ ସେହିପରି ।

ଦାମାଶ୍ରେଷ୍ଠ ଲାବଣ୍ୟବତୀ ଦର୍ଶନେ ଦେବ ସମ୍ପତ୍ତି ଲୋଚନ ଯୁଗଳକୁ ଯାଚିଦେଲ ।
ସମ୍ପୂର୍ଣ୍ଣ ପ୍ରେମ ରତନ ସମ୍ପୁଟକ ପ୍ରାଣଧନ ଲାବଣ୍ୟେଲେ କରେ ଦେଇ ଯାଉ
ରେ । ଜୀବେଶ୍ୱର । ପଚାରୁଛୁ କହୁଛି ସତ । ଶିରୀଷକୁସୁମଦେହ କାହିଁ
ପାଇଁ କରୁ ନାହିଁ ମାଗିଲା ବେଳକୁ ବିପରୀତ ରେ । ୧୫ । ମଧ୍ୟ ତୃଣାଙ୍କୁର-
ଠାରୁ ସରୁ ଭାଙ୍ଗିବାକୁ ଡରୁ କିବା ଶିରୁ ଏ କୁହଇ କଷ୍ଟ । ବଡେ କୁଚ
ମେରୁଭାର କେଶରୀ ପ୍ରଶଂସା ତାର କୁଳିଶ ହୋଇ ପ୍ରଶଂସା ଅଛୁ ରେ ।
ଜୀବେଶ୍ୱର । ହେଜ ପାର ନାହୁଁ ଲାବଣ୍ୟେଲେ । ମୁକୁର ବିତାନେ ରତ
କଲଟ ଦେଖି ଯୁବତ ବେଳେ ରସିଛୁ ମୋ ପୁଣ୍ୟଫଳରେ ।୧୬। କହିବାକୁ
ଅଗୋଚର ସେ ଶୋଭା ପୁଣି ତୋହର ଜଳନ୍ତ ସୁଲଗ୍ନେ ହୋଇଥିଲା । ଜଡେ
ଜଗନା ଜଦତ ମୋ ସୁଖରାଶିରେ ମିଳ ନାଶାମଣି ଯାହା ଝଟକିଲା ରେ ।
ଜୀବେଶ୍ୱର । ଇନ୍ଦ୍ରପଦ ପଦତଳେ ଦେଲି । କାମଚକ୍ରବର୍ତ୍ତୀ ପଣେ
ଅଧିକାରୀ ଯୁବାଗଣେ ତାକୁ ଇଙ୍ଗିତରେ ଜଣାଇଲି ରେ । ୧୭ । ସନ୍ଧ୍ୟା
ବଡପଣ ପ୍ରାଣବନ୍ଧୁ ଘେନି ମୋର ଜାଣି ଦହୁଥିଲେ ଯେଉଁ ଚନ୍ଦ୍ର ବାତ ।
ସେ ତୋହର ସଙ୍ଗ ମାନେ ସୁଖଦ ହେଲେ ରତାନ୍ତେ ବହୁତ ରୂପେ
ହରିଲେ ଶ୍ରାନ୍ତ ରେ । ଜୀବେଶ୍ୱର । ତୋ ବଡ଼ିମା ଅଖିଳରେ ସାର ।
ଝିଲ୍ଲିକ ଭଲ୍ଲପ୍ରକାର ଯେଉଁ ଭୃଙ୍ଗ ପିକସ୍ୱର ସେହି ଏବେ ଶୁଭିଲା ମଧୁର ।୧୮।
ଏରୂପେ ଗୃହ୍ରୁ ପ୍ରକାଶି ବଲ୍ଲଭ ବଲ୍ଲଭୀ ତୋଷି ଅନୁଗ୍ରହ ଚୁମ୍ବ ଆଲିଙ୍ଗନେ ।
ଲଭି ହେଲେ ହରଷିତ ନାଯୁମ କଲି ଏମନ୍ତ ରସବତୀ ନ କହିବୁ ମାନ
ରେ । ଜୀବେଶ୍ୱର । ପରବାସ ନ କରିବି କେବେ । କଲି ଏମନ୍ତ ସମ୍ମତ
ଶଙ୍କା ହୋଇଗଲା ହତ ମାଡଲେ ବିଳାସ ମହୋତ୍ସବେ ରେ । ୧୯ । ମିଥିଲା

---

୧୫ । ଲୋଚନଯୁଗ—ଦୁଇ ଆଖି, ସଂପୁଟକ—ଫରୁଆ ।
୧୬ । ତୃଣାଙ୍କୁର—ଘାସଗଜା, ମଧ୍ୟ—ଅଣ୍ଟା, କେଶରୀ—ସିଂହ, କୁଳିଶ—ବଜ୍ର, ମୁକୁରବିତାନ—ଦର୍ପଣ ଗୃହ ଥ ।
୧୭ । ସଲଗ୍ନ—ଉତ୍ତମବେଳ, ଜଡେ—ବଡ଼ଭାବରେ, ଜଗନା—ଶୁକ (ଚାର୍କ), ନାସାମଣି—ନାକଚଣା ।
୧୮ । ବାତ—ପବନ, ଅଖିଳ—ସମସ୍ତ, ଭଲ୍ଲ—କୁନ୍ତ ।
**୧୯ । ବଲ୍ଲଭ—ପୁରୁଷ, ବଲ୍ଲଭୀ—ସ୍ତ୍ରୀ, ବିଳାସ—ଆମୋଦ ପ୍ରମୋଦ ।**

ନବସଙ୍ଗମ କାଳେ ଯେ କଲେ ନିୟମ ଏକପତି ଏକପତ୍ନୀ ବ୍ରତ । ଜଗତେ ସେହୁ ଦମ୍ପତି ସାଧୁଙ୍କ ସୁଖ ସମ୍ପତ୍ତି ମଧୁର ଅଦ୍ଭୁତ ଅଲୌକିକ ସେ । ତାଙ୍କ ପାଦ । ମହାବିପଦକୁ ନାଶ କରେ । ଶାନ୍ତି ଶତେ ଉପେନ୍ଦ୍ର ଭଞ୍ଜ ପରମ ଆନନ୍ଦ କହେ ରସିକ ଜନଙ୍କ ହିତ ହେ ।୨୦।

## ଊନଚତ୍ୱାରିଂଶ ଛାନ୍ଦ

(ଦେବତାମାନଙ୍କ ଅଭିଶାପରେ ଚଣ୍ଡୀଦ୍ୱାରା ସ୍ତ୍ରୀ ପୁରୁଷର ବିଚ୍ଛେଦ ବର୍ଣ୍ଣନ)

ରାଗ—ମୁଖାବରୀ, ଅଷାଢ଼ଶୁକ୍ଳ ବାଣୀ

ଏଥି ଅନ୍ତରେ ସାଧୁଜନେ ଶୁଣ । ଦୁଷ୍ଟ ପୁଲୋମ କାଳକେୟଗଣ ।
ମେଳ ହୋଇ ସେ ସଂସପ୍ତକ ସଙ୍ଗ । ନାଶ କରନ୍ତି ଋଷିବୃନ୍ଦ ଯାଗ ।
ରକ୍ଷା ଚନ୍ଦ୍ରଭାନୁ । ଏହି ଶବଦ ଶୁଭିଲା ଗଗନୁ । ୧ ।
ସର୍ବଜ୍ଞ ସହଜେ ମୁନି କଳାପ । ଯୋଗବଳେ ଜାଣି ଦେବଙ୍କ ଶାପ ।
ନିଃଶ୍ୱାସିକାଚଣ୍ଡୀ ସିନ୍ଧୁ ଦେଶରେ । ଥିଲା ମିଳିଲେ ଯାଇ ତା ପାଶରେ ।
ମନାଇ ତାହାକୁ । ପେଷିଲେ ଚନ୍ଦ୍ରଭାନୁ ହରିବାକୁ । ୨ ।
ମଧୁର ମାଧବେ ମନ ଉଲ୍ଲାସେ । ମାନସ ବଳାଇ ବନ ବିଳାସେ ।
ଉଦୟୋଦୟ ବନେ କାବେରୀ କୂଳେ । କୁମାର କୁମାରୀ କ୍ରୀଡ଼ନ୍ତି ଖେଳେ ।
ଦେଖଇ ସେ ଶୋଭା । ସୁମନା ମନ କରୁଅଛି ଲୋଭା । ୩ ।

୨୦ । ନବସଙ୍ଗମ କାଳେ—ନୂଆ ହୋଇ ଏକଜ ହେବାବେଳେ, ଏକ ପତ୍ନୀ—ଗୋଟିଏ ସ୍ତ୍ରୀ ।
ଏ ଛାନ୍ଦରେ ଲାବଣ୍ୟବତୀର କେଳି ଓ କାମ କେଳିର ଅଙ୍ଗଭଙ୍ଗୀଆଦି ବର୍ଣ୍ଣିତ ହୋଇଅଛି ।

## ଊନଚତ୍ୱାରିଂଶ ଛାନ୍ଦ

୧ । ପୁଲୋମ—ରାକ୍ଷସ, କାଳକେୟ—ଅସୁର, ସଂସପ୍ତକ—ଦାନବ, ଋଷିବୃନ୍ଦ—ମୁନିସବୁ ।
୨ । ସର୍ବଜ୍ଞ—ସବୁ ଜାଣିବା ବ୍ୟକ୍ତି, ମୁନିକଳାପ—ଋଷିସବୁ, ନିଃଶ୍ୱାସିକା ଚଣ୍ଡୀ—ଦେବତାଙ୍କ ନିଃଶ୍ୱାସରୁ ବାହାରିଥିବା ଚଣ୍ଡୀ ।
୩ । ମାଧବ—ବସନ୍ତ ସମୟ, ସୁମନା—ସ୍ତ୍ରୀ ଓ ଫୁଲ ।

କଳକଣ୍ଠ କାଳକଣ୍ଠ ସ୍ୱନର । ଭ୍ରମରେ ହୋଇଛୁ ମହାମାଧୁରୀ ।
ବହୁଛୁ ସାରସଗନ୍ଧ ସମୀର । ସ୍ୱାଦୁରେ ସଘନ ଅମୃତକର ।
ଯୋଗୀମନ ମୋହ । କାମଶରାଳିରେ ଛନ୍ଦ କରାଇ । ୪ ।
କାନ୍ତ କାନ୍ତା ତହିଁ ବିହାର କରେ । କୁଞ୍ଜକୁଟୀରେ ଅମ୍ବୁଜକୁଟିରେ ।
ଅନୁସରୀ ଅନୁସର ଜଗତ । ଚୁଆ ଚନ୍ଦନେ ପିଚକା ରଚତ ।
ସୁମନ ମଣ୍ଡନ । ବିନା ଅଲଙ୍କାରେ ଯହିଁ ସୁମନ । ୫ ।
କ୍ଷଣେ ଭନ୍ଦ ନୋହୁ ପ୍ରିୟ କଣୋରୀ । ଚଡ଼ଭୀ ବିଳାସ ଦେଲେ ପାସୋର ।
ପ୍ରବାଳ ନାବରେ ଭାବରେ ବସି । ପରବାଦନୀ ବାଦନ ପ୍ରକାଶି ।
ବୋଲଇ କୁମର । କେଳି ପ୍ରବୀଣା ତୁ ବୀଣା ମୋହର ।୬।
ଅଶେଷ ଭାବ କରିବାରୁ ଜାତ । କେ ସବୁ ଅଛୁ ରଞ୍ଜିବାକୁ ଚିତ୍ତ ।
ଏଣୁକରି ସାର ଗୁଣୀ ମଞ୍ଜୁଳା । ସ୍ୱର୍ଣ୍ଣକଷ ତୁମ୍ବୀ ବହୁଛୁ ବାଳା ।
ହେଉଛୁ ମୋ ମନ । ଶୁଣିବା ଥରେ ହେଲେ ଗୀତ ଗାନ ।୭।
ଚତୁରୀ ସ୍ନେହରୁତୁରୀ ବଢ଼ାଇ । ଦଣ୍ଡେ ଛାଡ଼ଦେଇ ଶୁକ ପଢ଼ାଇ ।
ବନପ୍ରିୟ ଭଳ ମୂକ ବଭୁତ । ସପତ ସ୍ୱର ବସୋର ଦଅନ୍ତ ।
ତା ରସିକ ଜାଣି । ସ୍ନେହଭରେ କରେ ଲଗାଇ ଅଣି । ୮ ।

---

୪ । କଳକଣ୍ଠ—କୋଇଲି, କାଳକଣ୍ଠ—ଡାହୁକ, ସାରସଗନ୍ଧ—ପଦ୍ମଗନ୍ଧ, ସମୀର—ପବନ, ଅମୃତାକର—ଅମୃତର ଖଣି, ଯୋଗସ୍ଥ, ଛନ୍ଦ—ଉଚ୍ଛନ୍ନ, ଶରାଳି—ଶରସବୁ ।
୫ । କୁଟିର—କୁଡ଼ିଆ ଘର, ଅମ୍ବୁଜକୁଟି—ଜଳ ମଧ୍ୟସ୍ଥ କୁଡ଼ିଆ ଘର ବା ଦ୍ୱୀପଦଣ୍ଡି, ସୁମନ—ଖୁସି, ଫୁଲ ଓ ଦେବତା ।
୬ । ଚଡ଼ଭିବିଳାସ—କୋଠାଘର କ୍ରୀଡ଼ା, ପରିବାଦନୀ—ବୀଣା, ବାଦନ-ବଜାଇବା, କେଳିପ୍ରବୀଣା—ରତିପଣ୍ଡିତା ।
୭ । ରାଗ—ସ୍ନେହ, ସ୍ୱର ଗୁଣୀ—ତାର ଗୁଣ, ବୀଣା ସହିତ ଲବଣ୍ୟବତୀର ତୁଳନା ବୀଣାରେ ଅନେକ ସ୍ୱର ଜାତ ହୁଏ, ତୋର ମଧ୍ୟ ଅନେକ ସ୍ୱର ଅଛୁ, ବୀଣାରେ ମନ ମୁଗ୍ଧ ହୁଏ, ତୋ ସ୍ନେହରେ ମନ ମୁଗ୍ଧ ହୁଏ, ବୀଣାରେ ମଧ୍ୟ ତାର ଅଛୁ, ତୋର ଅନେକ ଗୁଣ ଅଛୁ, ଲାଉ ତୁମ୍ବୀ ବୀଣାରେ ସୁନା ଛାଉଣି, ତୋ କୁଚ ତୁମ୍ବୀରେ ସ୍ୱର୍ଣ୍ଣ ଅଲଙ୍କାର ତେଣୁ ବୀଣାଗୀତ ଶୁଣିବାକୁ ଯେପରି ମନେ ହୁଏ, ତୋ ଗୀତ ଶୁଣିବାକୁ ମନ ସେହିପରି ହେଉଛୁ ।
୮ । ବନପ୍ରିୟ—କୋଇଲି, ମୂକବଭୁତ—ମୂକପରି ମୂକ, ବସୋର—ଭୁଲି, କର—ହାତ ।

କୋଳେ ବସାଇବାବେଳେ ନାଗର । ହୃଦରୁ ତରଳ କରଇ ଦୂର ।।
ଜାଣି ହସିଲା ହୋଇଲା ନାଗରୀ । ମଧୁରେ ଭାଷଇ ଚିବୁକ ଧରି ।
ମାଡ଼ୁଥାଇ ଡର । ଚିଙ୍କ ଗୃହିଁ ଦନ୍ତ ହେଲା କାତର । ୯ ।
ଗୁରୁତର ପ୍ରୀତି ଦେଖିଲା ଦେବୀ । ଅଙ୍ଗନାର ଅଙ୍ଗେ ଅନାଇ ଭାବି ।
ଫୁଲରୁ ଫୁଲ ରଚନ୍ତୁ ରଚନ । ଫଳୁ ଫଳ ଜାତ ଅତି ଯତନ ।
ପ୍ରକାଶରେ ହାସ । ଯହିଁ ମନ ସେହି ପରି ସେ ଦୃଶ୍ୟ ।୧୦।
ଗୃହ ସୁମନ ସୁକାନ୍ତି ଏ ବହି । ସ୍ତ୍ରୀମାନଙ୍କରେ ଅମୂଲ୍ୟ ଏହି ।
ତନି ପକ୍ଷୀରେ ତ ଗାଳ ଘଟିତ । ତନ୍ତୁ ଏ କନ୍ଦୁଥିବ ବେଳିପତ୍ର ।
ଅତ୍ କଳେବରେ । ବିଧାନ ହୋଇଛି ପଞ୍ଚ ଫଳରେ । ୧୧ ।
ଚିତ୍ତେ ଚିନ୍ତାଭର ଶ୍ୱାସ ଯୋଗିନୀ । ଲବେ ଅନ୍ତର ତ କୁହନ୍ତି ବେଳି ।
କି କରି ହରିବ କୁମାରବର । ଶାପ କି ବ୍ୟର୍ଥ ହେବ ଦେବଙ୍କର ।
ବିରୁହ ମରାଳୀ । ହୋଇ କରୁଥାଏ ସେ ବନେ କେଳି ।୧୨।
ଏମନ୍ତେ ତହିଁ କୁସୁମ ସମୟେ । ବାଳା କୁସୁମ ସମୟ ଉଦୟେ ।
ଗୃହ ମିତ୍ରଙ୍କୁ କୁମର ଡକାଇ । ଗୃହ ସଜନୀଙ୍କୁ ନୃପଜା ନେଇ ।
ଭିନ୍ନ ଭିନ୍ନ ହୋଇ । ବନରେ କେଳି ବିରଚିଲେ ସେହି । ୧୩ ।

---

୯ । ତରଳ—ରତ୍ନମାଳା ବା ପଦକ ମାଳା ।

୧୦ । ଗୁରୁତର—ଅତି ଅଧିକ, ଅଙ୍ଗନା—ଲାବଣ୍ୟବତୀ, ଫୁଲରୁ ଫୁଲ, ମୁହଁର ଅଖି ଏ ଦୁହେଁ ପଦ୍ମ ଓ ନୀଳକଇଁ ହେଲେ, ଫଳରୁ ଫଳ— କୁଚ ହେଲା ବେଲ, କୁଚାଗ୍ର ହେଲା ଙ୍ଗେଟଗୁଅ ।

୧୧ । ଗୃହ ସୁମନ—ଗୃହପ୍ରକାର ଫୁଲ, (କେତକୀ, ଛଣପଟ, ଚମ୍ପା ଓ କଳିଅର) ଲାବଣ୍ୟବତୀର କାନ୍ତି—ବର୍ଣ୍ଣ—ଏ ଗୃହପ୍ରକାର ଫୁଲପରି ତନି ପକ୍ଷୀ—ତନୋଟି ଚଢ଼େଇ—ଚକୁଆ ଚଢୋଇ ପରି କୁଚ, ଖଞ୍ଜନ ପରି ନେତ୍ର, କୁଆପରି ନଖ, ତନ୍ତୁ-ଦେହ ବା ପେଟ ପଦ୍ମପତ୍ର ପରି, ପିଠି କଦଳିପତ୍ର ପରି, ଦେହ-ପାଞ୍ଚଫଳ, ଓଠ-କଇଁଚ କାକୁଡ଼, ନେତ୍ର-ନାରଙ୍ଗ, କୁଚ-ବେଲ, କୁଚାଗ୍ର-ଗୁଅ, ପିଚ୍ଛ-ଟଭା ।

୧୨ । ମରାଳୀ—ମାଈହଂସ ।

୧୩ । କୁସୁମ ସମୟ—ଋତୁକାଳ ବା ବସନ୍ତ କାଳ ।

ଏକାଳେ ବହି ପ୍ରଚଣ୍ଡ ପବନ । ରଜେ ବୃକ୍ଷ ହୋଇଗଲା ନୟନ ।
ମିତ୍ର ସହ କୁମାରଙ୍କୁ ହରିଲା । ଏଲାବୃତ୍ତ ଖଣ୍ଡ ବନେ ରଖିଲା ।
ନିବର୍ତ୍ତିଲା ବାତ । ସୁନ୍ଦରୀ ଜାଣିଲା ଅନ୍ତର କାନ୍ତ । ୧୪ ।
ମନେ କଲା ସେ ଅମରପୁରୁଷ । ମେଳ କରିଥିଲା ମୋ ଭାଗ୍ୟବଶ ।
ଅପସରି ରସରଙ୍ଗ ଚଟ୍ଟୋଇ । ମୋହ ପାଶରୁ କି ଅସପର୍ ଯାଇ ।
ମୁଁ ଅଭାଗ୍ୟବନ୍ତ । ଖଣ୍ଡ ଉପଫଳ କଲା ଏମନ୍ତ ।୧୫।
ଯାହାକୁ କରିଥାଇ ପ୍ରାଣ ସରି । ତାକୁ କି ଏଡ଼େ ନିରାଶ କରି ।
ଦାସୀକରି ହେଲେ ରଖିଲ ନାହିଁ । ଭ୍ରମର ପ୍ରୀତି କେତେକାଳ ଥାଇ ।
ଏକି ସେନେହ କଲ । ଘୁଡ଼ିଲ ପରି କରି ଛଡ଼ାଫୁଲ ।୧୬।
ଏଡ଼େ କପଟକୁ ନୁହଇ ଭୁଲ । ଅନ୍ତର ହେବାକୁ କି ଦୋଷ କଲି ।
ତନୁ ପୁଲକ ନ ସହିଲା କନେ । ଏ ହଠ କରିଛ କି ଘେନି ମନେ ।
ମୁଁ ଥବନ୍ତି ମାନ । ଘେନିବ ନାହିଁଟି ଗୁରୁ ବଚନ ।୧୭।
ଏମନ୍ତ ଭାଷି ଲୁଚିଥିବେ ବୋଲି । ଖୋଜିଲେ ସେ କେଳି କାନନ ବୁଲି ।
କାହିଁ ନ ପାଇଲା ତରୁଣୀ ଈଶ । ବେଳୁଁ ବେଳ ଉଡ଼ିଗଲା ସାହସ ।
ସେ ଜ୍ୟୋତିଷୀବାଳୀ । ଶକୁନେ ଜାଣିଲା ବିଚ୍ଛେଦ ବୋଲି ।୧୮।
କର୍ଣ୍ଣାଟ ଜନକ ଜନକ ତାର । ଶୁଣି ଏ ଗୋଳ ହୋଇଲେ କାତର ।
ଇଷ୍ଟଦେବୀଙ୍କୁ ଜପ କରାଇଲେ । ବିବୁଧ ଶାପୁଁ ବିଚ୍ଛେଦ ଜାଣିଲେ ।
ପୁରୋହିତ ସୁତା । ବଦନ୍ତୁ ଜାଣିଲା ନବବନିତା । ୧୯ ।
ସେହିଠାରୁ ସେ ଶୋଭା କୁବଳୟ । ଏକା ରଖିଲା କରର ବଳୟ ।
ନୀର ନିଳୟ ନେତ୍ର କୁବଳୟ । କରି କୁମାରଠାରେ କଲା ଲୟ ।
ତା ଗୁଣ-କଳାପ । ମୃଣାଳ ନାଳ ମାଳେ କରେ ଜପ ।୨୦।

---

୧୪ । ରଜ—ଧୂଳି, ଏଲାବୃତ୍ତଖଣ୍ଡ—ଦେଶ ବିଶେଷ, ସାଇବେରିଆ ।
୧୫ । ଅମରପୁରୁଷ—ଦେବତା, ଖଣ୍ଡଉପଫଳ—ଅଳ୍ପ ଉପଫଳ ।
୧୭ । ଅନ୍ତର—ପୃଥକ, ତନୁପୁଲକ—ଦେହ ଉଲ୍ଲସିବା ।
୧୮ । କେଳିକାନନ—କେଳିବନ, ଶକୁନ—ଚିହ୍ନ ।
୧୯ । ଜନକ—ରାଜା, ପିତା ଓ ଜନକ ଋଷି, ବିବୁଧ—ଦେବତା ଓ ପଣ୍ଡିତ, ନବବନିତା—ନୂଆ ସ୍ତ୍ରୀ (ଲାବଣ୍ୟବତୀ) ।
୨୦ । କୁବଳୟ—ଶ୍ରେଷ୍ଠ, ପଦ୍ମ, ସାଗର । ବଳୟ—ଖଡ଼ୁ, ନୀରନିଳୟ—ଲୁହଘର, ଗୁଣକଳାପ—ଗୁଣସବୁ, ମୃଣାଳ ନାଳମାଳେ—ପଦ୍ମନାଡ଼ ମାଳରେ ।

ତେଣେ ମାଧ୍ୟୁ ଦୁର କୁମରଗୃହିଁ । ଶୋଭା ମନ୍ଦର ମଦରାକ୍ଷୀ ନାହିଁ ।
ନିଜ ଆରାମ ଅଭିରାମ ପର । ସେ ସ୍ଥାନ ବନ ହୋଇଛି ମାଧୁରୀ ।
ବୋଲଇ ରେ ଧନ । କାହିଁ ଲୁଚିଅଛୁ ଦେଖା ବଦନ । ୨୧ ।
କାହିଁକି ଦାସରେ ଏଡ଼େ କପଟ । କପଟ ଭିତରେ ଯାଉଛି ଘଟ ।
ଘଟ ଅଜ କେତେଦିନ ରହିବ । ଜୀବ ଯେବେ ଭିନ୍ନ କଲ୍ପ ଦାଇବ ।
ବୁଡ଼ିଲେ ଚେତନା । ଭୋଗ ନ କରନ୍ତି ଟିକି ବେଦନା ।୨୨ ।
ଭୋଗ କରୁଥାଇ ଯୋଗରେ ମୁହିଁ । ଯୋଗରେ ଥିବ ଯୋଗରେ ମନାଇ ।
ଯାହା ହେଲା ତୋର ମୋର ବିଚ୍ଛେଦ । ନୋହିଲା କାହିଁପାଇଁ ଶିରଚ୍ଛେଦ ।
ଯୁବାଙ୍କ ଯୁବତୀ । ବିଚ୍ଛେଦରୁ ଅଜ ନାହିଁ ବିପତ୍ତି । ୨୩ ।
କାନ୍ତ ବୋଲିବାକୁ ପାଇଲେ ଲଜ । ଦାସ ହୁଅନ୍ତି କିପାଁ କଲୁ ତ୍ୟାଜ ।
ନାହିଁ ତୋର ମୋ ତିଳକ ଅନ୍ତର । ତରୁଣୀ ତିଳକ ତିଳକ ମୋର ।
ଯୌବନରେ ବନିତା । ମୁଁ ତୋର ପୟର ଅଳତା ଲତା । ୨୪ ।
ମଞ୍ଜିଷ୍ଠା ରଙ୍ଗ କି ହୀନ ବସନ୍ତ । ଧୋଇ ଦେଲେ ଛାଡ଼ିଯାଏ ସତନ୍ତ ।
ସେହି ପରକାରେ ପଙ୍କଜ ମୁହିଁ । ଛାଡ଼ିଲେ ତୁ ତ ମୁଁ ଛାଡ଼ିବି ନାହିଁ ।
ମୋ ସବୁ ଭରସା । ରସା ମଧ୍ୟରେ ଏକା ରସାଳସା । ୨୫ ।
ପୁଣି ଭ୍ରମେ ଭ୍ରମେ ବିପିନ ସ୍ଥଳେ । ଯେଉଁ ପାଦପରେ ପଲ୍ଲବ ଚଳେ ।
ଝିଙ୍କାର ଝଙ୍କାର ଶୁଣଇ ଯହିଁ । ମନେକରେ ବାଳାମଣି ଅଛଇ ।
ଲୁଚିଥିଲା କାହିଁ । ମୋହର ମାନସ ବୁଝିବା ପାଇଁ । ୨୬ ।
ଯେଉଁ ଲତାପରେ ବସନ୍ତ ପିକେ । ପ୍ରତେ ପରାଣବନ୍ଧୁ ଷର ଡାକେ ।
ନିକଟକୁ ଯାଇଁ ରମଣ ମଣି । ଲତା କୋଳ କରି ଧରଇ ପୁଣି ।
ପୁନଃ ପୁନଃ ଚୁମ୍ବେ । ହାସ ଓଷ୍ଠ ଛବି ପୁଷ୍ପ ପଲ୍ଲବେ ।୨୭।

---

୨୧ । ଶୋଭାମନ୍ଦର—ସବୁ ସୁନ୍ଦର ସ୍ଥାନ, ମଦରାକ୍ଷୀ—ସୁଲୋଚନା, ଅଭିରାମ—ସୁନ୍ଦର ।

୨୩ । ଯୋଗ—ତପସ୍ୟା ସମସ୍ତ, ଯୋଗରେ ମନାଇ—ସହବାସପାଇଁରାଜି କରାଇ ।

୨୪ । ତିଳକ—ଚିତା, ପୟର—ପାଦ ।

୨୫ । ମଞ୍ଜିଷ୍ଠାରଙ୍ଗ—ମଞ୍ଜୁଆତିରଙ୍ଗ, ରସା—ପୃଥିବୀ; ରସାଳସା—ରସିକା

୨୬ । ଝଙ୍କାର—ଶବ୍ଦ, ମାନସ—ମନ ।

ଘୁଞ୍ଚି ଦେଇଣ ଉଡ଼ିଗଲେ ପିକ । ପ୍ରିୟାଙ୍କୁ ସୁମରି କରଇ ଶୋକ ।
ପୁଲକାଇ ଦେଉଥାଇ ଶରୀର । ତାହାର ଭାବେ ହୋଇ ଜରଜର ।
ଫୁଲମାଳା କର । ତମାଳେ ମଣ୍ଡଇ କେଶ ବିସ୍ତର ।୨୮।
ନାରିକେଳଫଳ ନାରୀ ଉରଜ । ସମାନ୍ତେଁ ରଙ୍ଗେ ଦେଖାଇ କରଜ ।
ଅଲଙ୍ଗନେ ତୁହି ବିଲଗ୍ନ କରୁ । ଏବେ ଧନ ଭନ୍ନ ତୋହ ଯୋଗରୁ ।
କବଗତ ହେଲେ । ଏଥର ଏ ଦଣ୍ଡ ପାଇବୁ ଭଲେ । ୨୯ ।
କହଇ ବୃକ୍ଷଙ୍କୁ ଅଛ ପାବନୀ । ଜାମ୍ବବ ତାଳମ୍ବ କୁନ୍ଦକୁ ଘେନି ।
ପୁଣି ପନସ କଞ୍ଚନ ଚନ୍ଦନ । ଏହୁ ହୋଇଛନ୍ତି ମହାରଞ୍ଜନ ।
ଦଅ ମୋ ବନିତା । ଶ୍ରୀରାମଙ୍କୁ ଦେଲେ ହନୁମନ୍ତ ସୀତା ।୩୦।
ଯେଣୁ ସାଧୁ ନାମ ସ୍ମରଣକଲ । ଶୂନ୍ୟେ ବଲ୍ଲକୀ ଶବଦ ଶୁଭିଲା ।
ଯୁବରାଜନ ମନରେ ନ ଭାଳ । ବଳା ଲଭିବ କାରୁଣ୍ୟ ସମ୍ଭାଳ ।
ଅମର ଶାପରେ । ହେବ ବିଚ୍ଛେଦ ମାସ ସମ୍ବସ୍ତରେ ।୩୧।
ନାରଦ ମୁଖ ଗଲ ଦାଶି ଦାଶି । ହେତୁ ପ୍ରସାରିଲ ସେଠାରେ ବସି ।
ଜାଣିଲ ନୃପତି ନିଜ ଭବନ । କାବେରୀ ତଟ ରସୋଦୟ ବନ ।
ଦଶେ ମେରୁ ଗିରି । ମହୀ-ମଣ୍ଡଳା ଉଚ୍ଚ ସ୍ତନ ପରି । ୩୨ ।
ଅର୍ଦ୍ଧ ଭାଗରେ ଚନ୍ଦ୍ର ସୂର୍ଯ୍ୟ ଗତି । ରତନ ଶୃଙ୍ଗମାନ ଜଳୁଛନ୍ତି ।
ମନେ କଲ ଏ ଏଳାବୃତଖଣ୍ଡ । କନକଧୂଳି ମଣିଶିଳ ଗୁଣ୍ଡ ।
ଭୂମି ତା ଦେଖଇ । ଗୁରୁମିତ୍ର ସଙ୍ଗେ ବ୍ୟାକୁଳ ହୋଇ । ୩୩।

---

୨୮ । ପୁଲକାଇଦେବା—ରୋମ ଟାଙ୍କୁରିବା ।

୨୯ । ବିଲଗ୍ନକରୁ—ଅଲଗା କରୁ ।

୩୦ । ପାବନି—ହନୁମାନ, ଭୀମ, ହରିଡ଼ାଗଛ' ଜାମ୍ବବ—ଜାମୁକୋଳିଗଛ । ପନସ—ପଣସଗଛ ଓ କଞ୍ଚନ—କଞ୍ଚନଗଛ ଓ କଞ୍ଚନ ମାଙ୍କଡ଼, ଚନ୍ଦନଗଛ ଓ ଚନ୍ଦନ ନାମକ ମାଙ୍କଡ଼, ମହାରଞ୍ଜନ—ଅତି ସୁନ୍ଦର ।

୩୧ । ଶୂନ୍ୟ—ଆକାଶ, ବଲ୍ଲକୀ—ବୀଣା, କାରୁଣ୍ୟ—ବେଦନ ।

୩୨ । ହେତୁ ପ୍ରସରିଲ—ଚେତାହେଲା, ଭବନ—ଘର ।

୩୩ । ଅନ୍ତରାଳରେ—ଅକାରୁଅରେ, ମେରୁର ଏକ ପାଖରେ ସୂର୍ଯ୍ୟ ଚନ୍ଦ୍ର ଗତିକରେ ।

ଦେଖିଲେ ତାଙ୍କୁ ଗନ୍ଧର୍ବ କୁଳରେ । ଏମନ୍ତ ଅଶଙ୍କା କଲେ ମନରେ ।
ଦେଖିବେ ଯେବେ ଏ ପୁଂସମାଧୁରି । ଭ୍ରଷ୍ଟା ହୋଇବେ ଅମ୍ଭ ମନୋହାରୀ ।
ତାକ ତାଙ୍କୁ ନେଲେ । ଅମୂଲ୍ୟମଣି ଗୁହାରେ ଥୋଇଲେ । ୩୪ ।
ସ୍ତ୍ରିରି ପୁରୁଷ ଅନୁରାଗ ଭୂଲା । ହେବା ପାଇଁ ବିହି ବିଚ୍ଛେଦ କଲା ।
ବେଦ ଜଡ଼ ହେଲେ ରସିକପଣ । ବଢ଼ ହୋଇଅଛି ସୁଜନେ ଜାଣ ।
ଏ ବିଚାର ଛାନ୍ଦ । କହିଲା ରାମ ଚନ୍ଦ୍ର ଉପରାନ୍ଦ୍ର । ୩୫ ।

## ଚତ୍ୱାରିଂଶ ଛାନ୍ଦ

( ବିରହ ଅବସ୍ଥାରେ ଗ୍ରୀଷ୍ମଋତୁ ବର୍ଣ୍ଣନ )

ରାଗ—ବଙ୍ଗଳାଶ୍ରୀ

ଗ୍ରୀଷମ ସମୟ ପ୍ରବେଶ ହୋଇଲା ନବୀନା ଦୂତୀ ପ୍ରକାର ।
ପତି ସଙ୍ଗତେ ଶୁଆଇ ଚନ୍ଦ୍ର କରେ ଲାଜ କରାଇଲା ଦୂର ।
ବିରହଚିତା ପରାଏ ଦଣେ ଦଣେ ଦିଶିଲେ ବନ ଅନଳ ।
ରଜନୀକର ପବନ ବହି ଦେବଦୀପକୁ କଲା ଅକୁଳ । ୧ ।
ସରିତ ହୋଇଲେ ଜରତୀ ପରାଏ ଘନରସ ବିହୀନରେ ।
ରସିକ ରସାଧିବ ପ୍ରାୟ ସରସୀ ମହିଷୀ ଅଳିଙ୍ଗନରେ ।

---

୩୪ । ଅଶଙ୍କା—ଭୟ ।

ଚନ୍ଦ୍ରଭାନୁ ଲାବଣ୍ୟବତୀ ସହ ଗୃହମିତ୍ରଙ୍କୁ ନେଇ ଜଳକେଳି ଓ ବନବିହାର କରିବାବେଳେ ଋଷିମାନେ ନାରଦ ସକାଶେ ଦେବୀ ପୂଜା କରି ଦେବୀ ମାୟାରେ ଚନ୍ଦ୍ରଭାନୁ ଆଦି ଗୃହମିତ୍ରଙ୍କୁ ହରଣ କରିନେଲେ । ତହୁଁ ଲାବଣ୍ୟବତୀ ସହ ଅନନ୍ଦ ସଙ୍ଗିନୀମାନେ ବିରହରେ ଉଛୁନ୍ନ ହେଲେ ।

## ଚତ୍ୱାରିଂଶ ଛାନ୍ଦ

୧ । ବିରହଚିତା—ବିରହଙ୍କ ଚିତାଅଗ୍ନି, ଦଣେ—ଦଗରେ, ବନଅନଳ—ବନଅଗ୍ନି, ରଜନୀକର—ଧୂଳିସବୁ, ଦେବଦୀପ—ଚକ୍ଷୁ ।
ଏଠାରେ ଗ୍ରୀଷ୍ମଦିନ ଦୂତୀପରି ହେଲା—କାରଣ ଦୂତୀ ସ୍ତ୍ରୀ ପୁରୁଷଙ୍କ ମନକୁ ନାନାକଥା କହି ଭୁଲାଇ ଦିଏ । ଖରା ହେତୁ ଚନ୍ଦ୍ର କିରଣରେ ଶୋଇବାରୁ ଦେହରେ ଲୁଗା ରହିଲା ନାହିଁ ପରସ୍ପରକୁ ଦେଖି ଲାଜ ଦୂର ହେଲା—ଧୂଳି ଉଡ଼ିବାରୁ ଆଖିରେ ପଡ଼ି ମଧ୍ୟ କଷ୍ଟହେଲା ।

ମୃଗେ ପ୍ରକଟ ରସନା କଲେ ବିପରୀତ-ରତା ପ୍ରାୟ ହୋଇ ।
ପତ୍ରାବଳୀ ସ୍ଥାନେ ରତାନ୍ତ ନାୟିକା ସମାନ ତରୁଏ ବହି ।୨।
ଜନେ ଚନ୍ଦ୍ରମାରେ ରାଜିତ ହୋଇଲେ ଗ୍ରୀଷ୍ମ ନିଶା ଯେମନ୍ତ ।
ତୁଳାରାଶିରେ ଯୁକ୍ତ ହେଲେ ଶାଳ୍ମଳୀ ମୃଗ ମଳମସ ବତ ।
କରେ ତାପିତ କଲେ ରବିମଣ୍ଡଳ ପ୍ରତାପୀ ରାଜା ଯେସନ ।
ଭୁଜଙ୍ଗ ପଛଗୋଇରେ ରଙ୍ଗ ଶିଖୀ କୁଳଟାନାରୀ ସମାନ ।୩।
କାମ ଚଳାଇଲା ସରଣୀ ଧାମରେ ନାଗରୀ ଦୋଷୀ ବିଦେଶୀ ।
ନବୋଢ଼ା ଗାଢ଼-ସୁରତ କାଳ ପ୍ରାୟ ଭୃଙ୍ଗ ମଲ୍ଲୀ ମଲ୍ ଭାଷି ।

---

୨ । ସରିତ—ନଦୀ, ଘନରସ—ପାଣି, ଜରତୀ—ବୁଢ଼ୀ, ସରସୀ-ପୋଖରୀ, ଖରାଦିନେ ପୋଖରୀରେ ମହିଷି ପଡ଼ି ଘାଣ୍ଟିଲାପରି—ରସିକ ରାଜାମାନେ ରସ ଆଶାରେ ମଧ୍ୟ ରାଣୀମାନଙ୍କୁ ଆଲିଙ୍ଗନ କରି ରସସବୁ ଘାଣ୍ଟିଲେ । ରସନା—ଜିଭ, ଅଣ୍ଟାଘାଗୁଡ଼ି, ପ୍ରକଟ -ବାହାର, ଖରାହେତୁ ମୃଗମାନେ ଜିଭ କାଢ଼ିଲେ—ଖରାହେତୁ ଏ ପାଖ ସେପାଖ ହେବାରୁ ଅଣ୍ଟାଘାଗୁଡ଼ି ଚାଲିଲା, ତରୁ-ଗଛ, ଗଛରୁ ପତ୍ର ଶୁଖିଯାଇ, ଝଡ଼ିବାରୁ ସ୍ତ୍ରୀମାନେ ରତି ଝାଳରେ ଶଢା ଲଭପିବାରୁ ସେହିପରି ଦିଶିଲା ।

୩ । ଗ୍ରୀଷ୍ମନିଶା—ଜହ୍ନରାତି, ରାଜିତ—ସୁନ୍ଦର, ଶାଳ୍ମଳୀ—ଶିମିଳି, ମୃଗମଳ, ମସବତ—କିରଣ ମଳିନ ସଦୃଶ, ତାପିତ-କଷ୍ଟ, ଶିଖୀ—ମୟୂର ଭୁଜଙ୍ଗ—ସାପ, ଦାସ—ପୁରୁଷ, ତୁଳାରାଶି—କାର୍ତ୍ତିକମାସ ଓ ତୁଳାସବୁ ।

ଗରମ ହେତୁ ଜହ୍ନ ରାତିରେ ଲୋକମାନେ ଚନ୍ଦ୍ର—କିରଣରେ ଶୋଇବାକୁ ପଦାରେ ଇଚ୍ଛାକଲେ, ଶିମିଳିଗଛର ମଞ୍ଜିଫାଟି ତୁଳା ବାହାରିଲା—ଚନ୍ଦ୍ର ମଧ୍ୟ ତୁଳରାଶିକି ଗଡ଼ିଗଲା, ରାଜା ଖଜଣା ପାଇଁ ପ୍ରଜାଙ୍କୁ କଷ୍ଟ ଦେଲା, ଖରାରେ ଲୋକେ କଷ୍ଟ ପାଇଲେ ମୟୂର ଖରାହେତୁ ପୁଚ୍ଛଟେକି ବିକଳ ହେଲା ଓ ସାପକୁ ଗୋଡ଼ାଇଲା—ବିଟପୀମାନେ ପରପୁରୁଷଙ୍କୁ ମଧ୍ୟ ଆଶ୍ରୟ ଦେଲେ ।

୪ । ଧାମ—ପୋଡ଼ାନିଆଁ, ସରଣୀ—ବାଟ ।

ପଣା ସଂକ୍ରାନ୍ତିରେ ପାଠୁଆମାନେ ନିଆଁରେ ପଶିଲେ—କନ୍ଦର୍ପ ହେତୁ ବିଦେଶରେ ଥିବା ପୁରୁଷ ନିଜ ସ୍ତ୍ରୀ ସକାଶେ ବାଟରେ ଖରା ହେତୁ କଷ୍ଟ ପାଇଲେ ।

ନବୋଢ଼ା—ନୂଆ ଯୁବତୀ, ନୂଆ ସ୍ତ୍ରୀମାନେ ଗାଢ଼ ସୁରତରେ ମଲ୍ ମଲ୍ କହିଲାପରି, ଭଅଁରମାନେ ପବନରେ ଦୋହଲୁଥିବା ମଲ୍ଲୀଫୁଲରେ ବସି ନ ପାରି ଗୁଣୁ ଗୁଣୁ ଶବ୍ଦ ( ମଲ୍ ମଲ୍ ) କଲେ ।

ଧୀବର-ରମା କଳେବର ପରାୟ ଗନ୍ଧେ ସିନ୍ଦୁବାର ଫୁଲ ।
ଝିଙ୍କାର ଝଂକାର ଝଂଝୋଅ ଶବଦେ ବିପିନ ନର୍ତ୍ତକୀ ତୁଲ । ୪ ।
ଏତେ ପ୍ରଭଞ୍ଜନ ରଞ୍ଜନ ହୋଇଲା ବ୍ୟଞ୍ଜନ ଉତର ପଶି ।
ବିନାଶିଲେ ଭାନୁ ସନ୍ତାପକୁ ଶଶୀ ଦିବସ ତାପକୁ ନାଶି ।
ଶ୍ଳେଷ୍ମ-ଅଶ୍ରିତ ଗାୟକ ସ୍ୱର ପ୍ରାୟ ଶୁଭିଲା କୋକିଳ ନାଦ ।
ଏ ଋତୁ ସହି ଚନ୍ଦ୍ରକାନ୍ତ ବିଗ୍ରହରେ ଲଭି ବଲ୍ଲଭା ବିଚ୍ଛେଦ । ୫ ।
ପଦରେ ପଦରେ ଅଣି ପରତେ କରାଇ ବିଧାତା ବିଧାନ ଦେଖ ।
ପୀରତ ହୋଇ କଥାଏ ଜନ୍ମାଇ ପରଶ ପରମ ସୁଖ ।
ପ୍ରାଣରୁ ଅଧିକ ଯେଉଁ ଦେନାଦେନା ତାହା ଯାହା କରେ ଭିନ୍ନ ।
ପବି ପତନ ଶିରେ କୃପା ନ କରେ କାଶିଲି ଅତି ପିଶୁନ । ୬ ।
ମନ ଜାଣିବାକୁ ପ୍ରିୟାସମ ଜଣେ ଖୋଜିଲେ ନ ଥିବ କାହିଁ ।
ମୋ ମନ ଦେଉଚ୍ଛି ପ୍ରୀତ ଦେଣିବାକୁ ତାହାର ସମାନ ସେହି ।
ତାହା ପ୍ରତିବିମ୍ବ ସୁନ୍ଦରପଣକୁ ତାକୁ ପ୍ରତିତୁଲ୍ୟ ଅଛୁ ।
ଏମନ୍ତ ପଦାର୍ଥ ପାଇ ହରାଇଲେ ପଶୁ କି ପାରିବ ମୂର୍ଚ୍ଛି । ୭ ।
ଜାଣି ନଥିଲକୁ ଏ ରସ ଏମନ୍ତ ସ୍ମରକୁ ଦହିଲେ ହର ।
ଜାଣିଲା ଦିନରୁ ଯୁବତୀକି କଲେ ଅର୍ଦ୍ଧଅଙ୍ଗେ ଅଙ୍ଗୀକାର ।
ଅଜନ୍ମ ବ୍ରହ୍ମଚାରୀ ପର୍ଣେ କେ ବଡ଼ ବୁଝି ଋଷ୍ୟଶୃଙ୍ଗ ଠାରୁ ।
ନିଜ ଦୀକ୍ଷା ଛାଡ଼ି ଶିକ୍ଷା କଲେ ରସ ରୂପାଜୀବା କରି ଗୁରୁ । ୮ ।
ସୁଧା ସ୍ୱାଦୁ ପାଇ ଶିରଚ୍ଛେଦ ରାହୁ ନ ଛାଡ଼ିଲା କଦାଚିତ ।
ପ୍ରୀତି ଏମନ୍ତ ଚନ୍ଦ୍ରମଣି ପାଷାଣ ଚନ୍ଦ୍ର ସହି ଦ୍ରବୀଭୂତ ।
ପ୍ରୀତି ଅନ୍ତର ଯେମନ୍ତ ହୋଇ କାଷ୍ଠ ହେଲେ ଫାଟିଯାନ୍ତି ସତେ ।
କାହିଁ ଘଟନା ହୋଇଛୁ ଘଟ ମୋର ଗୋଚର ନୋହିଲା ମୋତେ ।୯।

---

ସିନ୍ଦୁବାର-ବେଗୁନିଆ ଫୁଲ, ବିପିନ-ବଣ, ଧୀବର ରମା କଳେବର— ଖରାଦିନେ ମାଛ ଶୁଖାଇବାରେ ଓ ମାରିବାରେ କେଉଟୁଣୀମାନଙ୍କ ଦେହ ବେଗୁନିଆଁ ଫୁଲପରି ଅଇଁସିଣିଆଁ ଗନ୍ଧ ହେଲା । ବଣରେ ଝିଙ୍କାରି ଶବ୍ଦ ହେବାରୁ ଓ ପବନ ଯୋଗେ ବଣ ନାଚିଲା ପରି ନାଚୁଆ ପିଲା ହେଲା ।

୫ । ପ୍ରଭଞ୍ଜନ—ପ୍ରଳୟ ପବନ, ରଞ୍ଜନ—ସୁଖପ୍ରଦ, ଭାନୁ ସନ୍ତାପକୁ-ଖରା କଷ୍ଟକୁ, ଶ୍ଳେଷ୍ମ ଅଶ୍ରିତ—ଶରଦ, ନାଦ—ଶବ୍ଦ ।

୬ । ପବି—ବଜ୍ର, ପିଶୁନ—ଖଳଲୋକ ।

ଏହା ସୁମରିବା ଠାରୁ ମରିବାର ଭଲ ଘେନୁଅଛୁ ମନେ ।
ଆଜଯାଏ ଅଙ୍ଗନମସୁଖୀ ଦୁଃଖ ଦେଖି ନ ଥିଲି ସ୍ୱପନେ ।
ନୀରଜ କଚ୍ଚ ଜରଜରେ କରଜ କ୍ଷତ କଲେ ବୋଲେ ଇଷି ।
ବିଷମବିଶିଖ ବିଶିଖକୁ ଲଖ ସେ ହୋଇଲି ଏବେ ଅସି । ୧୦ ।
ମୋ ଭାବ ଭାବନା କରି କରିଗତି ନୀର ନିରତରେ ବହୁ ।
ମୃଗ ଖଞ୍ଜନ ଗଞ୍ଜନ ଅକ୍ଷିରେ ତା ଅଞ୍ଜନ ଲଗିବ ନାହିଁ ।
ଲୁଚି ହୋଇଯାଏ ନିଜଗ୍ଲାଜ ଥାଇ ଯେଉଁ ବଦନକୁ ଇନ୍ଦୁ ।
ନିହାର ନିକର ପତନ କମଳ ମଳିନ ବହିବ ବନ୍ଧୁ । ୧୧ ।
ହୃଦ ବନ୍ଧୁ ନିଦ କୁମୁଦହାସୀକି ପଲ୍ୟଙ୍କେ ଅସଇ ନାହିଁ ।
ଚଞ୍ଚଳେ ଅଞ୍ଚଳେ ମହୀରେ ମହିଳା ପଲଙ୍କେ ଶୋଇବ କେହୁ ।
ଘଡ଼ି ଘଡ଼ିକରେ ନାଡ଼ୀ ଗ୍ଲୁଡ଼ିଯାଇ ହେଉଥିବ ପରି ମୋହ ।
ବିରହେ ତପନ୍ତ ହୋଇଥିବ ନବସପତ ବୟସୀ ଦେହ । ୧୨ ।
କିଶୋରୀ ତିଳକ ପାସୋରି ଦେବଣି ତିଳକ ରଚନା ଚିତ୍ତୁଁ ।
ତିଳକ ଯୁଗ ପରିଯୁ ନ ସହିବ ଯୁଗଳ ନୋହିବା ହେତୁ ।
ରତି ସଦୃଶା ସୁଦୃଶାକୁ କି ଦଶା ଦେଲି ଦାରୁଣ ଦଇବ ।
ଚିତ୍ତେ ପରତେ ନ ଥିଲି ମୋର ସହୀ ଅନ୍ତର ସତେ ହୋଇବ । ୧୩ ।
ଧନକ ଧନକ କନକଅଙ୍ଗୀର ଅନେକ ଭାବକୁ ଧ୍ୟାୟି ।
ଜୀବ ଥିବାଯାକ ଜୀବକା କରି ମୁଁ ବୁଲୁଥିବ ଯୋଗୀ ହୋଇ ।
ସୁରୁଶୀଳା ନାମ ଜିଭାରୁଁ ଜିଭାରୁଁ ମାରୁ ଏକା ମୋତେ ମାର ।
ରସିକ ସଂସାର ମଧ୍ୟରେ ପ୍ରଶଂସା ସାର ହୋଇ ରହୁ ମୋର । ୧୪ ।

---

୮ । ସ୍ମର- କନ୍ଦର୍ପ, ଦୀକ୍ଷା-ତପସ୍ୟା, ରୂପାଜୀବା-ବେଶ୍ୟା ।
୯ । ପାଷାଣ-ପଥର, ଚନ୍ଦ୍ରମଣି-ପଥରବିଶେଷ, ଘଟ-ଦେହ ।
୧୦ । ନୀରଜ—ପଦ୍ମ, କରଜ—ନଖ, ବିଷମ ବିଶିଖ—କନ୍ଦର୍ପ ଶର ।
୧୧ । କରିଗତି—ଗଜଗମନ, ଗଞ୍ଜନ—ପରାସ୍ତ ନିଜସ୍ଥଇବା—ମାନିବା,
ଇନ୍ଦୁ—ଚନ୍ଦ୍ର, ନିହାର-କାକର, ନିକର-ସମୂହ ।
୧୨ । ମହୀରେ-ତଳେ, ତପତ-ତତଲ, ନବସପତ-ଷୋହଳ ।
୧୩ । କିଶୋରୀ ତିଳକ—ନାରୀଶ୍ରେଷ୍ଠ, ତିଳକ ରଚନା—ଚିତା ଦେନିବା,
ରତିସଦୃଶା—ରତିତୁଲ୍ୟା, ସୁଦୃଶା—ସୁନ୍ଦରୀ ।
୧୪ । କନକଅଙ୍ଗୀ—ସୁନାଗୋରୀ, ସୁରୁଶୀଳା—ସୁନ୍ଦରୀ ।

ରସଲତା ପାଦେ ଅଳତା ରଞ୍ଜିବାପାଇଁ ବଢ଼ାଇଲେ କର ।
ବଧୂଲି ଅଧର ଧରଣ ବୋଲଇ କୁସୁମେ କବରୀ କର ।
ବେଣୀଟି ବୋଲି କହିବାକୁ ଜାଣି ତା ନୋହିବ ଚାହିଁକି କହି ।
ଅସନମତ ସନମତ ସେ ମତ୍ତକାଶିନୀ ଭାଷାରେ ଥାଇ । ୧୫ ।
ଧର ପାନ ବୋଲି ଯାଚନ୍ତି ବେଳକୁ ମାଗିଲେ ଅପୂର୍ବ କର ।
ଏହି କଥା ନିକ ଜୀବକା ହେଲା କି ରସିକାବର ଉଚ୍ଚାର ।
ଅବଳା ବଳ ଫିଟିଗଲେ ଖଞ୍ଜି ମୁଁ ରଞ୍ଜିବା ବଗୃହୁଁ ମନ ।
ଅନନ କମାଇ ଅନ କଥା ନାହିଁ ବୋଲି ଯେ ପକାଇ ଅନ । ୧୬ ।
ମଦାଲସା ଓଷ୍ଠ ଗୋଳ କରୁଥାଇ ଚୁମ୍ବନ ଲାଲସୀ ହୋଇ ।
ପିକବାଣୀ ପାନପିକ ପକାଇବା ବ୍ୟାଜରେ ଲଜେ ବଞ୍ଚାଇ ।
ଧନକୁ ସମ ମନକୁ ଅଣିବାକୁ ନୋହିବେ ସର୍ବଜ୍ଞମାନେ ।
କସ୍ତୁରୀ ଗୋଳୁଁ ମୁଁ ଚତୁରୀ ସ୍ତନକୁ ଗୈଳେ ଅଚ୍ଛାଦିଲା ଦାନେ ।୧୭।
ଧେନା ରସାଳ ରସାଳସା ଭାଷିଲା ଚନ୍ଦ କର ଦିଅ କି ନା ।
ବୋଇଲି ଅନ ନ ଜାଣଇ ନାରୀ ମୁଁ ନାରକେଳ ଚନ୍ଦ ବିନା ।
ଜାଣିଛ ବୋଲି ଅଣିଛୁ କି ଭଙ୍ଗୀକି ଅଳପ ହସିଲା ହୋଇ ।
ଯେଉଁଣେ ଅନାଇଲେ ତେଣେ ତ ଦିଶଇ ଜଣେ ସିନା ଚନ୍ଦ୍ରମୁହିଁ ।୧୮।
ମନେ ନୋହିଥିଲା ସୁମନରଜ କି କବରୀ ଧୂପିତ ଧୂମ ।
ଲଗି କୋମଳାଙ୍ଗୀ ଜଳଜନୟନ୍ତୁ ଜଳ ଯେ ହେଲା ଜନମ ।

---

୧୫ । ରସଲତା—ରସିକା, କବରୀ—କେଶବିନ୍ୟାସ, ଜୁଡ଼ା, ଅସମ୍ମତ—ନାହିଁ କରିବା ।

୧୬ । ଧର ପାନକୁ ଧର, 'ଅ' ଲଗାନ୍ତେ ଅଧର-ଓଷ୍ଠ ପାନ, ଜୀବକା—ବ୍ୟବସାୟ, ଅବଳା—ସ୍ତ୍ରୀ, ଅନନ—ମୁହଁ, ଅନ-ଅନ୍ୟ, ଅନ-ଗ୍ରାଣ ।

୧୭ । ଚୁମ୍ବନ ଲାଲସୀ—ବୋଳରେ ପ୍ରିୟ, ପିକବାଣୀ—କୋଇଲି କଣ୍ଠି, ଗୈଳେ—କାଖଲାରେ ।

୧୮ । ରସାଳ—ଅମ୍ବ, ନାରକେଳ—ନଡ଼ିଆ, ଅମ୍ବସଙ୍ଗେ ଗାଲ—ନଡ଼ିଆ ସଙ୍ଗେ କୁଚ ।

୧୯ । ସୁମନରଜ—ଫୁଲରେଣୁ, କବରୀଧୂପିତ ଧୂପ—ବାଳ ଶୁଖାଇବା ଧୂଆଁ, ପୂର୍ବେ ଝୁଣା ଗୋଗୁଳ ଧୂଆଁରେ ବାଳକୁ ଶୁଖାଉଥିଲେ, ସାରମାଳ—ପଦ୍ମଦୁଇ ବା ଉତ୍ତମ ସ୍ତ୍ରୀ, ଝୁଣା ଧୂଆଁରେ ଦେହ ଦେଖି ବା ଦେଖି ମନେ ହେଲା ମାନକଲା, ତେଣୁ ପଦ୍ମ ଦୁଇଟି ବା ପାଦପଦ୍ମରେ ଶିର ରଖି । ଶୋଭିତଲେ ପତ୍ନୀକୁ କହିବାକୁ ସେ

ବିରସ ହୋଇ ସାରସଫୁଲ ନେଇ ଲଗାଇ ଦେବାକୁ ଶିରେ ।
ପୋଛୁଲ ନେଇ ପୃଚ୍ଛିଲ ମନମଥ ଅଛୁଟି କି ଜୀବନରେ । ୧୯ ।
କିସ ବିଗ୍ରହଲ ପୁଣ ପଗ୍ରହଲ ଜଳେ ଜାତ ମୀନ ବୋଲି ।
ତେଭକ ବେଲକୁ ଭ୍ରୂବଲ୍ଲୀ କମ୍ପିଲ ନାସିକା ଉଠିଲ ଫୁଲି ।
ବୋଇଲ ସ୍ୱତନ୍ତ୍ର ଅଙ୍ଗୁଳିକୁ ଧନ୍ୟ ପାଣ୍ଟିଲ ଏ କଥା ମୁହିଁ ।
ପାଣି ଦେଇଥିଲ ଶାଣିବା ବାଣକୁ ବାନ୍ଧବ ବନ୍ଦକୁ କାହିଁ । ୨୦ ।
ମୁଁ ଜାଣେ ସହ ମୁନଙ୍କି ବନ୍ଧ କହ କି ଯଶ ଅଛୁ ତହିଁରେ ।
ଅଛୁ କାରଣ ସୁର ଅନୁସରଣ କରୁଛୁ ପ୍ରହାର ହରେ ।
ଚତୁରଦଶଭୁବନ ମୋହିନୀ କି ଚତୁର ପଣ ବହିଲ ।
ତହିଁକି କିଛୁ ନ କହି ତା ସ୍ତନକୁ ଗୁହିଁଲ ହୋଇ ରହିଲ ।୨୧।
ଏହି କାଳେ କୋଳେ ଗୃହିଣୀ ଉପରେ ଗୃରୁଭୁରୁ ଥାଇ ଶୋଇ ।
ହେଉଥାଇ ମନ ବାଳାବିବସନ ଦର୍ଶନ କରିବା ପାଇଁ ।
ଚନ୍ଦ୍ରକୁ ଅସୁଛୁ ହୃତକୁ ରଚିଲ କୃଷ୍ଣ ସପତମୀ ଜାଣି ।
ବନ୍ଧୁ ମୋ ବନ୍ଧ ସଂଯୋଗେ ଥାଉ ଥାଉ ଅକାଶେ ପ୍ରକାଶ ଶଶୀ ।୨୨।
ଏବେ ମରୁଥାଇ ଏଣୀଇକ୍ଷଣୀ ଯେ ମନ ମିଶିବାକୁ ଗାଢେ ।
ତେଣେ ନେଉଥାଇ କରଭ ରଦନୀ କର ଢାଙ୍କିବାକୁ ନେଢେ ।
ହେଲଟି ବୋଲି ଯେ ଲଜେ ନେଉଥାଇ ମୋ ଉରଜକଟେ ମୁଖ ।
ଗୃହିଁ ବୋଲୁଥାଇଁ ନ ପାଇ ପାଇଛୁ ନୟନ ପରମ ସୁଖ । ୨୩ ।
ଭାବ ଉପରେ ଯେ ଭାବ ଉପୁଜିଲ ରତାନ୍ତେ ଶ୍ରାନ୍ତେ ଅତୁଳ ।
ଲଜ୍ଜା କାତରେ ତରତରେ ତରୁଣୀ ପିନ୍ଧିଲ ବାସ ମୋହର ।
ମୁଁ ଯେ ଭାଷିଲି ଦଶି ଦଶି ଅସୁଛୁ ଏଣିକି ସୁଭାଗ୍ୟ ସିନା ।
ମୋହପରି ହୋଇବାକୁ ହୋଇଲଣି ପରାଣେଶ୍ୱରୀ ଭାବନା । ୨୪ ।

---

କହିଲ କନ୍ଦର୍ପ ତ ଅଛୁ, ସ୍ତ୍ରୀମାନେ କଅଣ ଧୈର୍ଯ୍ୟ ଧରି ପାରିବେ ଏ କି କଥା ? ଜଳଜ—ପଦ୍ମ ।

୨୦ । ଭ୍ରୂବଲ୍ଲୀ—ଭ୍ରୂଲତା ଦୁଇ ।

୨୧ । ଚତୁରଦଶ—ଚଉଦ, ସ୍ତନକୁ ଗୁହିଁଲେ—ତଳକୁ ମୁହଁ ପୋତିଲେ ।

୨୨ । ଗୃରୁଭୁରୁ—ସୁନ୍ଦର, ବିବସନ—ଲଙ୍ଗଳା ।

୨୩ । ଏଣୀକ୍ଷଣୀ—ମୃଗନେତ୍ରୀ, କରଭରଦନୀ—ଢାଲମ୍ବଦନ୍ତୀ ।

୨୪ । ରତାନ୍ତେ—ରତି ଶେଷରେ, ଶ୍ରାନ୍ତେ—ଅବଶରେ ।

ଶ୍ରବଣେ ତରଳ କର କି ଭାବରେ ଢୋରକୀକୃତ ସେ କଲା ।
ପଣନ୍ତେ ପଣନ୍ତେ ପିଙ୍ଗି ବୋଧି ମୋତେ ବାସପାଲଟାଇ ନେଲା ।
ସେ ଉଭା ଶୋଭାରେ ଲେଖା ହେଲା ଅଣି ଅନଙ୍ଗ ଦେଖିବ ଅଜ ।
ଗୁଣି ହେଉଅଛୁ ପୁଣି ହେବ କି ସେ ଉତ୍ସବ ଜୀବନେ ଥାଉଁ ।୨୫।
କେତକୀ ଗୋରୀ ଚରମ ମନୋରମ ଏତକ ଦେଖିଛୁ ମୁହିଁ ।
ହେମ ରମ୍ଭାପଙ୍କ କାମପ୍ରଭା ମାନ କି ଉପମା ଦେବା ତହିଁ ।
ଉପରରୁଁ ଚୀର ଦୂର କର କଣୁଁ ତନୁ ପୀଡ଼ନେ ଯତନ ।
ମୋର ପ୍ରବେଶରେ ଲଜ୍ଜା ଅବେଶରେ ପଛକର ଉଭା ଧନ ।୨୬।
ନିୟମ ଲଙ୍ଘିଲି ଅମରମୋହିନୀ ବୋଲି ମୁଁ ବୋଲିବାବେଳେ ।
ହୃଦ କଷଟିରେ କାନ୍ତ କନକକୁ କଷିଲା କୁଙ୍କୁମ ଛଳେ ।
ପ୍ରେମମଞ୍ଜରୀ ପଢ଼ାଶାରୀ ପଞ୍ଜରୀ ସେ ଦିନ ଅଦ୍ୟରୁ ଦ୍ୱାରେ ।
ମୋ ଯିବା କହିବାପାଇଁ ଲମ୍ବାଇ ଯେ ସୁବେଶ ହୁଅଇ ପୁରେ ।୨୭।
ଅଳକା ରେଖୁଥିଲା ବସି ଫଳକାନନୀ ଯେ କଉଁସୀ ଘେନି ।
ଭରବ ନିବଡ଼ ନୀବି ମୋକ୍ଷ ଭାବି ପଛୁଁ ଗଲି ହୋଇ ତୂନି ।
ବିମ୍ବଓଷ୍ଠୀ ବିମ୍ବ ଦେଖି ଅଦରଶେ ହରଷେ ଧରି ମୋ କର ।
ଗ୍ଲେର ଗଲଟି ଧର ବୋଲି ସେ ଧବମଣ୍ଡନା ଭାଷିଲା ଗିର । ୨୮ ।
କଳ୍ପିତ ଦୋଷକୁ ଉଚିତ ଏ ଦଣ୍ଡ ବାନ୍ଧିବା ବାନ୍ଧ ତୋ ଭୁଜେ ।
ବୋଲିବାକୁ ମୋର ସଙ୍ଗୀତପଟିଣୀ ଭଲା ଇଙ୍ଗିତ କଲା ଯେ ।
ନମ୍ରଇ ଭୂରୁ କୋଦଣ୍ଡ ତେବେ ଦଣ୍ଡ ସିନା ସେ ନୋହେ ତା ଭାବ ।
ଉନ୍ନତ ଛାଡ଼ି ବିନତ ହେଲେ ଅଉ ମାଗିଲେ ଥରେ କେ ଦେବ ।୨୯।

---

୨୫ । ଶ୍ରବଣେ—ଶୁଣିଲାପଣି, କର—ହାତ, ଢୋରକୀକୃତ—ହାତରେ ମୁହଁ ଘୋଡ଼ାଇ, ବାସ—ଲୁଗା, ପାଲଟାଇ—ଲେଉଟାଇ, ଉତ୍ସବ—ଆନନ୍ଦ ।

୨୬ । ଚରମ-ପିଠି, ତନୁ ପୀଡ଼ନେ—କର ଲେଉଟାଇବାରେ, ଉଭା—ଠିଆ ।

୨୭ । ଅମରମୋହିନୀ-ଦେବତା ମୋହକାରିଣୀ, ପଢ଼ା ଶାରୀ ପଞ୍ଜରୀ—ପଢ଼ିଲା ଶାରୀ ପିଞ୍ଜରୀ । ସୁବେଶ—ଭଲ ଭାବରେ ବେଶ ହେବା ।

୨୮ । କଉଁସୀ—କକୁସୀ; ଅଦରଶେ—ଦର୍ପଣରେ, ଧବମଣ୍ଡନା—ସ୍ତ୍ରୀ (ଲାବଣ୍ୟବତୀ ).

୨୯ । ଭୁଜେ—ବାହୁରେ, ଉନ୍ନତ—ବଡ଼ପଣ, ଠାଣି ।

କେମନ୍ତେ ପୀରତି ସୁରତଶାସ୍ତ୍ରକୁ ପ୍ରାନ୍ତ କରୁଥାଇ ମୋର ।
କୁନ୍ଦନ କୁମ୍ଭକୁଚେ ଲେପି ଚନ୍ଦନ ଠେଁସିଦିଏ ହୃଦୟର ।
କି କଲି ବୋଲି ଲାଗିଲା ନ ଲାଗିଲା ହେଜୁଥାଇ ସେ ନବୀନା ।
ସେ ହୃଦ ବେଦନା କଲେ ନିବେଦନା ଘେନିବ କେ ତାହା ବିନା ।୩୦।
ଏରୂପେ ଭାବିନୀ ଭାବକୁ ଭାବନା କରୁଁ କରୁଁ ଭଜେ ମହୀ ।
ସଖୀ ଆଶ୍ୱାସନା ରଚିଲେ ମୁଖରେ ନୀର ସିଞ୍ଚି ବଞ୍ଚି ଦେଇ ।
ସମସ୍ତେ ନେନେ କେ ଲୋଚକ ପୁଚ୍ଛିଲେ ଚେତ ଏ ବାଣୀ ପ୍ରକଟ ।
ଲାବଣ୍ୟବତୀ ବତଶାଙ୍କ ବୟସୀ କେଉଁଦିନ ହେବ ଭେଟ ।୩୧।
ଏ ଉତ୍ତୁ ଗୃହଁ ମକରକେତୁ ତାପେ ଆରତ ନୃପକୁମାରୀ ।
ବସି କାନ୍ତ ଗୁଣ ଗୁଣି ପୁଣ ପୁଣ ମନରେ ବିଗୁର କରି ।
କ୍ଷିତି ଭିତରେ ଯୁବତୀଙ୍କ କେମନ୍ତ ପତି ମିଳିବାର ପୁଣ୍ୟ ।
ପ୍ରଭୁତ୍ୱ ଥିଲେ ଭୃତ୍ୟଠାରୁ ଅଧିକ ବିନୟୀ ରସିକ ଧନ୍ୟ ।୩୨।
ଦିନେ ବନେ ଭ୍ରମି ତପନ ତାପରେ ବିରସ ମୋର ଲପନ ।
ଦେଖି ସଖୀଙ୍କୁ ପୁଚ୍ଛିଲେ ମୋର ଶିର ଅମ୍ଳାନ ଗଣ୍ଡ ତ ମ୍ଳାନ ।
ରଖି ନ ପାରି ଧଇର୍ଯ୍ୟ ନିଜ ଶିର ଥୋଇ ମୋ ପାଦକୁ କଲେ ।
ଆଉ ଦିନେ କଲେ ଏରୂପେ ଅବଶ୍ୟ ରୁଷି ବସିବି ମୁଁ ବୋଲେ ।୩୩।
ସେ ଦନ୍ତ ଭାନୁ ଥିବାରେ ଯେ ସଦନ୍ତୁ ବାହାର ନ କଲେ ମୋତେ ।
କୋଟିକ ରତନ ଦେବାରୁ ଅଧିକ ଗୋଟିକ ବଚନ ସତେ ।
ଦିନେ ପଗ୍ଚାରିଲେ ଉନେଭଙ୍ଗୀ କରି ଯୁବତୀ ପୁରୁଷ ପ୍ରାଣ ।
ତାହା ବିନୁ ଗାତ୍ର ଯାହା ରହେ ଚତ୍ର ଏ କଥା ନୋହେ କି ପୁଣ ।୩୪।

---

୩୦ । କୁନ୍ଦନ କୁମ୍ଭକୁଚେ—କୁନ୍ଦା ହୋଇଥିବା ସୁନାକଳସପରି କୁଚରେ ।

୩୧ । ଭାବିନୀ—ସ୍ତ୍ରୀ, ମହୀ—ପୃଥିବୀ, ନୀର—ଜଳ, ବତଶାଙ୍କ-ଷୋହଳ ।

୩୨ । ମକରକେତୁ—କନ୍ଦର୍ପ, କ୍ଷିତି—ପୃଥିବୀ, ପ୍ରଭୁତ୍ୱ—ଅଧିକାର ।

୩୩ । ତପନ ତାପରେ—ଖରା ତେଜରେ, ବିରସ—ମଳିନ, ଲପନ-ମୁହଁ, ଅମ୍ଳାନ—ଅତି ସୁନ୍ଦର, ମ୍ଳାନ—ମଳିନ, ମୁଣ୍ଡରେ ଥୋଇ ସ୍ତ୍ରୀ ପାଦତଳେ ପଡ଼ିବା ।

୩୪ । ଭାନୁ—ସୂର୍ଯ୍ୟ, ସଦନ୍ତୁ-ଘରୁ, ଗାତ୍ର—ଦେହ, ଚତ୍ର—ଅସ୍ତ୍ରର୍ଯ୍ୟ ।

ଦୁର୍ଗା ପଦ୍ମନାଭ କରନ୍ତୁ ଏ ଶୁଭ ବଲ୍ଲଭ ମନେ ଏ ପ୍ରୀତ ।
ନ ପଡ଼ୁ ପୋଡ଼ୁ ଏ ବିଚ୍ଛେଦ ବିପତ୍ତି ବୋଲି ସେ ଭଜିଲା କ୍ଷିତ ।୩୬।
ଲଳନା ପଲ୍ଲବ ଗୁଳନା କରଣ ମୁଖେ ଦେଲେ ଶୀତ ବାରି ।
ଚେତୁଁ ଶୁଭସ୍ୱପ୍ନ ହେତୁକୁ କହିଲେ ହଂସକେତୁ ତାପ ହରି ।୩୫।
ଏ ରସେ ମନ ନ ଖେଳଇ ଯାହାର ସେହି ନର ପଶୁ ଜେନ ।
ଯେଉଁ ରସରେ ବ୍ରହ୍ମା ବଶ ହୋଇଛନ୍ତି କାହିଁକି ତାହା ସମାନ ।
କାନକୀ ଗ୍ରମ ବିଶେଷ କରି ଜାଣେ ଭାବ ତାଙ୍କ ଶ୍ରୀପସ୍ଵର ।
କହେ ଉପଇନ୍ଦ୍ର ଭଞ୍ଜ ବୀରବର ଛାନ୍ଦ ରସ ରତ୍ନାକର । ୩୬ ।

---

## ଏକଚତ୍ୱାରିଂଶ ଛାନ୍ଦ

( ବିରହ ଅବସ୍ଥାରେ ବର୍ଷାଋତୁର ବର୍ଣ୍ଣନ )

ରାଗ ବରାଡ଼ି—ଅଷାଢ଼ଶୁକ୍ଳ ବାଣୀ

ପ୍ରବେଶ ହୋଇଲା ବରଷାକାଳ । ପ୍ରମାଦମାନଙ୍କ ଜନମ ସ୍ଥଳ ।
ଜଳଦ କଜ୍ଜ୍ୱଳକାନ୍ତ ଶାର୍ଦ୍ଦୂଳ । ସୁଖେ ବିହରିଲେ ଶିଖରଚୂଳ ।
ଗର୍ଜିଲା ସନ୍ତତ । ପ୍ରକାଶି ହଳ ବକାବଳୀଦନ୍ତ । ୧ ।

---

୩୫ । ପଦ୍ମନାଭ—ବିଷ୍ଣୁ, ଶୁଭ—ମଙ୍ଗଳ, ବଲ୍ଲଭ—ସ୍ୱାମୀ, କ୍ଷିତ-ପୃଥିବୀ, ଲଳନା—ସଖିମାନେ,ପଲ୍ଲବ ଗୁଳନା କଲେ—ପଦ୍ମପତ୍ରରେ ବିଞ୍ଚିଲେ, ଶୀତବାରି—ଥଣ୍ଡା ଜଳ, ହଂସକେତୁ—କନ୍ଦର୍ପ, ହରି—ହରଣକରି ।

୩୬ । ରସ ରତ୍ନାକର—ରସ ସମୁଦ୍ର ।
ଗ୍ରୀଷ୍ମସମୟରେ ଦମ୍ପତ ଯେ ସବୁ ପ୍ରକାର କାମ ରସରେ ମତ୍ତଥାନ୍ତି ସ୍ୱାମୀ ବିଚ୍ଛେଦ ହେତୁ ସେହି ଗ୍ରୀଷ୍ମଋତୁର ବିରହଦଶା ବିଶେଷ ଭାବେ ବୁଝା ଯାଇଛି ।

---

## ଏକଚତ୍ୱାରିଂଶ ଛାନ୍ଦ

୧ । ପ୍ରମାଦ—ଦୁଃଖ, ଜଳଦ—ମେଘ,କଜ୍ଜ୍ୱଳକାନ୍ତ-କଳାବର୍ଣ୍ଣ, ଶାର୍ଦ୍ଦୂଳ—ବାଘ, ଶିଖରଚୂଳ—ପର୍ବତ ଉପରେ, ବକାବଳୀ—ବଗସବୁ ଧାଡ଼ି ଧାଡ଼ି ହୋଇ ଉଡ଼ିବା ।

ମେଘ ବାଘପରି ପର୍ବତ ଶିଖରେ ବାହାରିଲା—ବଗମାନେ ଧାଡ଼ି ଧାଡ଼ି ଉଡ଼ିବାରୁ ବାଘ ଦାନ୍ତ ଦେଖାଇଲା ପରି ଜଣାଗଲା ।

କୁରଙ୍ଗ ତୁରଙ୍ଗ ଥିଲ ସକାଶେ । ଚନ୍ଦ୍ର ସୂର୍ଯ୍ୟ ଲୁଚି ରହେ ଆକାଶେ ।
ମୁନିଏ ମୃଗଚର୍ମ ଥିଲ ଦକୁଁ । ହିମାଳୟ ତଳୁଁ ଗଲେ ଶୃଙ୍ଗକୁ ।
ଋକ୍ଷପନ୍ତ ଲୀନ । ଅଗକର ସେ ଗିଳିଦେଲ ଦିନ । ୨ ।
ଜାହୁକମାନେ ଡାକଦେଲେ ତହିଁ । ସିଂହ ଆସୁଅଛି ସନ୍ଦେହ ନାହିଁ ।
ଶୁଣି ବିଯୋଗିନୀ ଲଭି ଦରକୁ । ଛିଣ୍ଡାଇ ହାର ଘୋଡ଼ାଇ ଉରକୁ ।
ସେ ମିଥ୍ୟା ନ କଲେ । କାଳିକାକୁ ଯେଣୁ ଅନାଇ ଦେଲେ । ୩ ।
ବିଧାତା ବିଧାନ ଚିତା ବିଜୁଳୀ । କାଷ୍ଠାବଳୀ ଯୋଗେ ଉଠିଲ ଜଳି ।
ଝଞ୍ଜାନିଳଲଗି ପ୍ରଭା ପ୍ରକାଶି । ସଜୀବରେ ଦହି ଦିଏ ବିଦେଶୀ ।
ତହୁଁ ଅଗ୍ନିକୋଣ । ଉଡ଼ି ବୋଲାଇଲେ ଜ୍ୟୋତିରିଙ୍ଗଣ । ୪ ।

---

୨ । କୁରଙ୍ଗୀ—ମୃଗ, ତୁରଙ୍ଗ—ଘୋଡ଼ା, ଋକ୍ଷପନ୍ତ—ଭାଲୁମାନେ ଓ ତାରାମାନେ ।

ଉପର ପଦରେ ବାଘ ଥିବାରୁ ଚନ୍ଦ୍ରଙ୍କ ମୃଗ ଓ ସୂର୍ଯ୍ୟଙ୍କ ଘୋଡ଼ା ଭୟରେ ଲୁଚିଲେ; ଚନ୍ଦ୍ର ସୂର୍ଯ୍ୟଙ୍କୁ ମେଘ ଘୋଡ଼ାଇ ଦେଲା, ମୁନିଙ୍କ ପାଖରେ ମୃଗଚର୍ମ ଥାଏ କାଳେ ବାଘ ମୃଗ ମନେକରି ଖାଇବ ତେଣୁ ପାହାଡ଼ ଉପରକୁ ପଳାଇଲେ, ଅର୍ଥାତ୍ ପର୍ବତତଳେ ବର୍ଷା ହୁଏ ହିମାଳୟ ଉପରେ ବର୍ଷାହୁଏ ନାହିଁ—ବର୍ଷାହେତୁ ମୁନିମାନେ ହିମାଳୟ ଉପରକୁ ଗଲେ । ଭାଲୁମାନେ ବାଘ ମନେକରି କାଳେ ସେ ଦିନରେ ଖାଇବ, ତେଣୁ ଅନ୍ଧାରକୁ ଗଲେ ଅର୍ଥାତ୍ ତାରା ସବୁ ମେଘ ହେତୁ ଦିଶିଲେ ନାହିଁ ।

୩ । ମେଘ ଦେଖି ଜାହୁକମାନେ ବୋବାଇଲେ, ବିଚ୍ଛେଦିନୀ ସ୍ତ୍ରୀମାନେ ତାଙ୍କର ମୁକ୍ତାହାରକୁ ଛିଣ୍ଡାଇ ଗଜକୁ ଦେଖିଲେ ସିଂହ ଗୋଡ଼ାଇବ, ତେଣୁ ସେ ଗଜମୁକ୍ତା ହାରକୁ ଛିଣ୍ଡାଇ ଦେଲେ ଓ ମୁକ୍ତାକୁ ଫୋପାଡ଼ି ଦେଲେ—ମୁକ୍ତାମାଳା ହେଲା ତାରା, ସିଂହହେଲା, ମେଘ, କାଳିକା ବା ଦୁର୍ଗାଙ୍କୁ ଦେଖି ଅର୍ଥାତ୍ କଳା ମେଘକୁ ଦେଖି ଭୟ କଲେ, ଦୁର୍ଗା ବାହନ ସିଂହ କାଳେ ଗୋଡ଼ାଇବ ।

୪ । ଚିତା—ନିଆଁ, କାଷ୍ଠାବଳୀ—କାଠସବୁ, ଜ୍ୟୋତିରିଙ୍ଗଣ— ଜୁଳୁଜୁଳିଆ ପୋକ ।

ମଲାମଣିଷକୁ ପୋଡ଼ିଲାବେଳେ ଚିତାରେ କାଠ ଦେଲେ, ଜଳେ ପବନ ଦେଲେ ନିଆଁରୁ ଅଗ୍ନି କଣା ଉଠି ଗୃହଅଙ୍କେ ପଡ଼େ, ଏଠାରେ ବିଜୁଳି ହେଲା ଚିତା ଅଗ୍ନି, କାଠଦେଲେ ଚିତା ଅଗ୍ନି ଯେପରି ଦାଉ ଦାଉ ଜଳେ ମେଘରେ ବିଜୁଳି ସେହିପରି ଚକ ଚକ ହେଲା, ଚିତାରେ ମଲା ଲୋକକୁ ପୋଡ଼ନ୍ତି ମାତ୍ର ବିଚ୍ଛେଦୀମାନେ ବିଜୁଳି ଦେଖି କାମାତୁର ହୋଇ

କରକାଲେଷ୍ଟ ପତନ ବହୁତ । ଯୁବାଙ୍କ ଲାଗିଲା ଅନଙ୍ଗ ଭୂତ ।
ଇନ୍ଦ୍ର କୋଦଣ୍ଡ ଦଣ୍ଡ ନଭେ ରାଜି । ମାନିନୀ-ମାନ-ଦମ୍ଭକୁମ୍ଭ ଭାଜି ।
ସେ ବିନା ପ୍ରହାରେ । ଏହା ଦେଖିଲା ନ ଥିବ ସଂସାରେ । ୫ ।
ନଦୀ ନାଗ କଲେ ବେଗ ଗମନ । ଲହରୀ ରସନା ଫୁତ୍କାର ସ୍ୱନ ।
ଫେନ କଞ୍ଚୁକ ଭ୍ରମ ଚକ୍ର ଶୋହି । ସାଗର ବିଳେ ରହିବାକୁ ଯାଇ ।
ତା ଗୁହିଁ ଚପଲେ । ପଳାଇ ଗଲେ ମେରୁକୁ ମରାଳେ । ୬ ।
ପର ଅପର ଏହାଠାରେ ନାହିଁ । ଦେଖି ବେଣ୍ଣକୂଳ ଗ୍ରାସ କରଇ ।
ପଥିକ ନିକର ଗୁହିଁ ଶଙ୍କିଲେ । ଉରୁପ ଭୂଷଣ ନାମେ ଡାକିଲେ ।
ଅତୁର ଦର୍ଦ୍ଦୁର । ନିରତେ ଅରମ୍ଭି ଅରତ ସ୍ୱର । ୭ ।

---

ତାଙ୍କ ମନ ପୋଡ଼ିଗଲା, ଚାତା ଅଗ୍ନିକଣା ଗୁରଅଡ଼େ ପବନରେ ପଡ଼ିବା ପରି ହେଲା, ବର୍ଷାହେତୁ ଜୁଳୁଜୁଳିଆ ପୋକ ଗୁରଅଡ଼େ ଉଡ଼ିଲେ ।

୫ । କରକାଲେଷ୍ଟ—କୁଆପଥର, ଇନ୍ଦ୍ରକୋଦଣ୍ଡ—ଇନ୍ଦ୍ରଧନୁ, ନଭେ—ଆକାଶରେ, ରାଜି—ସୁନ୍ଦରଦିଶି, ମାନିନୀ—ରୁଷିଥିବାସ୍ତ୍ରୀ, କୁମ୍ଭ—ମାଟିଆ । ଯେଉଁ ସ୍ତ୍ରୀମାନେ ରୁଷିଥାନ୍ତି ସେମାନେ ଇନ୍ଦ୍ରଧନୁ ଦେଖି ମଦନ ଆତୁରରେ ରୁଷିତା ଛାଡ଼ି ପୁରୁଷକୁ ତୋଷିବାକୁ ଦଉଡ଼ନ୍ତି ।

୬ । ନଦୀ-ନଈ, ନାଗ—ସାପ, ବର୍ଷାଦିନେ ନଈ ବଢ଼ିବାରୁ ସାପ ଦଉଡ଼ିଥିଲେ ଯେପରି ଜିଭକାଢ଼ି ସୁ ସୁ ହୁଏ, ନଈ ସୁଅ ଢେଉ ଦେଇ ସୁ ସୁ ଦଉଡ଼ିଲା, ଫେନ—ଫେଣ, କଞ୍ଚୁକ—କାତି, ଚକ୍ର—ଚକ୍ରଚିହ୍ନ—ଭଉଁରି, ସାପଫେଣ ବାହାର କରେ କାତି ଛାଡ଼େ । ତାର ଚକ୍ରଚିହ୍ନ ଥାଏ, ସେହିପରି ନଈର ଫେଣ ବାହାରେ କାତି ପରି ଢେଉ ହୁଏ ଭଉଁରି ବୁଲି ଚକ୍ରପରି ଦେଖାଯାଏ, ବିଳ—ଗାତ, ବର୍ଷାରେ ସାପ ଗାତକୁ ଯାଏ ନଈ ସମୁଦ୍ର ଭିତରକୁ ଯାଏ । ସାପ ଆସୁଛି ବୋଲି ହଂସମାନେ ମେରୁ ପର୍ବତ ମାନସରୋବର ପଳାଇଲେ—ବର୍ଷାଦିନେ ନଈ ପୋଖରୀରେ ହଂସମାନେ ରହନ୍ତି ନାହିଁ ।

୭ । ସାପଠାରେ ଯେପରି ନିଜ ଓ ପର ବିଚାର ନାହିଁ, ନଈଠାରେ ମଧ୍ୟ ସେହିପରି ବିଚାର ନାହିଁ, ବେଣ୍ଣକୂଳ—ବେଙ୍ଗ ଓ ଦୁଇକୂଳ, ନଈଦୁଇ କୂଳ; ସାପ ବେଙ୍ଗକୁ ଖାଏ, ପଥିକ କି ବାଟୋଇ ସାପକୁ ଦେଖିଲେ ଡରନ୍ତି, ନଈ ବଢ଼ିକୁ ଦେଖିଲେ ମଧ୍ୟ ପାରହେବାକୁ ଡରନ୍ତି, ଉରଗ ଭୂଷଣ—ମହାଦେବ ଓ ନାଉରୀ, ବାଟୋଇ ମନେ ସାପ ଭୟରେ ମହାଦେବଙ୍କୁ ଡାକିଲେ; ବାଟୋଇମାନେ ବଢ଼ି ଭୟରେ ପାରହେବାକୁ ନାଉରୀକୁ ଡାକିଲେ, ଦର୍ଦ୍ଦୁର—ବେଙ୍ଗ, ଅତିସ୍ୱର—ବିକଳକଣ୍ଠ,

ଟେକ ଶିଖଣ୍ଡ କେକୀ ଷଣ୍ଡମତ । ନାରୀମଣ୍ଡଳୀ ମଧ୍ୟେ କଲ ନୃତ୍ୟ ।
ଦେଖି ସୁମନା-ଗଣିକା ନିକର । ଦରବିକାଶ ହାସେ ମନୋହର ।
ଗୃହିଁ ସେ ମଣ୍ଡକୁ । ବାକ୍ୟ ନ ସ୍ଫୁରିଲ ପରଭୃତକୁ । ୮ ।
ଏ ଋତୁ ଗୃହିଁ କୁମାର କଟେସ୍ମି । ମିତ୍ର ବଦନକୁ ଅନାଇ କହି ।
ବିଜୁଳି କାମୁକୀ ଘନାଳିନଳି । ସ୍ତନିତ ତୂଟଣ୍ଡ କୁଳିଶ ଗୁଳି ।
ମହୀଧର ଲକ୍ଷ । ପଥର ଫୁଟି ଯାଉଅଛୁ ଦେଖ । ୯ ।
ଜାଣିଲି ମୋ ହୃଦ ଅତି କଠିନ । ଫାଟି ନ ଯିବାରୁ ପ୍ରିୟା ବିହୀନ ।
ନ ଫୁଟିବ ଭଲ କୁସୁମ ବାଣ । କାମ କରନ୍ତୁ ଏ ଅସ୍ତ୍ର ଭିଅଣ ।
ରକ୍ଷା ହେବ କେହି । ଅଜନ୍ତ ମୋତେ ବୁଦ୍ଧି ଦିଶୁନାହିଁ । ୧୦ ।
ସଖା ବୋଇଲେ କ ବିଗୁର ଅଛୁ । ବାଳାମଣି ନାମ ସୁମନ୍ତ ଥାଉଁ ।
ସ୍ଵଭାବେ ମନ ଏକଲକ୍ଷ୍ଯ ଯହିଁ । ବିଶେଷେ ମଜ୍ଜିଲା ଯାହାକୁ ପାଇ ।
ବିଗ୍ରରଇ ମନେ । ମୁଁ ନିକ ମୂର୍ଚ୍ଛି ପାରିବି ଜୀବନେ । ୧୧ ।

---

ବେଙ୍ଗମାନେ ସାପକୁ ଦେଖି ବିକଳସ୍ଵର କଲେ—ବେଙ୍ଗ ଗାତରେ ପାଣି ପଶିବାରୁ ବିକଳ ସ୍ଵର କଲେ ।

୮ । ଶିଖଣ୍ଡ—ପୁଚ୍ଛ, କେକୀ—ମୟୂର, ଷଣ୍ଡ—ନପୁଂସକ । ନାରୀମଣ୍ଡଳୀ—ସ୍ତ୍ରୀ ସବୁ, ନୃତ୍ୟ—ନାଚ, ସୁମନା—ମାଳତୀଫୁଲ, ଗଣିକା—ଯୂଇଫୁଲ, ନିକର—ସମୂହ, ଦରବିକାଶ—ଅଳ୍ପଫୁଟିବା, ପରଭୃତ—କୋଇଲି । ବର୍ଷା ହେବାରୁ ମୟୂର ପୁଚ୍ଛଟେକି ନାଚଲ—ଅର୍ଥାତ୍ ମୟୂର ନୃତ୍ୟଦେଖି ସ୍ତ୍ରୀମାନଙ୍କ ମନ କାମରସରେ ନଚଲା ଏ ସମୟରେ ମାଳତୀ ଫୁଲ ଓ ଯୁଇଫୁଲ ସବୁ ଅଳ୍ପ ଫୁଟିବାରୁ ସୁନ୍ଦର ଦେଖାଗଲା । ଏ ସବୁକୁ ଦେଖି କୋଇଲିର ଆଉ କଥା ବାହାରିଲା ନାହିଁ । ବର୍ଷାଦିନେ କୋଇଲି ବୋବାଏ ନାହିଁ ।

୯ । କାମୁକୀ—ନିଅଁ ବରଅ, ଘନାଳି—ମେଘମାନେ, ନଳୀ—ବନ୍ଧୁକ, ସ୍ତନିତ—ଘଡ଼ଘଡ଼ି, କୁଳିଶ—ବଜ୍ର, ବନ୍ଧୁକ ଫୁଟାଇବାରୁ ନିଅଁ ବରଅ ହେଲା ବିଜୁଳି, ମେଘ ହେଲା ବନ୍ଧୁକ, ବନ୍ଧୁକରୁ ଗୁଳିଯାଏ ଏଠାରେ ଗୁଳିହେଲା ବଜ୍ର, ପର୍ବତ ହେଲା ଲକ୍ଷ, ବଜ୍ରର ତୂ ଶବ୍ଦ ହୁଏ । ବନ୍ଧୁକର ତୂ ଶବ୍ଦ ହୁଏ ।

୧୦ । କନ୍ଦର୍ପର ବାଣ ଫୁଲରେ ହୋଇଥିବାରୁ ତାହା ଦେହରେ ଅଘାତ ନ କରି ମରମରେ ଭେଦକରେ ।

୧୧ । ବାଳାମଣି—ସ୍ତ୍ରୀଶ୍ରେଷ୍ଠ, ସୁ—ଉତ୍ତମ ।

ଯେ ପ୍ରାଣ ପର କରିଥିଲ ମୋତେ । ସେ ପୁଣି ମୂର୍ଚ୍ଛିପାରିବ କେମନ୍ତେ ।
ଦିନଦିନଙ୍କର ପୀରତିରୀତି । ଚିନ୍ତୁଅଣକୁ ଏ ବରଷା ଦୂତୀ ।
ହୋଇ ହେଲ ସିନା । କେହ୍ନ ବର୍ଣ୍ଣିବ ସ୍ନେହ ପରାଧୀନା ।୧୨।
ଦିନେ ଜାନୁରେ କରଭରା ଦେଇ । ସୁତନୁ ଇନ୍ଦ୍ରଧନୁ ଥିଲ ଚାହିଁ ।
ଗୋକୁଳଈଶ ରସ ମନେ ଭାବି । ପଛୁଁ କୋଳଙ୍କର ଧରନ୍ତେ ନୀବି ।
ଭୀତି ଉପୁଜାଇ । ଭିତ୍ତି ଅନ୍ତରେ ଥିବେ ପରା ସହ୍ମା । ୧୩ ।
ଦିନେ କାମିନୀ ଯାମିନୀ ନ ପାହୁଁ । କୁସୁମ ବିକାଶେ ଅନ୍ତର ହେଉଁ ।
ହୃଦ ବିଲଗରୁ ଭାଜିଲା ନିଦ । ଡାକିଲି ବନ୍ଧୁ ବୋଲି ଲଭି ଖେଦ ।
ସେ ଶୁଣିଲ ନାହିଁ । ଦାମିନୀ ଝଟକ ଦେଲା ଦେଖାଇ । ୧୪ ।
ଏଡ଼େ ବଞ୍ଚନା କାହିଁକି ଦାସରେ । ବୋଲି ଯାନ୍ତେ ପ୍ରାଣବନ୍ଧୁ ପାଶରେ ।
ତ୍ରପାରେ ପ୍ରକାଶ କରି ହାସକୁ । ଆଚ୍ଛାଦି ଲାବଣ୍ୟ ଅଙ୍ଗେ ବାସକୁ ।
ମହୀକି ଅନାଇଁ । କିଛି ନ କହି ସେ ପଙ୍କଜମୁହିଁ । ୧୫ ।
ଫିଙ୍ଗିଲା ଫୁଲ ଝଲକ କମ୍ପାଇ । ଭାଷିଲି ଏ ଶରେ ଭାସିଲି ମୁହିଁ ।
ଭୃଙ୍ଗ ଚୁମ୍ବିଲ ପୁଷ୍ପବତୀ ଲତା । ବୋଲିବାକୁ ବୋଲିଅଛି ବିଧାତା ।
କି ବିରସ ମୋତେ । ବିଚ୍ଛେଦ ସହି ନୋହିଥିଲ ଏତେ । ୧୬ ।
ଦିନେ ଦୁର୍ଦ୍ଦିନେ ପାହିବାରୁ ରାତି । ଜଣା ନ ଯିବାରୁ ଆରମ୍ଭ ରତି ।
ସେକାଳେ ପଢ଼ିଲା ପଞ୍ଜରୀ କୀର । ଜାନୁ ଛନ୍ଦଦେଇ ମଧ୍ୟରେ ମୋର ।
ତ୍ରିନି କରି କହେ । ବିଧି ନିଷେଧ ନ ମାନିବ କହେ । ୧୭ ।

---

୧୨ । ଚିନ୍ତୁଅଣକୁ—ମନେପକାଇ ଦେବାକୁ, ଦୂତୀ ଯେପରି ଆଗକଥା ସବୁ ମନେ ପକାଇ ଦିଏ ବର୍ଷାକୁ ଦେଖି ପୂର୍ବର ଭାବସବୁ ମନେପଡ଼େ, ସ୍ନେହ ପରାଧୀନା—ସ୍ନେହରେ ଯେ ବଶ ।

୧୩ । ଜାନୁ—ଜଙ୍ଘ, ସୁତନୁ—ସୁନ୍ଦରୀ, ଗୋକୁଳଈଶ—ଷଣ୍ଢ, ବୃଷଭରସ ବୃଷବନ୍ଧ, ଭିତ୍ତିଅନ୍ତରେ—ଘରଭିତରେ ।

୧୫ । କାମିନୀ—ରସିକା, ଯାମିନୀ—ରାତି, କୁସୁମ ବିକାଶେ—ଋତୁମତୀ ହୋଇ, ବିଲଗ—ଅଲଗା ହେବା, ଖେଦ—ଦୁଃଖ, ଦାମିନୀ—ବିଜୁଳି, ବିଜୁଳିର ଝଟକରେ ଦିଶିଲା ।

୧୫ । ବଞ୍ଚନା—କପଟ, ଦାସ—ଚାକର, ତ୍ରପା—ଲଜ୍ଜା, ଲାବଣ୍ୟ—ସୁନ୍ଦର, ବାସ—ଲୁଗା, ମହୀ—ପୃଥିବୀ, ପଙ୍କଜମୁହିଁ—ପଦ୍ମବଦନୀ

୧୬ । ଫିଙ୍ଗିଲା—ଫୋପାଡ଼ିଲା, ଭୃଙ୍ଗ—ଭଅଁର, ପୁଷ୍ପବତୀ—ଫୁଲଫୁଟିବା । ଋତୁମତୀ ହେବାରୁ ଫୁଲଫୋପାଡ଼ି ଦେଇ ଋତୁମତୀର ସଙ୍କେତ ଦେଲା ।

ମୁହିଁ କହିଲି ଲବଣ୍ୟନିଧିଙ୍କ । ଏ ନାକ ବଙ୍କ ବିଧି ଅବଧିଙ୍କ ।
ଏତେବେଳେ ଧନ ଜାଣିଲା ମୋ ମନ । ରତାନ୍ତ ପାଏ ଦେଲା ଆଲିଙ୍ଗନ ।
ଉପୁଜାଇ ଗଡ଼ । ପ୍ରତିଅଙ୍ଗ ଶୋଭା ଦଶିବା ଭିଡ଼ । ୧୮ ।
ଦିନେ ଅତି ପ୍ରାତୁଁ ପକ୍ୱବିମ୍ବୋଷ୍ଠୀ । ଗଲା ଗୋପ୍ୟ ପୁରେ ମୋପାଶୁ ଉଠି ।
ଉରଜେ କରଜ ଚିହ୍ନ ଦେଖଇ । ମୁହିଁ ଗବାକ୍ଷେ ଗୁହିଁବାକୁ ଯାଇଁ ।
ସେହି ଦିଗେ କେକୀ । ସ୍ୱନାଦେ ଡାକିଲା ପୁଚ୍ଛକୁ ଟେକି । ୧୯ ।
ତାକୁ ଅନାଇଁ ଯେ ଦେଖିଲା ମୋତେ । ଅପରାଧ କ୍ଷମା କର ବୋଲନ୍ତେ ।
ମୁଖ ନ ଟେକିଲା ତ୍ରପା ତ୍ରାସରେ । ହାସ ପ୍ରକାଶିଲା କୃପାବଶରେ ।
ତା ସେହି ଚାତୁରୀ । ନୟନେ ମୋର ବହିଅଛି ପୂରି । ୨୦ ।
ଦିନେ ଜାଳିଦେଇ ଦୀପାବଳିଙ୍କି । ବଳେ ବିବସନ କଲୁଁ ବାଳୀକି ।
ଚମକିଲା ହୋଇ ଲଜ୍ଜା ଆକୁଳେ । ପ୍ରଦୀପ ହତ ହେଲା ଝଞ୍ଜାନିଳେ ।
ଲଭି କି ସନ୍ତୋଷ । ରସ ଲସା ହେଲା ରସରେ ବଶ । ୨୧ ।
ଦିନେ ଯେ ପାଶକୁ ଅଣାଇ ପଶା । ଖେଳିବା କି ବୋଲି ବୋଇଲା ଯୋଷା ।
ମୁହିଁ ବୋଇଲି ବସି ହୁଡ଼ କର । ଶୁଣି ସୁନ୍ଦରୀ ଦେଖାଇଲା ହାର ।
ମୁଁ ବୋଇଲି ଧନ । ନ ଜାଣୁ କି ଯହିଁ ଥାଇ ମୋ ମନ । ୨୨ ।
ତହିଁ କି କଲା କି ଭଙ୍ଗୀ ରଚନା । ହେଲେହେବ ପଛେ ହାରିଲେ ସିନା
ଖେଳ ଆରମ୍ଭ ଅତି ଅନୁରାଗେ । କଳକଣ୍ଠକଣ୍ଠୀ ଧିରଲା ଯୋଗେ ।
ପଣ ମାଗୁଁ ସଖୀ । ବୋଇଲା ଅସେ ସଖୀଠାରୁ ଶିଖି । ୨୩ ।
ଏବେ ଇନ୍ଦ୍ର ଧନୁ ଉଇଁଥିବ । ବିଦ୍ୟୁ ଝଟକିବ ଅନ୍ଧାର ହେବ ।
ପ୍ରକଟ କେକୀ ନାଟ ଝଞ୍ଜାବାତ । ହେବେନି ଜନେ ପଶା ଖେଳେ ରତ ।
ଚିନ୍ତ ଏ ଭାବକୁ । ବିଦାର ହେଉଥିବ ପରା ବୁକୁ । ୨୪ ।

---

୧୭ । ଦୁର୍ଦ୍ଦିନ—ବର୍ଷାଦିନ, ଜାର—ଶୁଆ, ମଧ୍ୟ—ଅଣ୍ଟା, ଦିନରେ ରତି କରିବା ନିୟମର ବିରୁଦ୍ଧ, କାରଣ ଅଯୁଷ କମେ ।

୧୮ । ଉପୁଜାଇବା—ଜନ୍ମାଇବା ।

୧୯ । ପ୍ରାତୁଁ—ସକାଳୁ, ପକ୍ୱବିମ୍ବୋଷ୍ଠୀ—ପାଚିଲା କଇଁଚ କାକୁଡ଼ିପରି ଓଷ୍ଠ ରକ୍ତବର୍ଣ୍ଣ, କରଜ—ନଖ, ଗବାକ୍ଷ-ଝରକା, ସ୍ୱନାଦେ-ଅପଣା ନାଦେ

୨୦ । ତ୍ରପା—ଲଜ, ତ୍ରାସ—ଭୟ, କୃପା—ଦୟା, ସ୍ନେହ ।

୨୧ । ଝଞ୍ଜାନିଳ—ଝଞ୍ଜାପବନ, ହତ—ଲିଭିଯିବା ।

୨୨ । ହୁଡ଼—ପଣ,

୨୩ । କଳକଣ୍ଠ—କୋଇଲି, ବିପରୀତ ମାଗିବାରୁ ସେ ସଖୀଠାରୁ ଶିଖି ଅସେ କହି ଚାଲିଗଲା ।

ଛୁଞ୍ଚ ନ ଥିବ ମୋ ଗୁନ୍ଥିଲା ହାସ । ଲଭି ନ ଥିବ ସ୍ତନୁ ନଖଗିରି ।
ଫିଟାଇବ ନାହିଁ ମୋ ବନ୍ଧାବେଣୀ । ରେଖାଇଥିବ ପ୍ରୀତି ପ୍ରତିପତ୍ତି ।
ପ୍ରମାଦେ ପ୍ରମାଦ । ପକାଇଥିବ ପ୍ରକାଶେ ଜଳଦ । ୨୫ ।
ଦରଶନ ମାତ୍ରେ ରସବତୀକି । ଚତ୍ରୁଅଇଁଥିବ ଏହି ପ୍ରୀତିକି ।
ପୟୋଧର ଶିର ଗ୍ରାସିବା ଶୁହିଁ । ପୟୋଧର ବେଣୀ କରେ ଘୋଡ଼ାଇ ।
ସିହାଣୀ ବୋଲନ୍ତି । କବିଙ୍କ ଉପମା କୁହଇ କହୁ । ୨୬ ।
ନୂଅକାଚ ଚୂଡ଼ି ଲଗାଇ ଥିଲି । ସଞ୍ଚା ନ ଦଶିଲା ଗାତ୍ରେ ଉଡ଼ିଲା
ପାନକଲ ପୂରିଥିଲି ଯେ ତୁଣ୍ଡେ । ବୋଲ ନ ଲାଗିଲା ଚୁମ୍ବିଲା ଗଣ୍ଡେ ।
ସେ ଏମନ୍ତ ହେତୁଁ । ଗୁହୁଁ ଗୁହୁଁ ତାର ବୁଝିଲା ହେତୁ ।୨୭।
ସଖୀଏ ପଦ୍ମତଳ୍ପରେ ଶୁଆଇ । ଚେତନା ବଶରେ ଏମନ୍ତ ଧ୍ୟାଇ ।
ହାହାରେ କୋମଳା ସ୍ନେହଅଧୀନା । ଜାଡଦଳେ ଶଯ୍ୟା କର ରଚନା ।
ରହେ ଥାଇ ମନ । ପ୍ରବେଶ ହେଲେ ମୁଁ ତା ସନ୍ନିଧାନ । ୨୮ ।
ପାଖେଟି ନଅଇ ଅସନ ଡେଙ୍ଗ । କର ଧରୁଥାଇ ଉଚ୍ଛନ୍ନ ଭଙ୍ଗ ।
କୋଳେ ବସାଇ ଧରୁଥାଇ ନୀବି । ବ୍ୟାଜେ ବୋଲଇ ଅଙ୍ଗ ନ ପାରିବି ।
ଏ ରସ ଭାବନ୍ତେ । ଫୁଲ୍ଲ ଭାବଯୋଗ ପଡ଼ିଲା ଚିତ୍ତେ ।୨୯।
ଦିନେ ମୋ ପ୍ରୀତିଗୀତ ଯୋଡ଼ି ବାଳା । ବସି କେତକୀପତ୍ରେ ଲେଖୁଥିଲା ।
ଏତେକ ପଢ଼ିଲି ପଛରୁ ଯାଇ । ପ୍ରିୟ ପାଇଛି ମୁଁ ଗଙ୍ଗାରେ ଦାହି ।
ତା କି କର ଜାଣି । ଚଉଁରି କର ଚିରଲା ରମଣୀ । ୩୦ ।
ବୋଇଲି ରେ ଶିଖି ଶିଖଣ୍ଡକେଶି । ଶିଖିବାକୁ ଥିଲା ମୋ ମନ ରସି ।
ମଥା କମ୍ପାଇ ନ ଜାଣିଲି ପର । କେଉଁ କଥା କି ବୋଲି ସେ ପଗୁର ।
କହନ୍ତି ପ୍ରାଣକୁ । ଲୁଚିଯାଇ ତୋ ଉଦାରପଣକୁ ।୩୧।

---

୨୫ । ପ୍ରମାଦେ ପ୍ରମାଦ—ଦୁଃଖ ଉପରେ ଦୁଃଖ ।
୨୬ । ପୟୋଧର—ମେଘ ବା ବଉଦ, ସ୍ତନ, ସିହାଣୀ—ଚନ୍ଦୁସ ।
୨୭ । ସଞ୍ଚା—ଦାଗ, ହେତୁ—ଚେତା ।
୨୮ । ପଦ୍ମତଳ୍ପରେ—ପଦ୍ମପତ୍ର ଶେଯରେ, କୋମଳ—ସ୍ନେହାଧୀନା ଲାବଣ୍ୟବତୀ, ଜାଡଦଳେ—ଜାଣି ପାଖୁଡ଼ାରେ ।
୨୯ । ବ୍ୟାଜେ—ଛଳନାରେ, ଫୁଲଭାବ—ଫୁଲମାଳ ଦଅନଅ ବେଳେ ଯେଉଁସବୁ କଥା ହୋଇଛି ।
୩୦ । ଶିଖିଶିଖଣ୍ଡ—ମୟୂରପୁଚ୍ଛ ପରି କେଶ ।

ଘେନେ ଯେ ଗୁନ୍ଥି ସୁମନା ମାଳାକୁ । ଶ୍ରୀକରେ ଦେଇ ବୋଇଲ ବାଳାକୁ ।
ଅଜଠାରୁ ତୋର ମୋର ମାଳତୀ । ହୋଇ ନ କଲ୍ଲ ସେ ବଦନ ପୋତି ।
କେଶୁ କୁରୁବକ । ଦେଖାଇ ବୋଇଲ୍ଲ ଏ ନାମେ ଡାକ । ୩୨ ।
ସୁନ୍ଦରୀ ମେତେ ଗୁଣବତୀ ତେତେ । ଜୀବନପ୍ରଭୁ ମୋ ବନଯ୍ତୀ କେତେ ।
ଥାଉ ଅଉ ଏ ଘେନାଘେନ ଭାବ । ମନ୍ତୁ ଜୀବ ଯିବାଯାଏ ନ ଯିବ ।
ଦଇବ କି କଲା । କାହିଁ ବିଚ୍ଛେଦ ଦଣ୍ଡ ରଖିଥିଲ୍ଲ । ୩୩ ।
ଫୁଟିଲେଣି ଏବେ ଜାତୀ କେତକୀ । ମାଳତୀ ଗୃହିଁ ଶତୋଇ ଏତିକି ।
ଶୋକ ଜଳଧିରେ ବୁଡ଼ି ବହିବ । ଲୋତକ କଲ୍ଲୋଳେ ଭସାଇ ଦେବ ।
ଧିବର୍ଣ୍ଣମାନଙ୍କୁ । କି ଦଶା ପଡ଼ିଲ୍ଲ ପ୍ରାଣଧନକୁ । ୩୪ ।
ଏକାଳେ ସେହୁ ନେନ୍ଦୁ ମୁଦ୍ରି ମାର । କୁମାରୀ କୁମାର ଭାବେ ଜର୍ଜ୍ଜର ।
ଶତେ ଶତ୍ରେଇଲ୍ଲ ଏତିକି ସ୍ନେହ । କ୍ଷଣକ୍ଷଣକରେ ହୋଇଲ୍ଲ ମୋହ ।
ଚେତ ଦଣ୍ଡେ ଦଣ୍ଡେ । ଏହୁ ବାଣୀମାନ ଉଚ୍ଚାର ତୁଣ୍ଡେ । ୩୫ ।
ପାସୋରଲେ ମୋତେ କୃପାଜଳଧି । ରଖିଲେ କି ପୁଂସ ଭ୍ରମର ସିଦ୍ଧି ।
ମୋହିଲ୍ଲ ଅବା କେଉଁ ମନୋହାରୀ । ନ ଜାଣନ୍ତି ବା ପଥ ତଥ୍ୟକରି ।
ନ ଯାଇ ଜୀବନ । ପ୍ରିୟତନୁ ହେଲ୍ଲ ବଜ୍ର କଠିନ । ୩୬ ।
ଚନ୍ଦନପାଟିଏ ଥିବ କପାଳେ । ତନ୍ତୁ ପୂରିଥିବ କମଳନାଳେ ।
ଏ ବିଧି ଶିରହ ବେଶରୁ ଯୁବା । ମାର ହର ଭ୍ରମ କରୁଛି ଅବା ।
ବିଲମ୍ବ ଏଥିକି । ଏମନ୍ତ ବୋଲି ଭଜାଲ୍ଲ ଯିତକି । ୩୭ ।

---

୩୨ । ସୁମନା—ମାଳତୀ, ଦୁହେଁଯାକ ମାଳତୀ ବୋଲି ଡାକିବା, କେଶୁ—ଗଭାରୁ, କୁରୁବକ—ଦାସକେରଣ୍ଡୀ ଅର୍ଥାତ୍ ଦାସୀ ।

୩୪ । ଜଳଧି—ସମୁଦ୍ର, ଲୋତକ—ଲୁହ ।

୩୫ । ନେନ୍ଦୁ—ଅଖିରୁ, ମୁଦ୍ରି—ପୋଛି ବା ବନ୍ଦ କରି ।

୩୬ । କୃପାଜଳଧି—ଦୟାସାଗର, ମନୋହାରୀ—ସୁନ୍ଦରୀ, ତଥ୍ୟକରି—ଠିକକରି, ପ୍ରିୟତନୁ—ସ୍ୱାମୀଦେହ ।

୩୭ । କମଳନାଳେ—ପଦ୍ମ ନାଡ଼ରେ । ଯୁବା ପୁରୁଷକୁ କନ୍ଦର୍ପ ମହାଦେବ ମନେ କରୁଛି, କାରଣ ମହାଦେବଙ୍କ ମୁଣ୍ଡରେ ଚନ୍ଦ୍ର ଥାଏ, ପୁରୁଷ ମୁଣ୍ଡରେ ଚନ୍ଦନ ଟିକା ଚନ୍ଦ୍ରପରି ଅଛି, ମହାଦେବଙ୍କ ଦେହରେ ସାପ, ପୁରୁଷ ଦେହରେ କମଳ ନାଡ଼, ମାର ମହାଦେବ ମନେକରି ଶର ମାରୁ ନାହିଁ । ଏଣୁ ସେ ମୋ କଥା ମନେ ପକାଉ ନାହାନ୍ତି, ଏହା କହୁ ମାଟିରେ ଶୋଇଲ୍ଲ ।

ନଳ ଦମୟନ୍ତୀ ଜାଣେ ଏ କଥା । ସମର୍ଥ ଗ୍ରମ ହରିବାକୁ ବ୍ୟଥା ।
ଚିତ୍ତରେ ତାଙ୍କ ନିରନ୍ତରେ ଧ୍ୟାୟି । ଉପେନ୍ଦ୍ର ଗାଇବର କହଇ ।
ଏ ବଡ଼ଚାଳିଶ ଛାନ୍ଦ । ହୃଦ-କୁମୁଦ-ଉଲ୍ଲାସକୁ ଚନ୍ଦ୍ର । ୩୮ ।

## ଦ୍ୱିଚତ୍ୱାରିଂଶ ଛାନ୍ଦ

( ବିରହରେ ଶରତ୍ ଋତୁର ବର୍ଣ୍ଣନ )

ରାଗ—ଦେଶାକ୍ଷ, ଚକ୍ରକେଳି ବାଣୀ

ଦେଖି ନୀରଦ ଦ୍ୱିରଦ ଶରଦ । ଋତୁ କେଶରୀ ପ୍ରସରି ବିଷଦ । ୧ ।
ଗୃହିଁ ତମସ ନାଶ ବନଦେଶ । ସ୍ଫୁଟି ପ୍ରକାଶ କଲେ କାଶହାସ । ୨ ।
ଘୋର ଭେକ ଡାକ ଶୁଣିମା କର୍ଣ୍ଣେ । ଯାଇଥିଲେ ମାନସେ ଏହିମାନେ । ୩ ।
ଯହୁଁ ସେମାନେ ଗଲେ ଗର୍ଜି ଗର୍ଜି । ମହୀ ପ୍ରବେଶ ହେଲେ ହଂସରାଜି । ୪ ।
କେହି ଖଦ୍ୟୋତ ସଙ୍ଗେ ଉଦେ ହେବା । ଲୁଚେ ତାରକା ଲୁଚିଥିଲେ କିବା ।
ତାଙ୍କ ସ୍ନେହର ଅବାଧିତ ଶଣୀ । ଏବେ ନିର୍ମଳ ଆକାଶେ ପ୍ରକାଶି । ୬ ।

---

୩୮ । ହୃଦକୁମୁଦ ଉଲ୍ଲାସକୁ—ହୃଦୟ କଇଁ ଆନନ୍ଦକୁ ।
ବିରହିଣୀ ବର୍ଷା ଋତୁରେ ମେଘ ଘଡ଼ଘଡ଼ି, ବିଜୁଳି, ଥଣ୍ଡା ପବନ ବତାସ ଇତ୍ୟାଦି ଦେଖି ପ୍ରିୟପକୁ ମନେପକାଇ ବିରହରେ ଅସ୍ଥିର-ହୁଏ—ଲାବଣ୍ୟବତୀ ଏଠାରେ ସେହିପରି ହେଉଛି ।

---

## ଦ୍ୱିଚତ୍ୱାରିଂଶ ଛାନ୍ଦ

୧ । ନୀରଦ—ମେଘ, ଦ୍ୱିରଦ—ହାତୀ, ଶରଦ—ଶରତ୍‌କାଳ, କେଶରୀ—ସିଂହ ।
ଶରତ୍ କାଳ ମେଘରୂପକ ହାତୀକୁ ଦେଖି ସିଂହପରି ପରିସ୍କାର ହେଲା, ଶରତ କାଳରେ ଆକାଶ ନିର୍ମଳ ହୁଏ ।

୨ । ତମ—ମେଘ ଅନ୍ଧାର, ମେଘନାଶ ହେବାର ଦେଖି ପରିସ୍କାର ହାସ ପ୍ରକାଶକଲେ । ଏ ସମୟରେ ମେଘ ନ ଥିବାରୁ ବଣରେ କାଶତଣ୍ଡି ଫୁଲ ଫୁଟିବା ହେତୁ ହସିବା ପରି ଦେଖାଯାଏ ।

୩ । ବର୍ଷାଦିନେ ବେଙ୍ଗ ଡାକନ୍ତି—ଘୋର ବେଙ୍ଗ ଡାକ ଶୁଣିବେ ନାହିଁ ବୋଲି ହଂସମାନେ ମାନସରୋବରକୁ ଯାଇଥାନ୍ତି—

୪ । ବେଙ୍ଗ ଗର୍ଜି ଗର୍ଜି ବନ୍ଦ ହେବାରୁ ବର୍ଷାକାଳ ଯିବାରୁ ହଂସମାନେ ଫେରିଆସିଲେ ।

୫-୬ । ଖଦ୍ୟୋତ—ଜୁଳୁଜୁଳିଆ ପୋକ ।

ବୃଷ ମତ୍ତ ହୋଇ ଋଷଭ ସ୍ୱରେ । କହୁଛନ୍ତି କି ଏମନ୍ତ ବ୍ୟାଜରେ । ୭ ।
ଦେଖି ଦେଖି ଭଜିଲେଟି ଲ୍ଲନକୁ । କେକୀ ଷଣ୍ଢମତ କେତେ ଘନକୁ । ୮ ।
ଘଣେ ଦକ୍ଷିଣେ ଅଗସ୍ତି ସୁନ୍ଦର । ଲେଉଟିଛି ଭାବି ତୋଷ ମନ୍ଦର । ୯ ।
ପଦ୍ମ ଅନୁରାଗ କେମନ୍ତ ଭାବି । ଉଦେ ମେଘ ଭିତରେ ଥିଲେ ରବି । ୧୦ ।
କୁଳବଧୂ ଗୀତ ଶୁଭେ କେଦାରେ । ଯେହ୍ନେ ପଥିକ ହୃଦସ୍ଥଳ ଦାରେ । ୧୧ ।
ଏଋତୁକୁ ଚାହିଁ ନୃପନନ୍ଦନ । ପ୍ରାଣବନ୍ଧୁ ଭାବ କଲା ଧିଆନ । ୧୨ ।
ସେହି ଶରଦ ରାତି ସେ ଚନ୍ଦ୍ରମା । ସେହି ପ୍ରକାଶେ ହୋଇଛି ସୁଷମା । ୧୩ ।
ସେହି ମୁହିଁ ଜୀବନେ ଅଛି ପୁଣି । ଏ ତ ବିଚାର ଦୂର ମୋ ତରୁଣୀ । ୧୪ ।
ଏଥେଁ ଦେଇଛି ଭାବମାନ ଯେତେ । ଏକ୍ଷଣି ସେ କଲା ପ୍ରାପ୍ତ ପ୍ରତେ । ୧୫ ।
ମହା ଦରିଦ୍ର କରେ ଦେଇ ନିଧି । ଏ କି ଦୁର୍ଦ୍ଦଶା ହରିନେଲା ବିଧି । ୧୬ ।
ଘେନେ ଚୁମ୍ବନ ଦେଇ ଚୁମ୍ବ ମାଗୁଁ । ନାହିଁ ନ କଲା ଅତି ଅନୁରାଗୁଁ । ୧୭ ।
ଦେବ ବୋଲି ଅଧର କରୁ ଗୋଜ । ସେହି ସମୟେ ବାରିଦେଲା ଲାଜ । ୧୮ ।
ମୁଁ ଯେ ବୋଇଲି ବେଳେ ଦେଉ କିନା । ଲାଜ କାହାକୁ ମୁଁ ତୋ ଦାସ ସିନା ।
ଧୀରେ ଗୀର ପ୍ରକାଶ କଲା ତହିଁ । ଚୁମ୍ବ ଦେବାର ମୋତେ ଆସୁନାହିଁ । ୨୦ ।
ଆଜଯାଏ ସେ ଚତୁରୀ ବଚନ । ନେନେ ମନେ କରୁଅଛି ସଦନ । ୨୧ ।
ସେହି ଦିନ ପ୍ରଥମେ କଥା ଶୁଣା । ଦିନେ ସାରୀ ପଢ଼ାଉଁ ସୁଲକ୍ଷଣା । ୨୨ ।
ଜାଣି ଲୁଚି ମୁଁ ଶୁଣିଥିଲି ସ୍ୱଚ୍ଛେ । ଶାରୀ ପଢ଼ି ଯେ ଦେଲା କାନ୍ତ ପଛେ । ୨୩ ।
ସଲଜ୍ଜିତେ ଜଗତେନ୍ଦ୍ରିୟ ମୋହିନୀ । ଦେଇ ଗୃହ ଚିତ୍ରକରେ ତର୍ଜ୍ଜନୀ । ୨୪ ।

---

୭-୮ । ବୃଷ—ଷଣ୍ଢ, ଋଷଭସ୍ୱର—ହମ୍ବାରଡ଼ି, ଷଣ୍ଢ—ପୁରୁଷ, ମୟୂର-ମାନଙ୍କ ସ୍ତ୍ରୀ ପୁରୁଷ ସଙ୍ଗମ ହୁଏ ନାହିଁ,

୯ । ଅଗସ୍ତି—ଦକ୍ଷିଣରେ ଉଠୁଥିବା ଗୋଟିଏ ବଡ଼ ତାରା ନାମ ଅଗସ୍ତି-ମନ୍ଦର ବଢ଼ିବାରୁ ସୂର୍ଯ୍ୟ ଗତିରୋଧ ହେଲା—ଅଗସ୍ତି ପହଞ୍ଚନ୍ତେ ମନ୍ଦର ମୁଣ୍ଡ ତଳକୁ କରି ଗୋଡ଼ତଳେ ପଡ଼ିଲା—ଅଗସ୍ତି କହିଲେ ମୁଁ ଦକ୍ଷିଣରୁ ଫେରିବାଯାଏ ଏହିପରି ଥା ।

୧୦ । ବର୍ଷା ଦିନରେ ପଦ୍ମରେ—ସୂର୍ଯ୍ୟ ମେଘରେ ଲୁଚେ ଶରତରେ ପଦ୍ମ ପ୍ରକାଶ ହୁଏ—ସୂର୍ଯ୍ୟ ଭଲ ଦେଖାଯାଏ ।

୧୧ । କୁଳବଧୂ—କୁଳଭୁଅସୁଣୀ, ପଥିକ—ବାଟୋଇ, ହୃଦସ୍ଥଳଦରେ—ଛାତି କରତ ପକାଏ ।

୧୨ । ଧ୍ୟାନ—ଏକଲୟରେ ରହିବା ।

୨୪ । ସଲଜ୍ଜିତେ—ଲାଜ ଲାଜ ହୋଇ, ଜଗତେନ୍ଦ୍ରିୟ ମୋହିନୀ—ଋଷି-ମୋହିନୀ, ତର୍ଜ୍ଜନୀ—ବିଶି ଆଙ୍ଗୁଠି ।

ନାସାପୁଡ଼ାକୁ ଫୁଲାଇଲା କର । ଅଧୋମୁଖେ ରହିଲା କୃଶୋଦରୀ ।୨୫।
ନବସପତ ବୟସୀକି ମୁହିଁ । ମୋହ ଶପଥ ପକାଇଲି ତହିଁ ।୨୬।
ମଥା ଛୁଇଁ କଥା କହ ବୋଲନ୍ତେ । କିସ କହିବ କହିଦିଅ ମୋତେ ।୨୭।
ବୋଲିବାର ସଙ୍ଗତେ ଅଣିମାଦ । ସୁଖ ଦେବାକୁ ଥିଲା ଯେ ସମ୍ବାଦ ।୨୮।
ଲବେ ଛାଡ଼ି ନ ପାରଇ ତୁଲକୁ । ଲଙ୍ଘି ନ ପାରଇ ମୋର ବୋଲକୁ ।୨୯।
ଧନେ କର୍ଣ୍ଣେ କହିଲି ତୁନିକର । ଚନ୍ଦ୍ରକରେ ରତି ଦେବୁ ସୁନ୍ଦରି ।୩୦।
ସେହିକ୍ଷଣି ସେ କଲା ପ୍ରତିଭାଷ । 'ବୋଲ କେବେ ନ କରିବ ପ୍ରବାସ' ।୩୧।
ମୁଁ ବୋଇଲି କାମ ଅଛୁ ଜୀବନେ । ତୋତେ ମୁଁ ଛାଡ଼ି ପାରିବି କେସନେ ॥
ଯେବେ ମନରେ ଶଙ୍କା ତୋ ବାଧିବ । ଯେଉଁ ନିୟମ ବୋଲିବୁ କରିବ ।୩୩।
ବାଣୀ ପ୍ରମାଣ ନିୟମ ତାହିଁକି । ନେଇ ତାଳି ଯେ ବୋଇଲା ତହିଁକି ।୩୪।
କେତେ ସିହାଣୀ ଲେଉଡ଼ିଲା ବଞ୍ଚାଇ । ସ୍ୱନେ ଚନ୍ଦ୍ରକରେ ଶେଯ ପକାଇ ।୩୫।
ତହିଁ ମିଳୁଁ ମୁଁ ହରଷେ ଅନାଇଁ । ପାନ ପିକ ଦେଲା ଆଗେ ପକାଇ ।୩୬।
ବାସେ ପୋଛୁ ପୁଣି ଭାଲ ସିନ୍ଦୁର । ମୋର ହୃଦ କରାଇଲା କାତର ।୩୭।
ଏତେ ବୁଦ୍ଧି ସ୍ଫୁରିଲା ଯୋଗେ ତହିଁ । ମୁଁ ଯେ କହିଲି କହ ମୋତେ ଗୃହିଁ ।୩୮।
ଏ ବଚନ ବଳେ ହାସ ବାହାର । କରାଇଲା ଚନ୍ଦ୍ରମୁଖୁଁ ତାହାର ।୩୯।
ରକ୍ଷା ପାଇଲି ବୋଲି କୋଳ କଲି । ମୁଁ ଯେ ଶେଯପରକୁ ଘେନିଗଲି ।୪୦।
ନାହିଁ ନାହିଁ ଭଷୁଥିଲା ମୋ ଧନ । ଗତ କହି ମୁଁ କଲି ବିବସନ ।୪୧।
ଏକେ ଶ୍ରୀଅଙ୍ଗ କେତକୀରୁ ଗୋରି । ଶଶୀକରେ ଦିଶିଲା କେଡ଼େ ତୋରି ।୪୨।
ରସାଣିଲା ହେମକୁ ଲକ୍ଷ ଗୁଣେ । ନିନ୍ଦା କରୁ ଯେ ଥିଲା ଝାଲପଣେ ୪୩।
ଏହି ସମୟେ ଶଯ୍ୟାରୁ ନାଟସ୍ୱ । ଘେନି କର୍ପୂର ରଜ ନେନେ ମାର ।୪୪।
ତେଣୁ ବୁଜ ହୋଇଗଲା ମୋ ଆଖି । ଭଲ କରି ମୁଁ ନ ପାରିଲି ଦେଖି ।୪୫।
କର ଧରିବା ବେଳକୁ ଶୋଭାଙ୍ଗୀ । ଭଙ୍ଗୀବଶେ ଯେ ଦେଉଥିଲା ପିଙ୍ଗି ।୪୬।
ଯୋଗେ ପଡ଼ିଲା ସେ କାମ ସଦନେ । ଲବଣୀରୁ କୋମଳ କଲି ମନେ ।୪୭।
ନଖ ଚଳାଇ ଦେବାରୁ ତହିଁରେ । ସ୍ୱେମାଙ୍କୁର ହୋଇଲା ଯେ ଦେହରେ ।୪୮।

---

୨୫ । ଅଧୋମୁଖ—ତଳକୁ ମୁହଁ ପୋତିବା ।
୪୨ । ଶଶିକରେ—ଚନ୍ଦ୍ରକିରଣରେ ।
୪୩ । ରସାଣିଲା—ପାଲିସ କଲା ।
୪୪ । କର୍ପୂରରଜ—କର୍ପୂର ଗୁଣ୍ଡ ।
୪୮ । ସ୍ୱେମାଙ୍କୁର—ସ୍ୱେମଠାଙ୍କୁରବା ।

ଢଶିଲ ଯେ କଦମ୍ବ ପୁଷ୍ପ ପର । ଏ କିସ ଗୋ ବୋଲିବାର ଗୃହୁସି ।୪୯।
ଯିବ ସହସ୍ର ଜନ୍ମେ କି ପାସୋର । ଅମୃତରୁ ପ୍ରିୟ ବାଣୀ ମଧୁର ।୫୦।
ଆଜ ଭେଟିବ ନୋହୁଛି ପରତେ । ଭେଟ ହେବା ଉପାୟ ଅଛି ଏତେ ।୫୧।
ପୁଣି ବିରହ ଅନଳେ ଦହନ । ହୋନ୍ତା ଏ ମୋହର ତନୁ ବହନ ।୫୨।
ଭସ୍ମ ଉଡ଼ାଇ କୃପାରେ ପବନ । ନେଇ ଯିବାନ୍ତା କାନ୍ତା ସନ୍ନିଧାନ ।୫୩।
କିସ ବୋଲି ବାଳା କରନ୍ତା ଦୃଷ୍ଟି । ତହିଁପରେ ହୁଅନ୍ତା ସୁଧାବୃଷ୍ଟି ।୫୪।
ହୋଇ ମୂର୍ତ୍ତିମନ୍ତ ମୁଁ ଗୃହିଁ ମୁଖ । କରଯୋଡ଼ି କହନ୍ତି ସବୁ ଦୁଃଖ ।୫୫।
ଆହା ବୋଲି ସାହା ହୋଇ ସୁମୁଖୀ । ମୋତେ କରନ୍ତା ସେହିକ୍ଷଣି ସୁଖୀ ।୫୬।
ମୋର ଭରସା ହୋଇଛି ଏଥିକୁ । ଜୀବ ଦେଇଛି ଭସ୍ମ ମନ୍ମଥକୁ ।୫୭।
ତହୁଁ ସବୁରୂପେ ମୁଁ ଯେ ଅଧିକ । ନିତ୍ୟ ଅନୁସରିଲାର ସେବକ ।୫୮।
ମନ ମୋହର ଭ୍ରମୁଛି ନିରତେ । ମଶା ମଶାରିରେ ପଡ଼ି ଯେମନ୍ତେ ।୫୯।
ମୁହିଁ ଭ୍ରମର ସଙ୍ଗେ ହେଲି ମିତ । ସେହୁ ମାଳତୀ ବିରହେ ଯେମନ୍ତ ।୬୦।
ଏତେ ବୋଲୁଁ ବୋଲୁଁ ସ୍ତମ୍ଭ ଭଜିଲା । ହା ହା ପ୍ରିୟେ ବୋଲି ଶ୍ୱାସ ତେଜିଲା ॥
ଦହି ନ ପାରୁଛି କାମ-ଅନଳ । କରେ ତୋ ଭାବ ଭାବନା ଶୀତଳ ।୬୨।
ପୁଣି ପ୍ରିୟ ସ୍ୱରୂପ ଲେଖି ପଟେ । ସ୍ନେହବଶେ ଲଗାଇ ହୃଦତଟେ ।୬୩।
ପଟ ପ୍ରସଙ୍ଗ ମନରେ ହୋଇଲା । ତାହା ସେ ଧନ କି ହେଲା ବୋଇଲା ।୬୪।
ବନ୍ଧ ପିତୁଳା ଦେଖୁଁ ଦେଖୁଁ ବସି । ଗଣ୍ଡେ ଅଇଲା ଯେ ଲୋମ ଉଲ୍ଲସି ।୬୫।
ହସି କର୍ଣ୍ଣପାଶେ ଦେଲା ବଦନ । କି କହିବ କରୁଛି ମୋର ମନ ।୬୬।
ପ୍ରେମସିନ୍ଧୁ କାମ ଅନାଯୁତ୍ତରେ । ଜିହ୍ୱା ଗୃଳିଲା ଶ୍ରବଣ ଭିତରେ ।୬୭।
ବିଧି ନିଷେଧ-ଅନଳେ ଆହୁତ । କରି ରଚିଲା ଦିବସେ ସୁରତ ।୬୮।
କୁଚଅଗ୍ରେ ବୁଲାଇଲି ରସନା । ବେଳୁଁ ବେଳ ହେଲା ହତ ଚେତନା ।୬୯।
ମୁଦୁଥିଲା ଫେଡ଼ୁଥିଲା ଲୋଚନ । ପୁନଃ ପୁନଃ ଭାଷି ହୁଁ ହୁଁ ବଚନ ।୭୦।
କଟୀ ସଙ୍ଗେହେ ମଦନ ମନ୍ଦର । ଚମକାଇବା କେଢ଼େ ସୁଖକର ।୭୧।
ମଧ୍ୟତନୁକୁ କାନ୍ତ ଭୁଜେ ଛନ୍ଦ । ମଦ ହତ ଯାଏ ସେ କଲା ବନ୍ଦ ।୭୨।

---

୫୭ । ମହାଦେବଙ୍କ କ୍ରୋଧାନଳେ କନ୍ଦର୍ପ ଭସ୍ମ ହୋଇଥିଲା । ପୁଣି ପଛରେ ଜୀବନ ପାଇଲା ।
୬୧ । ସ୍ତମ୍ଭ—କାଠ ହେବା ।
୬୪ । ପଟପ୍ରସଙ୍ଗ—ଚିତ୍ରପଟ ଦେଖାଇବା ବେଳ କଥା ।
୬୭ । ପ୍ରେମସିନ୍ଧୁ—ପ୍ରେମସାଗର ( ଜିଭକୁ କାନ ଭିତରେ ପୂରାଇଲେ ବେଶ ଉନ୍ମାଦ ଜନ୍ମେ )
୭୨ । ମଧ୍ୟତନୁ—ଅଣ୍ଟା ଓ ବେକ, ଭୁଜ—ବାହୁ ।

ଡୋଳାପିତୁଳା ସେ ଦନ୍ତ ଘଉଡ଼ି । ନେନେ ରହିଲା ସେହି ଶୋଭା ଜଡ଼ି ।୭୩।
ଏହା ଚିନ୍ତି ଫାଟିଂଯାଉରେ ହୋଇଲା । ପୁନଃ ପୁନଃ ହୃଦେ କର ମାଇଲା ।୭୪।
ତେତେଣେ ନୃପକୁମାରୀ ସୁକୁମାରୀ । ବସି ଏକାନ୍ତେ କାନ୍ତକୁ ସୁମରି ।
ଅହା ଦିନ ବଞ୍ଚୁଥିବେ କେମନ୍ତେ । ଦଣ୍ଡେ ମୁର୍ଚ୍ଛି ନ ପାରନ୍ତି ସେ ମୋତେ ।୭୬।
ଦିନେ ମନ ଜାଣିବାକୁ ପତିର । ଲୁଚି ରହିଲି ଗୁପତ ମନ୍ଦର ।୭୭।
ବଳା ନୂପୁର କିଙ୍କିଣୀ ବାହାର । ଅଗୁଁ କରିଥିଲି କର ବାହୁର ।୭୮।
ଅସି ଭାଷି ପରମେଶ୍ୱରୀ ବୋଲି । ଖୋଜିଲେ ଯେ ଅନେକ ପୁର ବୁଲି ।୭୯।
ଲେଉଡ଼ି ନ ପାଇ ପ୍ରକାଶି ଏ ଭାଷା । କାହିଁଗଲୁ ପ୍ରିୟେ ଦେଇ କି ଦଶା ।୮୦।
ବୋଲିବାକୁ ନେତ୍ରୁଁ ନୀର ବାହାର । ଅଛି ଏ ପୁରେ କହିଦେଲା କୀର ।୮୧।
ତାହା କହିବାକୁ ତାଙ୍କ ଆରତ । ଶୁଣି ଧରି ମୁଁ ନ ପାରିଲି ଚିତ୍ତ ।୮୨।
ପୋଛୁ ପଣନ୍ତେ ନୟନ ଜଳକୁ । ଧାଇଁ ଯାଇ କୋଳ କଲିବେଳକୁ ।୮୩।
ବୋଇଲେ ରେ ଅଜ ଥରେ କପଟ । ରସେ ଏରୂପେ ହୋଇଲେ ଲମ୍ପଟ ।୮୪।
କାନ୍ତ ବୋଲି ଡାକିବା ଅଜୁଁ ଲେପ । ହୁଅନ୍ତାରେ ରସବନ୍ତୀ କଳାପ ।୮୫।
ମୁଁ ଯେ ବୋଇଲି ଯାଇକିନା ଓଣା । ଚୁମ୍ବ ଦେଇ ଚିତ୍ତ କଲି ଫୁରୁଣା ।୮୬।
ଏହି ଭାବ ଗୋଟିକ ସୁମରଣ । କରି ଲଭନ୍ତି ଏଷଣି ମରଣ ।୮୭।
ପ୍ରିୟ ନିନ୍ଦା ଯେ ନ ପାରନ୍ତି ସହି । ଜୀବ ରଖିଛି ସେ କଥାକୁ ମୁହିଁ ।୮୮।
ରଙ୍ଗ ଅଧରୁ ଅମୃତ ପିଇଛି । ତାହା ବ୍ୟର୍ଥ କରିବ ମୃତ୍ୟୁଇଚ୍ଛି ।୮୯।
ଏହା ବୋଲି ସେ ପ୍ରଳୟକୁ ପାଇ । ଶୀତ ଉପଚାରେ ସଖୀ ଚେତାଇ ।୯୦।
ଚେତ ସୁନ୍ଦରୀ ବୋଲୁଛି ଏମନ୍ତ । ମହା ସୁନ୍ଦରବର ମୋର କାନ୍ତ ।୯୧।
ମୋତେ ମାଇଲେ ମାରବୁ ମଦନ । ମୁଁ କି ବୋଲିବ ରୂ ତାଙ୍କ ସମାନ ।୯୨।
ଏହା ବୋଲୁଁ କଥାଏ ମନେ ପଡ଼ି । ତାହା ଭାବନା କରି ଗଲି ସଢ଼ି ।୯୩।
ଦିନେ ଏହି ଶରଦ ରଜନୀରେ । ବସିଥିଲୁଁ ଯେ ଚୂନ ଚୂନ୍ଦନୀରେ ।୯୪।
ଚୂହିଁ ଶଶୀକି ମୋର ବଦନକୁ । ସମାନ ଅଣିଲେ ତାଙ୍କ ମନକୁ ।୯୫।
ବଳା ଦେଖିବା ଛଳେ ମୋର ପାଦ । ନ ଛୁଇଁଲେ ବୋଲୁଁ ଏ କି ପ୍ରମାଦ ।୯୬।

---

୮୧ । ନେତ୍ରୁ—ଅଖିରୁ, ନୀର—ଲୁହ ।

୮୫ । କାନ୍ତଲେପ—ମୁଁ ମରି ଯାଆନ୍ତି, କଳାପ—ଶ୍ରେଷ୍ଠ ।

୮୬ । ଫୁରୁଣା—ଆନନ୍ଦ ।

୮୯ । ମନୁଷ୍ୟ ଅମୃତ ଖାଇଲେ ଅମର ହେବ, ମୁଁ ତ ସ୍ୱୀର ଅଧରରୁ ଅମୃତ ପିଇଛି, ମୋର ମରଣ ଅକାରଣ ହେବ ।

୯୦ । ପ୍ରଳୟ—ଅଚେତ ହେବା ।

ଚନ୍ଦ୍ରମୁଖୀ ଯେ ବୋ'ଲଇ ବାନ୍ଧବ । ଛାଡ଼ିଲ୍‌ ଏ ଦୋଷ ବୋଲ୍‌ ଛାଡ଼ିବ ।୯୭।
କହିବାର ଘେନାଘେନି ବଚନ । ତୁଲେ ସମ ନୋହେ କୋଟି ରତନ ।୯୮।
ଏହି ଶବ୍ଦନ କରୁଁ କରୁଁ ମନ । ନେତ୍ର ନୀରରେ ଜର ଜର ସ୍ତନ ।୯୯।
ଅନୁଭବ କି ଗୋଚର ଏ ରସ । ବୁଝାଇଲେ ମୂର୍ଖ ହେବ ସନ୍ତୋଷ ।୧୦୦।
ପଶୁ ସହିବାର କଷ୍ଟ ନୁହଇ । କଲେ ବିଚ୍ଛେଦ ହର ତାହିଁପାଇଁ ।୧୦୧।
ତାଙ୍କ ବେଳକୁ ଅନ୍ତର ହୋଇରୁ । ନ କରନ୍ତୁ କମଳାକ୍ଷ୍ମ ସ୍ନେହରୁ ।୧୦୨।
ସ୍ନେହ ଦେବ ସରସିଜ ଚରଣ । ଉପଇନ୍ଦ୍ର ବୀରବର ଶରଣ ।୧୦୩।
ଛାନ୍ଦ ନାମ ରସିକ ରତ୍ନମାଳା । ଶୁଭେ ଏବେ ଏଠାରୁ ଶେଷ ହେଲା ।୧୦୪।

---

## ଦ୍ୱିଚତ୍ୱାରିଂଶ ଛାନ୍ଦ

( ବିରହାବସ୍ଥାରେ ହେମନ୍ତ ଋତୁର ବର୍ଣ୍ଣନ )

ରାଗ—କୁମ୍ଭକାମୋଦୀ

ହେମନ୍ତ ଋତୁ ପ୍ରବେଶ ହୋଇ ହେଲା ନବୀନ ବିଧାତା । ବେଣୀ ତନ୍ତୁ ଏକ କଲା ସ୍ୱେଦନରେ ପୁରୁଷ ବନିତା । ଜଳ ଅଦର ଅନଳରେ ନିବେଶି ଅନିଳ ଅସ୍ନେହ । ଜଳରେ ପୂରିଲ ପୁଷ୍ପବତୀ କଲା ସେବତୀ

---

୯୭ । ଚନ୍ଦ୍ର ତୋ ମୁହଁଠାରୁ ସୁନ୍ଦର' ପଣରେ ହୀନ, ଏହି କାରଣରୁ ତୋତେ ଚନ୍ଦ୍ରମୁଖୀ ବୋଲି ଡାକିବା ଠିକ୍ ନୁହେଁ ।

ଶରତ ଋତୁରେ ବେଙ୍ଗର ମକମକ ଶବ୍ଦ, ଚନ୍ଦ୍ରକିରଣ ଉଜ୍ଜ୍ୱଳ ହୁଏ । ଆକାଶ ନିର୍ମଳ ଦେଖାଯାଏ ପୁରୁଷ ଏ ସମୟରେ ନାରୀ ବିଚ୍ଛେଦରେ ପ୍ରିୟତମାର ପ୍ରେମାଳାପ କଥା ମନେ ପକାଇ କାମ ତାପରେ ଅଧୀର ହେବା ବର୍ଣ୍ଣନା ହୋଇଛି ।

---

## ଦ୍ୱିଚତ୍ୱାରିଂଶ ଛାନ୍ଦ

୧ । ହେମନ୍ତଋତୁ-କାର୍ତ୍ତିକ ଓ ମାର୍ଗଶିର, ବେଣୀତନ୍ତୁ-ଦୁଇଶରୀର । ହେମନ୍ତ-ଋତୁକୁ ପୁରୁଷ କଲେ ତାର ସ୍ତ୍ରୀ ଦୁଇଶରୀର ଯାଇ ଏକତ୍ର କଲା ଅର୍ଥାତ୍ ଶୀତ ହେତୁ ସ୍ତ୍ରୀ ପୁରୁଷ ଦୁହେଁ ଯାକିଯୁକି ହୋଇ ଶୋଇଲେ । ପୁଣି ଶରତରେ ପାଣିକି ଅଦର କରୁଥିଲେ ଏବେ ପାଣିକି ଆଦର କଲେ ନାହିଁ ସେ ଅଦର ନିଆଁଠାରେ ହେଲା, ଅନିଳ ଯେ ପବନ, ତାକୁ ମଧ୍ୟ ସ୍ନେହ କଲେ ନାହିଁ, ସେ ବଣଗଛ ସମସ୍ତ ଫୁଲରେ ଭର୍ତ୍ତି ହେଲା ।

ସନ୍ତୋଷ । ୧ । ପ୍ରଦୀପ ଛଟେ ଜଳାଇଲ୍ଲ ମନ୍ଦରେ ହସନ୍ତ୍ରମାନଙ୍କ । ଲାଗି
ନିଦ୍ରାବେଳେ ନତ କରାଇଲ୍ଲ ଜ୍ୟେଷ୍ଠ ଜନଙ୍କୁ । ଚନ୍ଦ୍ର ଚନ୍ଦନକୁ ଅଧର
ଛୁଟାଇ ରଖିଲ୍ଲ ବସନେ । ସମସ୍ତ ତନ୍ତ୍ରକୁ ଅଚ୍ଛାଦିତ କଲ୍ଲ ଯୁବତୀ-
ବିଧାନେ । ୨ । ଦିନ କ୍ଷୀଣ କଲା ରଜନୀ ବୃଦ୍ଧିକି କରାଇ ହରଷେ । ସକଳ
ଅଙ୍ଗେ ବେପଥୁ ଜାତ କଲା ପବନସ୍ୱରୂପେ । ରବି କିରଣରେ ଅଧିକ
କରାଇ ଚନ୍ଦ୍ରମା ପ୍ରକାରେ । ଜାନୁ ଆଲିଙ୍ଗନ କରାଇଲା ଏକ ଦରିଦ୍ରଜନରେ
।୩। ସକଳଗାତ୍ର ମସୃଣ ହୋଇ ଦେଲା କରଟ ନିକରେ । ଶୁକ ଶିଶୁଙ୍କ ପାଳନକୁ
ଉଦ୍ୟମ କରାଇ ଲୋକରେ । କର ଯୋଗାଇଣ କୃଷକ କୁଳକୁ କରାଇ
ଅଛଣୀ । କପୋତ ରୁତେ କୁହାଇ ଏ କାଳକୁ ଗତଟି ଓଳୁଣୀ । ୪ ।
କେଦାର ସମ୍ପତ୍ତି ସଦନରେ ସ୍ଥିତ ସତ୍ୱରେ କରାଇ । ମୋଦରେ ପ୍ରତି-
ମନ୍ଦିରେ ମଶାରିରେ ସଖୀଙ୍କି ଶୁଆଇ । ଘନ ପ୍ରତିବନ୍ଧେ ଗିରିଙ୍କି ଯୋଡ଼ାଇ
କୁଜ୍‌ଝଟି ପ୍ରକାଶେ । ଏ ଋତୁ ଗୃହୀ କୁମାର ବରୁଣରଇ ବିରସ ମାନସେ ।୫।
କି କରିବି ଏ ହେମନ୍ତ ଋତୁ ହୀନ ପଦ୍ମିନୀ ନ ଶନ । ପ୍ରିୟା ମୋ ପଦ୍ମିନୀ
ପଦ୍ମପାଦ ପାଣି ସୁବାସ ତେସନ । ପଦ୍ମ ପତ୍ର ଆକ୍ଷି ପଦ୍ମମୁଖୀ ପଦ୍ମପତର
ଉଦରୀ । ତାହା ଅଭାବେ ସ୍ୱଭାବେ ମୋ କି ଗତି ଏଥକୁ ମୁଁ ଦରି । ୬ ।
ଦାରୁବ୍ରହ୍ମଙ୍କୁ ଲେ ବଡ଼ ଘୋଡ଼ ଲାଗି ଜାଡ଼କୁ ଡରଣ । ଅନଳକୋଣକୁ
ଅଶ୍ରେ କଲେ ଭାନୁ ତେଜସ୍ୱୀ ହୋଇଣ । ଜନ ମଧ୍ୟଗତ ଶରଣ ପଶିଲ୍ଲ
ଅନଳ ଅରତେ । ଗୋଷ୍ଠ କୃତ ଗିରି ଦରି ପାଶେ ନାହିଁ ବଞ୍ଚିବ

---

୨ । ହସନ୍ତ୍ର—ନିଆଁ ରହେଇବ, ଜ୍ୟେଷ୍ଠଜନ—ବୁଢ଼ାମାନେ, ନତ—ପାଦ୍ୱପୁଙ୍କ ହେବା, ଚନ୍ଦ୍ର—କର୍ପୂର, ପିଧାନ—ଘୋଡ଼ହେବା—ଯୁବତୀପିଧାନ ସ୍ତ୍ରୀ କି ଘୋଡ଼ହେବା ଅର୍ଥାତ, ସ୍ତ୍ରୀ କି ଉପରେ ନେଇ ଶୋଇବା ।

୩ । ବେପଥୁ—କମ୍ପ, ପବନ ସ୍ୱରୂପେ—ପବନ ଲାଗିଲାପରି, ଆଲିଙ୍ଗନ—କୁଣ୍ଢାଇବା ।

୪ । ଗାତ୍ର—ଦେହ, ମସୃଣ—ଚିକ୍‌କଣ, କରଟ—କୁଆ, ଶୁକଶିଶୁ—ଶୁଆଛୁଆ, କର—ଖଜଣା, କୃଷକ—ଚଷା ।

୫ । କେଦାର-କିଆରି, ସମ୍ପତ୍ତି-ଧାନଇତ୍ୟାଦି, ସଦନେ-ଘରେ, ମୋଦରେ—ଆନନ୍ଦରେ, କୁଜ୍‌ଝଟି—କୁହୁଡ଼ି ।

୬ । ହୀନ—ମନ୍ଦ, ପଦ୍ମିନୀ-ସର୍ବସୁଲକ୍ଷଣୀ ଓ ପଦ୍ମିନୀଜାତୀୟା ସ୍ତ୍ରୀ, ସୁବାସ—ବାସନା, ଦରି—ଭୟଙ୍କର ।

୭ । ଦାରୁବ୍ରହ୍ମ—ଜଗନ୍ନାଥ, ଘୋଡ଼ଲାଗି—ପୀତାମ୍ବର ଘୋଡ଼ହେବା, ଅନଳକୋଣ—ଅଗ୍ନିକୋଣ, ଦରି—ଗୁମ୍ଫା ।

କେମନ୍ତେ । ୭ । ବଧି ବୋଲନ୍ତି ବାଧାତାକୁ କାହିଁକି ଅବଧି କଲାତ । ଅମୃତ ଭୁଞ୍ଜାଇ ପିଚୁମର୍ଦ୍ଦଛଦ ତାମ୍ବୁଳ ଦେଲାତ । ଏହି ସମୟେ ଯେତେ ରୁପେ ଭାବକୁ ଦେଇଛୁ କିଶୋରୀ । ବ୍ରହ୍ମପଦବୀ ପାଇଲେ ତ ନ ଯିବ ମନରୁ ପାସୋରି । ୮ । କୁଙ୍କୁମ କୁସୁମହାସୀ ଅଙ୍ଗୁ କାନ୍ତ ଶୀତକୁ ନାଶଇ । ପିନ୍ଧିଛୁ ପଟନୀ ଏ ଭ୍ରମ କି ରଙ୍ଗେ ଅଙ୍ଗରେ ମିଶଇ । ନିଶାରେ ନାଶାରେ ଅନାଦର ହେଲେ ରତେ କି ପୀରତ । ଗୁଣ ଛ ଅପାର ପଣନ୍ତ ଘୋଡ଼ାଇ ଦଅଇ ସୁରତ । ୯ । ମଶାର ଉଦରେ ଅନ୍ଧାର ଅଳେକ ଦୀପତ ଥିବାରେ । ଅଜନ୍ମସୁଖୀ ସୁଖଦାୟୀ ହୁଅଇ ସୁରତ ଦେବାରେ । ତାହା ମୋହର ପ୍ରଶଂସା ହୋଇଥାଇ ଯାମିନୀ ବୃଦ୍ଧିକି । କିଛି ଅବକାଶ ହେବ ବୋଲି ବଳି ମାନଙ୍କ ବିଧିକି ।୧୦। ଯେତେ ମୋହିପାରି ତେତେ ବଧିରସ ହୁଅଇ ଜନିତ । ଏଣୁ ବଖିରୁଛି କ୍ଷୀର ଉପକାର ପରାଣ ଧନୀ ତ । ଇକ୍ଷୁରସ ଜାତ ଦ୍ରବ୍ୟ ପ୍ରାୟୁ ବେଲ୍ଟ ବେଲ ସେ ମଟୁର । ଏଡ଼ିକି ଅଭାଗ୍ୟବନ୍ତ ମୁଁ ସେ ବାଳା ହୋଇଛି ଅନ୍ତର । ୧୧ । ଧନେଟି ଉରୁଁ ଜର ଦୁର ହୋଇଲା ଅଚେତ ବଶରେ । ଝଟପଟ ନିଦ୍ରା ଭାଙ୍ଗିଗଲା ମୋର ଜାଡ଼ରେ ହାସରେ । ମନେ କଲି ପୁଷ୍ପବତୀ ହୋଇ ପାଶୁଁ ଗଲା କି ସଜନୀ । କି ଦଣ୍ଡ ପଡ଼ିଲା ଏ କାଳେ କି ରୂପେ ନେବି ଏ ରଜନୀ । ୧୨ । ଲୋଡ଼ୁ ଶେଯରେ କରେ ହସ୍ତ ପଡ଼ିଲା ହେଲି କି ଅବେଶ । ମୃତ୍ୟୁ ପାଇଥିଲା ପିଣ୍ଡରେ ପ୍ରାଣି କି ପରାଣ ପ୍ରବେଶ । ଅଣିମାଦି ସୁଖ ଅଣିକର ଅଣି ବୋଲକୁ ପାଇଲି । ସେହି ପ୍ରକାରେ ନିଧୁବନ ଉଦନେ ନୀବିକି ଫେଇଲି । ୧୩ । ମଲିଟି

---

୮ । ପିଚୁମର୍ଦ୍ଦଛଦ—ନିମ୍ବପତ୍ର (ଏଠାରେ) ଖଇର, ତାମ୍ବୁଳ—ପାନ, କିଶୋରୀ—ଯୁବତୀ, ପଦବୀ—ପଦ ।

୯ । ଅଙ୍ଗରେ—ଦେହରେ, ପଟନୀ—ପାଟଘୋଡ଼ହେଲା, ନାଶାର ଘୋଡ଼ହେଲା ଶେଯରେ, ନିଶା— ରାତ୍ରି ।

୧୦ । ଯାମିନୀବୃଦ୍ଧି—ରାତବଢ଼ିବା ।

୧୧ । କ୍ଷୀର—ଦୁଧ, ବଧିରସ—ଲହୁଣୀ, କନ୍ଦର୍ପ, ଦୁଧକୁ ମୋହିଲେ ଲହୁଣୀ ବାହାରେ ଲାବଣ୍ୟବତୀକି ଖୁସାମତ କଲେ ରସ ଲହୁଣୀ ବାହାରେ ।

୧୨ । ଜର—ଜ୍ଞାତ, ହାସରେ—ଭୟରେ, ପୁଷ୍ପବତୀ—ଋତୁମତୀ, ଅବେଶ —ଉଛାଟ ।

୧୩ । ଅଣିକର—ଅଣେଇକର । ନିଧୁବନ—ରତି । ନୀବି—ଖୋସଣି ।

୧୪ । ମଦନ ଅଣି—କନ୍ଦର୍ପ ଶର ।

ବୋଲି ଭିଡ଼ି ଧରି ମୋତେ ସେ ଅଳପ କମ୍ପିଲା । ଅଜି ଏ କି ରଙ୍ଗ
ବୋଲି ସେ ସୁରଙ୍ଗ ଅଧର ଚୁମ୍ବିଲା । ମଦନ ଅଣିକି ଭାଙ୍ଗିଲି ସେ ଦିନ
ସମସ୍ତ ରୂପରେ । ରସ ଜାଣିବାକୁ ଯୁବତୀ ନ ଥିବ ଜଗତେ ତା ପରେ ।୧୪।
ବାନ୍ଧବୀଙ୍କ ଦିନେ ବନ୍ଧବିଧାନରେ କୋଳରେ ବସାଇ । ମୋ ମୁଖ ପାନ
ତା ମୁଖେ ଦେଲି ଓଷ୍ଠ ଓଷ୍ଠରେ ମିଶାଇ । ମୋ ମୁଖେ ତୁ ଦିଅ
ଲେଉଟାଇ ବୋଲନ୍ତେ ନ କଲା ସମ୍ମତ । ବୋଇଲା ପଣତ ପ୍ରସାରି ମାଗୁଛୁ ନ
ବୋଲ ଏମନ୍ତ । ୧୫ । ମୁଁ ବୋଇଲି ବନ୍ଧୁ ଅଧର ବିଧୁରୁ ମଧୁର ନ
ପାଇ । ଏଥିକୁ ବିରୋଧ ଲବଣ୍ୟନିଧିରେ ହେଉଛୁ କିପାଇଁ । ବୋଇଲା
ଦେବତା ପ୍ରତିଷ୍ଠା ସରଘା ଉଚ୍ଛିଷ୍ଟ ରସରେ । ତେମନ୍ତ ହୋଇଅଛୁ କି ଅଜ
କଥା ବିସ୍ମୃତ ଦୋଷରେ । ୧୬ । ଭାଷାରେ ଜିଣି ନ ପାରି ମୁଁ ପ୍ରିୟାର
ଚୁମ୍ବିଲି ଲପନ । ଥାଉ ସେ ବିଧିରେ କେଲି ରଚିବାର ଦେଖିବା ସ୍ୱପନ ।
ନିଦ୍ରାହିଁ ହେଲେ ନୟନେ ନ ଆସଇ ସ୍ୱପନେ ସଙ୍ଗତ । ହେଉଥିଲେ
ମୋର ହେଉଥାନ୍ତା ଟିକି ଏ ରୂପେ ସୁଗତ ।୧୭। ତାମ୍ବୁଲ ଭାଙ୍ଗି ବଢ଼ାଇ ଦେଉଁ
ଦିନେ ସେ ଅନୁରାଗରୁ । ଯାଚିଲା ତୁଚ୍ଛ କର କାମ କାତରେ ବଶେ ମୋ
ଭାଗ୍ୟରୁ । ଟେରାଇ ଦେଲି କଷତଳେ ଚଳାଇ ମୁଁ ତୀକ୍ଷ୍ଣ କରଜ । ଲଜ୍ଜା
ପାଇଲା ପରି ହୋଇ କୁଅଁରି ବଦନ ସରୋଜ । ୧୮ । ପୂରେ ରହି ଯାଇ
କପାଟ ପାରୁଶେ ବଳରେ ଅଣାଇ । ମନକୁ ମୋର ଅଧୀନ କରି ନେଲା
ତକ୍ଷଣେ ମନାଇ । ଅର୍ଦ୍ଧ ଅଙ୍ଗ ଅଙ୍ଗୀକାର ହେଉଛୁ, କି ଭାଷୁଁ ମୁଁ ସତ୍ୟକି ।
ଶରୀରଯାକ କାହାର କହ ପ୍ରିୟା ଭାଷିଲା ତହିଁକି । ୧୯ । ବିଶେଷତ
କ୍ଷିଣା ବୀଣା ବଚନୀର ଏ ଗୀରେ ହୋଇଲି । ପଲ୍ୟଙ୍କ ଅଙ୍କକୁ କର ଧରି
ନେଇ ସୁରସ ବହିଲି । ନୀବି ବାନ୍ଧୁ ବାନ୍ଧୁ ଅଧରେ ଭିଡ଼ଇ ସ୍ୱଭାବେ
ରଦନ । ବୋଇଲି କାହାକୁ ଏତେ କୋପ ପଳାଇଲାଣି ମଦନ । ୨୦ ।

---

୧୬ । ଅଧର ବିଧୁରୁ—ଓଷ୍ଠ ଚନ୍ଦ୍ରରୁ, ସରଘା ଯେ ମହୁମାଛିର ଅଇଁଠା ଦେବତା ଖାଆନ୍ତି । ତୋ ଅଧର ପାନକୁ ଅଇଁଠା ବୋଲି କହୁ ସେଥିରେ ଦୋଷ ନାହିଁ ସ୍ତ୍ରୀ କହିଲା ମହୁରେ ଦୋଷ ନ ଥିବାର ବିଧି ଅଛି ଅନ୍ୟରେ ନାହିଁ ।

୧୭ । ଲପନ—ମୁହଁ ।

୧୮ । ଅନୁରାଗ—ସ୍ନେହ, ତୁଚ୍ଛ କର—ଖାଲି ହାତ ।

୧୯ । କପାଟ—କବାଟ, ଅର୍ଦ୍ଧଅଙ୍ଗ—କୋଡ଼ ।

୨୦ । ଅଧରେ—ଓଠରେ, ରଦନ-ଦାନ୍ତ ।

ତହିଁକି କହୁଲ ମୁଁ ନାକି ଭଜନ ଏମନ୍ତ ଭଙ୍ଗିକି । ଘେନାଘେନରେ ଭୁଲି ହୋଇ ନାହିଁତ କୋମଳ ଅଙ୍ଗୀକି । ବନ୍ଧ ଭେଦରେ ଲାଗିଥିଲି ଅଳତା ଲଲାଟେ ଗୁହିଁଲି । ପୋଛୁ ଦେଇ ମୋତେ ସଖୀ କି ବୋଲନ୍ତେ ବୋଲି ଯେ ବୋଇଲି । ୨୧ । ମୁଁ ବୋଇଲି କି ବୋଲନ୍ତେ କପାଁ ତୁ ମୋ ଶିରର ଭୂଷଣ । ତୁ ଅବା ମନକୁ କି ଘେନିଲୁ ମୋତେ ନୁହଇ ଦୂଷଣ । ଏ ବଚନେ କୃତକୃତ୍ୟ ହେଲାପରି ହୋଇଲି ଜୀବନ । ନୁଚ୍ଛୁ ହୋଇଯାଇ କି ନା ବୋଲି ଦେଲି ଅମୂଲ୍ୟ ଚୁମ୍ବନ । ୨୨ । କବରୀ କରି ଦଅ ମୋତେ ପ୍ରତ୍ୟକ୍ଷେ ନ ବୋଲେ ବାଳିକା । କୁନ୍ଦ କରବୀର କୁସୁମ ମିଶାଇ ବିରଚି ମାଳିକା । ସୁନ୍ଦରମାଳା ହେଲା ବୋଲି ଦେଖାଇ ଧଇର୍ଯ୍ୟ ଖଣ୍ଡନା । ରମଣୀ ହୃଦୟମଣି ମୁଁ ତା କେଶ କରନ୍ତେ ମଣ୍ଡନା । ୨୩ । ଅନୁଗ୍ରହ ପାଇଲାର ଭୃତ୍ୟ ପରି ଓଳଗି କରଇ । କେମନ୍ତ ଘେନାଘେନି ଘେନା ସୁମନା ମନକୁ ହରଇ । ଗୁହୁଁ ସ୍ନେହ ବଶେ ବସାଉଁ କୋଳେ ମୁଁ ଲାବଣ୍ୟବତୀକି । ଥରେ କେତେ ଖସି ବସି ଅବଶରେ ବଢ଼ାଇ ପ୍ରୀତିକି । ୨୪ । ଅଉ ପାଇବି କି ଯୁବତୀ ବରକୁ ନୋହୁଛୁ ପରତେ । ଯୋଗୀ ହୋଇ ଯାଇ ଦେଲା ଭାବ ମାନ ଜପିବି ନିରତେ । ବାଞ୍ଛା ତରୁତଳେ ବସି କାଶୀବାସୀ ତୋଷି ଏ କାମନା । ଗଙ୍ଗାସାଗରେ ଝାସି ହେଲେ ଲଭିବ ଗଜେନ୍ଦ୍ର ଗମନା । ୨୫ । ଯେଉଁ ରୂପେ ହସେ ମୁଖୁଁ ସୁଧା ଖସେ ଦଶେ ସେ ଦିଶୁଛି । ଯେଉଁରୂପେ ଅସେ ପୁରତେ ମୋ ବସେ ମନେ ସେ ପଶୁଛି । ଯେଉଁରୂପେ ଭାଷେ ବଚନ କର୍ଣ୍ଣେ କି ଏଷଣି କହୁଛି । ତେବେ ଅତ୍ୟନ୍ତ ଶୀତଳ କରୁଥିଲା ଏବେ ତ ଦହୁଛି । ୨୬ । ଏଣୀ ନୟନାକୁ ପାଇଲେ ଏଣିକି ଏମନ୍ତ କରିବି । ଦଣ୍ଡେହେ ନ ଛାଡ଼ି ଚକ୍ଷୁ ନ ପିଛୁଡ଼ି କୋଳରେ ଧରିବି । ମୁହିଁ ସଖୀ ହୋଇ ଗୀତକି ବଢ଼ାଇ ଦେବି ଯେ ତାହାର । ନିୟମ ପକାଇ ପଞ୍ଚଗ୍ରାସୀ ପରି କରିବି ଅହାର । ୨୭ । ଦିବସ କାଳରେ ରତି ସିନା

---

୨୨ । ଶିରର ଭୂଷଣ—ମଉଡ଼ମଣି, କୃତକୃତ୍ୟ—ଅତିଆନନ୍ଦ ।

୨୩ । କରବୀର-କନିଅର, ବିରଚି-ଗୁନ୍ଥି, ହୃଦୟମଣି-ମନକଥା ଜାଣି ।

୨୪ । ଘେନାଘେନି—ସ୍ନେହ ।

୨୫ । ବାଞ୍ଛାତରୁ—କଳ୍ପବୃକ୍ଷ, କାଶୀବାସୀ—କାଶୀବିଶ୍ୱନାଥ ।

୨୬ । ଦଶେ—ଦଶମାନଙ୍କରେ, ପୁରତେ—ଆଗରେ ।

୨୭ । ଏଣୀନୟନା—ମୃଗାକ୍ଷୀ, ଚକ୍ଷୁ—ଆଖି, ପିଛୁଡ଼ିବା—ପଛା ପକାଇବା ।

ନାହିଁ କରିଛୁ ଦାଇବ । ଭୂକେ ଭୂଜ ଛନ୍ଦା ଛନ୍ଦ ହୋଇ ହୃଦ ଉପରେ ଶୋଇବ । ବର୍ତ୍ତିଥିବାଯାକ •ବ୍ରତୀ ହୋଇଥିବ ତାହାକୁ ପାଇଲେ । ରତି କେବଳ ନିଷେଧ ନ କରିବ ଏମନ୍ତ ହୋଇଲେ ।୨୮। ରାତ୍ରି ତ ରାତ୍ରି ଦିବସ ଏହିମତି କରିବି ମୋ ମନ । ଯେବେ ଯାଉଥିବ ଗ୍ରାମ ପ୍ରାନ୍ତେ ପଛେ କରିବି ଗମନ । ଗଣ୍ଡି ଦେଇଥିବ ବସନେ ବସନ ରଜନୀ ଦିବସେ । ଏମନ୍ତ ଯତ୍ନ କରିଥିଲେ ଅଜ କି ଅନ୍ତର ହେବ ସେ । ୨୯ । ବିରୃତ୍ତି ବିରୃତ୍ତି ଭୀରୁଙ୍କର ମାନ ଲଭିଲି ମୋହକୁ । ଶୀତ ଉପଚାରେ ସଖୀଏ ସାନ୍ତ୍ୱନା କଲେ ତା ଦେହକୁ । ଜ୍ଞାନବଶେ ଭାଷେ ଏରୂପେ ଦିନେତ ବିଅର୍ଥ ମରଣ । ଲଭିବି ପ୍ରିୟା ଅଦ୍ଧା କଲେ ସିନା ମୁଁ ଲଭନ୍ତ କାରଣ ।୩୦। ଦୁଃଖାଇ ଥାଇ ଜୀବ ତୋଟତ ଜେତେ ମୁଁ ନ କଲି ବୋଲିରେ । ଥାଉ ଥାଉ ଜୀବେଶ୍ୱରୀ ସୁକୁମାରୀ ସୁନ୍ଦରୀ ତୁଲିରେ । କହୁ କହୁ ପ୍ରିୟା ବୋଲି ତାକୁ ଗୃହୁଁ ଗୃହୁଁ ତା ମୂର୍ତ୍ତିକୁ । ଯାଇଥିଲେ ପାଇଥାନ୍ତୁ ତ୍ରି ପରମ ନିର୍ବାଣ ସୁଖକୁ ।୩୧। ତେଣେ ନୃପସୁତା ବିରହ ଅରତେ କହଇ ସଖୀଙ୍କି । ସତେ ପରାଣଈଶ୍ବରଙ୍କୁ ବାରେ ମୁଁ ପାଇବି ଦେଖିକି । ଅଭିନ୍ନ ବୋଲି ତାକୁ ଥାନ୍ତି ମୋତେ ସେ କି ଘେନି ମନରେ । ଅଙ୍କାର ହରଣ କଲାତ ବିଧାତା ଅଳପଦିନରେ ୩୨ । ଏକା ହୋଇ ଏ କଠୋର ଯାମିନୀରେ କେମନ୍ତେ ଶୋଇବେ । ନୃପତି ନନ୍ଦନ କଷଣ-ସହି ସେ ନୁହନ୍ତି ଦାଇବେ । ନ ପୁଣ ମୋ ଅଶ ଗ୍ରନ୍ଥ ଅନେକ ଅଶ କରି ସେ କୁମାର । ଦିନ ବଞ୍ଚୁଥିବେ, କେମନ୍ତେ ଅସିବେ ପୁରୁଷ ଭ୍ରମର ।୩୩। ଏମନ୍ତ ହୋଇଥିଲେ ତ ଭଲ କଥା ଥିବାର ସେ ଜାଣିବେ । ଦିନ ଦିନକେ ପୀରତି ଭାବି ମୋର ଲୋତକ ତେଜିବେ । ମୋହ ପ୍ରସଙ୍ଗ ଦିନେ ଦିନେ ବଲ୍ଲଭୀ ଆଗରେ କହିବେ । ଅଜ ନିକି ଜୀବେ ଥିବ ବନ୍ଧୁ ବୋଲି ଅକୁଳ ହୋଇବେ । ୩୪ । ସଖୀ ଚେତାଇ କହିଲେ ରେ ସଜନୀ

---

୩୦ । ଭୀରୁ—ସ୍ତ୍ରୀ, ସଖାଏ—ସଙ୍ଗୀମାନେ ।

୩୧ । ପରମନିର୍ବାଣ—ଶ୍ରେଷ୍ଠମୁକ୍ତି, ବିଷ୍ଣୁ ଅଙ୍ଗରେ ଲୀନ ହେବାକୁ ନିର୍ବାଣ କହନ୍ତି ।

୩୨ । ଅରତ—ଦୁଃଖ, ଅଭିନ୍ନରୁ ଅ ଟି କାଢ଼ିନେଲେ ଭିନ୍ନ ହୁଏ ।

୩୩ । ଯାମିନୀ—ରାତି, କଷଣ—କଷ୍ଟ ।

୩୪ । ବଲ୍ଲଭୀ—ସ୍ତ୍ରୀ, ପ୍ରସଙ୍ଗ—କଥା ।

ଛୁଟିଲ ଗୁଣିକ । ଜଗ ସ୍ୱଦମାଳ ଯେତେକ ଯେ ପୁଣି ବହଇ ମାଣିକ୍ୟ ।
ଧନକ ପଥ ମାସକେ ନ ସରବ ଦୁର୍ବଳ ବଶରେ । ତୋହ ଆଶାରେ ଅଛି
ସେ ହୋଇବେନି ନିକଟ ଦେଶରେ । ୩୫ । ସ୍ୱପନେ ଦେଖିଲି ଜନକ-
ନନ୍ଦନୀ ସ୍ୱରୂପେ ଭାମିନୀ । କହିଲେ ନିକଟେ କାନ୍ତକୁ ଲଭିବ କରୀନ୍ଦ୍ର
ଗମନୀ । କହେ ଉପଇନ୍ଦ୍ର ବୀରବର ଅଶା ଏଣୁ ତା ଉଦିତ । ରସିକଭ୍ରମର
ତୋଷଦ ମାଳତୀ ଏ ଛାନ୍ଦ ବଦିତ । ୩୬ ।

---

## ଚତୁଃଚତ୍ୱାରିଂଶ ଛାନ୍ଦ

( ବିରହବଧୂର ଦମ୍ପତିର ଶିଶିର ଏବଂ ବସନ୍ତ ଋତୁର ବର୍ଣ୍ଣନ )

ରାଗ—ବଙ୍ଗଳ ଦେଶାକ୍ଷ

ଶିଶିରକାଳ କାଳ ପ୍ରାପ୍ତ ପ୍ରବେଶ ନାଶ କଲା ପଦ୍ମିନୀକ ।
ଧନବନ୍ଧୁ ପରି ପଛ ଥାଇଁ ବାଳେ ନଗର ପାଶେ ତହିଁକ ।
ଶୀତାଧ୍ୱନି ଡେଙ୍ଗୁରକ । ବିଯୋଗୀ ଶୁଣି ଉତ୍ସୁକ । ୧ ।
ତୁଷାର ଜଳରେ ପ୍ରଳୟ ରଚିଲା ସ୍ୱଦେଶୀ ନ ପାଇ ସ୍ଥଳ ।
ମକର ମୁଖରୁ ଅଙ୍ଗ ବଞ୍ଚିବା ଭାବି ସେ ହେଲେ ବ୍ୟାକୁଳ ।
ରଜନୀ ପାଶରେ ଜନ । ବନ୍ଧନ ପରି ଶୟନ । ୨ ।
ଏମନ୍ତ ଋତୁକୁ ଗୃହିଁ ନୃପସୁତ ଲୋଚନେ ଲୋତକ ଭରି ।
ଯେଉଁ ମାସକୁ ବାଘ କରି ମନରେ କହୁଅଛି ପୁରଃସରି ।
ମୋତେ ତ କଲେ ଅହାର । ପୂରବ ଭୃମ୍ଭ ଉଦର । ୩ ।

---

୩୬ । ଜନକ ନନ୍ଦନୀ—ସୀତା, ଭାମିନୀ—ସ୍ତ୍ରୀ ।

ହେମନ୍ତ ଋତୁ ଓ ଶୀତ ସମୟ—ଏ ସମୟରେ ସ୍ତ୍ରୀ ପୁରୁଷ ଅସ୍ଥିର
ହେଲେ ଯାହା ଯାହା କାମ ରସର ଦୁଃଖ ଅନୁଭବ ହୁଏ ତାହା ଅନୁଭବ
ମାନେ ଅଜଣା ନାହିଁ—ତେଣୁ ଲାବଣ୍ୟବତୀ ଓ ଚନ୍ଦ୍ରଭାନୁ ପରସ୍ପରକୁ ଚନ୍ତା
କରି ବ୍ୟସ୍ତବ୍ୟସ୍ତ ହେବା ବର୍ଣ୍ଣନା କରାଯାଇଛି ।

---

### ଚତୁଃଚତ୍ୱାରିଂଶ ଛାନ୍ଦ

୧ । ଶିଶିରକାଳ—ପୁଷ, ମାଘ, ଧନବନ୍ଧୁ—ଚୂର୍ଣ୍ଣ, ଡେଙ୍ଗୁରକ-ନାଗରା,
ବିଯୋଗୀ—ବିଚ୍ଛେଦ, ଉତ୍ସୁକ—ଉତ୍କଣ୍ଠିତ, ଦୁଃଖିତ ।

୨ । ତୁଷାର—କାକର, ମକର—ମଗର, ଶୀତରେ ସମସ୍ତେ ଯାକ ଯୁକ୍ତ
ହୋଇ ଶୋଇଲେ ।

୩ । ପୁରଃସରି—ଅଗକରି ।

ତାଳା ଦୁଃଖେ ଦୁଃଖୀ ବାଳା ସୁଖେ ସୁଖୀ ସମସ୍ତ ପ୍ରକାର ମୁହିଁ ।
ମୋ ଅପୂଷ ପାଇ ଜାଣିଥାଅ ପଛେ ଶରଦ ଅମ୍ବୁଜ ମୁହିଁ ।
ଏରୂପେ ଯେଉଁ ବାଳାକୁ । ଦେଖିବ ଚେଜିବ ତାକୁ । ୪ ।
ଶ୍ରାବଣଗିରି ଶୋଭାକୁ ବହିଥିବ ଯାହାର ଉତ୍ତୁଙ୍ଗସ୍ତନ ।
ଲୋତକ ଜଳରେ ଜରଜର ହୋଇ ନ ଥିବ ପକ୍ଷ୍ମାଳି ପୁନଃ ।
ରମା କାମ କୋପଭରୁ । ବିଗତ ପରାସୁ ତରୁ । ୫ ।
ଅର୍ଦ୍ଧ ଶଶି ଅର୍ଦ୍ଧ ନବଜଳଧର ଖଣ୍ଡେ ଗଲା ପ୍ରାୟ ପଶି ।
ବଢ଼ି ଯାହାର ଅଳକ ବଳଥିବ ଫୁଲ ଅଳକକୁ ଗ୍ରାସି ।
ତାଟଙ୍କ କଟକ ଦୁଇ । ଯେ ମାନଙ୍କ ଥିବ ବନ୍ଧୁ । ୬ ।
ସଖୀ ଅବା ବଳେ ଲେଖି ଦେଇଥିବେ ନୟନେ କଜ୍ଜ୍ୱଳ ଗାର ।
ମଧୂକ ପୁଷ୍ପେ ଭୃଙ୍ଗପରି ସେ ଜଳ ଗଣ୍ଡେ ବହିଥିବ ଯାର ।
ଦେଖି ଯେ କମଳନାଡ଼ । ସୁମରୁଥିବ ଗରୁଡ଼ । ୭ ।
କଷଟି ପାଷାଣେ ବାରବାଣିସୁନା ଗାରିପରି ହୋଇ ଯେହ୍ନ ।
ପଙ୍କଜ ପଲ୍ଲବ ଶେଯେ ଶୋଇଥିବ ମୋହର ବଲ୍ଲଭୀ ସେହ୍ନ ।
ଛାଡ଼ିବୁ ତାକୁ ମାତର । ଏତକ ପ୍ରାର୍ଥନା ମୋର । ୮ ।
ତୁ ଅବା ବୋଲିବୁ ତୋ ସୃଷ୍ଟି ବୁଝିବ ଗଳ୍ପଠାରୁ ତୋର ଜୀବ ।
ତା ଶୁଭ ଏଥିକି ବାଞ୍ଛା କରଇଁ ମୁଁ ମୋତେ ସେ ଗତି କରିବ ।
ଜଳଦାନ ଲୋତକରେ । ରୋଦନସ୍ୱନ ବାକ୍ୟରେ । ୯ ।

---

୪ । ଅମ୍ବୁଜ—ଚନ୍ଦ୍ର, ପଦ୍ମବାଳା—ସୁନ୍ଦରୀ ।

୫ । ଶ୍ରବଣଗିରି—ଶ୍ରାବଣ ମାସର ପର୍ବତ, ଉତ୍ତୁଙ୍ଗ ସ୍ତନ—ଉନ୍ନତ କୁଚ, ପକ୍ଷ୍ମାଳି—ପକ୍ଷସବୁ, ଶିତାସବୁ; ବିଗତ—ଶୂନ୍ୟ, ତରୁ—ବୃକ୍ଷ ।

୬ । ଅର୍ଦ୍ଧଶଶୀ—ଅଧାଚନ୍ଦ୍ର,ନବଜଳଧର—ମେଘ,ଖଣ୍ଡେ-ଭିତରେ,ଅଳକ—ଚୂନାବାଳ, ମୁଣ୍ଡର ସୁନା ଅଳକା,ତାଟଙ୍କ—କାନ ଗହଣା, କଟକ—ହାତଗହଣା, ଅଧାଚନ୍ଦ୍ର ମେଘ ଭିତରେ ପଶିଗଲେ ଯେପରି ଦିଶେ ତାର ଚୂନାବାଳ ମୁଣ୍ଡର ସୁନା ଅଳକାକୁ ଘୋଡ଼ାଇବାରୁ ସେହିପରି ଦିଶୁଛି । କାନରେ ସୁନାର ତାଟଙ୍କ ହାତରେ ଖଡ଼ୁ ଛଡ଼ା ଅନ୍ୟ କିଛି ପିନ୍ଧି ନ ଥିବ ।

୭ । ମଧୂକ—ସୂର୍ଯ୍ୟମୁଖିଫୁଲ, ଭୃଙ୍ଗ—ଭଅଁର, ବିରହ ଉପଶମକୁପଦ୍ମନାଡ଼ ଦେବାରେ ତାକୁ ସାପ ମନେକରି ଗରୁଡ଼କୁ ଡାକିବା ।

୮ । ପଙ୍କଜପଲ୍ଲବ—ପଦ୍ମପତ୍ର, କଷଟି ପାଷାଣ—କଷଟି ପଥର, ବାରବାଣି—ଉତ୍ତମ ।

ଅତୁର କଥାଏ ଯଥା ଏକ ନାମ ଅଶ୍ୱିନୀକୁମାର ଦୁଇ ।
ସେହି ପ୍ରକାରେ ତା ମୋର ଏକପ୍ରାଣ କେବଳ ଯୁଗଳ ଦେହୀ ।
ଯେବେ ମୋର ପ୍ରାଣ ଯିବ । ବାଳା ଦେହେ ସମ୍ଭାଳିବ । ୧୦ ।

ଜବାଧରୀ ଦେହ ଇତର ନୁହଇ ଯୁବା ବଇକୁଣ୍ଠ ପୁର ।
ପରମ ପଦବୀ ଏମନ୍ତ ହୋଇଲେ ଭୋଗ ନୋହିବ କି ମୋର ।
ଏସନ ଭାବନା କର । ଶିଶିର-ଋତୁକୁ ହର । ୧୧ ।

ଏ ଅନ୍ତେ ମନୋହର ହୋଇ ପ୍ରବେଶ ହୋଇଲା ଋତୁ ରାଜନ ।
ପଞ୍ଚମ ସ୍ୱରରେ ପରଭୃତ କଲେ ମଙ୍ଗଳ ଗୀତ ଗାୟନ ।
ଝଙ୍କାର ଝଙ୍କାରସ୍ୱର । ବାଜିଲା ବଜପୁତୁର । ୧୨ ।

ନବପଲ୍ଲବ ଚଳିତ ଛଳେ ଗୃଲେ ଖଦା ତରୁ ପରକର ।
କୁବେଲ ମୂଳ ଗୃଏର ପରି ସେହି ନୀରତେ କର ଅଦର ।
କଢ଼େ କୁସୁମ ପରାଗ । ପ୍ରକାଶ ଚର୍ଚ୍ଚରୀ ରଙ୍ଗ । ୧୩ ।

ଭୃଙ୍ଗଧ୍ୱନି ଛଳେ ନବ କମଳିନୀମାନେ ଦେଲେ ହୁଳ ହୁଳି ।
ନାଗକେଶ୍ୱର ପାଦପ ପୃଷ୍ଠଛଳେ ଧଇଲା କି ଛନ୍ଦ ଟୋଳି ।
କାନନ ନଗରେ ଝଲି । ସୁନାରୀ ବଜ୍ର ପାଟଳୀ । ୧୪ ।

ମଲ୍ଲିକାଅଲକା ଚମ୍ପା ନାଅଲକା ନବୀନ କୁସୁମବତୀ ।
ତଥାପି ମହୃଷୀ ସକଳ ଅଙ୍କରେ ଶୟନେ ବଳାଇ ମତି ।
ମଳୟ ପବନ ଗୃର । ସଧୀରେ ଅଗେ ପ୍ରଗୃର ।୧୫।

---

୯ । ତୁ କହିବୁ ତୁ ମଲେ ଗଜ,ପାଙ୍କ ମୁଁ ତା ଶୁଭ ଇଚ୍ଛା କରେ,ପିଣ୍ଡଦାନ ଜଳ ତର୍ପଣ ପରି ମୋ ମଲାପରେ ତାର ଲେଉକ ବନ୍ଧି ମୋତେ ମୁକ୍ତ କରିବ ।

୧୦ । ଅଶ୍ୱିନୀ କୁମାର, ଏ ଦୁଇନାମ ହେଲେ ମଧ୍ୟ ବୈଦ୍ୟ ପଣରେ ଏକ, ସେହିପରି ତା ପିଣ୍ଡ ମୋ ପିଣ୍ଡ ପୃଥକ ହେଲେ ମଧ୍ୟ ଜୀବ ଏକ, ମୋ ଜୀବଗଲେ ତା ପିଣ୍ଡରେ ରହିବ ।

୧୧ । ତାର ଦେହତ ଅନ୍ୟ କିଛି ନୁହେ ସାକ୍ଷାତ ବୈକୁଣ୍ଠପୁର ତେଣୁ ସେଠାକୁ ମୁଁ ଗଲେ ମୋତେ ଶ୍ରେଷ୍ଠ ମୁକ୍ତ ମିଳିବ । ଏହିପରି ଭାବିଲା ।

୧୨ । ଋତୁରାଜନ—ବସନ୍ତକାଳ, ପରଭୃତ—କୋଇଲି, ତୁର—ତୂରୀ ।

୧୩-୧୪-୧୫ । ପରକର—ଗୃକର, ଚର୍ଚ୍ଚରୀ—ଗୃନେରଖେଳ, (ଫଗୁଖେଳ) ନବକମଳିନୀ—ନୂଆ ଫୁଟିଥିବା ପଦ୍ମଫୁଲ ଓ ଯୁବତୀ, ହୁଳହୁଳି ପରି ଭ୍ରମର ଗୁଣୁ ଗୁଣୁ ଶବ୍ଦ, ପାଦପ—ବୃକ୍ଷ,ଛନ୍ଦ—ଛଟା, ନଗର—ରାଜପୁରୀ, ସୁନାରୀ—ସୁନାରୀଫୁଲ ଓ ସୁନ୍ଦରୀ ସ୍ତ୍ରୀ, ବଜ୍ର—ହୀରଫୁଲ, ମଲ୍ଲିକା ମଲ୍ଲୀଅଳକା ଫୁଲ ସବୁ, ନାଅଲକା—ନାଅଳଫୁଲ, ଅଙ୍କ —କୋଳ, ସଲୀଳେ—କ୍ରୀଡ଼ା କୌତୁକରେ,ଅଳଳେ—ଜଳରେ,

କାମସେନା କି କେତକୀ ଛଳ ଯମଦାଢ଼କୁ କରି ବିକୋଷ ।
ବିଦେଶୀ ପରେ ତର୍ଜିନା ଏକି ଛନ୍ଦେ ଏଥିରେ କରିବି ନାଶ ।
ଭ୍ରମରଅନା ହୋଇ ବାଣୀ । ପ୍ରକଟ ହୋଇଲା ପୂର୍ତ୍ତି । ୧୬ ।
କାମମିତ୍ର ମନ୍ତ୍ରୀ ଏମନ୍ତ ଶିଖାଇ ବିଦେଶୀ ଗୋଟି ନ ରଖ ।
ଜ୍ଞାନ ଧନମାନ ଲୁଟି କରିବାକୁ ଦେଖିବା ସନ୍ତକ ଲେଖ ।
ସମ୍ବାଦ ଏଣୁ କେତକୀ । ବିଯୋଗୀ ବଡ଼ପାତକୀ । ୧୭ ।
ଏ ରସମୟ ସମୟକୁ ଅନାଇଁ ବିକଳେ ଲାବଣ୍ୟବତୀ ।
ବିଗୃରେ ଏ ଯୁବାବୟସେ ଏ ମାସେ ମୋର କୋଟିଲ ନାହିଁ ପତି ।
କେମନ୍ତେ ବଞ୍ଚିବି ଦିନ । କି କଲେ ପଦ୍ମଲୋଚନ । ୧୮ ।
ଚନ୍ଦନ ପିଚକା ସଜାଡ଼ି ମାରନ୍ତି ମୋ ଉର କରି ସେ ଲକ୍ଷ ।
ତାହା ବଞ୍ଚାଇ ମୁଁ ନଗୃଲିଲେ ଭୂରୁ କନମାନ୍ତି କେଡ଼େ ସୁଖ ।
ବୋଲନ୍ତି ଗୃପରେ ବାଣ । ସନ୍ଧି କରିବୁ କି ରଣ । ୧୯ ।
ରତିଶ୍ରମରେ ଘର୍ମହେଲେ ବାହାର ପୂଛନ୍ତି ବାଧିଲା କି ରେ ।
ଶେଷରେ ବାସରେ ପୋଛିଦେଇ ଚୁମ୍ବ ଦିଅନ୍ତି କେଡ଼େ ସ୍ନେହରେ ।
ଲେପନ୍ତି ଚନ୍ଦନ ତନୁ । ସେ ଭାବ କି ପିବ ମନୁ । ୨୦ ।

---

ଏ ଋତୁରେ ମଲ୍ଲୀ, ଚମ୍ପା, କାଇଁଆଁଫୁଲ ନୂଆ ହୋଇ ଫୁଟିଲେ, ଖରା ତେଜ ହେଲା—ମହିଷୀମାନେ ପାଣିରେ ବୁଡ଼ିଲେ । ଅନ୍ୟାର୍ଥ ସହଜରେ ବୁଝା ଯାଉଛି ।

୧୬ । କାମସେନା—କନ୍ଦର୍ପସେନା, କେତକୀଛଳ-ଯମଦାଢ଼, କେତକୀଫୁଲ କଢ଼ହେଲା ଯମଦାଢ଼ ଖଣ୍ଡା ବା ଏକମୁନା, ବିକୋଷ-କୋଷରୁ ବାହାର କରି, ବିଦେଶୀ—ବିଦେଶରେ ଥିବା ବା ଅନ୍ୟଦେଶ ଲୋକ, ଭ୍ରମରଅନା—ଭ୍ରମରଅନା ଫୁଲ—ଭ୍ରମରକୁ ଅନାଇ ଦେଖ, ପ୍ରକଟ-ପ୍ରକାଶ

୧୭ । କାମମିତ୍ର ମନ୍ତ୍ରୀ—ବସନ୍ତ ମନ୍ତ୍ରୀ, ଏଣେ ବସନ୍ତରାଜା—ତା ମନ୍ତ୍ରୀକୁ କହୁଛି କାମରେ ଯେଉଁମାନେ ଜ୍ଞାନ ହରାଇଛନ୍ତି ସେମାନଙ୍କ ଚିହ୍ନ ଲେଖ, କନ୍ଦର୍ପରେ ଯେଉଁମାନେ ଅସ୍ପୃହା ସେମାନଙ୍କ ତାଲିକା କର ।

୧୮ । ପଦ୍ମଲୋଚନ—ବିଷ୍ଣୁ ।

୧୯ । ଚନ୍ଦନପିଚକା—ଚନ୍ଦନରେ ପିଚକାରି ମାରିବା, ଉର—ବକ୍ଷ, ଗୃପ—ଧନୁ ।

୨୦ । ଘର୍ମ—ଝାଳ, ବାସରେ—ଲୁଗାରେ, ତନୁ—ଦେହ ।

ଏ ଭାବ ସୁମର କାନ୍ତେ ଏବେ ମଲ୍ ଧନେ ନାଗେଶ୍ୱର ଗୁଣ୍ଡି ।
ମୂର୍ଚ୍ଛା କରିବା ବ୍ୟାଜରେ ଅଣାଇ ମୋର କରଜରେ ମଣ୍ଡି ।
ଆଲିଙ୍ଗନରେ ପ୍ରମୋଦେ । ହୃଦ ଲଗାଇଲେ ହୃଦେ । ୨୧ ।
ମୁହିଁ ଅଳପ ହସିଲି ହୋଇଲାକୁ ବୋଇଲି ଦଶିବ ଶୋଭା ।
ନିତ ଅଗ୍ରମକୁ ଯାଇଁ ଏହିପରି କରିବା କନକ—ପ୍ରଭା ।
ରହିଲି ମୁଁ ଲାଜ ପାଇ । ବୋଇଲେ କର ତ ହୋଇ ।୨୨।
ଏମନ୍ତ କହୁଁ ସେ ସହିକି ମହିକି ମହିଳାରତନ ତଳି ।
ଏ ଋତୁ ଆଗମେ ଭାଳି ନ ପାରିଲା ବଲ୍ଲଭ ବଲ୍ଲଭୀ କେଳି ।
ସୁମର ଶ୍ରୀରାମଚନ୍ଦ୍ର । କହେ ଭଞ୍ଜ ଉପଇନ୍ଦ୍ର । ୨୩ ।

## ପଞ୍ଚଚତ୍ୱାରିଂଶ ଛାନ୍ଦ

( ଅସୁରମାନଙ୍କ ଦୌରାତ୍ମ୍ୟ ହେତୁ ଚନ୍ଦ୍ରଭାନୁର
ଯୁଦ୍ଧ ଓ ଯୁଦ୍ଧରେ ବନ୍ଦୀହେବାରୁ କାର୍ଯ୍ୟ ବର୍ଣ୍ଣନ )

ରାଗ—ବିଭାସଗୁର୍ଜରୀ

ଏ ଅନ୍ତେ ଶୁଣ କୋବିଦେ ଚନ୍ଦ୍ରଭାନୁ କାର୍ଯ୍ୟ ଉଦେ ଏତେସ୍ଥାନେ ଛତ୍ର ପ୍ରାପ୍ତ ହେବ ହେ । ଜମ୍ବୁ ପ୍ଲକ୍ଷ କୁଶ କ୍ରୌଞ୍ଚ ଶାକ ଶାଲ୍ମଳିରେ ଘଞ୍ଚ ହୋଇ ପୁଷ୍କରକୁ ବୋଲି ଯିବ ହେ । ୧ । ଏଥିରେ ନୁହନ୍ତେ ଠାବ ବଳେ ପଶି ତଳେ ଯିବ ଅତଳ ନିତଳ ବିତଳକୁ ହେ । ଗଭସ୍ତି ମହାକ୍ଷ ଯେନ ସୁତଳ ପାତାଳ ସ୍ଥାନ ନିରତେ କରିବ ଉତ୍ଖୁଳକୁ ହେ । ୨ । ପାଦ ବାଧୁ

---

୨୧ । ମୂର୍ଚ୍ଛା—ମୂର୍ଚ୍ଛା, ବ୍ୟାଜରେ—ଛଳନାରେ, ଆଲିଙ୍ଗନ କରେ—କୋଳରେ ।

୨୨ । ଅଗ୍ରମ—ବଗିଚା ।

୨୩ । ମହିଳାରତନ—ସ୍ତ୍ରୀ ଶ୍ରେଷ୍ଠ, ମହୀକି—ପୃଥିବୀକି, ତଳକୁ, ହେମନ୍ତ ଋତୁପରି ଶିଶିର ଋତୁରେ ବରସ୍ତ୍ରୀ ବରହଣୀର ମିଳନ ସୁଖ ନ ଘଟିଲେ ଯେଉଁ ବନ୍ଦ୍ରଚନ୍ଦ୍ରା ଅଟେ ତାହା ବର୍ଣ୍ଣନା କରା ଯାଇଅଛି ।

---

## ପଞ୍ଚଚତ୍ୱାରିଂଶ ଛାନ୍ଦ

୧ । କୋବିଦେ—ପଣ୍ଡିତମାନେ, କାର୍ଯ୍ୟ—ଯତ୍ନ, ଘଞ୍ଚ—ଲଗାଲଗି ।

୨ । ବଳେ—ଗାତରେ, ଉତ୍ଖୁଳ—ପରିଷ୍କାର ।

ପାବଚ୍ଛରେ ଦେଇ ଗମିବ ସ୍ୱଚ୍ଛରେ ଉର୍ଦ୍ଧ୍ୱକୁ କୀର୍ତ୍ତି ପଟଳ ତାର ହେ । ଭୂର୍ଭୁବ ସ୍ୱ ମହ ଜନ ତପ୍ପ ସତ୍ୟାଦ୍ୟ ଭୁବନ ଗ୍ରାସେ ହୋଇ ପୃଥୁ କଳେବର ହେ । ୩ । ଫୁଟିବ ବ୍ରହ୍ମାଣ୍ଡ ଭାଣ୍ଡ ଅତ ବୃଦ୍ଧ ହୋଇ ପିଣ୍ଡ ଉପରକୁ ଯିବ ସେ ବାହାର ହେ । ପ୍ରଳୟରେ ଅବକାଶ ଯହିଁରେ ନାହିଁତ ଯଶ ଶର ହୋଇ ରହିବ ବାହାର ହେ । ୪ । ଯେବଣ ଉତ୍ତର କୁରୁବାସୀ ଅସୁରଭୟରୁ ରମ୍ୟକ ଭଦ୍ରାଶ୍ୱେ ନିଦ୍ରା ନୋହୁ ଯେ । ତମ୍ପୁଥାଇ କିଂପୁରୁଷ ଇଳାବୃତ ହରିବର୍ଷ କେତୁମାଳ ଉଚ୍ଛନ୍ନ କରାଇ ଯେ । ୫ । ପାଦଘାତେ ଟଳେ ଯାର ହିରଣ୍ମୟ ନିରନ୍ତର ହିମାଳୟତଳ ଉଷି ଗ୍ରାସି ହେ । ହେ ଭରତ ଖଣ୍ଡବୀର ଚନ୍ଦ୍ରଭାନୁ ରକ୍ଷ କର କୋଟି ପରମିତ ଉଠେ ଭାସି ହେ ।୬। ଉପସ୍ଥିତ ଅଦଭୁତେ ସ୍ୟନ୍ଦନେ ହେଲା ପୁରତେ ଦବ୍ୟାୟୁଧେ ହୋଇଛୁ ମଣ୍ଡିତ ଯେ । ଦୂଇ ହେଲା ମନ୍ତ୍ରୀ ସୂତ ପାଶେ ଅଜ ତନମିତ ଗଲା ସେ ଅରି କରି ଖଣ୍ଡିତ ଯେ ।୭। ରିପୁବଳ ଗୃହିଁ ବପୁ ପ୍ରକାଶ କରଣେ କୋପୁଁ ଅଟ୍ଟହାସ ପରକାଶ କଲା ହେ । ସ୍ଫୁଟ କୋକନଦ ପ୍ରାୟେ ନେତ୍ରଯୁଗ ଶୋଭାପାଏ ବାହାସ୍ଫୋଟ ପୁନଃପୁନଃ ଦେଲା ହେ । ୮ । ଅଧରେ ରଦନ ତହିଁ ଗୁପରେ ରୋପ ବସାଇ ବୀର କେଶରେ ପକାଇ କର ହେ । ଅଶନି ଅଭେଦ୍ୟ ପିଣ୍ଡମାନ କଲା ଖଣ୍ଡ ଖଣ୍ଡ ଶର ଉପରେ ପ୍ରହାର ଶର ହେ । ୯ ।

---

୩ । ବାଧୁ—ଚନ୍ଦ୍ର ଓ ଧଳା, ପାବଚ୍ଛ—ପାହାଚ, ଭୂ, ଭୁବ, ସ୍ୱ, ମହ, ଜନ, ତପ, ସତ୍ୟ—ଏ ସପ୍ତ ସ୍ୱର୍ଗ, ପୃଥୁ—ବଡ଼, କଳେବର—ଦେହ ।

୪ । ବୃଦ୍ଧ—ବଡ଼, ପିଣ୍ଡ—ଦେହ, ଅବକାଶ—ଫାଙ୍କ ସତ ।

୫ । ଅସୁରଭୟରୁ—ଅସୁରଙ୍କ ଭୟରୁ, ରମ୍ୟକ—ଦ୍ୱୀପ, ଭଦ୍ରାଶ୍ୱ—ସୂଅଶ୍ୱ । କିଂପୁରୁଷ—କନ୍ନର ସବୁ, ଏଳାବୃତ—ହରିବର୍ଷ, କେତୁମାଳ—ଗୋଟିଏ ଗୋଟିଏ ଦେଶ ।

୬ । ହିରଣ୍ମୟ—ସୁନାପୂର୍ଣ୍ଣ ମେରୁ, କୋଟିପରମିତ—ସହସ୍ର ସହସ୍ରବାର, ଉଠେଭାସି—ବଡ଼ପାଟିରେ ଡାକେ ।

୭ । ଦବ୍ୟାୟୁଧେ—ଉତ୍ତମ ଅସ୍ତ୍ର ସବୁ, ସ୍ୟନ୍ଦନ—ରଥ, ପୁରତେ—ଅଗରେ । ସୂତ—ସାରଥି ।

୮ । ରିପୁବଳ—ଶତ୍ରୁ ସୈନ୍ୟ, ବପୁ—ବଳ, ଦେହ, ଅଟ୍ଟହାସ—ଉଚ୍ଚହାସ, ସ୍ଫୁଟ—ଫୁଟିଥିବା, କୋକନଦ—ଲାଲ୍‌କଇଁ ।

୯ । ଅଧର—ଓଠ, ରଦନ—ଦାନ୍ତ, ଗୁପ—ଅନ୍ତ, ରୋପ—ଶର, ବୀରକେଶ—ଜଣ, ଅଶନି—ବଜ୍ର, ଅଭେଦ୍ୟ—ଭେଦ ନ ପାରିବା ।

ଚହିଁ ନୋତ୍ର ଜଳଧାର ଧନୁ ଇନ୍ଦ୍ରଟକୁ ପର ପୁଣ ପୁଣ ଧ୍ୱନିତ ସ୍ତନିତ ହେ । ଦର କୃପାଣେ ଝଟଳ ଶମ୍ପା ଚହଟ ଛଟକ ବାଡ଼ୁଳ କରକାବଳୀ ମତ ହେ ।୧୦। ଏମନ୍ତ ବୃଷ୍ଟି ସମାଦ ତଳ୍ପାଲେ ଏମନ୍ତ ନଦୀ କବନ୍ଧ ନାଚ ପ୍ରକଟ ହୋଇ ଯେ । କୀଲାଳ କି ଲାଲ ଫଳ ଜମ୍ବାଳ ହେଲା ଅଭାଳ ପତାକା ଲହରୀ ଶୋଭା ଚହିଁ ହେ । ୧୧ । ସ୍ୟନ୍ଦନ ତରଣୀ ଣୈର ଜପୃନ୍ଦ୍ର କୁମ୍ଭୀ କୁମ୍ଭୀର ମୀନ ତୁରଙ୍ଗ ବସନ ଫେନ ହେ । ଚର୍ମଅଡ଼ଣୀ କମଠ ଭୁଜ ଭୁଜଙ୍ଗ ପ୍ରକଟ ପତ୍ତି ଆର୍ତ୍ତିରବ ଭେକସ୍ୱନ ହେ । ୧୨ । ପତିପତ୍ତି ଦମ୍ଭ ତଟବିଟପୀ ହୋଇଲେ ଭଗ୍ନ ବୁଡ଼େ ଦୁଷ୍ଟକୁଳ ଗୃହିଁବାରେ ହେ । ରବିରଥ ମଧ୍ୟପଥ ପୂର୍ଣ୍ଣ ହେଲା ଦେବସୂତ ଶ୍ରମ ହେଲେ ରଥ ବାହୁଡ଼ାରେ ଯେ ।୧୩। ଗୃଳନା କର ଗୃମର ବ୍ୟଥା ଅପସରୀବାର ମଳୟାଦ ଗନ୍ଧସାର ଶେଷ ହେ । ଚଇତ୍ରରଥ ନନ୍ଦନ ହୋଇଲେ ପୁଷ୍ପବନ୍ଧ୍ୟନ ଅତି ଶଘନ ସମନବାସ ହେ । ୧୪ । କେଶମ୍ବକୁଳା

---

୧୦ । ଗୁରୁଧ୍ୱନି—ଝଡ଼ରେ ଉଆଯାଇଥିବା ଦଗଡ଼ର ଶବ୍ଦ, ସ୍ତନିତ—ଘଡ଼ ଘଡ଼, ଶମ୍ପା—ବିଜୁଳି, କରକାବଳୀ—କୁଆପଥର ସବୁ ।

୧୧ । ବର୍ଷାରେ ନଈବଢ଼େ—ଏଠାରେ ନଈ ବଢ଼ିଲା, କବନ୍ଧଜନ—ମୁଣ୍ଡ ନଥିବା ଗଣ୍ଡି, ନଈରେ ଜଳ ନାଚ ଯାଏ—ଏଠାରେ କବନ୍ଧ ନାଚନାଚ ଯାଏ, କୀଳାଳ—ଲାଲକର୍ଦ୍ଦ, ଲାଲପଦାର୍ଥ, ରକ୍ତ ଗଣ୍ଡରେ ରକ୍ତବର୍ଣ୍ଣ କଇଁଅଦ ଦେଖାଯାଏ ଏଠାରେ ହେଲା ରକ୍ତମୁଣ୍ଡ ଭାସୁଥାଏ, ଜମ୍ବାଳ—କାଦୁଅ, ଅଭାଳ—ଗୋଳିଆ, ଅପରିଷ୍କାର, ନଈରେ କାଦୁଅ ପାଣି ଗୋଳିଆ ହୁଏ, ଏଠାରେ ରକ୍ତରେ କାଦୁଅ ହୋଇ ଅପରିଷ୍କାର ହୁଏ, ନଈରେ ଲହରୀ ହୁଏ ଏଠାରେ ପତାକା ସବୁ ଲହରୀ ପ୍ରାୟ ହେଲା ।

୧୨ । ତରଣୀ—ଡଙ୍ଗା, ଜପୃନ୍ଦ୍ର—ଜାତ, କୁମ୍ଭୀ—ହାତୀ, ତୁରଙ୍ଗ—ଘୋଡ଼ା, ମୀନ—ମାଛ, କମଠ—କଇଁଛ, ଫେନ—ଫେଣ, ଚର୍ମଅଡ଼ଣୀ—ଚମଢାଲ, ଭୁଜ—ହାତ, ଭୁଜଙ୍ଗ - ସାପ, ପତ୍ତି—ପାଇକ, ଆର୍ତ୍ତିରବ—ବିକଳ ଡାକ, ଭେକ—ବେଙ୍ଗ, ରଥ—ଡଙ୍ଗା, ହାତୀ—କୁମ୍ଭୀର, ଘୋଡ଼ା—ମାଛମଗର, ଲୁଗା—ଫେଣ, ବାହୁ—ସର୍ପ, ଭେକସ୍ୱନ—ବେଙ୍ଗଶବ୍ଦ ।

୧୩ । ବିଟପୀ—ଗଛ, ପାଇକଙ୍କ ଦମ୍ଭଭାଙ୍ଗିଲା ଦୁଇକୂଳ ଗଛ ନଈବଢ଼ିରେ ଉପୁଡ଼ିଲା ପର ପାଇକଙ୍କ ଦମ୍ଭ ଭାଙ୍ଗିଲା, ସୂର୍ଯ୍ୟର ମଧ୍ୟପଥ—ମହିବାଟ ବା ଆକାଶ, ଦେବସୁତ—ଅରୁଣ ସାରଥି ।

୧୪ । ଅପସରୀବାର—ସ୍ୱର୍ଗବେଶ୍ୟାମାନେ, ମଳୟାଦ—ବାସନା ଜିନିଷ, ଗନ୍ଧସାର—ଚନ୍ଦନ, ଚଇତ୍ରରଥ—ଇନ୍ଦ୍ର ନନ୍ଦନ—ନନ୍ଦନ ବନ, ପୁଷ୍ପ ବନ୍ଧ୍ୟନ—ଫୁଲହୀନ, ସଘନ—ଶୀଘ୍ର, ଶମନବାସ-ଯମ ଭୁବନ ।

ବିବାସ ଦଶନେ କ୍ଷଣେ ଅଜସ୍ର ପଳାୟିତ ହିଂସ୍ର ଜନ୍ତୁ ବଶେ ହେ । ସ୍ତ୍ରିସ୍ତ୍ରି ବେଶ ଧରି ନାରୀ ମଧ୍ୟେ କେ ନିଶ୍ୱାସ କରି ଲତା ବୃକ୍ଷ ବୀର ପ୍ରାୟେ ଧଶେ ହେ ॥ ଅରି ନାରୀଏ ଭ୍ରମିତ ବେଦନସ୍ୱରେ ପୂରିତ ହରିତମାନଙ୍କୁ ତହିଁ କଲେ ହେ । ଅଶ୍ରୁରେ ପଙ୍କିଳ ମହୀ ହେବାରେ ହାଳିକେ ଗୃହିଁ କୃଷି କାରଣେ ଉତ୍ସାହୀ ହେଲେ ।୧୬। କରୁଡ଼ୁ କରକଙ୍କଣ ଖଞ୍ଜି ହେଲେ ରତ୍ନଗଣ ବୃଷ୍ଟିଲର ପ୍ରାୟ ଶସ୍ୟ-ବୀଜ ହେ । ଚିତ୍ତରେ କରୁଣା କରି ଛାଡ଼ିଦେଲ କେତେ ଅରି ମହାକାରୁଣିକ ଯୁବରାଜ ହେ ।୧୭। ଦେଖି ନୃପଙ୍କ ଚରିତ ଦେବଙ୍କୁ ଦେବେ କଥିତ ନବରସେ ନବଗ୍ରହ ଏହି ହେ । କୃପାରେ ସୁର କିଷ୍ଟୁ ବୀରରସେ କେତୁ ପ୍ରାୟ ଅଦ୍ଦରସେ କବିପଣେ ବହି ହେ ।୧୮। ଅଦ୍ଭୁତେ ମଙ୍ଗଳ ସତ ହାସ୍ୟରେ ମନ୍ଦ ବିଦିତ ଭୟାନକେ ତମ ପରି ଜାଣି ହେ । ଗ୍ରହବର ବିବସ୍ତ୍ରରେ ବୁଧ ଏ ରୌଦ୍ରରସରେ ଶାନ୍ତରେ ଚନ୍ଦ୍ରମାପରି ଜାଣ ହେ । ୧୯। ଏ ଶତ୍ରୁ ସିଂହ ରାଶିରେ ନୀଚେ ଅମ୍ବ ଜପକାରେ ଏବେ ହେଉ କନ୍ୟାରେ ଏ ଯୋଗ ହେ । ଶାପକାଳ ହେଲା ଲୋପ ବିନାଶ ମାନସ ତାପ ପୁରେ କରୁ ମହାମହ ଭୋଗ ହେ। ୨୦ । ଏସନ ସନ୍ତୋଷ ଝଟଣେ ରଥ ଉଡ଼ିଲ ଗଗନେ ଭ୍ରଥଖଣ୍ଡେ ଛାଡ଼ି ଅନ୍ତର୍ଦ୍ଧାନ ହେ । ପିଶାଚ ପ୍ରେତ କୁଷ୍ମାଣ୍ଡ ଜମ୍ବୁକ ଡାକିନୀ ରୁଣ୍ଡ ଗୃଧ୍ରବୃନ୍ଦ ମଣ୍ଡିଲେ ଶ୍ମଶାନେ ହେ ।୨୧। ଭୂତ ମଧ୍ୟରେ ଅଧିପ ଏ ତିନିହେଁ ଚଣ୍ଡରୂପ ଅଘୋରଘଣ୍ଟ କପୋଳଘଣ୍ଟ ହେ । ଗୃହିଁ ବିସ୍ମୟ ହୋଇଲେ କି କୃତ୍ୟ କଲା ବୋଇଲେ ଏତେକାଳ ପ୍ରେତେ ହେବେ

---

୧୫ । ବାଳ-କେଶ, ବିବାସ-ଲଙ୍ଗଳା, ଅଜସ୍ର-ଅସଂଖ୍ୟ ।

୧୬ । ଅରିନାରୀ—ଶତ୍ରୁମାନଙ୍କ ସ୍ତ୍ରୀ, ବେଦନ—କାନ୍ଦିବା, ହରିତ-ଦିଗ, ପଙ୍କିଳ—କାଦୁଅ, ହାଳିକ—ଚଷା ।

୧୮ । କୃପା-ଦୟା, ସୁର-ସୂର୍ଯ୍ୟ, ଶୁର-ବୀର, ରସ ୯ ପ୍ରକାର—ଅଦ୍ଭୁତ ବୀର, କରୁଣ, ହାସ୍ୟ, ରୌଦ୍ର, ଭୟାନକ, ଶୃଙ୍ଗାର, ବିଭତ୍ସ ଓ ଶାନ୍ତ ମାନସ ତାପ—ମନଦୁଃଖ, ମହାମହ—ଅତ୍ୟନ୍ତ ଆନନ୍ଦ ।

୨୧ । ପିଶାଚ-ପ୍ରେତ, କୁଷ୍ମାଣ୍ଡ ଏ ସବୁ ପ୍ରେତ, ଜମ୍ବୁକ-ବିଲୁଆ, ଗୃଧ୍ରବୃନ୍ଦ—ଶାଗୁଣା ସବୁ ।

୨୨ । ଭୂତମାନଙ୍କ ମଧ୍ୟରେ ଏ ତିନିଜଣ ରଜା । ଯଥା-ଚଣ୍ଡରୂପ, ଅଘୋର ଘଣ୍ଟ, କପୋଳ ଘଣ୍ଟ । ତୃପ୍ତ—ସନ୍ତୋଷ ।

ତୁଷ୍ଟ ହେ ।୨୨। ଭାରତେ ଏ ରୂପେ ରକ୍ତ ନଦୀ ହୋଇଥିଲା ବ୍ୟକ୍ତ ବୋଲି ଚଣ୍ଡରୂପ ପ୍ରଗୃହିଲ ଯେ । କଲ୍କି ମାରଣରେ ଏତେ ଶବ ଦେଖିଥିଲି ନେତ୍ରେ ଅଲେଖିତ ଭୋଜ ପ୍ରେତେ ଦେଲ ଯେ ।୨୩। ପିଇଲେ ରୁଧିର ପଣା ପରରେ ପ୍ରେତ ଅଗଣା ମଣ୍ଡାପର ମୁଣ୍ଡ ଗ୍ରୈବାଇଲେ ଯେ । ପାଇଲେ ଯେ ଭୁଜ ପାଦୁଁ ମତ୍ସ୍ୟ ଉପହାର ସ୍ୱାଦୁ ନଖ କଣ୍ଟକ ବାହାର କଲେ ଯେ ।୨୪। ଧୃତପର ପ୍ରେତ ଲେହ୍ୟ ନୃତ୍ୟ କଲେ ଗୀତ ଗାଇ ହୃଦେ ମେଦ ବ୍ୟଞ୍ଜନ ସୁସ୍ୱାଦେ ହେ । ମାତଲେ ଜରଡମାନେ ପିଞ୍ଜା ମାଂସେ ଶର ମୁନେ ପ୍ରବର୍ତ୍ତିଲେ ବୀର ଅଶୀର୍ବାଦେ ହେ ।୨୫। ପ୍ରେତରଙ୍କ ନିଃଶଙ୍କରେ ଶବ ପକାଇ ଅଙ୍କରେ ଚରଣ ଲମ୍ବାଇ ବସିଛନ୍ତି ଯେ । କରନ୍ତି କବଳ ପଳ ଦେଖାଇ ଆପଣା ବଳ ମାଢ଼ ପାଦେ ଶବ ଶିବାପନ୍ତି ଯେ ।୨୬। ଶ୍ୱାନ ପାଞ୍ଚସାତ ରୁଣ୍ଡ ଓଟାରନ୍ତି ମୃତ୍ୟୁପିଣ୍ଡ ଖଣ୍ଡଖଣ୍ଡ କରି ଘେନି ଯାଇ ହେ । ଲୁଚାଇ ଗୁଳ୍ମ ତଳରେ ପୁଣିହିଁ ସେହି ପ୍ରକାରେ କୌଣପ ମଧ୍ୟକୁ ଆସେ ଧାଇଁ ହେ ।୨୭। ଗୃଧ୍ରେ ଯେ ହୋଇ ଫୁରୁଣା ଚଞ୍ଚୁକୁ ବିସ୍ତାର ତେଣା ହଲାଇ ମତ୍ତ-ପିଶିତ ଭକ୍ଷନେ ଯେ । ଯେ ଯେତେ ପାରିଲେ କେତେ ବାନ୍ଧିଲେ ଭୋଜନ ଅନ୍ତେ ପ୍ରେତେ ବହୁତକାଳ ବଞ୍ଚନେ ହେ ।୨୮। କଇଲାସ ଦେଖି ଶୂନ୍ୟ ଜାଣିଲେ ପଞ୍ଚବଦନ କେତେ ସୁକଲ୍ୟାଣ କଲେ ତୋଷେ ସେ । ଅଶୀର୍ବାଦ କରିବାକୁ ମୁନି ନ ଦେଖି ବୀରକୁ ପ୍ରବେଶ ହେଲେ କର୍ଣ୍ଣାଟ ଦେଶେ ସେ ।୨୯।

---

୨୩ । କଲ୍କିମରଣରେ-କଲ୍କି ଅବତାର ବେଳେ ଯେତେବେଳେ ମ୍ଳେଚ୍ଛ ନାଶ ହେଲେ, ବ୍ୟକ୍ତ-ପ୍ରକାଶ ।

୨୪ । ଅଗଣା—ଅସଂଖ୍ୟ, ମତ୍ସ୍ୟ—ମାଛ ।

୨୫ । ଲେହ୍ୟ—ଗୁଣ୍ଠିବା, ମେଦ—ମାଂସ, ବ୍ୟଞ୍ଜନ—ତରକାରି ।

୨୬ । ପ୍ରେତରଙ୍କ—ପ୍ରେତଙ୍କ ମଧ୍ୟରେ ଯେଉଁମାନେ ଭିକାରୀ, ନିଶଙ୍କରେ—ନିର୍ଭୟରେ, ଶବ—ମୁର୍ଦାର, ଅଙ୍କରେ—କୋଳରେ, ଚରଣ-ଗୋଡ଼ କବଳ—ଗ୍ରାସ, ପଳ—ମାଂସ, ଶିବାପନ୍ତି—ବିଲୁଆମାନେ ।

୨୭ । କୌଣପ—ଅସୁର ।

୨୮ । ଫୁରୁଣା—ଆନନ୍ଦ, ଚଞ୍ଚୁ—ଥଣ୍ଟ, ପିଶିତାଶନେ-ମାଂସ ଖାଇବାରେ, ଅନ୍ତେ—ଶେଷେ ।

୨୯ । ପଞ୍ଚବଦନ—ମହାଦେବ, ସୁକଲ୍ୟାଣ—ଅଶୀର୍ବାଦ ।

ଜରତ ବିମ୍ବ ଅଧର ଭରତଜ୍ୟେଷ୍ଠ ସୋଦର ନିରତେ ମୋ ଚିତ୍ତେ କର ସଦ୍ମ ହେ । କହେ ଉପେନ୍ଦ୍ରଭଞ୍ଜ ପ୍ରଭେ ରଘୁବଂଶରାଜ ଅଯୋଧ୍ୟା ରାଜନ ପରଂବ୍ରହ୍ମ ହେ । ୩୦ ।

## ଷଟ୍‌ଚତ୍ୱାରିଂଶ ଛାନ୍ଦ

( ଚନ୍ଦ୍ରଭାନୁ ଯୁଦ୍ଧ ଜୟ କରି ସ୍ୱଦେଶ ଗମନ ଓ ଲାବଣ୍ୟବତୀ ସହ ମିଳନ )

ରାଗ କଳଶା—(ଅଶାବରୀ)

ଗୁଣବନ୍ତେ ଏ ଗୀତମଣିକି ମାଳା କର । ନିର୍ଗୁଣେ ନ ଘେନିବାକୁ ନାହିଁ ମୋ ବାରୁର ହେ । ୧ । କୁମର ଦେଖି ସ୍ୱଦେଶାଗତ ପୁରୁଷଙ୍କୁ । ପଚାରିଲେ ନିଜ ରାଜ୍ୟ ଶୁଭ ସନ୍ଦେଶକୁ ଯେ ।୨। ସେ କହିଲା ସର୍ବଶୁଭ ମାତ୍ର ଏତେ ମାତ୍ର । ସିଂହଳ ନୃପତି ଜେମା ଅତକ୍ଷୀଣ ଗାତ୍ର ହେ । ୩ । ନ ରହୁଛି ନିଜ ନୟନରେ ଅଶ୍ରୁ ନୀର । ନ ଜପୁଛି ଅବନୀଶପୁତ୍ର ନିରନ୍ତର ଯେ । ୪ । ନବଦ୍ୟ ତାପ ଲଭୁଛି ନୃପତିକୁମାରୀ । ବିଳାପ କଳାପ ତାର ଭୂତାବେଶ ପରି ଯେ । ୫ । ପଦ୍ମନୀରେ ଉପଚାର କରିବାକୁ ଘେନ ।

୩୦ । ଜରତ—ବୁଢ଼ା, ପାଚିଲା; ସୋଦର—ଭାଇ, ନୀରତେ—ସର୍ବଦା, ସଦ୍ମ—ଘର ।

ଚନ୍ଦ୍ରଭାନୁ ଦୂରଦେଶରେ ରହି ସେହିଠାରେ ଯୁଦ୍ଧକରି ଅନେକ ଦୁଷ୍ଟ ଅସୁରମାନଙ୍କୁ ମାରି ସମସ୍ତଙ୍କୁ ଅଭୟ ଦେବାରୁ ଓ ସପ୍ତଦ୍ୱୀପ ବୁଲି ବୁଲି ଦୁଷ୍ଟମାନଙ୍କୁ ନାଶିବାରୁ ତାର ଯଶ ସମସ୍ତ ସଂସାର ମର୍ତ୍ତ୍ୟ, ପାତାଳ ଓ ସ୍ୱର୍ଗରେ ମଧ୍ୟ ବ୍ୟାପିଲା, ଦେବତାମାନେ ତାର ତେଜ ଧୈର୍ଯ୍ୟ ଧାର୍ମିକତାରେ ସନ୍ତୋଷ ହୋଇ କଲ୍ୟାଣ କରି ଯୋଗିନୀ ଦ୍ୱାରା ନିଜ ଦେଶକୁ ପଠାଇ ଦେଲେ ।

## ଷଟ୍‌ଚତ୍ୱାରିଂଶ ଛାନ୍ଦ

୨ । ସ୍ୱଦେଶାଗତ—ନିଜଦେଶରୁ ଆସିଥିବା, ସନ୍ଦେଶ—ଖବର ।

୩ । ସିଂହଳ ନୃପତିଜେମା—ସିଂହଳ ରାଜକନ୍ୟା ଲାବଣ୍ୟବତୀ ।

୪ । ଅବନୀ—ପୃଥିବୀ, ନିରନ୍ତର—ସର୍ବଦା ।

୫ । ନବଦ୍ୟ-ଅତ୍ୟନ୍ତ, ତାପ-କଷ୍ଟ; (କାମକଷ୍ଟ) ଭୂତାବେଶ-ଭୂତଲାଗିବା, ବିଳାପ କଳାପ—କାନ୍ଦିବା ସବୁ ।

୬ । ପଦ୍ମନୀରେ—ଲାବଣ୍ୟବତୀଠାରେ, ସରସୀ—ପୋଖରୀ ।

ସରସୀମାନେ ହେଲେଣି ପଦ୍ମଶ୍ରୀବିହୀନ ଯେ ।୬। କାଳପରି ପସାରି ଦେଇଛି ତା-
ପରି ସେହୁ । ଦେହଳୀ ବଳି ଚଳିବା ଭଳି ବଳ ନାହିଁ ଯେ । ୭ । ହା
ସ୍ୱରରେ ସଦନ ତ ଦଣ୍ଡେ ଶୂନ୍ୟ ନାହିଁ । ହା ସ୍ୱରରେ ଭୁଜଙ୍ଗମ ଭ୍ରମ
ଉପୁଜାଇ ଯେ ।୮। ଚଞ୍ଚୁରେ ଦେଖିଲି ପୁଚ୍ଛିବାକୁ ତୁମ୍ଭ ବାର୍ତ୍ତା । ବଳିଭୃଙ୍ଗେ
ବଳିଦେଲେ ତ୍ରିବଳିଶୋଭିତା ଯେ । ୯ । ଯେତିକି ବିଳମ୍ବ ତୁମ୍ଭ ପ୍ରଲମ୍ବ-
କୁନ୍ତଳା । ତେତିକି ତେତିକି କରୁଅଛୁ ଜୀବେ ହେଳା ଯେ । ୧୦ ।
କେଉଁ ଭାଗ୍ୟେ ଜୀଇଅଛୁ ନୁହଇ ଗୋଚର । ଦୂରକଲଣି ସମସ୍ତ ଆହାର
ବିହାର ଯେ । ୧୧ । ବିହାଉ ଏତିକି ତୁମ୍ଭ ରୂପ ଧରେ ଦଶି । ଉଠି କୋଳ
କରିବାକୁ ହୁଅଇ ଲାଳସୀ ଯେ ।୧୨। ଅଧର ଏତିକି ତବ ରସ ଆସ୍ୱାଦଇ ।
ଡକୁଁଛି ଲଭିବା ଲୋଭ ଅଛି କି ଜୀଅଇଁ ଯେ । ୧୩ । ବେଣୀ ଅଲଙ୍କାରୁ
ବେଣୀ ହୋଇଛି ମଣ୍ଡନ । କରରେ ଅଙ୍ଗୁଳି ପ୍ରତିଅଙ୍ଗରେ ତପନ ଯେ ।୧୪।
ଜୀବେ ଅଛି ଶୁଣିବାରୁ ହରଷିଲହରୀ । ବିରସ ସରିତୁଁ ତାର ବାହାର
ବିହରି ଯେ । ୧୫ । ସେ ରସିକ ସିନ୍ଧୁଜାତ ତୁରଙ୍ଗ ଅଣାଇ । ଅରୋହଣେ
ପବନ ପରାୟେ ଉଡ଼ିଯାଇ ଯେ ।୧୬। ଯାଉ ଯାଉ ବିଗ୍ଭର କରଇ ମନେ
ମନ । କରିବରଗମନା କରିବ ପରା ମାନ ଯେ । ୧୭ । ତେତିକି ବେଳକୁ
ବୁଦ୍ଧି ସ୍ଫୁରିଲାଟି ମୋତେ । ବନ୍ଧୁ ମୁଁ ବିଚ୍ଛେଦ ହୋଇଥିଲି କି ଅପୂର୍ବେ
ଗୋ । ୧୮ । ଶିବ କରିବେ ଏ ଶିବ ଏମନ୍ତ ବେଳରେ । ଭେଟ ହୋଇବାଟି
ମୋର ବାନ୍ଧବୀ କୂଳରେ ଯେ । ୧୯ । ମୋ ପାଶକୁ ଦୂତ କରୁଥିବି

---

୭ । ଦେହଳୀ—ଦ୍ୱାରବନ୍ଧ ।

୮ । ହା ସ୍ୱରରେ—ହା ଶବ୍ଦରେ-ବେକରେ ପିନ୍ଧିଥିବା ହାର ଶ୍ରେଷ୍ଠରେ, ସଦନ—ଘର ।

୯ । ଚଞ୍ଚୁରେ-ଶୀଘ୍ର, ବଳିଭୃଙ୍ଗେ-କୁଆମାନେ, ବଳି-ଗୁଣ୍ଡିଳ ଦେବା ।

୧୦ । ତ୍ରିବଳୀଶୋଭିତା-ଲାବଣ୍ୟବତୀ, ପ୍ରଲମ୍ବକୁନ୍ତଳା-ଘନ ଲମ୍ବ ବାଳଯୁକ୍ତା

୧୧ । ଆହାର—ଖାଇବା, ବିହାର—ଖେଳା ବୁଲା ।

୧୪ । ଅଙ୍ଗୁଳି-ହାତଗୋଡ଼, ପ୍ରତିଅଙ୍ଗରେ-ଦେହସାରା, ତପନ-ତାତିଲା ।

୧୬ । ସିନ୍ଧୁଜାତ ତୁରଙ୍ଗ—ଶୀଘ୍ର ଦୌଡ଼ି ପାରିବା ଘୋଡ଼ା, ଅରୋହଣେ—ଚଢ଼ିବା ।

୧୭ । କରିବର ଗମନା—ଗଜଗମନା ।

୧୯ । ଶିବ—ମହାଦେବ, ମଙ୍ଗଳ ।

ମଦାଳସୀ । ଭୃଙ୍ଗ ଅବା କୋକିଳ ସରସ ରସଭାଷୀ ଯେ । ୨୦ । ଅଙ୍କାଣେ ମୁଁ ପଛୁଁ ଯାଇ କରିବି ଅବଶ୍ଳେଷ । ନ ପାଇବ ସୁମୁଖୀ ମାନଙ୍କୁ ଅବକାଶ ଯେ । ୨୧ । ଅହେ ନବଗ୍ରହେ ବନ୍ଧୁ ଦରଶନ ବେଳେ । ମୋର ରାଶି ଏକାଦଶେ ରହ ଏକମେଳେ ଯେ । ୨୨ । ଲେଖୁଥିବ ମୋ ପାଶକୁ ସପ୍ରେମ ଚିଟାଉ । ନ ଜାଣୁ ତା ନିକଟକୁ ସୌଭାଗ୍ୟ ଭେଟାଉ ଯେ । ୨୩ । ବେଗେ ବୋଲିବ ଅଇଲ ତୋ ଲେଉଟି ଦାସ । ନ ପାଇବ ସୁମୁଖୀ ମାନଙ୍କୁ ଅବକାଶ ଯେ । ୨୪ । ଦୁର୍ଗାମାଧବ କରିବେ ଏମନ୍ତ ମଙ୍ଗଳ । ମୋ ସ୍ୱରୂପ ପଟେ ଦେଖି ହୋଇ ଭାବେ ଭୋଳ ହେ । ୨୫ । ଗୋଜ କରୁଥିବ ନିଜ ଅଧର ଚୁମ୍ବନେ । ଉରଜ ମୂଳକୁ ଗୃଲ ଦେବ ନଖମୁନେ ଯେ । ୨୬ । ଚମକ ଗୁହ୍ନିଲବେଳେ ଜନ୍ମିବ ହରଷ । ନ ପାଇବ ସୁମୁଖୀ ମାନଙ୍କୁ ଅବକାଶ ଯେ ।୨୭। ଯେତେ ଜନ୍ମେ ଯେତେ ପୁଣ୍ୟ କରିଛୁ ମୁଁ ତୁଳେ । ମିଳିଥିବଟି ସୁନ୍ଦରୀ ମେଳ ହେବାକାଳେ ଯେ । ୨୮ । କେଉଁଦିନ ଅସିବେ ମୋ କାନ୍ତ ପରବାସୀ । ବୋଲି ଦେବାବେଳେ ବାଳା ଖଣ୍ଡୀକି ମନାସି ଯେ । ୨୯ । ଅଗେ ମିଳି ବୋଲିବ ମୋ ଛାର ଅପରାଧୀ । ଲଚ୍ଛମାଇ ତୋ ପ୍ରଭୁପଣକୁ କୃପାନିଧି ଗୋ । ୩୦ । ଶୁଣି ଏ ବାଣୀ ଅଧିକ ଦ୍ରବିବ ମାନସ । ନ ପାଇବ ସୁମୁଖୀ ମନକୁ ଅବକାଶ ଯେ ॥ ଲକ୍ଷ୍ମୀସହ ନୃସିଂହ କରନ୍ତୁ ଶୁଭ ଏବେ । ଯେତେବେଳେ ସଖୀ ଶୁଭ ସ୍ୱପ୍ନ କହୁଥିବେ ହେ । ।୩୨। ଅଜ ଅସିବେ ବଲ୍ଲଭ ଶୁଣି ତୋଷ ହୋଇ । ବାଳା ମାଳା ଗୁନ୍ଥି ରଖୁଥିବେ ସତ ପାଇଁ ଯେ । ୩୩ । ସାକ୍ଷୀ ହେଉଥିବ କଣେ ମିଳି ସହଚରୀ । ତେତେବେଳେ ପ୍ରବେଶ ମୁଁ ହେଲେ ଯାଇଁ କରି ଯେ ।୩୪। ସଖି ଡାକଦେବେ ଅଲ ନିଜଗୃହ ଅସ । ନ ପାଇବ ସୁମୁଖୀ ମାନଙ୍କୁ ଅବକାଶ ଯେ ।୩୫। ଏସନ ବିଗ୍ରରମାନ କରଇ ମାନସ । ସରଳ ସରଣୀ କାଞ୍ଚି ନଗ୍ରେ ପରବେଶ ଯେ ।୩୬। ଠାବେ ଠାବେ ପଡ଼ିଅଛୁ ସମର ଚଡ଼ତ ।

---

୨୦ । ମଦାଳସୀ—ରସିକା, ସରସ ରସଭାଷି—ଚାତୁରତାରେ କଥା କହିବା ସ୍ତ୍ରୀ ।

୨୧ । ଅଶ୍ଳେଷ—ଅଲିଙ୍ଗନ, ଅବକାଶ—ପୁରୁଷତ ସମୟ ।

୨୨ । ଜନ୍ମ ରାଶିର ଏକାଦଶରେ ସବୁଗ୍ରହ ରହିଲେ ଶୁଭହୁଏ ।

୩୫ । ନିଜଗୃହ—ବଲାଇବାକୁ ।

୩୬ । ସରଣୀ—ବାଟ ।

ସଶପ୍ତକ କାଲକେୟୁ କରିବାର ହତ ଯେ । ୩୭ । ସାର ଅଦଭୁତ କୀର୍ତ୍ତି କବିବୃ ବଚନେ । ସ୍ଥାନେ ସ୍ଥାନେ ପଢ଼ୁଛନ୍ତି ବୋଧକାରମାନେ ଯେ ।୩୮। ସେ କବିବୃ ଅବେଶରେ ତୁଷ୍ଟ ନରେଶ୍ୱର । ପ୍ରବେଶରେ ଅଭିଷେକ କରିବେ କୁମର ହେ । ୩୯ । ଶୁଣି ମନେ କରୁଅଛୁ ସେ ଯୁବାଭୁଜାଳି । ଅଶୀର୍ବାଦ କରି କରି ଗଲେ ସୁର ମୁନି ଯେ । ୪୦ । ଯିବାର ଛଟକ କେହି ନ ଦେଖିବେ ନେକେ । ଧନ୍ୟ ଅଶ୍ୱ ଧନ୍ୟ ସାଦୀ ବୋଇଲେ ସମସ୍ତେ ଯେ । ୪୧ । ସଦନଦ୍ୱାର ଦ୍ୱାଃସ୍ଥରେ ନମସ୍କାର ପାଇ । ଉତ୍ତର ସେ ଶୁଦ୍ଧାନ୍ତ ଗମନେ ଉତ୍ସୁକ ହୋଇ ଯେ । ୪୨ । ତହିଁ ଶିଳ୍ପକାରକାସ୍ତେ କଥା ପରସ୍ପର । କି କରିବାଟି ହୋଇଲା ଅସର ବାସର ଯେ । ୪୩ । ଅସର ହୋଇବ କେବେ ମନସିଜ ସୁଖ । ପାଞ୍ଚ ନୋହେ ପାଞ୍ଚ ପାଞ୍ଚ କୋଟି ତା ବଶିଖ ଯେ । ୪୪ । ମାଲତୀ ବୋଲୁଛୁ ନିତମାନ ଅସୁଥାଇ । ବରଷେ ହୋଇଲା ପୁଷ୍ପବାଟି ନ ସରଇ ଗୋ ।୪୫। ଚେଟୀଏ ବୋଲନ୍ତି ବନ୍ଦୀ ମୋକ୍ଷ ଶୁକ ସାରୀ । ବାନ୍ଧି ବାଟି ଜଣୀର ଗଲାଣି ହସ୍ତ ସରି ଗୋ । ୪୬ । ପ୍ରୋଢ଼ା ସଜନୀକି ତହିଁ ନବୋଢ଼ା ପଗୃରେ । ଫୁଲଶର ଭେଦେ କେହି ଗିରସ୍ତନା ଉରେ ଗୋ । ୪୭ ।-ସେ ତାହାଙ୍କୁ ପ୍ରତିଭାଷ କରୁଛୁ ତହିଁକି । ଗଣନାରେ

---

୩୭ । ସଂଶପ୍ତକ-ପ୍ରତିଜ୍ଞାବନ୍ତ ଯୋଦ୍ଧା, କାଲକେୟ-ଦର୍ପିଷ୍ଠ ରାକ୍ଷସମାନେ ।
୩୮ । ବୋଧକର—ଭାଟ ।
୪୦ । ଯୁବା ଭୁଜାଳି—ଯୁବକର ଭୁଜବଳ, ଅଶୀର୍ବାଦ—କଲ୍ୟାଣ ।
୪୧ । ସାଦୀ—ଘୋଡ଼ସବାର ।
୪୨ । ଦ୍ୱାଃସ୍ଥ—ଦ୍ୱାରୀ, ଶୁଦ୍ଧାନ୍ତ—ଉଆସ ।
୪୩ । ଶିଳ୍ପକାରୀଏ—ସଖୀମାନେ ।
୪୪ । ଅସର—ଅସରନ୍ତି, ବାସର—ମିଳନ ଦିନ, ମନସିଜ-କନ୍ଦର୍ପ,ପାଞ୍ଚ—ଜାଣିବା, ପାଞ୍ଚଟି ।
୪୫ । ପୁଷ୍ପବାଟି—ଫୁଲ ବଗିଚ୍ଚ ।
୪୬ । ଚେଟୀଏ—ଦାସୀମାନେ, ବନ୍ଦୀମୋକ୍ଷ-ବନ୍ଧରୁ ଫିଟିବା, ଜଣୀର—ବେଣୀ ।
୪୭ । ପ୍ରୋଢ଼ା—ବୟସ୍କା, ପୁରୁଣା, ନବୋଢ଼ା—ନୂଆସଙ୍ଗ, ଗିରସ୍ତନା—ପର୍ବତ ସ୍ତନା, ଉର—ବକ୍ଷ ।
୪୮ । ପ୍ରତିଭାଷ—ଉତ୍ତର, ଅମ୍ବୁଜ—ପଦ୍ମ, ଚନ୍ଦ୍ର, କାମର ପଞ୍ଚଶରରେ ମଧ୍ୟ ପଦ୍ମ ଓ କଇଁ ଅଛୁ ।

ଅମ୍ବୁଜ ଯୋଡ଼ାଏ ଅଛୁଟିକି ଗୋ । ୪୮ । ଶୁଖିଲା ମୃଣାଳ ନାଳେ ଚତୁର ସଘନ । ପାକଲା ଶାକପରି ନବଚ୍ଛଦ ମାନ ଗୋ । ୪୯ । କର୍ପୂର ଚନ୍ଦନ କେ ଗୋଳୁଛୁ କେ ଚଳୁଛୁ । ସ୍ଫୋଟକ ଜନ୍ମିବ ଏଥୁଁ ନୁହଇ ଏ କଚ୍ଛୁ ଗୋ । ୫୦ । ବ୍ୟଜନ ଧରି କେ ବିଞ୍ଚିବାକୁ ସ୍ନେହଭରେ । ଉଡ଼ି ଯାଉଥାଇ ନାକି ବୋଲି କେ ନବାରେ ଯେ । ୫୧ । କେ ବୋଲେ ତାହାକୁ ମୁଁ ଯାଉଛୁ ସ୍ନାନ କରି । ମୋହ ଗଲେ ମୁଖେ ନ ସିଞ୍ଚିବ ଶୀତ ବାରି ଗୋ ।୫୨। ବରଷା ପ୍ରାୟ ମଣିଲେ ପ୍ରମାଦ ପଡ଼ିବ । ଅଙ୍କରେ ପକାଇ ଶ୍ରବଣରେ ଫୁଙ୍କି ଦେବ ଗୋ । ୫୩ । କେବଣ ସଜନୀ ହୋଇ ସଜଳ ଲୋଚନା । ନବପଲ୍ଲବରେ ଶେଯ କରୁଛୁ ରଚନା ଯେ । ୫୪ । କେ ସଖୀ ପାଶରେ ବସି କରେ ଆଶ୍ୱାସନା । ବୋଲେ କଥାତ ନ କହୁ କରକ ରଦନା ଗୋ ॥ ଭଲ ନ ଦେଖିଲୁ ଧନେ ନାଗରୀ ତିଳକ । ଏହି କଥାହିଁ ତୋହର ନ ଗଲା କାଳକ ଗୋ । ୫୬ । କ୍ରୋଧଭର ହୋଇ କେଉଁ ସଜନୀ ବୋଲୁଛୁ । କେ ତାହା ଭୋଗିବ ଯାହା ଅପେ ଅରଜୁଛୁ ଗୋ ।୫୭। ଅଭି କେ କହିଲା ଏହା ବୋଇଲି କି କରି । ସମଦ୍ରବ୍ୟେ ଅନୁରାଗୀ ହୋଇଲା ସୁନ୍ଦରୀ ଯେ ।୫୮। ରସାଣହେମ ଅଙ୍ଗୀକି ଥିଲା କି ଗୋଚର । ବଲ୍ଲଭ ହୃଦୟ ହେବ ପାଷାଣ

---

୪୯ । ମୃଣାଳନାଳେ-ପଦ୍ମନାଡ଼ରେ, ଚତୁର-ଅଗଣା, ଶାକ-ଶାଗ, ପାକ—ସିଝ, ନବଚ୍ଛଦ—କଅଁଳିଆ ପତ୍ର, ବିରହ ତାପ ହେତୁ ଲବଣ୍ୟବତୀ ଦେହରେ ପଦ୍ମନାଡ଼ ଦେବାରୁ ସେ ଶୁଖିଯାନ୍ତେ ଦୁଅରକୁ ଫୋପଡ଼ା ହୋଇଛି । ପତ୍ରସବୁ ସିଝା ହେଲା ପରି ହୋଇଛି ।

୫୦ । ଚଳୁଛୁ—ଗାଳି ଦେଉଛୁ, ସ୍ଫୋଟ—ଫୋଟକା ।

୫୧ । ବ୍ୟଜନ—ବିଚଣା ।

୫୨ । ଶୀତ—ଥଣ୍ଡା, ବାରି—ଜଳ ।

୫୩ । ଅଙ୍କ—କୋଳ, ଶ୍ରବଣ—କାନ ।

୫୪ । ସଜଳ ଲୋଚନା—ଲୁହଯୁକ୍ତା ଆଖି (କାନ୍ଦ କାନ୍ଦ ଅବସ୍ଥା), ରଚନା—ତିଆରି କରିବା ।

୫୫ । ଆଶ୍ୱାସନା—ବୋଧଦେବା, କରକ ରଦନା—ଡାଳିମ୍ବଦନ୍ତୀ ।

୫୬ । ନାଗରୀ ତିଳକ—ସ୍ତ୍ରୀ ଶ୍ରେଷ୍ଠା ।

୫୭ । କ୍ରୋଧଭର—ରାଗ ପୂର୍ଣ୍ଣ ।

୫୮ । ସମଦ୍ରବ୍ୟେ—ସମାନ ଜିନିଷରେ, ଅନୁରାଗୀ—ସ୍ନେହୀ ।

୬୦ । ରସାଣ ହେମଅଙ୍ଗୀ—ପାଲିସ ସୁନାପରଦେହୀ, ଗୋଚର—ଜଣା, ପାଷାଣ—ପଥର ।

ପ୍ରକାର ଗୋ । ୭୦ । କେ ବୋଲୁଛୁ ରସିକ ରତନ ରଘୁବୀର । ବିଦେଶୀ ହୋଇଲେ ସୀତା ଘେନି ସଙ୍ଗତର ଯେ । ୭୧ । ଏଥିକାଳେ ସେ ପୁର ସୋପାନେ ବୀର ମିଳି । ମଦନ ସୁନ୍ଦର ବିଜେ କଲେ ଜଣେ ବୋଲି ଯେ ।୭୨। ଏ ବାଣୀ ଶ୍ରବଣେ ବିମ୍ବଓଷ୍ଠୀ ଉଠିବାକୁ । ମନ କରୁ ପ୍ରାଣନାଥ ଗମିଲ ସେଠାକୁ ଯେ ॥ ମଲି ମଲି ଅନାଯୃତ ହେଲି 'ଏହା' କଲି । ଲବଣୀ ପିତୁଳାକୁ ବିଷମ ଶରେ ଦେଲି ଯେ । ୭୪ । ଯେ କଲି ବିଚ୍ଛେଦ ବଜ୍ର ପଡ଼ୁ ତାର ଶିରେ । ଏତେ ବୋଲି କୋଳ କରି ତୋଳିଲି ସତ୍ତ୍ୱରେ ଯେ । ୭୫ । ହୃଦରେ ଲଗାଇଁ ଶୀତଳକୁ ଲଭି ବାଳା । ବିବେକ ପ୍ରସର କାନ୍ତ ମୁଖକୁ ଗୃହିଁଲ ଯେ । ୭୬ । ବେନି ନେତ୍ର ଚକୋର ମୁଖହିଁ ଚନ୍ଦ୍ର ସତ । ଆନନ୍ଦ ଅଶ୍ରୁଜଳରେ କଲି ଦ୍ରବୀଭୂତ ହେ । ୭୭ । ଶୋଭି ରତ୍ନମୟ ଭୂମି ବେନି ଅପଘନ । ଛଦ୍ମ ନୋହେ ସଦ୍ମ କଲେ ନୟନ ଖଞ୍ଜନ ଯେ । ୭୮ । ପଦ୍ମିନୀର ଅଲିଙ୍ଗନ ଦୋହଦ ହୋଇଲା । ପୁଂସ ତନୁ ନୀପଫୁଲ ପୁଲକାଇ ଦେଲା ଯେ । ୭୯ । ପ୍ରଥମା ପରାୟେ ବେନିଦଣ୍ଡ ସ୍ତମ୍ଭୀଭୂତ । ରାମଚନ୍ଦ୍ର ଚନ୍ତି ଉପଇନ୍ଦ୍ର କହେ ଗୀତ ଯେ । ୮୦ ।

---

୭୨ । ସୋପାନ—ପାହାଚ ।
୭୩ । ପ୍ରାଣନାଥ—ସ୍ୱାମୀ ।
୭୪ । ବିଷମରେ—କନ୍ଦର୍ପଶରରେ ।
୭୬ । ଶୀତଳ—ଥଣ୍ଡା, ବିବେକ ପ୍ରସର—ଜ୍ଞାନ ପାଇବା, ଚେତାହୋଇ ।
୭୭ । ଦ୍ରବୀଭୂତ—ତନ୍ତ୍ରାଇବା ।
୭୮ । ଅପଘନ—ଦେହ, ଛଦ୍ମ—ଛଳନା ।
୭୯ । ଦୋହଦ-ଅକାଳେ ଫୁଲ ଫୁଟିବା, ନୀପଫୁଲ--କଦମ୍ବଫୁଲ, ପଦ୍ମିନୀ ସ୍ତ୍ରୀ-ଲବଣ୍ୟବତୀ ଅଲିଙ୍ଗନ ହେତୁ ପୁନରାୟ ପୁଷ୍ପ ଫୁଟିଲା । ପୁରୁଷ କଦମ୍ବ ଫୁଲ ପରିହେଲା ଅର୍ଥାତ୍ ପୁରୁଷର ଲୋମ ଟାଙ୍କୁରି ଉଠିଲା ।

ଚନ୍ଦ୍ରଭାନୁ ଦେବକୁଣ୍ଡରେ ଦୁଷ୍ଟନାଶ ନିମନ୍ତେ ସ୍ଥାନାନ୍ତର ହୁଅନ୍ତେ ଲବଣ୍ୟବତୀ ଅଶନ ବସନ, ବେଶ ବିଳାସ-ଖାଦ୍ୟ, ପେୟ-ସୁଗନ୍ଧ ଶୀତଳ, ଗନ୍ଧ, ଚନ୍ଦନ ଇତ୍ୟାଦି ସମସ୍ତ ବିଳାସ ଛାଡ଼ି ଚନ୍ଦ୍ରଭାନୁ ଚିନ୍ତାରେ ଦିନକୁଦିନ କ୍ଷୀଣ ହୋଇବାରୁ ସଖୀମାନେ ନାନାପ୍ରକାର ଯତ୍ନ କରି କେବଳ ତାର ପ୍ରାଣ ରଖିଥିଲେ । ଚନ୍ଦ୍ରଭାନୁ ଏହି ସମୟରେ ପହଞ୍ଚି ସ୍ତ୍ରୀର ଅବସ୍ଥା ଦେଖି ତାକୁ କୋଳ କରନ୍ତେ ତାର ଚେତନା ଫେରିଲା ଓ ସେ କ୍ରମେ ସଚେତ ହେଲା ।

# ସପ୍ତଚତ୍ୱାରିଂଶ ଛାନ୍ଦ

( ବିଦେଶରେ ଚନ୍ଦ୍ରଭାନୁର ନିଜ ଦୁଃଖବର୍ଣ୍ଣନା ଓ ଖେଦ )

ରାଗ—ଖଣ୍ଡକାମୋଦୀ

ରମା ବସାଇ ଅଗେ ରସାଇ ଅନୁରାଗେ ଗୋଷ୍ଠୀ କରୁଥିଲୁ ପତି ଯେ । ବିଚ୍ଛେଦ ହେଲା ଦନ୍ତୀ କି ଦଣ୍ଡ ଫୁଲଧନ୍ୱୀ ଦେଲାଟି ଦିନ ରାତି ରେ । ପ୍ରାଣବନ୍ଧୁ । କେମନ୍ତେ ବଞ୍ଚିଥିଲୁ ରେ । ସ୍ୱପନେ ଦୁଃଖ ଦେଖିନାହୁଁ ଅଜନ୍ମ ସୁଖୀ ମୋ ଲାଗି ଦୁଃଖୀ ହେଲୁ ରେ । ୧ ।

ଯେଣିକି ଚାହେଁ ମୁହିଁ ସେ ଦିଗେ ଦିଶୁ ତୁହି ଯେମନ୍ତ ହସୁଥାଉ ରେ । ଅଜ୍ଞାଇ ଅଙ୍କରେ ବସିବା ପଲ୍ୟଙ୍କରେ ନ ଥିଲା ମନେ ଆଉ ରେ । ପ୍ରାଣବନ୍ଧୁ । ସର୍ବ ଲାବଣ୍ୟସିନ୍ଧୁ ରେ । ମୋର କି ଭାଗ୍ୟ ଥିଲା ଧାତା ତୋତେ ରଚିଲା ମଦନ ବନ୍ଧୁ ବନ୍ଧୁ ରେ । ୨ ।

ଯେଉଁ ନୟନଭଙ୍ଗୀ ଯୋଗୀନ୍ଦ୍ର ଯୋଗଭଙ୍ଗି ଅଙ୍ଗୀକାର କରନ୍ତି ରେ । ଭାବ ମ୍ନମର ତହିଁ ଅଶ୍ରୁ ଥିଲୁ ପୁରାଇ ଏ ଗୁଣ ହେବ ମୂର୍ଚ୍ଛି ରେ । ପ୍ରାଣବନ୍ଧୁ । ମଲାଟି ଏଡ଼େ କ୍ଷୀଣେ ରେ । ବଳୟୂ ଅଛୁ କରେ ତୋ ଓଣା ରତି କ୍ଷିରେ ଦେଉଛୁ ସ୍ନେହାପଣେ ରେ । ୩ ।

ଅବନୀରେ ଅଞ୍ଚଳ ପାତି ପରା ଚଞ୍ଚଳ ହୋଇ ଶୟନ କରୁ ରେ । ସେ କଥାମାନ ଗୁଣି ଗୁଣି କହୁଛୁ ପୁଣି ଧିକ ମୋ ଜୀଇବାରୁ ରେ । ପ୍ରାଣବନ୍ଧୁ । ଏ କଥା ଅଛୁ ହୁଡ଼ି ରେ । ତୋ ବିନୁ ଜୀଇବାର ଦୋଷକୁ କ୍ଷମା କର କହୁଛୁ କର ଯୋଡ଼ି ରେ । ୪ ।

କି ଦେଖିଲା ଏ ଅକ୍ଷି ଫୁଟି ନ ଯାଇ ସଖି ହୃଦ ଫାଟି ନ ଯାଇ ରେ । ମୃତ କରୀ ଦଶନ ପିତ୍ତଳା ପରସନ୍ନ ତୁ ପୁଣି ଅଛୁ ବହୁ ରେ । ପ୍ରାଣବନ୍ଧୁ । କାଳ କି ନ କରଇ ରେ । ସବୁ ସହଇ ଅନାୟୁତ ମୀନନୟନା ଯେନ ବିବେକୀ ତୁହି ରେ । ୫ ।

---

## ସପ୍ତଚତ୍ୱାରିଂଶ ଛାନ୍ଦ

୧ । ଅନୁରାଗ—ସ୍ନେହ, ଗୋଷ୍ଠୀ—ବିନୟ କଥା, ବିଚ୍ଛେଦ—ପୃଥକ ।

୨ । ଲାବଣ୍ୟ ସିନ୍ଧୁ—ଶୋଭା ସମୁଦ୍ର ।

୩ । ଯୋଗୀନ୍ଦ୍ର—ବଡ଼ ଋଷି, ବଳୟ—ଖଡ଼ୁ ।

୫ । କରୀ—ହାତୀ, ଦଶନ—ଦାନ୍ତ, ପରସନ୍ନ—ଟୋକ୍ଷଦେଖାଇବା ।

କେଡ଼େ ପ୍ରସନ୍ନମୁଖ ପଦ୍ମ ଶୀତମୟୂଖ ଦର୍ପଣ ଦର୍ପହାରି ରେ । ଚରଣ ପରଗୁର ପାଇଁ ନାଗସ୍ୱରର ହେଲୁ ତ ଏତେସର ରେ । ପ୍ରାଣବନ୍ଧୁ । ନାହିଁ ଲେଶ ହରଷ ରେ । ଲବ ଅନ୍ତର ସୁହା ନ ଯାଉଥିଲା ଅହା ପୂର୍ଣ୍ଣ ହେଲା ବରଷ ରେ । ୬ ।

ଭଲ ଧନୁ ବନ୍ଧନ କରି ନାହୁଁ ସମନ ଦେବାର ଥାଉଁ କେଶେ ରେ । ଲୁଚିଯାଇ ତୋ ଭ୍ରୂର କେବେ ଶୁଝି ନୋହୁବ ସହସ୍ରେ ଅଂଶୁ ଅଂଶେ ରେ । ପ୍ରାଣବନ୍ଧୁ । ମନେ କରୁଥାଇଁ ରେ । ଇନ୍ଦ୍ର ସମ୍ପତ୍ତି ଦେଲା ଦାରିଦ୍ର୍ୟ ହାନି କଲା କି ଅବିବେକି ବିଧି ରେ । ୭ ।

ପାଶେ ଥିଲା ଦିନରେ ମୋ ଭୋଜନ ଉତ୍ତାରେ ତୁହି ଭୋଜନ କରୁ ରେ । ଦୂରେ କପାଁ ଅହାର ନ କରିଥିବୁ ଦୂର ଜାଣିଲି ଦୁର୍ବଳରୁ ରେ । ପ୍ରାଣବନ୍ଧୁ । କେଉଁ ଧର୍ମେ ବର୍ତ୍ତିଲୁ ରେ । ପରାଣ ପ୍ରତିଆଶା ସତେ ଛାଡ଼ିଣ ଯୋଷା ମୋତେ ବୁଡ଼ାଇଥିଲୁ ରେ । ୮ ।

ଗରଲ ହୋଏ ହୃତ ଗେଗ ବଶେ ଯେମନ୍ତ ତୋ ରଷା ସେହି ଭାବ ରେ । ବରଷାକାଳେ ଘନଗର୍ଜ୍ଜନକୁ ବଞ୍ଚନ ମୋହହିଁ ହୋଇଥିବ ରେ । ପ୍ରାଣବନ୍ଧୁ । ନୟନେ ଅଶ୍ରୁ ପୁରି ରେ । ଶରଦ ଶଶଧର ନୋହୁଥିବ ତୋହର ଦରଶନ ଶର୍ବରୀ ରେ । ୯ ।

ବିରହଅଗ୍ନି ଜାତ ତୁହୁଁ ହୋଇ ସନ୍ତତ ଜାଣି ନ ଥିବୁ ଶୀତ ରେ । ଶୁଣି ବେଦନ ସ୍ୱନ ପିକ ହେବା ମଦନ ବଞ୍ଚାଇଲା ବସନ୍ତରେ । ପ୍ରାଣବନ୍ଧୁ । ନ ବଞ୍ଚାଇଲେ ତୋତେ ରେ । ସିଞ୍ଚିଲେ ମଧୁହାରୀ ମୋର ଧେନ ଗୁହାରି କହିତେ କୃପା ଚିତ୍ତେ ରେ । ୧୦ ।

ନ ଅସୁଥିବ ନିଦ ନିଶିରେ ଲଭି ଖେଦ ଚିତ୍ତେ ପଡ଼ି ମୋ ସ୍ନେହ ରେ । କି ବୋଲୁଥାଉ ମୋତେ ମନେ ମନେ ତୁ ସତେ ଅନ ଅଛୁଟି କହରେ । ପ୍ରାଣବନ୍ଧୁ । ଯାହା ବୋଲନ୍ତୁ ଜନ ରେ । ପ୍ରିୟାର ମୁଁ ତୋୟର ବାଲ୍ୟକାଳୁଁ ତୋହର ମୁହିଁଟି ଏକା ଧେନ ରେ । ୧୧ ।

---

୬ । ଶୀତମୟୂଖ—ଚନ୍ଦ୍ର, ଚରଣ—ଗୋଡ଼ପାଦ, ପରଗୁର—ଗୃକର ।

୭ । ସୁମନ—ଫୁଲ, ଅଂଶୁ—କିରଣ, ଅବିବେକି—ନିର୍ବୁଦ୍ଧିଆ ।

୮ । ଭୋଜନ—ଖାଇବା, ବର୍ତ୍ତିଲୁ—ବଞ୍ଚିଲୁ, ଯୋଷା—ସ୍ତ୍ରୀ ।

୯ । ଗରଲ—ବିଷ, ଘନ—ମେଘ, ଶଶଧର—ଚନ୍ଦ୍ର ।

୧୦ । ବେଦନ ଶବ୍ଦ—କାନ୍ଦିବା ଶବ୍ଦ, ମଧୁହାରୀ—ଶ୍ରୀକୃଷ୍ଣ ।

୧୧ । ଅନ—ଋଣ, ତୋୟର—ଗୃକର ।

ବୋଲିବାକୁ ନିଷ୍ଠୁର ଯୋଗ୍ୟ ନାହିଁ ମୋହର ମନକୁ କର ସାକ୍ଷୀ ରେ । ତୋତେ ଧିଅଇଁ ଯେତେ ଅକୁଳ ହୋଇ ଚତୁର ଜାଣୁ ଥିବୁ ଦେଖି ରେ । ପ୍ରାଣବନ୍ଧୁ । ଦୁଃଖକାଳେ ତୋହର ରେ । ସେବାକୁ ଅସି ନାହିଁ ଏଣୁ ଅପ୍ରାଧୀ ମୁହିଁ ବିଗୁର ଦଣ୍ଡ କର ରେ । ୧୨ ।

ଥାଉଁ ମୋର ଅପୂର୍ବ ଦେହ ବଳନ୍ତା ବତ ଭଲ ହେବାକୁ ସହ ରେ । ତେବେ ଦୂରେ ରହିଣ ମନ ନୟନ ପ୍ରାଣ ତୋହର ପାଶେ ଥାଇ ରେ । ପ୍ରାଣବନ୍ଧୁ । ଏବେ ସେ ଅନୁଭବ ରେ । ବିପତ୍ତ ବିଚ୍ଛେଦରୁ ବନ୍ଧ ହୋଇ ରଖ୍ୟେଚ୍ଛ ଧାତା ବହୁ ନ ଥିବ ରେ । ୧୩ ।

ଦେହ ଉପରେ ମନ ପ୍ରଭୁ ପ୍ରମାଣ ଧନ ମନର ପ୍ରଭୁ ପ୍ରୀତି ରେ । ପ୍ରୀତିର ପ୍ରଭୁ ନାହିଁ ତାଙ୍କ ପୁଣି ପାସୋର କେହୁ ଧରବ ଧୃତ ରେ । ପ୍ରାଣବନ୍ଧୁ । ପୁଣି ଅବଗ୍ରା ମୁହିଁ ରେ । ମନକୁ ଅନୁରୂପେ ଯୁବତୀ ମିଳେ ତପେ ଏଣୁ ଦୁର୍ଲ୍ଲଭ କହୁ ରେ । ୧୪ ।

ଯେଉଁ ରୂପ ଅନାଇଁ ପଶୁ ପାଷାଣ ଦୁଇ ବଶ ତରଳ ହେବେ ରେ । ପୁରୁଷ ମଧ୍ୟେ ସାର ଲୋକ ବୋଲନ୍ତି ମାର ଶବ୍ଦ ମଣୁଛୁ ଏବେ ରେ । ପ୍ରାଣବନ୍ଧୁ । ତୋହ ସମ୍ମୁଖେ ରହୁ ରେ । ପ୍ରହାର କଲା ଶର ସେ ଏଣ୍ଡିଙ୍କ ନିଷ୍ଠୁର ହାତ ଚଳିଲା କେହି ରେ । ୧୫ ।

ଦେହ ମନ ଭିତର କ୍ଷଣେ ରହୁ ମାତର ଏମନ୍ତ ପାଞ୍ଚେ ନିତି ରେ । ବେଗେ ଦେବାକୁ ବାତେ ସ୍ତୁତି କରଇ କେତେ ପାଶେ ଅସିବା ମତି ରେ । ପ୍ରାଣବନ୍ଧୁ । ତୋ ରୂପ ପଟେ ଲେଖି ରେ । ପ୍ରାତୁଁ ଉଠି ଅନାଇଁ ନାମ ତୋର ଜପଇଁ ଗତି ନ ଥାଇ ସଖି ରେ । ୧୬ ।

---

୧୨ । ଯୋଗ—ଦୁଃଖ, ଧିଅଇ—ଜ୍ୱଳି ।

୧୪ । ଧୃତ—ଧୈର୍ଯ୍ୟ, ଅନୁରୂପେ—ସମାନରେ, ଦୁର୍ଲ୍ଲଭ—କଷ୍ଟ ।

୧୫ । ପାଷାଣ—ପଥର, ନିଷ୍ଠୁର—ନିର୍ଦ୍ଦୟ ।

ଲୋକେ ମନେ କରନ୍ତି ପୁରୁଷ ମଧ୍ୟରେ କନ୍ଦର୍ପ ସୁନ୍ଦର ଓ ଶ୍ରେଷ୍ଠ ବୋଲି । କିନ୍ତୁ ମୁଁ ମନେ କରୁଛି ସେ ତୋର ଅତି ସୁନ୍ଦର ମୁହଁ ଦେଖି ପଥର ପାଣି ଓ ପଶୁ ମଧ୍ୟ ବଶ ହେବ । ସେ ଏ ମୁହଁ ଦେଖି ତୋତେ ଶର ମାରିଲା ତେଣୁ ସେ ବଡ଼ ହୀନ ଅଟେ ।

୧୬ । ବାତେ—ପବନକୁ, ପ୍ରାତୁଁ—ସକାଳୁ ।

ମୁଁ ହେବାର ଏମନ୍ତ କେଉଁ ଅଧିକ ମିଛ ଥାଇ ତୋ ଅବଧାନେ ରେ । ଏ କଥା ବଡ଼ ସିନା ମୋତେ ଗୁଣି ବେଦନା ସହୁ ତୁ ଘନେ ଘନେ ରେ । ପ୍ରାଣବନ୍ଧୁ । ତୋତେ ତୁ ପଚାରନ୍ତ ରେ । ମୋର ଅଶେଷ ତପ ପୁଣ୍ୟ ନାରୀ ସ୍ୱରୂପ ହୋଇଛୁ ସମାଦର ରେ । ୧୭ ।

ଯେ ଜନ ନାରୀ ହତେ ରହେ ପୁଣି ଜୀବନେ ଧନମାନଙ୍କୁ ବଞ୍ଚେ ରେ । ଇନ୍ଦ୍ରକରେ ଯେ ଥାଇ ସେ କୁଳଶ ନୁହଇ ସେହି କୁଳଶ ନଷ୍ଟେ ରେ । ପ୍ରାଣବନ୍ଧୁ । ନାରୀ ପୁରୁଷ ଦୁଇ ରେ । ଯେସନ ଏକ ଜୀବନ କେବଳ ତନୁ ଭିନ୍ନ ଯୋଗେ ଏକତ୍ୱ ହୋଇ ରେ । ୧୮ ।

ନବ ରସରେ ସାର ଅଦ୍ୟେ ଲେଖି ଶୃଙ୍ଗାର ରତି ପରମ ସୁଖ ରେ । ଯିବା ପାଇଁ ପାସୋର ବଲ୍ଲଭୀ ନାମ ସାର ଦେଇଛୁ ଶାସ୍ତ୍ରେ ଦେଖ ରେ । ପ୍ରାଣବନ୍ଧୁ । ସେ ନାକ ମୂର୍ଚ୍ଛିବାର ରେ । ଥିଲ୍ କେଉଁ ଦୁର୍ଦ୍ଦଶା ରଥାଙ୍ଗ ପ୍ରାୟୁ ନିଶା ନେବାକୁ ତୋର ମୋର ରେ । ୧୯ ।

ଦରଶନରୁ ଦୂର ହେଲନି ପାଇବାର ମୋର ଅଶେଷ ବ୍ୟଥା ରେ । ଭିନ୍ନ ନୋହେ ଏ ଖେଦ ତୋର ମୋର ବିଚ୍ଛେଦ ହୋଇ ରହିଲ କଥା ରେ । ପ୍ରାଣବନ୍ଧୁ । କରବେ ପରି ହାସ୍ୟରେ । ରସିକେ ପ୍ରିୟାହୀନେ ଏ ରହିଲ ଜୀବନେ ଏଥି ଉପାୟ କସ ରେ । ୨୦ ।

ବଲ୍ଲଭ ମୃଦୁବାଣୀ ଶୁଣି ତରୁଣୀମଣି ଧୀରେ କହେ କି ସ୍ନେହା ସେ । ସେ ଦୁଃଖ ପୋଡ଼ ଯାଉ ଶଙ୍କ ହିଁ ତା ନ ପାଉ ଚିତ୍ତୁଁ ପାସୋର ତାହା ଯେ । ପ୍ରାଣବନ୍ଧୁ । ଚିତ୍ତକୁ ଭ୍ରାନ୍ତ ପରି ସେ । ଏମନ୍ତ ବୋଲି ହସି ବକ୍ଷେ ଗ୍ରହିଲ ରସି ରମଣୀ-ବନ୍ଧୁହୀର ସେ । ୨୧ ।

---

୧୭ । ଅବଧାନ—ଜାଣିବା, ବେଦନା—କଷ୍ଟ ।

୧୮ । ନାରୀହତେ—ସ୍ତ୍ରୀ ମରିବାରୁ, ବିଚ୍ଛେଦ ହେବାରୁ ।

୧୯ । ନବରସ—ନଅଟି ରସ ମଧ୍ୟରେ ପ୍ରଥମରେ ଶୃଙ୍ଗାର କି ଆଦିରସକୁ ଲେଖନ୍ତି ।

କନ୍ଦର୍ପ କାଳେ ଭୁଲିଯିବ ବୋଲି ତା ବଲ୍ଲଭୀ ଯେ ସ୍ତ୍ରୀକୁ ରତିନାମ ଦେଇଛୁ, ରଥାଙ୍ଗ—ଚକୁଆ ଚକୋଇ ରାମଙ୍କ ଶାପରେ ଏକାଠି ରହନ୍ତି ନାହିଁ ।

୨୦ । ପ୍ରିୟାହୀନ—ସ୍ତ୍ରୀ ହୀନ ବା ସ୍ତ୍ରୀ ବିଚ୍ଛେଦ ।

୨୧ । ଚିତ୍ତୁ—ମନରୁ ।

ତୁହେଁ ତୁହିଙ୍କୁ ବେଶ କରିବ ରେ ଆଳସ ଏମନ୍ତେ ଦିନ ଶେଷ ଯେ । କାମବିଜୟିକାଳ ହେଲାଟି ଯୁବାକୁଳ ଶୁଭିଲା ଦର ଘୋଷ ଯେ । ଶଠଭୃଙ୍ଗ । ଉଠିଲେ ପଦ୍ମ ତେଜିକି ଯେ । ଛାଡ଼ି ଏକ ସୁହାଗ ଅରବେ ଅନୁରାଗ ପ୍ରାୟେ କୁମୁଦ ଭଜି ଯେ ।୨୨।

ଅଭିସାରିକା ଦୀପ ଫଣୀ ମଣୀ କଳାପ ତେଜିଲେ ଶ୍ୱାସ ଯେ । ଧରି ପଞ୍ଚଲି ଗେହ ପ୍ରାୟେ ଗଣିକାବର ମନେ ଜନ୍ମିବ ହାସ ଯେ । ଦ୍ୱିଜମାନେ । ସନ୍ଧ୍ୟା ବନ୍ଦନ ସାଧି ଯେ । ସାରଣା କଲେ ଧନ ଧନୀଅଳ ରାଜନ ପରିସ୍ୱ ବାରବଧୂ ଯେ । ୨୩ ।

ନବରସେ ରସିକ ରାମାମଣି ମାଣିକ୍ୟ ଭୋଜନେ ହେଲେ ତୋଷ ଯେ । ଉହିଁ ଉତ୍ତରେ ହାସଗର୍ଭ ବଚନ ରସ୍ତବଶରେ ପରକାଶ ଯେ । କାନ୍ତାକାନ୍ତ । ସଉଧେ ପରବେଶ ଯେ । ଦିବ୍ୟ ପର୍ଯ୍ୟଙ୍କ ଅଙ୍କେ ପ୍ରମୋଦରେ ନିଃଶଙ୍କେ ପ୍ରକାଶ କଲେ ରସ ଯେ ।୨୪।

ଷାଠିଏ ଗୃହ ବନ୍ଧ ବଗୃହ ହେଲେ ବୋଧ ଛଇଲ ରାମା ପୁଂସ ଯେ । ନିଦ୍ରାନାଶେ ସ୍ୱପନ ବିପତ୍ତି ଯଥା ଭିନ୍ନ ତଥା ବିସ୍ମର କ୍ଲେଶ ଯେ । ନିଶାପ୍ରାନ୍ତ । ପୂର୍ବେ ସବିତା ସ୍ଥିତ ଯେ । ଦିନ ଧରିଲ ପାଠଛନ୍ଦ ହୋଇଲା ରାଟ ଏ କଥା ଅଦଭୁତ ଯେ ।୨୫।

---

୨୨ । କାମବିଜୟି କାଳ—କାମ ଅସିବା ସମୟ ଅର୍ଥାତ୍ ରାତି,ଦର—ଶଙ୍ଖ, ଶଠ—ଠକ, ଅନୁରାଗ—ସ୍ନେହ ।

୨୩ । ଫଣୀ—ସାପ, ମଣିକଳାପ—ମଣିସବୁ, ଗଣିକାବର—କପଟୀ ସ୍ତ୍ରୀ ହାସ—ଭୟ, ସାରଣ—ଅସୁଲ, ଧନୀଅଳ—ଧନୀ, ବାରବଧୂ—ବେଶ୍ୟା । ସାପ ତାର ମଣି ତେଜକୁ ଦେଖି କଏ ବା ଲୋକ ଅସିଲା ମନେ କରି ପରି କାପଟୀ ସ୍ତ୍ରୀ ଗୋପନରେ ଯେଉଁ ପୁରୁଷ ପାଖକୁ ଯାଇ କନ୍‌କନ୍ ହୁଏ, ପ୍ରତାପୀ ରାଜାକୁ ବିନା ଅପତ୍ତିରେ କର ଦେଲା ପରି ଗୀଠ ପୁରୁଷ ବେଶ୍ୟାକୁ ଧନ ଦିଅନ୍ତି ।

୨୪ । ସଉଧେ—କୋଠା ଘରେ, ପର୍ଯ୍ୟଙ୍କ—ପଲଙ୍କ, ପ୍ରମୋଦରେ—ଆନନ୍ଦରେ, ନିଃଶଙ୍କେ—ନିର୍ଭୟେ ।

୨୫ । ସବିତା—ସୂର୍ଯ୍ୟ, ରାଟ—ରାଜା, ନିଶାପ୍ରାନ୍ତ—ଶେଷରାତି । ସ୍ୱପ୍ନରେ ଦେଖିବା ବିପଦ ନିଦପରେ ଭୁଲିଯାନ୍ତି, ସେହିପରି ଆନନ୍ଦରେ ମତ୍ତ ହେଲେ ଦୁଃଖ ମନେ ପଡ଼େ ନାହିଁ ।

ଏଣୁ କି ପାଇ ଲଜ୍ଜା ଚରମାଚଳେ ରାଜା ଲୁଚିଲେ ଅତିବେଗେ ସେ ।
ତାଙ୍କ ତା ଦାର ଯେଣୁ ମଳିନ ବେଶ ତେଣୁ କୌଶିକ ମନ୍ତ୍ରୀରାଗେ ସେ ।
ସେହି କାଳେ । ଧନ ଜଗତ୍ କାକ ଯେ । ଗଳା ରେ ଧର ମାର କହିଲେ
ନିରନ୍ତର ଜଗେଇ ଯା ଦେଲେ ଡାକ ସେ ।୨୬।

ଏକାଳେ ତେଜି ଶଯ୍ୟା ଦାଢ଼ି ଲଗିକି ରାଜା ଅସେ ମନ୍ତ୍ରୀଜ ମିଳି ଯେ ।
ଅର୍ଦ୍ଧ୍ୟ ପ୍ରାନ୍ତ ପର୍ଯ୍ୟନ୍ତେ ସର୍ବ ବନ୍ଧୁଁ ପୁରତେ ତୋଷ ସିନ୍ଧୁ ଉଚ୍ଛୁଳି ଯେ ।
ନୃପତିର । ନଗର ଜନେ ସୁଖୀ ଯେ । ମୃଦୁସୁଲରେ ଶୁଣି ଅନନ୍ଦ ହେଲେ
ରାଣୀ ସୁଫଳ କଲେ ଅଖି ଯେ ।୨୭।

ଭ୍ରମର କୀର୍ତ୍ତି ସ୍ୱଚ୍ଛ ହୋଇ ପ୍ରକଟ ମହୀ ମଧ୍ୟଅଦ୍ଧ ଦେଶରେ ଯେ ।
ମିତ୍ର ନୃପତି ଯେତେ ହରଷ ହେଲେ ଶତ୍ରୁ ଭୟ ଲଭିଲେ ପରେ ଯେ ।
ସାଧୁଜନେ । ଶୁଣ ଏ ଛାନ୍ଦ ଶେଷ ଯେ । ଶରଣ ରାମଚନ୍ଦ୍ର କହଇ ଉପଇନ୍ଦ୍ର
ଗାରବର ଏ ରସ ହେ ।୨୮।

---

## ଅଷ୍ଟଚତ୍ୱାରିଂଶ ଛାନ୍ଦ

(ଲବଣ୍ୟବତୀ ଓ ଚନ୍ଦ୍ରଭାନୁର ରାଜ ଅଭିଷେକ ଓ ରାଜ୍ୟ ଶାସନ ପ୍ରଣାଳୀ)

ରାଗ—ମଙ୍ଗଳ

ମନୋହର ଉଅଇ ଜନଙ୍କ ରାଜ୍ୟେ—ବାଣୀରେ
ଶୁଣ ହେ ଚରିତ ଅବଶେଷରେ । କର୍ଣ୍ଣାଟ ମହୀପତି ତୋଷରେ ।୧।

---

୨୬ । ଚରମାଚଳ—ଅସ୍ତଗିରି, ଦାର—ସ୍ତ୍ରୀ, କୌଶିକ—ପେଚା ।
୨୭ । ଦାଢ଼ିଲଗି—ଦାନ୍ତଘଷା, ପୁରତେ—ଆଗରେ ।
୨୮ । କୀର୍ତ୍ତି—ଯଶ, ପ୍ରକଟ—ବିଖ୍ୟାତ, ପରେ—ଶତ୍ରୁମାନେ ।

ଚନ୍ଦ୍ରଭାନୁ ବିଦେଶରେ ଯେସବୁ କଷ୍ଟ ସହି ଦୁଷ୍ଟମାନଙ୍କ ସଂହାର କରି ନିଜ ଦେଶକୁ ଫେରିବା ପର୍ଯ୍ୟନ୍ତ ସମସ୍ତ ଦୁଃଖକଷ୍ଟ ଲବଣ୍ୟବତୀ ଆଗରେ କହନ୍ତେ, ଲବଣ୍ୟବତୀ ଶୁଣି ବଡ଼ ଅନୁତପ୍ତ ହେଲା ଓ ପରସ୍ପର ଅନନ୍ଦରେ ପ୍ରେମାଳାପରେ ମାତି ସମୟ କଟାଇଲେ, ରାଣୀ ଏହା ଶୁଣି ଅତ୍ୟନ୍ତ ସନ୍ତୁଷ୍ଟ ହେଲେ । ମିତ୍ର ରାଜାଙ୍କର ଅନନ୍ଦ ବଢ଼ିଲା, ଶତ୍ରୁରାଜାଏ ଭୟ ବିହ୍ୱଳ ହେଲେ ।

---

## ଅଷ୍ଟଚତ୍ୱାରିଂଶ ଛାନ୍ଦ

୧ । ମହୀପତି—ରାଜା ।

ଦାତୃବ ପିଶିତ ଦାନ ପ୍ରେତକୁ । ଦେବାର ଅଣି ଚଷ ଚଉକୁ ।୨।
ଏକାଳେ ଯଶରେ ମଣ୍ଡିଲା ଧରା । ଶ୍ରୀରାମ ପାର୍ଶ୍ୱେ ମାରୁତ ପରା ।୩।
ଏଣୁ ଅନନ୍ଦ ହୋଇ ଦଣ୍ଡଧର । ସଚିବ ସଙ୍ଗେ କର ବିଗୁର ।୪।
ନୃପତି ପଦବୀ ଦେଇଣ ପୃମେ । ଚଳିଲେ ପୁରୁଷୋତ୍ତମ ଯେମେ ।୫।
ଯାହା ସମାନରେ ଅସମ ରତି । ହେଲାରୁ ଅଳପକୁ କହନ୍ତି ।୬।
ପଟ୍ଟମହିଷୀ ସେ ଲାବଣ୍ୟବତୀ । ହୋଇଲା ଗୁଣନିଧାନ ମନ୍ତ୍ରୀ ।୭।
ବସନ୍ତକ ହେଲା ଜ୍ୟୋତିଷରାଜ । ପୁରୋଧା ଚତୁର୍ଦ୍ଧ୍ୱଜ ଅଗ୍ରର୍ଜ ।୮।
ସେ ନରେଶ୍ୱର ପାଳିବାରେ ଦେଶ । ନୋହିଲା ଅତି ମିଥ୍ୟାବକାଶ ।୯।
ଦିବସ ନାମରେ ଦିନ ରହିଲା । ଦୀନକୁ ଦଣ୍ଡ ଅଶ୍ରଯ୍ୟ କଲା ।୧୦।
ଭସ୍ମ ତିଆରେ ମାଷ ଶୋଭା ବହି । ଯାଜ୍ଞିକ ଦ୍ୱିଜ ଲଲାଟେ ତହିଁ ।୧୧।
ଅଶ୍ରେ କଲା ମନ୍ଦ ମଳୟାନିଳେ । କଳଙ୍କ ଯାଇ ଚନ୍ଦ୍ରମଣ୍ଡଳେ ।୧୨।
କୁଟିଳ ନଦୀ ବୀଚିରେ ଲୁଚିଲେ । ବିଟପୀ ବୃକ୍ଷ ହୋଇ ବଞ୍ଚିଲେ ।୧୩।
କଳୀ ସ୍ଥାନ କଲା ପୁଷ୍ପବଲ୍ଲୀକି । ମଧୁପ ପଦ ଶୋଭା ଅଳକି ।୧୪।

---

୨। ପିଶିତ—ମାଂସ, ଚଷ—ଅଷ୍ଟର୍ଦ୍ଧ ।
୩। ଧରା—ପୃଥିବୀ, ମାରୁତ—ହନୁମାନ ।
୪। ଦଣ୍ଡଧର—ରାଜା, ସଚିବ—ମନ୍ତ୍ରୀ ।
୫। ନୃପତି ପଦବୀ—ରାଜଗାଦୀ, ରାଜ ଉପାଧି ।
୬। ରତି—ଊଣା, ଅସମ—ନ୍ୟୂନ ।
୭। ପଟ୍ଟମହିଷୀ—ପାଟରାଣୀ ।
୮। ପୁରୋଧା—ପୁରୋହିତ ।
୯। ନରେଶ୍ୱର—ରାଜା, ମିଥ୍ୟାବକାଶ—ମିଛ କହିବା ।
୧୦। ଦୀନ—ଦୁଃଖୀ, ଦଣ୍ଡ—ସଜା ।
୧୧। ଭସ୍ମ—ନଷ୍ଟ, ଯଜ୍ଞ କରିବା ବ୍ରାହ୍ମଣଙ୍କ ମୁଣ୍ଡରେ ଭସ୍ମ ରହିଲା, ଅନ୍ୟ କେହି ନଷ୍ଟ ହେଲେ ନାହିଁ ।
୧୨। ମଳୟାନିଳ—ବସନ୍ତ ପବନ ବା ସୁଗନ୍ଧ ପବନ, ମନ୍ଦ—ଧୀର, ସେଠାରେ ମନ୍ଦ କିଛି ରହିଲା ନାହିଁ କେବଳ ବସନ୍ତ ପବନରେ ଧୀର ଗୁଣ ରହିଲା ।
୧୩। କୁଟିଳ—ଦୁଷ୍ଟଲୋକ, ବୀଚି—ଲହରୀ, ବିଟପୀ—ଅସତୀ, ଗଛ, ବୃକ୍ଷ—ଗଛ ।
୧୪। କଳୀ—ଫୁଲକଢ଼ି, କଳି—କଳିଅ କରିବା, ଅନୁମାନ କର ।

ଶରଣ କଲା ବୈଦ୍ୟକୁ ମାରଣ । ଇନ୍ଧନେ ଦେଖାଦେଲା ଦାରଣ ।୧୫।
ରହିଲା କୁଳ ଲଙ୍ଘନ ସରତେ । ଶୁଣ୍ଡରେ ଗ୍ରେର ଶବଦ ସତେ ।୧୬।
ବିଷ ଭକ୍ଷଣ ହଂସେ ରହେ ଏକା । ସ୍ତନରେ କରପୀଡ଼ା ଅଶଙ୍କା ।୧୭।
ବନ୍ଧନ ରହିଲା ବାହୁରେ ମାତ୍ର । ମୃଗୟା ଯହିଁ ହୋଇଲା ଚତ୍ର ।୧୮।
ରଣନପୂରେ ରହିଲେ ପ୍ରମୋଦେ । ନାଗର କଟି କଙ୍କିଣି ନାଦେ ।୧୯।
କେବଳ ମଦନ ବଇର ପଦେ । ପାଞ୍ଚଶ ତାଙ୍କୁ ଜଣିବା ବାଦେ ।୨୦।
ନ୍ୟାସ୍ଯବଳ ରାଜା ଅଗ ପଦାତ । ଦୁର୍ବଳ ଶଙ୍କା ତହିଁରେ ସ୍ଥିତ ।୨୧।
ଜୀତହୋଇ ଲୋଭ ପ୍ରେମଧନରେ । ଜଞ୍ଜାଳ ରହୁ ତନ ଦାନରେ ।୨୨।
ନୀବ ମୋକ୍ଷକାଳେ ଜମ୍ବୁକେ ନାହିଁ । ମାଗିବା ଦ୍ରବ୍ୟ ଚୁମ୍ବନ ଯହିଁ ।୨୩।
ଲାଳସ ହୋଇଣ ପରସ୍ତ୍ରୀରେ । ଗୃହିଁବା ରହେ ଚନ୍ଦ ନାରୀରେ ।୨୪।
ନ ଗ୍ଣଳା ପାଙ୍କ ପଣା ସାରକୁ । ବିମୁଖ କର୍ଣ୍ଣେ ଜପବାରକୁ ।୨୫।
ଶୁଭ ଶକୁନ ଚରଣରେ ଦେଖି । ଶିକୁଳା ପର ଶାଙ୍କୁଳୀ ଯୋଖି ।୨୬।
କାରା ହୋଇ ଯହିଁ ପଞ୍ଜରା ଅଛୁ । ଭଉକ ଏକା ଗୃହ ଧରଛୁ ୨୭।

---

୧୫ । ମାରଣ—ଲୋକଙ୍କୁ ମାରବା, ଔଷଧକୁ ଜାରଣ କରବା, ଦାରଣ—କଟିବା, ନ ମାରବା, ଇନ୍ଧନ—ଜାଳକାଠ ।

୧୬ । ଲଙ୍ଘନ—ନଈକୂଳକୁ ଡେଇଁବା, କୁଳ ଲଙ୍ଘନ—ବଂଶ ବୁଡ଼େଇବା, ସରତ—ନଈ, ଶୁଣ୍ଡରେ—କାନରେ ।

୧୭ । ବିଷ ଭକ୍ଷଣ—ବିଷ ଖାଇବା, ପଦ୍ମନାଡ଼ ଖାଇବା, କରପୀଡ଼ା—ଗୃପୁଡ଼ା ମାରବା, ଘଷିବା, ଖଜଣାରେ କଷ୍ଟ ।

୧୯ । ରଣନପୂରେ—ଯୁଦ୍ଧ କରବା ଲୋକ, କଙ୍କିଣି—କଟିର ଗହଣା, ପ୍ରମୋଦେ—ଆନନ୍ଦରେ, ନାଦେ—ଶବ୍ଦରେ ।

୨୦ । ବଇର—ଶତ୍ରୁ, ବାଦେ—ବିପକ୍ଷଭାବେ, କଳହରେ ।

୨୧ । ପଦାତ—ପାଇକ ସୈନ୍ୟ, ରାଜାକୁ ପାଇକ ଭୟ କରେ; ମାତ୍ର ଏଠାରେ ଭୟ ନାହିଁ ।

୨୩ । ନୀବମୋକ୍ଷ—ଗୋସଣି ଖୋଲିବା ।

୨୪ । ଲାଳସ—ଇଚ୍ଛା, ଚନ୍ଦରେ—ଛନ୍ଦରେ ।

୨୫ । କର୍ଣ୍ଣେଜପ—ଖଚୁଆ ବା କାନକୁହା ।

୨୬ । ଶକୁନ—ଶାଗୁଣା, ଶାଙ୍କୁଳ—ବେଡ଼ୀ ।

୨୭ । କାରା—ବନ୍ଦଘର, ପିଞ୍ଜରା, ଭଉ—ଡାକୁ, ଭୀତ—ଭୟ ।

ବନ୍ଦୀ ଯହିଁ କୀର୍ତ୍ତି ବନ୍ଦନ କର । ତାହିଁକି ଜଣାଯିବ ଏମାନ ।୨୮।
ଭରମ ହୋଇଛି ଶୁଦ୍ଧ ସୁବର୍ଣ୍ଣ । ଭୂତହିଁ ପଞ୍ଚ ପ୍ରକାରେ ଘେନ ।୨୯।
କୁଣ୍ଡ ଦେଖା ଦୁର୍ଗୋତ୍ସବେ ସହଜେ । ଗୁଡ଼ରୁ ଖଣ୍ଡ ମାତ୍ର ଉପୁଜେ ।୩୦।
ପରାପର ଭାବ ଏକ ପ୍ରକାର । କରନ୍ତି ଯେଉଁ ନର ଈଶ୍ୱର ।୩୧।
ଚନ୍ଦ୍ର ସୂର୍ଯ୍ୟ ତ୍ରାସ ଶିରେ ସଜ୍ଜିତ । ସର୍ବଦା କଞ୍ଚୁକରେ ବେଷ୍ଟିତ ।୩୨।
ସଘନ ପୃଥୁ କାର୍ତ୍ତିସ୍ୱର ପାତ୍ର । ରଜନୀକରେ ଭୂଷିତ ଗାତ୍ର ।୩୩।
ମହିଷୀ ସଙ୍ଗେ ନଗରେ ଚଳସି । କେବଳ ଜନ ମନକୁ ତୋଷି ।୩୪।
ମର୍ତ୍ତ୍ୟେ ତ ଏହାର ଅସାଧ୍ୟ ନାହିଁ । ସ୍ୱର୍ଗେ ବା କଟକାଇ କରାଇ ।୩୫।
ନିତ ଦେବାର୍ଚ୍ଚନ ସରବାଯାଏ । କରଇ ମେରୁ ଦାନକୁ ଭୟେ ।୩୬।
ବ୍ରହ୍ମା ବୋଧ ଯହୁଁ ଦେବ ଶାସନ । ସେ କାହିଁ ଭାଙ୍ଗିଦେବ ଭବନ ।୩୭।
ହୟ ଆରୋହିଲେ ଯେଉଁ ନୃପତି । ଲଭଇ ହରିହୟ ଏ ଭ୍ରାନ୍ତି ।୩୮।
ବଳୀ ଯେବେ ତୁମ୍ଭେ ବଳକୁ ମାର । କହିବା ଜୀବ କହେ ବାଗୁର ।୩୯।

---

୨୮ । ବନ୍ଦୀ—ଭାଟ, ଅଟକ ହୋଇଥିବା ଲୋକ ।
୨୯ । ଭରମ—ସୁନା, ଭୁଲିଯିବା, ଭୂତ—ପଞ୍ଚଭୂତ ଅର୍ଥାତ୍ ପୃଥ୍ୱୀ, ଜଳ, ଅଗ୍ନି, ପବନ ଓ ଆକାଶ ।
୩୦ । କୁଣ୍ଡ—ଅଣବାରୁଅ, ମାଟିକୁଣ୍ଡ ।
୩୧ । ନରେଶ୍ୱର—ରାଜା, ନର—ଲୋକ, ଈଶ୍ୱର—ମହାଦେବ ।
୩୨ । ତ୍ରାସ—ଭୟ, ଶିରେ—ମୁଣ୍ଡରେ, ସଜ୍ଜିତ—ଶୋଭିତ, କଞ୍ଚୁକ—ସାପ, ନଗର ରକ୍ଷକ, ବେଷ୍ଟିତ—ଆବୃତ, ସଘନ—ବଳିଷ୍ଠ, ପୃଥୁ—ମୋଟା ।
୩୩ । କାର୍ତ୍ତିସ୍ୱର—ସୁନାର ରୂପ, ରଜନୀକର—କର୍ପୂର ।
୩୪ । ମହିଷୀ—ପାଟରାଣୀ, ଜନମନ—ଲୋକମାନଙ୍କ ମନ ।
୩୫ । ମର୍ତ୍ତ୍ୟ—ପୃଥିବୀରେ, କଟକାଇ—ଅଭିଯାନ ।
୩୬ । ଦେବାର୍ଚ୍ଚନ—ଦେବପୂଜା, ମେରୁଦାନ—ମେରୁ ଯେ ସୁନାପର୍ବତ ଏଠାରେ ସୁନା ଦାନ ।
୩୭ । ଦେବଶାସନ—ଦେବତାମାନଙ୍କୁ ରକ୍ଷା କରିବା, ଭବନ—ଗୃହ, ଏଠାରେ ଦେବତା ଗୃହ ଅର୍ଥାତ୍ ମେରୁ ।
୩୮ । ହୟ—ଘୋଡ଼ା, ଆରୋହିଲେ—ଚଢ଼ିଲେ, ନୃପତି—ରାଜା, ହରି-ହୟ—ଗରୁଡ଼ ।
୩୯ । ବଳୀ—ଯୋଦ୍ଧା ଓ ବଳୁଆ ।

| | | |
|---|---|---|
| ଅଶ୍ୱଖୁର ରେଣୁ ଉଡ଼ିବା ଗୁହିଁ | ପୋତିବ ମୋତେ ସାଗର ଯାହିଁ | ୪୦ |
| ଧାତା ଭୁଲ୍‌ ଯହୁଁ ରତନାକର | ବୋଇଲ୍‌ ଥାଇ ଏହା ଭଣ୍ଡାର | ୪୧ |
| ସାର୍ବଭୌମପଦ କାର ବହିଲ | ଇତ୍ତର ଦନ୍ତୀ ଭସ୍ମ ପାଇଲ | ୪୨ |
| ମୁଁ ନୁହଇ ବୋଲି ଘୁଞ୍ଚିଲ ରଞ୍ଚ | ବରଷାକାଳେ ସେ ଘଡ଼ଘଡ଼ି | ୪୩ |
| ହୋଇଲ ସେ ରାଜା ଏମନ୍ତ ତ୍ୟାଗୀ | ଜାଣିଲେନାହିଁ ଯାଚକେ ମାଗି | ୪୪ |
| କେ ଦିବ କଳ୍ପତରୁ ସନ୍ନିଧାନ | କାମନା ହେଲା ଉତ୍ତରୁ ପୂର୍ଣ୍ଣ | ୪୫ |
| ଜଇ ନୋହୁଥିଲେ ପଲ୍ଲବମାନ | କରନ୍ତେ ଅବା ମୃଗ ଅଶନ | ୪୬ |
| ମିଳନ୍ତେ ଫଳ ଥିଲେ ପକ୍ଷୀଗଣ | ବ୍ୟର୍ଥ ହେଲା ତା ଦାତାପଣ | ୪୭ |
| ପ୍ରତାପ ନାସିଲ ବଡ଼ବାନଳେ | ପଶିଲା ଯାଇଁ ସମୁଦ୍ର ଜଳେ | ୪୮ |
| କେ ଦେଖିବ ତାକୁ ଯେ ଲଚଥିଛୁ | ହୃଦୟ ସନ୍ତାପ ତା ଜଳୁଅଛି | ୪୯ |
| ଯଶକୁ ହାରଣି କୁମୁଦ ବନ୍ଧୁ | ହୋଇଲେ ପରସ୍ପରରେ ବନ୍ଧୁ | ୫୦ |
| ଅଳି କଳଙ୍କ କାଳିକା ଧଇଲେ | ଗଙ୍ଗାହିଁ ଅଙ୍କେ ପଙ୍କକୁ ବହିଲେ | ୫୧ |
| ହର ବହିଲେ ଗଙ୍ଗା ଚନ୍ଦ୍ରକୁ | ପ୍ରଭବ କୀର୍ତ୍ତି କଲାବେଳକୁ | ୫୨ |

---

୪୦ । ଅଶ୍ୱଖୁର—ଘୋଡ଼ା ଗୋଡ଼ ଖୁରା ।

୪୧ । ସାଗର—ସମୁଦ୍ର, ଭୁଲା—ଭୁଲି, ଧାତା ଭୁଲିରେ ସମୁଦ୍ରରେ ରତ୍ନ-ଭଣ୍ଡାର ରଖିଛି ।

୪୨ । ସାର୍ବଭୌମ—ସର୍ବଶ୍ରେଷ୍ଠ, ଏକାଙ୍ଗଚକ୍ରବର୍ତ୍ତୀ, ଇତ୍ତରଦନ୍ତୀ—ଇନ୍ଦ୍ରର ଦିଗହସ୍ତୀ ।

୪୩ । ରଡ଼ି—ଶବ୍ଦ ।

୪୪ । ଯାଚକେ—ଭିକାରି ।

୪୫ । କଳ୍ପତରୁ—କାମନା ପୂର୍ଣ୍ଣ କରିବା ଗଛ, ସନ୍ନିଧାନ—ପାଖ ।

୪୬ । ପଲ୍ଲବମାନ—ପତ୍ରସବୁ, ଅଶନ—ଭକ୍ଷଣ, ଖାଇବା ।

୪୭ । ବ୍ୟର୍ଥ—ଅକାରଣ, ଦାତାପଣ—ଦାନପଣିଆ ।

୪୮ । ପ୍ରତାପ—କ୍ଷମତା, ନାସିଲା—ଭୟକରି, ବଡ଼ବାନଳେ—ସମୁଦ୍ର ମଧ୍ୟସ୍ଥ ଅଗ୍ନିରେ ।

୫୦ । ଯଶ-ସମ୍ମାନ, କୁମୁଦ ବନ୍ଧୁ—କଇଁଫୁଲ ଓ ଚନ୍ଦ୍ର, ପରସ୍ପରରେ—ଅପଣା ଅପଣା ମଧ୍ୟରେ ।

୫୧ । ଅଳି—ଭ୍ରମର, ଅଙ୍କେ—ଦେହରେ, କଳଙ୍କ-ନିନ୍ଦା, ସୂଚକ—ଚିହ୍ନ ।

୫୨ । ହର—ମହାଦେବ, କୀର୍ତ୍ତି—ଯଶ ।

ଏମ୍‌ଭା [illegible] ହାକୁ ଥିବ ତ ଛୁଇଁ । ଥିବେ ଏ କିଛି ଶୀତଳ ପାଇ ।୫୩।
ପୁଣି ତା କୀର୍ତ୍ତି ଶାନ୍ତ ରସଭାବ । ଗରଳ ତାପ ଶାନ୍ତ କରିବ ।୫୪।
ଏମନ୍ତ ବୋଲିଣ ବହିଲେ ଶୀର୍ଷେ । ଚନ୍ଦ୍ରମାଚୂଡ଼ ଗଙ୍ଗାଧର ସେ ।୫୫।
ବଣରେ କେଳି କଉତୁକ ତାର । କିଳାସି ହୋଇ ଉଚ୍ଛନ୍ନଭର ।୫୬।
କିଂ ପୁରୁଷକୁ ଅନୁସ୍ୱାର ଦୂର । କରଣି ଦେଲେ ପ୍ରାନ୍ତେ ଏକାର ।୫୭।
ସ୍ୱାଧୀନଭର୍ତ୍ତୃକା ନାରୀ ପାଇଛି । ନାୟକ ଅନୁକୂଳ ହୋଇଛି ।୫୮।
ସବୁ ଏକଠାବ କରିଛି ବିଧି । ମଞ୍ଜିଷ୍ଠା ରାଗ ଉଦିତ ତହିଁ ।୫୯।
ଯାହା ଗୁଣ ରତ୍ନାଳଙ୍କାର ହେଲ । ମଣ୍ଡନ ଲୋକମାନେ ସେ କଲେ ।୬୦।
କହୁଥିଲେ ସେ ତ ନୋହିବ ଶେଷ । ସମ୍ପୂର୍ଣ୍ଣ ଛାନ୍ଦ ଅଠଗ୍ରାଳିଶ ।୬୧।
ନାନା ଅବଧାନ ବିଧାନ ପର । ନାଟକ କାବ୍ୟ ଅଙ୍ଗେ ମାଧୁରୀ ।୬୨।
ଦୃଷ୍ଟି ସୃଷ୍ଟିରେ ହୋଇଛି ବିଚିତ୍ର । ରସିକ ଚିତ୍ତ ମୋହନ ମନ୍ତ୍ର ।୬୩।
ଖଳ ଗର୍ବ-ତୃଣ ଦାବ ଦହନ । ପଥିକ ମୂର୍ଖ ଅଗମ୍ୟ ବନ ।୬୪।
ଧନୀ ବଣିକ ପସରା ସମାନ । ବିବିଧ ରସଦ୍ରବ୍ୟରେ ପୂର୍ଣ୍ଣ ।୬୫।

---

୫୩। ଶୀତଳ—ଥଣ୍ଡା।
୫୪। ଗରଳ—ବିଷ।
୫୫। ଶୀର୍ଷେ—ମୁଣ୍ଡଉପରେ, ଗଙ୍ଗାଧର—ମହାଦେବ।
୫୬। ଶ୍ରବଣ—ଶୁଣିଲାକ୍ଷଣି କାନ।
୫୭। କିଂପୁରୁଷ—କୁତ୍ସିତନର, କି ପୁରୁଷ ଏ—କେଉଁ ପୁରୁଷ ଏ—ଚନ୍ଦ୍ର ଭାନୁ ଏହା ଠାରୁ ଅସୁନ୍ଦର ହେଲେ।
୫୮। ସ୍ୱାଧୀନ ଭର୍ତ୍ତୃକା—ଯେଉଁ ସ୍ତ୍ରୀର ସ୍ୱାମୀ ତାର ଅନୁଗତ ଓ ସେ ସ୍ତ୍ରୀ କଥାରେ ଚଳେ। ଅନୁକୂଳ ନାୟକ—ଯେ ପୁରୁଷ ସ୍ତ୍ରୀଠାରେ ବିଶେଷ ଅସକ୍ତ କି ଲୋଭକରି ସର୍ବଦା ତାର ପାଶରେ ଥାଏ।
୫୯। ମଞ୍ଜିଷ୍ଠାରାଗ—ସ୍ତ୍ରୀ ଓ ପୁରୁଷ ମଧ୍ୟରେ ଯେଉଁ ଅଭେଦ ପ୍ରୀତି।
୬୦। ରତ୍ନାଳଙ୍କାର—ସୁନା।
୬୨। ବିଧାନ—ନିୟମ, ମାଧୁରୀ—ମଧୁରତା।
୬୩। ଦୃଷ୍ଟି—ଦେଖିବା, ସୃଷ୍ଟି—ବ୍ରହ୍ମାଣ୍ଡ, ବିଚିତ୍ର—ଅଶ୍ଚର୍ଯ୍ୟ।
୬୪। ଖଳଗର୍ବ ତୃଣ—ଦୁଷ୍ଟମାନଙ୍କର ଗର୍ବରୂପ ଘାସ, ଦାବ—ବଣି, ଦହନ—ପୋଡ଼ିବା, ପଥିକ—ବାଟୋଇ।

ଉପଇନ୍ଦ୍ର ଭଞ୍ଜ ମନକୁମୁଦ । ଚଉଦକର୍ମୀ ଶ୍ରୀରାମଚନ୍ଦ୍ର ... ।୬୬।
ରଜନୀ ଦିବସେ ବିକାଶ କରି । ଅଧିକ ପଦ୍ମ ଏଣୁ ବିହରି ।୬୭।
ପ୍ରବନ୍ଧ ଦୁଇସହସ୍ର ଗଣନା । ଷାଠିଏ ଏକପଦରେ ଶେଷ ।୬୮।

* * * *

୬୬ । ମନକୁମୁଦ—ହୃଦପଦ୍ମ, ଚଉଦକର୍ମୀ—ଅଷ୍ଟର୍ଗ ଚଉଦକର ।

୬୭ । ବିକାଶ—ପ୍ରକାଶ ।

ଚନ୍ଦ୍ରଭାନୁ ସ୍ୱଦେଶକୁ ଫେରି ଅସନ୍ତେ ରାଜା ବିଶେଷ ଆନନ୍ଦ ହୋଇ ଲବଣ୍ୟବତୀ ସହିତ ଚନ୍ଦ୍ରଭାନୁଙ୍କୁ ରାଜଗାଦୀରେ ବସାଇ ଅଭିଷେକ କରି ରାଜଦଣ୍ଡ ଦେଇ ନିଜେ ରାଣୀସହ ବାନପ୍ରସ୍ଥ ଅବଲମ୍ବନ କରି ବନକୁ ଗଲେ ।

ଚନ୍ଦ୍ରଭାନୁ ରାଜଗାଦୀରେ ବସି ରାଜାହୋଇ ସମସ୍ତ ପ୍ରଜାମାନଙ୍କୁ ପୁତ୍ରପରି ପାଳନ କଲେ । ତାହାଙ୍କ ଶାସନରେ କିଛି ଉପଦ୍ରବ ଓ ଅଶାନ୍ତି ରହିଲା ନାହିଁ । ପ୍ରଜାମାନେ କି ଧନୀ, କି ଗରିବ ସମସ୍ତେ ସମାନ ନ୍ୟାୟ ବିଚାର ପାଇଲେ, କାହାରି କୌଣସି କଷ୍ଟ ରହିଲା ନାହିଁ । ସମସ୍ତ ପ୍ରଜା ଏ ଆମୋଦ ପ୍ରମୋଦରେ ଦିନଯାପନ କଲେ । ଶ୍ରୀରାମଚନ୍ଦ୍ରଙ୍କ ରାଜଦଣ୍ଡରେ ପ୍ରଜାମାନେ ଯେପରି ପରମ ସୁଖରେ ଥିଲେ—ଏହାଙ୍କ ରାଜତ୍ୱରେ ସେହିପରି ସୁଖୀ ହେଲେ । ରାଜରାଣୀ ଅତ୍ୟନ୍ତ ଆନନ୍ଦରେ ଦିନକଟାଇଲେ । ତାଙ୍କର ଯଶକୀର୍ତ୍ତି ଚାରିଆଡ଼େ ବ୍ୟାପିଗଲା—ସମସ୍ତେ ଧନ୍ୟ ଧନ୍ୟ କଲେ ।




ମୁଦ୍ରାକର—ଶ୍ରୀ ତ୍ରିଲୋଚନ ଗଡ଼ବଡ଼ୁ, ଶ୍ରୀରାଧାରମଣ ପ୍ରେସ,
କଟକ—୧୯୬୫

**ନୂଆ ବହି - ଛପା ସୁନ୍ଦର - ରଙ୍ଗୀନ [illegible]**
**ମୂଲ୍ୟ କମ - କମିସନ ଅଧିକ - ଅର୍ଡର ପ୍ରାର୍ଥନୀୟ**

| ପୁସ୍ତକ | ମୂଲ୍ୟ |
|---|---|
| **-ଉପନ୍ୟାସ-** | |
| ଲଭଲ ଲେଡି | ୩.00 |
| ବାସର ଶୋଜ | ୩.00 |
| ମାଦଶୀର ଶେଷ ଅଶ୍ରୁ | ୨.00 |
| ଅଭିମାନ | ୧.୭୫ |
| ପ୍ରୀତିର ପୂଜାରିଣୀ | ୧.୭୫ |
| ନହୁଲଟିଅର ଫହିଲି ଆଶା | ୨.00 |
| ଫାଶି [illegible] | ୨.୫0 |
| ଫୁଲଶର | ୨.00 |
| ବନକେତକୀ | ୨.00 |
| ପତି ପରମ ଗୁରୁ | ୧.୭୫ |
| ତୁମ୍ଭ ବିନ ପିଆସି ପ୍ରିୟା | ୧.୫0 |
| **-ଡିଟେକଟିଭ-** | |
| ରଙ୍ଗ କୋଠିର ରହସ୍ୟ | ୧.୫0 |
| ଡକ୍ଟର ଏକ୍ସ | ୨.00 |
| ଦସ୍ୟୁ ମାନସିଂହ | ୨.00 |
| ସୁନ୍ଦରବନର ଦସ୍ୟୁ | ୧.୫0 |
| ମୌନୀ ପାହାଡ଼ର ବିଭୀଷିକା | ୧.୫0 |
| ହାଇଦ୍ରାବାଦର ଷଡ଼ଯନ୍ତ୍ର | ୧.୨୫ |
| ମୃତ୍ୟୁ ଦୂତ | ୧.୭୫ |
| ସୌନ୍ଦର୍ଯ୍ୟର ମୃତ୍ୟୁ | ୧.୮ |
| ଦାନବୀ ମିସ୍ ମାଲା | ୨ [illegible] |
| ପାଷାଣ ପୁରୀର ଯକ୍ଷ | ୧.୭୫ |
| **-ନାଟକ-** | |
| ଚଉଠି ଗଡି | ୨.00 |
| ନୂଆ ଜୀବନ | ୧.୫0 |
| ଦାନବୀର ହରିଶ୍ଚନ୍ଦ୍ର | ୨.୫0 |
| ବୀର ଅଭିମନ୍ୟୁ | ୨.୫0 |
| ଭୀଷ୍ମାର୍ଜ୍ଜୁନ | ୨.୫0 |
| କର୍ଣ୍ଣାର୍ଜ୍ଜୁନ | ୨.୫0 |
| **-ଅନ୍ୟାନ୍ୟ-** | |
| ବିବାହ ରହସ୍ୟ | ୨.୫0 |
| ଷୋଡଶ କୁମାର | ୨.00 |
| ଷୋଡଶ କୁମାରୀ | ୨.୫0 |
| ଗୋପାଳକୃଷ୍ଣ ପଦ୍ୟାବଳୀ | ୬.00 |
| ଭାଗବତ ସେ ୧ (ରାଜକିଶୋର) | ୨୧.00 |
| ଲାବଣ୍ୟବତୀ | ୬.00 |
| କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ | ୬.୬0 |
| ପଣ୍ଡିତ ସର୍ବସ୍ୱ | ୧୨.00 |
| ଶ୍ରୀଶ୍ରୀଚୈତନ୍ୟ ଚରିତାମୃତ | ୧୬.00 |
| ନବଗ୍ରହ ଦଶାଫଳ | ୫.୫0 |
| ମରୁତୀର୍ଥ ହିଂଳାଜ (ଭ୍ରମଣ) | ୬.୫0 |

**ଓଡ଼ିଶା ଜଗନ୍ନାଥ କମ୍ପାନୀ ବାଲୁବଜାର - କଟକ-୨**